
ବଳରାମ ଦାସଙ୍କ କୃତ
ଜଗମ୍ମୋହନ ରାମାୟଣ
ବା
ଦାଣ୍ଡି ରାମାୟଣ
ପ୍ରକାଶକ : ଧର୍ମଗ୍ରନ୍ଥ ଷ୍ଟୋର, ଅଲିଶା ବଜାର, କଟକ - ୨

# ଜଗମୋହନ ବା ଦାଣ୍ଡିରାମାୟଣ

# ସୁନ୍ଦରା କାଣ୍ଡ

ବନ୍ଦଇ ବିଶ୍ୱନାଥ ହେ ଜୟ ତ୍ରିପୁରାରୀ
ତ୍ରିଶୂଳ ଡମ୍ବରୁ ପାଶାଙ୍କୁଶ ମାନ ଧରି ।
ମୃଗ ଖଡ଼୍ଗ ଅଭୟ ବରଦ ଶୋଭାକର
ପିନାକ ଶମନ ପାଶୁପତ ବାଣ ଧର ।
ଭସ୍ମ ବିଲେପନ ଜୟ ଜୟ ଦିଗବାସ
ଚନ୍ଦ୍ରମା ଶେଖର ସ୍ୱାମୀ ଗିରିଜା ବିଳାସ ।
ମହେନ୍ଦ୍ର ଶୁଭ୍ର ସ୍ଫଟିକ ପ୍ରାୟ ତନୁ ଶୋଭା
ଉର ମୋଳାର ଭୂଷାର ହୋଇଅଛି ଲୋଭା ।
ପଶୁଚର୍ମ ପରିଧାନ ରୁଦ୍ରାକ୍ଷର ହାର
ଜଟା ଜୁଟ ମୁକୁଟ ସନ୍ନ୍ୟାସ ଅଳଙ୍କାର ।
ଶ୍ରବଣରେ କୁଣ୍ଡଳ ମଣ୍ଡିତ ସର୍ପରାଜେ
ମସ୍ତକରେ ସୁର ତରଙ୍ଗିଣୀ ଶୋଭା ପାଏ ।
ତୁମ୍ଭେ ଦେବ ମହାଦେବ ଅଯୋନି ସମ୍ଭବ
ବିଧାତାର ଭୃକୁଟୀ ମଧ୍ୟରୁ ହେଲ ଜାତ ।
ସଂହାରକର ବୋଲି ବୋଇଲେ ଧାତା ତୋଷେ
ତେଣୁ କରି ରୁଦ୍ରମୟ ପୂରିଲା ଏ ବିଶ୍ୱେ ।
ଚଉଦକୋଟି ବଳ ପୂରିଲା ମେଦିନୀ
ଦେଖି ସ୍ତୁତି ତୁମ୍ଭଙ୍କୁ କଲେ ପଦ୍ମଯୋନି ।
ଭୋ ଦେବ ସଦାନନ୍ଦ ନ କଲେ ସଂସାର
ରୁଦ୍ର ତେଜେ ମେଦିନୀ ହୋଇଲା ନାରଖାର ।
ପିତାମହ ସ୍ତୁତି ଶୁଣୁ ନ ଥାନ୍ତି ଶୂଳପାଣି
ମଇତ୍ରେୟ ମୁନି ମହାଦେବ ଆଗେ ଭଣି ।
ତୁମ୍ଭେ ଦେବ ସ୍ୱାମୀ ପଞ୍ଚ ବଦନ ଶଙ୍କର
ତ୍ରିଶୂଳ ଆଦି ଖଟାଙ୍ଗ ପାଶାଙ୍କୁଶ ଧର ।
କୈଳାସ ବାସୀ ଗିରିଶ ପାର୍ବତୀ ରମଣ
ଜୟ ଜୟ ମହାଦେବ ନନ୍ଦୀ ଆଭରଣ ।
ସମସ୍ତ କାଳେ ଶିବ ଅଶିବ କେବେ ନୋହୁ
ଶାନ୍ତିଭାବ ପୂର୍ଣ୍ଣ କଳେବର ମହାବାହୁ ।
ଯୋଗରେ ମହାଯୋଗୀ ତୁ ଭୋଗରେ ଈଶ୍ୱର
ଶକ୍ତି ଭୂଷଣ ଜୟ ଜୟ ଶଶିଧର ।
ଅନ୍ଧକ ତ୍ରିପୁର ଅସୁରଙ୍କୁ ନାଶ କଲୁ
ଜଳନ୍ଧର ଦୈତ୍ୟଙ୍କୁ ତୁ ଜୀବନେ ମାଇଲୁ ।
ମଦନଙ୍କୁ ଦହିଲୁ ବଡ଼ିମା ପଣ ହେନି
ଜାମାମ୍ବକ ବୋଲିଣ ବୋଲନ୍ତି ପୁର ତିନି ।
ତୁମ୍ଭଙ୍କୁ ସେବା କରି ବାସୁକି ନାମେ ଅହି
ତିଳ ଚୋପା ପ୍ରାୟେ ସେ ସପ୍ତସାଗର ବହି ।
ତୁମ୍ଭଙ୍କୁ ସେବା କରିଣ ହେମ ମହୀଧର
ଅବନୀ ଧାରଣ ଦୁଃଖ ଲେଶ ନାହିଁ ତାର ।
ତୁମ୍ଭ ଚରଣରେ ସେବା କରି ସୁରପତି
ଶାଶ୍ୱତେ ଭୋଗ କରଇ ଅମର ସମ୍ପତ୍ତି ।
ତୁମ୍ଭଙ୍କୁ ସେବା କରିଣ ସ୍ୱର୍ଗ ମୁନିମାନେ
ପରମାନନ୍ଦ ପୁରୁଷ ଦେଖନ୍ତି ସେ ଧ୍ୟାନେ ।
ତୁମ୍ଭଙ୍କୁ ସେବା କରିଣ ବୃନ୍ଦାରକ ବୃନ୍ଦ
ସ୍ୱର୍ଗ ସୁଖ ଭୋଗୁଛନ୍ତି ହୋଇଣ ଆନନ୍ଦ ।
ତୁମ୍ଭ ଚରଣରେ ସେବା କରିଣ ଅଦିତି
ସଚ୍ଚିଦାନନ୍ଦ ପୁରୁଷ ପାଇଲେ ସନ୍ତତି ।
ତୁମ୍ଭଙ୍କୁ ସେବା କରି ଆଭିର ନାରୀ ଗୋପେ
ପରମ ପୁରୁଷଙ୍କୁ ପାଇଲେ କାନ୍ତରୂପେ ।
ତୁମ୍ଭ ପାଦ ସେବି ବାଣ ଅସୁର ଅସୁରୀ
ତୁମ୍ଭର ପ୍ରସାଦେ ସୁଖ ଭୁଞ୍ଜେ ଦଶଶିରୀ ।
ତୁମ୍ଭର ଭକତି ପଣ ଦେଖି ରମାପତି
ଲିଙ୍ଗ ସ୍ୱରୂପ ସ୍ଥାପନ କରିଣ ପୂଜନ୍ତି ।
ତୁମ୍ଭେ ଦେବ ହରିହର ଏକଇ ମୂରତି
ପଶୁମାନଙ୍କ ନାୟକ ହେତୁ ପଶୁପତି ।
ତୁମ୍ଭ ମହିମା ସହିତ ସଂସାରେ କେ କ୍ଷମ
ତୁମ୍ଭ ଭକତମାନଙ୍କୁ ଭୟ କରେ ଯମ ।
ତୁମ୍ଭଙ୍କୁ ଆଶ୍ରୟ କରି ମାର୍କଣ୍ଡ ଯତି
ଚିରଞ୍ଜୀବୀ ହୋଇଣ ପ୍ରଳୟ ନ ଜାଣନ୍ତି ।
ତୁମ୍ଭେ ହରିହର ବେନି ଏକଇ ମୂରତି
ତୁମ୍ଭଙ୍କୁ ଭଜଇ ଯେହୁ ଲଭେ ମୋକ୍ଷଗତି ।
ବଦନେ ତୋ ମହିମା କହିଲେ ନୁହେଁ ଶେଷ
ଶେଷ ସମାଧି ବଳରେ ନ ପାଇବେ ଲେଶ ।
ଏକଦିନେ ଧରି ଧାତା ତୁମ୍ଭେ ତ୍ରିମୂରତି
ଏକାସନେ ବସିଣ ପରମ ତୋଷ ମତି ।

ଏକକୁ ଏକ ପ୍ରଶଂସି ହୁଅନ୍ତି କୁହାକୁହି
ଆପଣେ ଜଣା କଲ ନାରାୟଣେ ଚାହିଁ ।
ଭୋଦେବ ହେ ନାରାୟଣ ତୁମ୍ଭର ମହିମା
ଯେତେ ମତେ ସେବିଲେ ନ ପାଇ ତହିଁ ସୀମା ।
ବିଧାତାଙ୍କ ବୁଦ୍ଧିକି ସମାନ ନାହିଁ କେହି
ସଂସାର ସର୍ଜନା କରୁଛନ୍ତି ଏଣୁ ଏହି ।
ଆମ୍ଭର ଶରୀର ଅନ୍ତ କେବେ ହେଁ ନ ଜାଣି
ଏ ତିନିକଥା ସମାନ କାହାକୁ ନ ଗଣି ।
ଶୁଣି ହସି ଭଗବାନ କହନ୍ତି ବଚନ
ଏଥୁ ଆନ କଥାଏ ବୁଝିବା ତ୍ରିଲୋଚନ ।
ବିଧାତା ବୁଦ୍ଧିବନ୍ତ ଶେଷ ନାହିଁ କେହି
ଆମ୍ଭର ମହିମା ତୁମ୍ଭେ ଜାଣ ଭାବଗ୍ରାହୀ ।
ତୁମ୍ଭର ଶରୀର ଆମ୍ଭେ ବେନିଜନେ ଦେଖୁଁ
ଏ ତିନି କଥାକୁ ଏବେ ସମକରି ଲେଖୁଁ ।
ଶୁଣିଣ ସଦାଶିବ ସେ କ୍ଷଣି ହେଲେ ଉଭା
ସତ ରଜ ତିନିଗୁଣ ତମରେ କଲେ ପ୍ରଭା ।
କହିଲେ ବେନି ଜନେ ଶରୀର ଦେଖି ଆସ
ଶୁଣି କରି ଆନନ୍ଦେ ଉଠିଲେ ପୀତବାସ ।
କଟି ଭାଗଠାରୁ ଉପରକୁ ଗଲେ ହରି
ଦଇବ ଗଲେ ତଳ ଦିଗକୁ ଅନୁସରି ।
କେତେ ଦୂର ଯାଇ ହରି ବିଚାରନ୍ତି ମନେ
ହର ସଙ୍ଗେ ବାଦ କରି ଅଇଲଇଁମାନେ ।
ତାଙ୍କର ସର୍ବାଙ୍ଗ ଏବେ କେମନ୍ତେ ଦେଖିବି
ଏମନ୍ତ ବିଚାର କରି ହସିଲେ ପୃଥ୍ୱୀ ଦେବୀ ।
ତେବେ ହସି କହିବା ମହାଦେବେ ଚାହିଁ
ଏମନ୍ତ ବିଚାର କରି ମନରେ ରମାସାଇଁ ।
ତାହାଙ୍କୁ ଦେଖି ଗୋବିନ୍ଦ ମନରେ ଆନନ୍ଦ
ଆସ ଆସ କେତକୀ ସର୍ବ ବର୍ଣ୍ଣେ ଚାନ୍ଦ ।
ତାହା ଦେଖି ମନ ହେଲା ପରମ ହରଷ
ଏବେ ଆମ୍ଭ ଶ୍ରୀକରେ ବସିବ ଯେ ଆସ ।
ତୋତେ ଘେନି ଯିବଇଁ ମହାଦେବ ପାଶ
ତାଙ୍କ ଆଗେ କହିବୁ ତୁ ଏମନ୍ତ ସନ୍ଦେଶ ।
ଆମ୍ଭେ କହିବୁଁ ଆଣିଲୁଁ ମସ୍ତକୁ କେତକୀ
କେତେବେଳେ ଏକଥା କହିବୁ ପ୍ରମାଣକି ।
ଏକଥା କହିବାକୁ ହିଁ କେବେ ହେଁ ନ ଡର
ଆମ୍ଭର ଉପ୍ରୋଧେ କୋପ ନ କରିବେ ହର ।
କେତକୀ କହେ ଦେବ ତୁ ସମସ୍ତ ଠାକୁର
ତୋ ଆଜ୍ଞା ଲଘିବାକୁ କି ଶକ୍ତି ମୋହର ।
ଏକଥା କହିବି ଏଣୁ ସେତ ମହେଶ୍ୱର
ଏ କଥାକୁ ମନରେ କରନ୍ତୁ ବିଚାର ।

ସେହୁ କୋପ କଲେ ତ ନାଶ ଯିବି ମୁହିଁ
ସେ କାଳେ ମୋତେ ସାହା ହେବ କେ ଗୋସାଇଁ ।
ହରି ବୋଇଲେ ଯାହା କହିଲୁ ତା ସତ
ମହାଦେବ ସାରିବେକି ଆମ୍ଭର ମହତ ।
ଏ କଥାକୁ ମନରେ କିଛି ହିଁ ନ ଭାଳ
ଏହା କହି ତାକୁ ଘେନି ଚଳିଲେ ଗୋପାଳ ।
ମହାଦେବଙ୍କ ଛାମୁକୁ ବିଜେ କରି ଗଲେ
ତାଙ୍କ ଆଗେ ନେଇ କେତକୀକି ଦେଖାଇଲେ ।
ତୁମ୍ଭ ଶିରୁଁ ଏହାକୁ ଆଣିଲୁଁ ଉମାସାଇଁ
ଦେଖି କରି ଭୋଳାନାଥ ଆଶ୍ଚର୍ଯ୍ୟ ଯେ ହୋଇ ।
ମନେ ମନେ ଭାଳି ପଚାରନ୍ତି କେତକୀକି
ଆମ୍ଭର ଶିରରୁ ଆଣିଲେ ତୋତେ ଟିକି ।
କେତକୀ କହିଲା ଦେବ ଆଣିଲେ ଏ ମୋତେ
ଏକଥାକୁ ସଂଶୟ ନ କର କଦାଚିତେ ।
ଜଗତ ଠାକୁରଙ୍କ କଥା ଅଟେ ସତ୍ୟ
ଶୁଣି ଯୋଗବଳେ ତାହା ଜାଣିଲେ ଉମାକାନ୍ତ ।
ବୋଇଲେ କେତକୀ ଶୁଣ ମୋର ଗୀର
ତୋହଠାରେ ବଡ଼ ସ୍ନେହ ଅଟଇ ମୋହର ।
ଯେତେ ମତେ ତୋତେ ଆମ୍ଭେ କରିଥିଲୁ ସୁଖ
ତେତେ ମତେ କରାଇଲୁ ଆମ୍ଭଙ୍କୁ ବିମୁଖ ।
ଆଜିଠାରୁ ତୋହର ଘଟିଲା ଅଭାଗ୍ୟ
ଆମ୍ଭ ଶ୍ରୀଅଙ୍ଗକୁ ନୋହିଲୁ ଆଉ ଯୋଗ୍ୟ ।
ଭସ୍ମ ରାଶି କରିଥାନ୍ତି କଲୁ ଯେଉଁ କଥା
ଆମ୍ଭର ଛାମୁରେ ଜଣାଇଁଲୁ ଯାହା ମିଥ୍ୟା ।
ନାଶ ନ କଲ ଏହି କଥାକୁ ବିଚାରି
ବତାଇ ଅଛନ୍ତି ଯେଣୁଁ ଦେବହରି ।
ମଲାରୁ ଅଧିକ ଦଣ୍ଡ ହୋଇଲାଣି ଏବେ
ଆମ୍ଭ ଶ୍ରୀଅଙ୍ଗକୁ ତୁହି ନ ଛୁଇଁବୁ ଯେବେ ।
ତାହା ଶୁଣି କେତକୀ କମ୍ପଇ ଥରହର
ଦେଖି କରଯୋଡ଼ି କହେ ଜଗତ ଠାକୁର ।
ହେ ଦେବ ମହାଦେବ ଆମ୍ଭର କଥା ଶୁଣ
ଯାହା ଜଣାଇବି ତାହା ବିଚାର କର ପୁଣ ।
ଯେଉଁଠାରେ ମେରୁଥାଇ ବଡ଼ ଜନ ଯଶ
ଯେଉଁଠାରେ ପ୍ରାଣୀ ଥାନ୍ତେ ପାଉଥାନ୍ତି ନାଶ ।
ସେଠାରେ ସତ୍ୟ ଛାଡ଼ିଣ ପ୍ରମାଣ କରିବ
ମିଥ୍ୟା କହି ସେ ପ୍ରାଣୀକି ଉଦ୍ଧାର କରିବ ।
ସେ କଥାକୁ ମନରେ ସଂଶୟ ନ କରିବ
ଏହା ତ ବଳେ ଭିଆଣ କରିଛି ଦଇବ ।
ସେ କଥା ବିଚାରିଲେ କେତକୀ ନିର୍ଦ୍ଦୋଷୀ
ସେତ ଆମ୍ଭ ଆଜ୍ଞାରେ କହିଲା ହେ ଆସି ।

ଏ କଥା ନ ଘେନିଲ କିମ୍ପାଇଁ ଦୁଃଖ କଲ
ତୁମ୍ଭେ ଆମ୍ଭେ ଏକ ଆତ୍ମା ଏହା ନ ଜାଣିଲ ।
ଏହା ଶୁଣି ହର ଶାନ୍ତ ଭାବ ଧରି
ଅତି ବିନୟେ ହୋଇ କହନ୍ତି ତ୍ରିପୁରାରି ।
ଭୋ ଦେବ ତମଗୁଣ ଦେଲ ତୁମ୍ଭେ ମୋତେ
ଏ କଥାରେ ଦୋଷ କିମ୍ପା ଧରୁଅଛ ଚିତ୍ତେ ।
ଭଗବାନ ଦେଖାଇ ଦିଅନ୍ତି କେତକୀକି
ଏହା ଦୋଷ ନ ଘେନିଣ ଶିରେ ଧରିବକି ।
ହେଉ ବୋଲି ସନମତ କଲେକ ଈଶାନ
ତୋର ଆଜ୍ଞା ପ୍ରମାଣେ ଧରିବି ଏକଦିନ ।
ମୋର ଜନ୍ମଦିନ ଯେ କେତକୀ ମୋତେ ଦେବ
ତାହାର ମନୋବାଞ୍ଛା ପୂରଣ ହୋଇବ ।
ତୁମ୍ଭଙ୍କୁ କେତକୀ ଯେ ଉତ୍ତମ ମନେ ଦେବ
ସେ ମୋର ଅତି ପ୍ରିୟ କହିଲେ ମହାଦେବ ।
ଏମନ୍ତ ସମୟରେ ପ୍ରବେଶ ପିତାମହ
ମହାଦେବ ପଚାରିଲେ ତୁମ୍ଭ କଥା କହ ।
ଆମ୍ଭ ଅର୍ଦ୍ଧାଙ୍ଗରୁ ତୁମ୍ଭେ ପାଇଲକି ଅନ୍ତ
ମୋ ମସ୍ତକୁ କେତକୀ ତୁ ଆଣିଲୁ ଅନନ୍ତ ।
ଏହା ଶୁଣି ବିଧାତା ଯୋଡ଼ିଲେ ବେନି କର
ଭୋ ଦେବ ଅଗୋଚର ମହିମା ତୁମ୍ଭର ।
ତୁମ୍ଭର ଚରଣ ସେବା କରେ ଯେ ମନୁଷ୍ୟ
ସର୍ବଦେବ ପ୍ରିୟ ସେହୁ ପାଏ ସ୍ୱର୍ଗବାସ ।
ଶୁଣିଣ ସଦାଶିବ ପରମ ତୋଷ ମନ
ଏଣୁ କରି ହରିହର ଧାତା ଏକ ପ୍ରାଣ ।
ତୁମ୍ଭର ମହିମା କେହି କରିବ ନାହିଁ ଅନ୍ତ
ମୁଁ ତାହା କହିବାକୁ ସମର୍ଥ ନୁହଇ ତ ।
ଯେତେକ ଜାଣଇଁ ତାହା କହିବି ଯେବେ ସତ
ତାହା ବସି କହିଲେତ ରହିବ ଏ ଗ୍ରନ୍ଥ ।
ଏଣୁ କରି ତୋତେ ମୁଁ କରଇ ବିନତି
ରାମଚନ୍ଦ୍ର କଥାରେ ମୋର ଅଟଇ ବଡ଼ପ୍ରୀତି ।
ଯେବେ ହରିଭକ୍ତଟାରେ ତୋହର ସଦୟ
ତେବେ ସନ୍ତୋଷ ମନରେ ମୋତେ ଆଜ୍ଞା ଦିଅ ।
ସୁନ୍ଦରାକାଣ୍ଡ ଚରିତ ରାମାୟଣ ମଧ୍ୟ
ରାମଚନ୍ଦ୍ର ଦୁଃଖନାଶ ଏ ଚରିତ୍ର ସାଧ୍ୟ ।
ହନୁମାନ ଲଙ୍କା ଯିବ ପାଇବ ବାରତା
ଅଶୋକ ବନେ ଅଛନ୍ତି ଜନକ ଦୁହିତା ।
ତାଙ୍କୁ ଦେଖିଣ ରାମଙ୍କୁ ବାର୍ତ୍ତା ଆଣିଦେବ
ଲଙ୍କା ଗଡ଼ରେ ମହିମା ଅସଂଖ୍ୟ କରିବ ।
ହନୁମାନ ଚରିତ ଦେବଙ୍କୁ ଅଗୋଚର
ମୁଁ କେମନ୍ତ କହିବଇଁ ମାନବ ଶରୀର ।
ଗିରିଜା ବଲ୍ଲଭ ମୋତେ ହୁଅ ପରସନ୍ନ
ପାର୍ବତୀପତି ନାମ ତୋହର ପତି ନାମ ।
ଶ୍ରୀରାମ ଚରିତରେ ବହୁତ ଶ୍ରଦ୍ଧା ମୋର
ଭୋ ଚଣ୍ଡୀବଲ୍ଲଭ ମୋର ବାଞ୍ଛା ପୂର୍ଣ୍ଣ କର ।
କର ମୋତେ ଅନୁଗ୍ରହ ପାର୍ବତୀର ସାଇଁ
ରକ୍ଷକପି ରାମଚନ୍ଦ୍ର କାର୍ଯ୍ୟେ ଛନ୍ତି ଯାଇ ।
ଦେଶ ବିଦେଶ ବହୁତସ୍ଥାନ ବୁଲିଗଲେ
ଦକ୍ଷିଣ ସିନ୍ଧୁ ତହିଁରେ ପ୍ରବେଶ ହୋଇଲେ ।
ସମ୍ପତ୍ତି ମୁଖୁଁ ପାଇଲେ ସୁସାଧ୍ୟ ବାରତା
ଲଙ୍କାଗଡ ମଧ୍ୟରେ ଅଛନ୍ତି ଦେବୀ ସୀତା ।
ଯାଇ ନ ପାରନ୍ତି କେହି ସମୁଦ୍ରକୁ ଡେଇଁ
ବିସ୍ମୟ ମନେ ଭାବନ୍ତି ସିନ୍ଧୁ କୂଳେ ଥାଇ ।
ଦଇବ ବଳରେ ହନୁମନ୍ତ ଲଙ୍କା ଯିବ
ରାମଙ୍କ ପ୍ରିୟବତୀଙ୍କୁ ଦେଖିଣ ଆସିବ ।
ଲଙ୍କାଗଡ଼ ପୋଡ଼ି ଅକ୍ଷୟଙ୍କୁ ପ୍ରାଣେ ମାରି
ତେବେ ସେ କଟକାଇ କରିବେ ଚାପଧାରୀ ।
ତେବେ ସ୍ୱର୍ଗେ ଦେବତାଏ ରହିବେ ନିଶ୍ଚିନ୍ତେ
ତପୀଜନ ତପସ୍ୟା କରିବେ ତୋଷ ଚିତ୍ତେ ।
ଯେବେ ଯେ ମୃତ୍ୟୁପଦ ପାଇବ ଦଶମାଥ
ତେବେ ସତୀମାନଙ୍କର ରହିବ ସତୀତ୍ୱ ।
ତେବେ ସେ ବିଭୀଷଣ ପାଇବ ଲଙ୍କାଶିରୀ
ତେବେ ସେ ମହାସତୀ ହୋଇବ ମନ୍ଦୋଦରୀ ।
ତେବେ ସିନା କଉଶଲ୍ୟା ନେଜିବେ ଚିନ୍ତାବ୍ରତ
ତେବେ ସିନା ଯଶସ୍ୱାର୍ଥ କରିବେ ଭରତ ।
ତେବେ ସେ ସୁଖୀ ହୋଇବେ ତିନିପୁର ଜନ
ତେବେ ସେ ଯୋଗିମାନେ ସାଧିବେ ଯୋଗଧ୍ୟାନ ।
ତେବେ ସିନା ବସୁମତୀ ହୋଇବେ ଉଶ୍ୱାସ
ତେବେ ସେ ସର୍ଗଈଶ ଲଭିବେ ମନତୋଷ ।
ତେବେ ରମ୍ଭା ଅପସରୀର ଯିବ ମନୁ ଶୋକ
ତେବେ ଜାନକୀର ଯିବ ଦଶା ଦୁର୍ବିପାକ ।
ତେବେ ସେ ଶ୍ରୀରାମଚନ୍ଦ୍ର ଅଯୋଧ୍ୟାକୁ ଯିବେ
ତେବେ ସିନା ମାତା ଭ୍ରାତ ସମସ୍ତେ ଦେଖିବେ ।
ଏହା ମୁଁ କହିବାକୁ ଭାଳଇ ମନେ ମନ
ଗିରିଜା ବଲ୍ଲଭ ମୋତେ ହେବ ପରସନ୍ନ ।
ବଳରାମ ଦାସ ମୁଁ କରଇ ହର ସେବା
ତୁ ସ୍ୱାମୀ ସଦାନନ୍ଦ ପୂରଣ ମୋତେ ଦେବା ।
ବନ୍ଦଇଁ ବାଲମୀକ ମୁନିଙ୍କ ଚରଣ
ଯାହା ମୁଖୁଁ ବାହାର ହୋଇଛି ରାମାୟଣ ।
ଏ ସଂସାର ରାତ୍ରକୁ ଯେ ମୁନି ପ୍ରଦୀପ
ବ୍ରହ୍ମାଙ୍କ ସମାନ ସେ ଅଟଇ ଅନୁରୂପ ।

ଯାହାଯୋଗୁଁ ମ୍ଲେଚ୍ଛଜନେ ଯୋଗକୁ ପାଇବେ
ତିନିଲୋକ ପ୍ରାଣୀ ଯାହା ଶୁଣି ନିସ୍ତରିବେ ।
ସେ ଯେବେ କହି ନ ଥାନ୍ତେ ରାମାୟଣ ବାଣୀ
ସଂସାର ଘୋଟନ୍ତାଣି ପାପୀସିନ୍ଧୁ ପାଣି ।
ଧନ୍ୟ ଧନ୍ୟ ମୁନି ତୁମ୍ଭେ ସାରସ୍ୱତ ଜାଣ
ବିଷ୍ଣୁ ମହିମା ତୁମ୍ଭର ଶ୍ରୀମୁଖେ ବଖାଣ ।
ମହାପୁଣ୍ୟ ଶରୀର ମହିମା ଅକୁପାର
ତୋ କଣ୍ଠେ ବିଜୟ ସଦା ଶାର୍ଙ୍ଗ ଚକ୍ର ଧର ।
ଭଗବାନଙ୍କର ସଦା ତୋ ହୃଦେ ଆସନ
ଭୋ ମହାମୁନି ମୋତେ ହୋଇବା ପ୍ରସନ୍ନ ।
ରାମଚନ୍ଦ୍ର ବାରତା ଯା ବିଖ୍ୟାତ ନହିଲେ
ତୁମ୍ଭର ବଦନୁଁ ସେହୁ ବାହାର ହୋଇଲେ ।
ସେ କଥା ହେଲା ପୁରାଣ ପୁସ୍ତକେ ଲିଖନ
ସେ କଥାକୁ ବଖାଣ କରନ୍ତି ବହୁଜନ ।
ସେ କଥା ହୋଇଲା ତିନି ଭୁବନକୁ ସାର
ସେ କଥା ଶୁଣିଲେ ଯେ ତରନ୍ତି ପାମର ।
ସେ ଚରିତ୍ର ହୋଇଲା ଯେ ସର୍ବଶାସ୍ତ୍ରେ ଶ୍ରେଷ୍ଠ
ସେ କଥାକୁ କଲେ ସର୍ବେ ଭକ୍ତଜନ ଇଷ୍ଟ ।
ସେ କଥା ଶୁଣିଣ ମନେ ଶ୍ରଦ୍ଧା ମୁହିଁ କଲି
ଥୋକାଏ ପଦ ମୁହିଁ ହୃଦରେ ବଖାଣିଲି ।
ସଂସାରର ହିତେ ମୁଁ ଘୋଷଇ ପୁଣ ପୁଣ
ତୁମ୍ଭେ ମୋତେ ପ୍ରସନ୍ନ ହୋଇବ ମୁନିବର ।
ସାତଖଣ୍ଡ ରାମାୟଣ କହିତେ ମୋର ମନ
ନୀଳଗିରି ଜଗନ୍ନାଥ ହେଲେ ପରସନ୍ନ ।
ଏଣୁ କରି ମନରୁ ତେଜିଲେ ସବୁ କାର୍ଯ୍ୟ
ଏ ଗ୍ରନ୍ଥ କରିବାକୁ ମୁଁ ନ ମଣଇଁ ଲାଜ ।
ଲୋକେ ଉପହାସ କରିବାକୁ ମୁଁ ଡରଇ
ମୂର୍ଖଜନମାନଙ୍କୁ ବହୁତ ଭୟ ପାଇ ।
ପଣ୍ଡିତ ଜନେ ଧାର୍ମିକ ନ ଘେନନ୍ତି ଦୋଷ
ଅନେକ ଜାଣିଲା ଲୋକ ମନ କରି ରୋଷ ।
ତେଣୁ କରି ମନରେ ଭୟ ମୁଁ କରଇ
ସୂଚୀ ମୁନେ ମେରୁ ଟାଳିବାକୁ ବିଚାରଇ ।
ନୀଳଗିରିରେ ବିଜେ ମୋ ପ୍ରଭୁ ଜଗନ୍ନାଥ
ତାହାଙ୍କର ଶରଣ ମୁଁ ଅଟଇ ନିରତ ।
ତେଣୁ କରି ଶରଧା କରଇ ଗ୍ରନ୍ଥ ଭଣି
ହୃଦରେ ବିଜୟ ମୋର ଶଙ୍ଖ ଚକ୍ର ପାଣି ।
ସେ ପ୍ରଭୁ ପ୍ରସନ୍ନେ ମୁଁ କହଇ ରାମ କଥା
ଶୁଣିଲା ଜନେ ମନରୁ ଛାଡ଼ିବେ ବିରବ୍ୟଥା ।
ପାର୍ବତୀଙ୍କ ଆଗରେ କହନ୍ତି ହର କିତି
ଶୁଣିଣ ହେମବନ୍ତୀ ମନରେ ବଡ଼ ପ୍ରୀତି ।

ସଦାଶିବ ଚରଣରେ ନମନ୍ତି ପୁଣ ପୁଣି
କହ କହ ନାଥ ମୋତେ ସୁଧାମୟ ବାଣୀ ।
ଶ୍ରୀରାମଚନ୍ଦ୍ରଙ୍କ ଦୂତେ ରହିଲେ ସିନ୍ଧୁକୂଳ
ଜମ୍ବେବ ହନୁମାନ ବାଳିର ଦୁଲାଳ ।
ସମ୍ପାତିର ମୁଖରୁ ତ ବାରତା ପାଇଲେ
ତହୁଁ ଦୂତମାନେ ପୁଣ କେଉଁ କାର୍ଯ୍ୟ କଲେ ।
ସାଗର ଡେଇଁ ଲଙ୍କା ପାରିଲେଟି କି ଯାଇ
କେବଣ ପ୍ରକାରେ ସେ ଖୋଜିଲେ ବଇଦେହୀ ।
କେଉଁ ପ୍ରକାରେ ଶ୍ରୀରାମ ବାର୍ତ୍ତା ପାଇଲେ
ତହୁଁ ଦୂତମାନେ ପୁଣ କେଉଁ କାର୍ଯ୍ୟ କଲେ ।
ଏହା ମୋତେ ସମ୍ପ୍ରତି କହ ହେ ପ୍ରାଣନାଥ
ଏତେ ବୋଲି ସ୍ୱାମୀ ଚରଣେ ଦେଲେ ମାଥ ।
ମହାଦେବ କହନ୍ତି ଶୁଣରେ ପ୍ରାଣସତୀ
ସାଗର କୂଳରେ ଅଷ୍ଟସେନା ଛନ୍ତି ରହି ।
ଏକମାନ ହୋଇ କରି ବିଚାର କରନ୍ତି
ଅଗାଧ ମୁଖକୁ ଚାହିଁ କହେ ଗଣପତି ।
ସାଗର ଡେଇଁ ଲଙ୍କାଗଡ଼କୁ କେହୁ ଯିବ
ଶ୍ରୀରାମଙ୍କ କାର୍ଯ୍ୟକୁ ଭାଜନ କେହୁ ହେବ ।
କାହାକୁ ଏଡ଼େ ଯଶ ହୋଇବ ପ୍ରାପତ
ରବିନନେ ହେବ କାହା ମହିମା ବିଦିତ ।
ଚାରିଯୁଗେ ବିଦିତ ହେବ କାହା କୀର୍ତ୍ତି
କାହା କଥା ଚଉଦ ଭୁବନେ ଥିବ ବ୍ରତୀ ।
କାହାର କଥା ଡିଣ୍ଡିମ ପରାଏ ବାଜିବ
କାହା ଯଶ ଚନ୍ଦ୍ରମା ପରାଏ ବିରାଜିବ ।
କାହାକୁ ପ୍ରଶଂସା କରିବେ ତିନିପୁର
କାହାର ମହିମାକୁ ଗାଇବେ ସୁରନର ।
କପିକୁଳ କମଳେ କେ ହୋଇବ ଆଦିତ୍ୟ
କାହାକୁ ଧନ୍ୟ ଧନ୍ୟ କହିବେ ତ୍ରିଜଗତ ।
ଲକ୍ଷ୍ମୀ ପରସନ୍ନ କେଉଁ କପିଠାରେ ହେବେ
କାହାକୁ ପ୍ରାଣ ସମ କରିବେ ରାମ ଦେବେ ।
ଅମୃତୁଁ ଅଧିକ ସ୍ୱାଦ ହେବ କାହା ନାମ
କାହାବଳେ ହେବ ଏଡ଼େ ଅଲୌକିତ କର୍ମ ।
ଏଡ଼େ ଭଳି ଲୋକ କେହୁ ହୁଅ ଅଗ୍ରସର
ଏମନ୍ତ ଶୁଣି କହନ୍ତି ବାଳିର କୁମର ।
ଭୋ ମନ୍ତ୍ରୀବର ତୁମ୍ଭେ କହିଲ ଯାହା ସତ୍ୟ
ଦଶଶିରର କଟକ ଦୁର୍ଗମ ବହୁତ ।
ବାରିପାଖେ ସାଗର ମଧ୍ୟରେ ତାର ପୁରୀ
ଅଥଳ ଜଳ ଗଗନେ ଗମନ କେ କରି ।
ଶତେ ମୁଣ ପଥ ପୁଣ ଘର ଗ୍ରାମ ନାହିଁ
କେଉଁ ପଥରେ ଯିବ ପଥ ନ ଦିଶଇ ।

ଦେବଙ୍କୁ ଦୁର୍ଲ୍ଲଭ ସେ ମାନବେ ଅଗୋଚର
ଦୁର୍ଲ୍ଲଭ ସ୍ଥାନେ ଘର କରିଛି ନିଶାଚର ।
କେବଣ ଉପାୟେ ଆମ୍ଭେ ପାଇବାଟି ସୀତା
କେମନ୍ତେ ରାମଚନ୍ଦ୍ରଙ୍କୁ କହିବା ବାରତା ।
ତେବେ ସେ ଆମ୍ଭ ଯଶ ରହିବ ତିନିପୁର
ଏକାର୍ଯ୍ୟ କେମନ୍ତେ ହେବ କର ତା ବିଚାର ।
ଅଙ୍ଗଦ ବଚନ ଶୁଣି କହଇ ତାରାକ୍ଷ
ତୁ କିମ୍ପା ବିଚାର ମନେ କରୁ ବାଳିବତ୍ସ ।
ପଚାଶ ଯୋଜନ ଉଡ଼ିଯାଇ ମୁଁ ପାରଇ
ବାହୁଡ଼ି ଆସିବାକୁ ଭରସା ପାଉନାହିଁ ।
ଗନ୍ଧମାର୍ଦ୍ଦନ ଯେ କହଇ ତାହା ଶୁଣି
ମୁହିଁ ଉଡ଼ି ଯିବଇଁ ସତୁରୀ ଯୂଣ ପାଣି ।
ଆସି ନ ପାରିବି ସିନା ଏହି ଅଟେ ଗରୁ
ନିଳ କହଇ ମୁଁ ଅଟଇ ବନ୍ତକାରୁ ।
ଅଶୀଯୂଣ ଯିବି ମୁହିଁ ନ ପାରିବି ଆସି
କି ଜାଣି ଏ ସାଗର ଅଟଇ କାଳପାଶୀ ।
ଅଙ୍ଗଦ କହଇ ତୁ ଯିବାକୁ କିସ ଭାଳୁ
ନଉଯୂଣ ପଥ ମୁ ତରିବି ସିନ୍ଧୁଜଳୁ ।
ଆସି ନ ପାରିବି ପୁଣି ତହୁଁ ହେବ କିସ
ଯେବେ ଯାଇ ନ ପାରିବା ଦଶଶିର ଦେଶ ।
ନଳ କହଇ ମୁଁ ପୁଣ ମାଣିକି ନ ପାରଇ
ସ୍ଥଳରେ ଶତେଗୁଣ ବିକ୍ରମି ପାରଇ ।
ସୁଷେଣ ମଲ୍ଲବୀର ହସଇ ତାହା ଶୁଣି
ବୋଲଇ କିସ ଦୁର୍ଗମ ଅଟଇ ଏ ପାଣି ।
ଦିଗ ନ ଦିଶଇ ଯିବାକୁ କିସଚିନ୍ତ
ଶୁଣିଣ ଜମ୍ବେବ ମନ୍ତ୍ରୀ କହଇ ସିଦ୍ଧାନ୍ତ ।
ସେମାନେ କହିଲେ ପୁଣ ହେବ ଆଉ କିସ
ଯେବଣ କାଳରେ ମୋର ପ୍ରଥମ ବୟସ ।
ଏକ ଦିବସରେ ମୁହିଁ ଭ୍ରମୁଥିଲି ମହୀ
ଏବେ ସେ କଥାମାନ କହିଲେ ଲଜ୍ୟା ହୋଇ ।
ଆନ ଉପାୟ ଆମ୍ଭେ କରିବା ଆଉ କିସ
ଏମାନ ଶୁଣି କହଇ ପବନର ଶିଷ୍ୟ ।
ତୁମ୍ଭେମାନେ ସମସ୍ତେ ଅଛ ହେ ବନ୍ଧୁଭାଇ
ମୁହିଁ ମନ କରୁଅଛି ଲଙ୍କାଗଡ଼ ଯାଇ ।
ପ୍ରସନ୍ନ ମନରେ ମୋତେ କର ସର୍ବେ ଦୟା
ମୁଁ ଯାଇ ଖୋଜି ଆସିବି ଜନକ ତନୟା ।
ଜମ୍ବେବ କହଇ ମୁହିଁ ଜାଣଇରେ ବାବୁ
ରାମଚନ୍ଦ୍ର ସ୍ୱାମୀ କାର୍ଯ୍ୟ ତୁହି ଯେ କରିବୁ ।
ତୋ ତହୁଁ ଭାଜନ କେହୁ ହୋଇବାକୁ ଆନ
ତୁ ମହାବୀର ଅଟୁ ପବନ ନନ୍ଦନ ।

ତୁ ସିନା ଆଗ କରି ଦେଖିଲୁ ରଘୁନାଥ
ତୋହ ଘେନି ସିନା ସୁଗ୍ରୀବର ପୁରୁଷାର୍ଥ ।
ଏବେ ରାମଚନ୍ଦ୍ରଙ୍କୁ ଜାନକୀ ଖୋଜିଣ ଦେବୁ
ଚାରିଯୁଗ ମଧ୍ୟେ ବାବୁ କୀରତି ଥୋଇବୁ ।
ଅଙ୍ଗଦ ସୁଷେଣ ଯେ ଜମ୍ବେବ ନଳ ନୀଳ
ଗନ୍ଧମାର୍ଦ୍ଦନ ଆଦି ତାରାକ୍ଷ ସାତବୀର ।
ହନୁମାନଙ୍କୁ ବେଢ଼ିଣ ପ୍ରଶଂସା କରନ୍ତି
ରାମଚନ୍ଦ୍ର ସ୍ୱାମୀ କାର୍ଯ୍ୟ କର ତୁ କହନ୍ତି ।
ଧନ୍ୟ ଧନ୍ୟ ହନୁମାନ ଧନ୍ୟ ତୋର ପିତା
ଧନ୍ୟ ଧନ୍ୟ ତୋହର ଗର୍ଭଧାରୀ ମାତା ।
ଧନ୍ୟ ଧନ୍ୟ ଯେ ଦେଶେ ହୋଇଲୁ ବୀର ଜାତ
କପିକୂଳ କମଳେ ତୁ ମରଦ ଆଦିତ୍ୟ ।
ଯହୁଁ ସମସ୍ତେ ମିଳି କଲେ ତାକୁ ସ୍ତୁତି
ଶୁଣି ମହାବୀର ମନେ ହେଲା ତୋଷ ମୂର୍ତ୍ତି ।
ଲଙ୍କାକୁ ଯିବାକୁ ଯହୁଁ କଲା ସନମତ
ତର୍କ କଥା ଜମ୍ବେବ କହିଲେ ବହୁତ ।
ଯେବେ ତୁ ମହାବୀର ଲଙ୍କାଗଡ଼ ଯିବୁ
କ୍ଷୁଦ୍ରରୂପ ଧରି ନିଶା ଅର୍ଦ୍ଧରେ ବୁଲିବୁ ।
ଦିବସରେ ଉପବନେ ରହିବୁ ଗୁପତେ
ରାତ୍ରରେ କଟକରେ ତୁ ବୁଲିବୁ ନିରତେ ।
ଅପ୍ରକଟ ପ୍ରକଟ ସମସ୍ତ ସ୍ଥାନମାନ
ହାଟବାଟ ମଣ୍ଡପ ଘାଟ ଯେତେ ସ୍ଥାନ ।
ନଗ୍ର ନଗ୍ରାନ୍ତରେ ନଦୀକୂଳ ସରୋବର
କନ୍ଦି ବିକନ୍ଦିମାନ ଖୋଜିବୁ ନିରନ୍ତର ।
ରାଜାର ନବର ପାତ୍ରମାନଙ୍କ ଉଆସ
ଏକ ସର ଦୋସର କଟକ ଚଉପାଶ ।
ରାମଚନ୍ଦ୍ର ତୋତେ ସମସ୍ତ କହିଛନ୍ତି
ବସ୍ତାମୁଦି ସନ୍ତକ ତୋତେ ଦେଇଛନ୍ତି ।
ଜାନକୀକି ଦେଖିଲେ ସେ ସମସ୍ୟା କହିବୁ
ପକ୍ଷକରେ ଆମ୍ଭଙ୍କୁ ବାରତା ଆଣିଦେବୁ ।
ଶୁଣି କରି ନମିଲା ହନୁ ଜମ୍ବେବ ଶ୍ରୀଚରଣେ
ଅଙ୍ଗଦ କୋଳ ସେ କରଇ ପ୍ରିୟପଣେ ।
ସୁଷେଣ ଚରଣରେ କଲା ନମସ୍କାର
ତାରାକ୍ଷକୁ ଓଳଗିଲା ପବନ କୁମର ।
ଯେ ଯାହାର ଉଚିତ ମାନ୍ୟ ଭାବ ହୋଇ
ଯିବାକୁ ମହାବୀର ମନରେ ବିଚାରଇ ।
ଶ୍ରୀରାମଙ୍କ ରୂପକୁ ମନରେ କରି ଧ୍ୟାନ
ଦୁର୍ବାଦଳ ବରନ ପଙ୍କଜ ନୟନ ।
କରେ କାଣ୍ଡ କୋଦଣ୍ଡ ଶିରେ ଜଟାଭାର
କୋଟି ଶରଦଚନ୍ଦ୍ର ମୁଖକୁ ପଟାନ୍ତର ।

ଏମନ୍ତ ରୂପକୁ ମନରେ କରି ଧ୍ୟାନ
ହୁଙ୍କାର ଶବଦ କଲା ପବନ ନନ୍ଦନ ।
ଦେହ ପୁଲକ ଲୋମ କଦମ୍ବ ପୁଷ୍ପ ଜାଣି
ବାହସ୍ଫୋଟ ମାରି ନିଶ ଆଉଁସଇ ପୁଣି ।
ପର୍ବତ ଉପରେ ବସିଲା ତେଉଁ ଯାଇ
ମହୀ ଦୁଲୁକିଣ ପିଠି ଗଲା ଲୋଚା ହୋଇ ।
ଉପରକୁ ଅନାଇଁ ଦିଗକୁ ବାଉଳ
ମହାତେଜ ମୂର୍ତ୍ତି ଧରି ଗଗନେ ଉଡ଼ଇ ।
ପର୍ବତରେ ଯେତେ ସ୍ଥାନ ଯେତେ ଜଳ ଥିଲେ
ଗିରି ଲୋଚା ହୁଅନ୍ତେ ସେ ତଳକୁ ବହିଲେ ।
ଜୀବଜନ୍ତୁ ସହିତେ ବୃକ୍ଷ ଗିରିବର
ମର୍ଦ୍ଦିହୋଇ ପଡ଼ିଲେ ମେଦିନୀ ଉପର ।
ରାମନାମ ସୁମରି ଶୂନ୍ୟକୁ ଉଡ଼ିଗଲା
ତିରିଶ ଯୋଜନ କରି କାୟାକୁ ବଢ଼ାଇଲା ।
ଦଶଯୋଜନ ଓସାର ବୀର ହେଲା ମୋଟ
ବିକ୍ରମ ରୂପ ଧରିଲା ପବନର ଚାଟ ।
ପଚାଶ ଯୋଜନ ଉପରକୁ ଉଡ଼ିଗଲା
ଲଙ୍କାଗଡ଼ ଲୋକଙ୍କୁ ସେ ଅଲଗା ଦିଶିଲା ।
ନେତର ପଣନ୍ତ ଯେ ଉଡ଼ଇ ଫରହର
ମୁକୁଟ କୁଣ୍ଡଳ ବିବିଧ ଅଳଙ୍କାର ।
ଦ୍ୱିତୀୟ ସୂର୍ଯ୍ୟ କିବା ହୋଇଛି ପ୍ରକାଶ
ଝଟ ଝଟ ତେଜ ସବୁ ଦିଶଇ ଆକାଶ ।
ଗଗନେ ଉଦୟ କି ହୋଇଲା ଉତପାତ
କି ଅବା ଶୂନ୍ୟପୁରୁଷ କି ମେରୁ ପର୍ବତ ।
ଅଗୋଚର ମୂର୍ତ୍ତି ସେ ପବନର ଶିଷ୍ୟ
ଦେଖିଣ ଲଙ୍କାର ଦୈତ୍ୟେ ପାଇଲେ ମହାତ୍ରାସ ।
କେ ବୋଲଇ ଦେଖ ଉପର ଦିଗରେ
ଧୂମକେତୁ ପ୍ରାୟ ଜ୍ୟୋତିଦିଶେ ଆକାଶରେ ।
ଲାଞ୍ଜ ଫର ଫର ଯେ ବିକଟ ମୂରତି
ଲଙ୍କାକୁ ଆସିବାର ପ୍ରାୟ ଦିଶେ ଗତି ।
ଏତେ କହି ଆକାଶକୁ ଚାହାଁନ୍ତେ ଦନୁଜ
ଏଥୁ ଅନନ୍ତରେ ସେ ପବନ ତନୁଜ ।
ଲଙ୍କାକୁ ଯିବ ବୋଲି ବିକ୍ରମି ଦେଖିଲା
ମହାନାଦ ପବନରେ ବନ ଯେ କମ୍ପିଲା ।
ଭୂମି ଥରହର ଯେ ଉଛୁଳଇ ଜଳ
ଶବଦ କରଇ ହୋଇ କଳ କଳ ।
ସଚରାଚର ଧରଣୀ ଥରହର ହେଲା
ଯିବାବେଳେ ପଛରେ ଲତା ଗୋଡ଼ାଇଲା ।
କେତେଦୂରେ ଯାଇ ରହିଲେ ବୃକ୍ଷମାନେ
କେ କୋଶେ ବେନି କୋଶେ ତେଜିଲେ ଗଗନେ ।

ବନ୍ଧୁ ସ୍ନେହରେ ବନ୍ଧୁ ଗୋଡ଼ାଏ ଯେମନ୍ତ
ହନୁମନ୍ତ ପଛେ ବୃକ୍ଷ ତେସନେ ସଞ୍ଜାତ ।
ତଳଲେ ମହାଜଳ ଉପରେ ଗଗନ
ମଧ୍ୟରେ ଲଙ୍ଘିଯାଏ ପବନ ନନ୍ଦନ ।
ଗୋଡ଼ାଇଲା ବୃକ୍ଷଲତା ପଡ଼ିଲେ ଜଳରେ
ଦଶଦିଗ କମ୍ପିଲା ହନୁର ଯିବାରେ ।
ବରୁଣ ଜାଣିଲା ଏ ଯେ ଶ୍ରୀରାମର ଦୂତ
ପବନ ନନ୍ଦନ ଏ ଅଟେ ହନୁମନ୍ତ ।
ଜାନକୀକୁ ଖୋଜିବାକୁ ଯାଉଅଛି ଏହୁ
ଫଳମୂଳ ଦେବି ଯେ ପୀରତି ମୋର ରହୁ ।
ଏହି ଶ୍ରୀରାମ ବଂଶରେ ଭଗୀରଥ ରାୟେ
ଗଙ୍ଗାଙ୍କୁ ଆଣି ସାତ ସମୁଦ୍ର କରାଏ ।
ପେଣ୍ଟୁ ପରିପୂର୍ଣ୍ଣ ହୋଇଲା ମହାଜଳ
ସାଧୁ ସୂର୍ଯ୍ୟବଂଶରେ ଯେତେକ ମହୀପାଳ ।
ଏ ସପ୍ତ ସାଗରଯାକ କୀରତି ତାଙ୍କର
ନୃପତିମାନଙ୍କରେ ମାନଧାତା ସାର ।
ଶିବି ଦାତା ହରିଚନ୍ଦନ ରଘୁରାଜ
ଅଜ ରାଜାଙ୍କର ଦଶରଥ ଯେ ତନୁଜ ।
ତାଙ୍କର କୋଳରେ ଯେ ବାସୁଦେବ ଜାତ
ସବୁଦିନେ ଦେବତାଙ୍କୁ କରନ୍ତି ସେ ହିତ ।
ତାଙ୍କର ପ୍ରସାଦେ ମୁହିଁ ଜଳରେ ଅଧିପତି
ମଣିନାଗ ପର୍ବତକୁ ହକାରିଲେ କତି ।
ତୁହି ହୋ ମଣିନାଗ ଯିବୁ ବହନଟି
ଆକାଶରେ ଯାଉଅଛି ପବନ ସୁତଟି ।
ଶ୍ରୀରାମଙ୍କ ଘରଣୀ ଜନକ ଦୁହିତା
ରାବଣ ଚୋରାଇ ନେଇଅଛି ସୀତା ।
ଲଙ୍କାପୁରେ ଥୋଇଅଛି ଜନକ ଦୁହିତ
ଖୋଜିବା ନିମନ୍ତେ ପେଶିଲେ ରାମ ଦୂତ ।
ଗଗନ ମାର୍ଗରେ ଯାଉଛି ଖର ହୋଇ
ଫଳମୂଳ ଦେବା ତାଙ୍କୁ ପ୍ରୀତିକଥା କହି ।
ଶ୍ରୀରାମ ଦୂତକୁ ଯାଇ ଗଉରବ କର
ଜଳପତି ଆଜ୍ଞାରେ ବୋଲେ ଗିରିବର ।
ଅକଳିତ ବାରାନିଧି କଳିତ ମୋର ନାହିଁ
କେଉଁଠାରେ ରଖି ତାକୁ ବଚନ ଦେବି ମୁହିଁ ।
ବରୁଣ ବୋଇଲେ ବେଗେ ତୁମ୍ଭେ ଚଳିଯାଅ
ଯେଉଁଠାରେ ଭେଟ ହେବ ସେଠାରେ ସ୍ଥଳ ପାଅ
ଶୁଣି କରି ଗିରିବର ବେଗେ ଚଳିଗଲା
ଶ୍ରୀରାମର ଦୂତକୁ ଆଗେ ଓଗାଳିଲା ।
କାୟା ବିସ୍ତାରି ସେ ଊର୍ଦ୍ଧ୍ୱକୁ ଉଠିଗଲା
ଶତେ ଯୋଜନ କରି କାୟାକୁ ବଢ଼ାଇଲା ।

ସାଗର ଭିତରେ ଦିଶିଲା ମହାକୁଦ
ଦେଖିକରି ହନୁମନ୍ତ ହୋଇଲା ବିଷାଦ ।
ଅନ୍ତର୍ଗତେ ବିଚାର କରି ମାରୁତି
ସାଗର ଭିତରେ ଗିରିଏ ଉତପତି ।
ବନ ତରୁଲତା ଯେ ଅଛଇ ଫଳମୂଳ
ବନ ଯନ୍ତୁମାନେ ଯେ କରୁଛନ୍ତି ଖେଳ ।
କେବଣ ଆକାର ଏ କିସ ପରବତ
ବାରାନିଧି ଭିତରେ ଏକି ବିପରୀତ ।
କେ ଆଣି ଏହାକୁ ସମୁଦ୍ରେ ପକାଇଲା
ଅଚଳ ମହାମେରୁ ପୂର୍ବରୁ କିବା ଥିଲା ।
ସଙ୍ଗ ଛାଡ଼ି କିମ୍ପାଇଁ ଏଠାରେ ଅଛି ରହି
କାହାର ଭୟରେ ଏ ଅଇଲା ପଳାଇ ।
ପୂର୍ବରୁ ଯେବେ ଗିରି ଏ ସ୍ଥାନରେ ଥାନ୍ତା
ସଙ୍ଗରେ ଅବଶ୍ୟ ତାର ଶାଖାମାନ ଥାନ୍ତା ।
ଏମନ୍ତ ବିଚାର ଯେ କରେ ହନୁମନ୍ତ
ଜଳେ ଥାଇ ଡାକଦେଲା ସେ ମଣିପର୍ବତ ।
ଗିରିବର ବୋଇଲେ ଶୁଣ ହନୁମନ୍ତ
ମୁହିଁ ଅଟଇ ଯେ ମଣିନାଗ ପରବତ ।
ମୋତେ ପଠାଇ ଅଛନ୍ତି ଜଳପୁର ରାୟେ
ତାହାଙ୍କର ଆଜ୍ଞାରେ ମୁଁ ତୁମପାଶେ ଆଏ ।
ଫଳମୂଳ ମୋଠାରେ ଦେଇଛି ରତ୍ନାକର
କ୍ଷଣମାତ୍ରେ ତୁହି ତୁ ଗମନ ପଛେ କର ।
ମୋହର ଶିଖରେ ମୁହୂର୍ତ୍ତେ ବସ ତୁହି
ଫଳମୂଳ ଭୁଞ୍ଜିଣ ଯାଅ ସୁସ୍ଥ ହୋଇ ।
ଗିରିବର କହନ୍ତେ ଶୁଣିଲା ହନୁମାନ
ନ ଶୁଣଇ ଗିରିକଥା ଚଳଇ ବେଗେ ପୁଣ ।
ପଛରେ ଗିରିବର କରଇ ଗମନ
ଦେଖି କରି ବିଚାର କରଇ ସେହୁ ପୁଣ ।
ଗିରିବରମାନେ ଚଳିବାର କାହିଁ
ଆଜି ପରିଯନ୍ତେ ଦେଖିଲା ମୋର ନାହିଁ ।
ଏବେ ତ ଆଚମ୍ବିତ ଦେଖିଲି ସମୁଦ୍ରରେ
ପର୍ବତ ଚଳିଆସେ ଜଳର ଭିତରେ ।
ମୋର ସଙ୍ଗେ ଏ ପର୍ବତ ଦଶଯୁଣ ଆସି
ପଛରେ ମୋତେ ଡାକ ଦିଅଇ ସାହସୀ ।
କେବଣ କଥାଏ ଏ ବୁଝିବା ପ୍ରମାଣ
ପାଲଟି ପଛକୁ ଚାହିଁଲା ହନୁମାନ ।
ଗିରିବରକୁ ଚାହିଁ ହନୁମାନ ଭାଷି
ମାୟାର ପ୍ରାୟେକ ଯେ ମୋ ମନକୁ ଆସି ।
ଯେ ହେତୁ ଗିରିବର କି ଅବା ରାକ୍ଷସ
ସିନ୍ଧୁର ଭିତରେ ତୁ କିମ୍ପାଇଁ କଲୁ ବାସ ।
ଆପଣାର ସଙ୍ଗ ତୁହି କିମ୍ପାଇଁ ଛାଡ଼ିଲୁ ।
କି କାରଣେ ଜଳର ମଧ୍ୟରେ ରହିଲୁ
ଅଚଳ ହୋଇ ଚଳୁ କି କାରଣ
ଜଣାଗଲା ମାୟାବୀ ଅଟୁ ତୁହି ପୁଣ ।
ପର୍ବତ ବୋଇଲା ମାୟାବୀ ନୁହେଁ ମୁହିଁ
ଅପାର କାଳରୁ ସମୁଦ୍ରେ ଅଛି ରହି ।
ହନୁମନ୍ତ ବୋଇଲା ତୁ ଏଡ଼େ ଗିରି ହୋଇ
ସମୁଦ୍ର ଭିତରେ ରହିଲୁ କିସପାଇଁ ।
ସେ କଥା କହିଲେ ପ୍ରତେ ଯିବି ମୁହିଁ
ତୁ ଯେବେ ମାଣିନାଗ ସଙ୍କେତ ମୋତେ ଦେଇ ।
କହୁ କହୁ ହନୁମନ୍ତ କରଇ ଗମନ
ଗିରିବର ପଛରେ ଗୋଡ଼ାଏ ତାର ପୁଣ ।
ହନୁମନ୍ତ ବଚନରେ ମଣିନାଗ ଭାଷି
ଅପାର କାଳର କଥା ପଚାର ହନୁ ଆସି ।
ତୋହର ପିଅର ଯେ ମୋହର ଉପକାରୀ
ଯେବଣ ଦିନ ପର୍ବତ ଇନ୍ଦ୍ରରେ ବାଦ କରି ।
ସେ କଥା ତୋର ଆଗେ କହଇ ହନୁମନ୍ତ
ଶ୍ରୋତାରେ ବକ୍ତା ଯେ କହନ୍ତି ପଣ୍ଡିତ ।
ହେମଗିରିବର ଗିରିଙ୍କର ରାଜା
ଆମ୍ଭଙ୍କୁ ବଚନରେ ପାଳିତ ପରଜା ।
ଏମନ୍ତ ବିଚାର ସେଠାରେ ସର୍ବେ କଲୁ
ଯେ ଯାହାର ଶସ୍ତ୍ରମାନ ଘେନିଣ ସଜ ହେଲୁଁ ।
ବାସବର ସଙ୍ଗରେ ଲଗାଇ ବିବାଦ
ଦୁଷ୍ଟପଣ ଯେ କରଇ ପଡ଼ଇ ପ୍ରମାଦ ।
ଆମ୍ଭର ବାରତା ପାଇଲା ପୁରନ୍ଦର
କାନ୍ଦିଣ କହିଲା ଯାଇ ଈଶ୍ୱର ଆଗର ।
ଇନ୍ଦ୍ରଙ୍କ ବିକଳ ଦେଖି କହେ ଶୂଳପାଣି
କେବଣ କାରଣେ ତୁ କାନ୍ଦୁ ନୃପମଣି ।
ଇନ୍ଦ୍ର ବୋଇଲେ ଦେବ ତୋହର ଶ୍ୱଶୁର
ଗିରିମାନଙ୍କୁ ଘେନି କରଇ ବିଚାର ।
ମୋହର ଅମର ପଦକୁ ନେବା ପାଇଁ
ଯୁଦ୍ଧ କରିବାକୁ ସକଳ ମେଳ ହୋଇ ।
ତୁମ୍ଭର ଆଗରେ କହୁଛି ଶୂଳଧାରୀ
ତୋର ଆଗେ ଛାଡ଼ି ଯିବି ସମ୍ପତ୍ତି ମୋହରି ।
ହର ବୋଇଲେ ଏବେ ତାହାକୁ ତୁହି ମାର
ଯେ ତୋହର ଶତ୍ରୁ ତାହାକୁ ନ ଡର ।
ଆମ୍ଭର ଶ୍ୱଶୁର ବୋଲି ଉପ୍ରୋଧ ନ କରିବୁ
ପେଡ଼ି କହିଲୁଁ ତୋତେ ବଜ୍ରଧର ସବୁ ।
ଶୁଣି କରି ଶଚୀନାଥ ଲେଉଟି ଅଇଲେ
ଐରାବତ ଆରୋହିଣ ବଜ୍ର ସେ ମାଇଲେ ।

ସମସ୍ତେ ଗିରିବର ଅଟନ୍ତି ବିବାଦୀ
ବଜ୍ରବାଣ ଘାତେ ସକଳ ଡେଣା ଛେଦି ।
ପକ୍ଷୀମାନ ଛିଡ଼ିବାରୁ ସମସ୍ତେ ପଳାଇଲେ
ବିକଳେ କିଛିଦିନ ଜୀବନେ ବଞ୍ଚିଲେ ।
ଇନ୍ଦ୍ରର ମାରୁଣୀ ଦେଖି ଭାଗିଲେ ହିମାଚଳ
ଭୟରେ ଲୁଚିଲେ ସେ ଶିବଙ୍କ ପଛର ।
ଗଉରୀଙ୍କୁ ଶରଣ ମାଗିଲେ ସେ ଯାଇ
ବଜ୍ରପାତ ଘାତକୁ ନ ପାରିବ ସହି ।
ଏମନ ବିକଳ ଦେଖିଣ ଗିରିଜା
ସବୁ ପର୍ବତ ଚଳିଲେ କରି ପାଦ ପୂଜା ।
ତାଙ୍କ ସକାଶେ ଦେବୀ ଆସନ କଲେ ଢେଳ୍ୟା
ଈଶ୍ୱରଙ୍କ ସମ୍ମୁଖେ କହିଲେ ଗିରିଜା ।
ସକଳ ଗିରିମାଳ ସଙ୍ଗତେ ଧରି
କ୍ରୋଧଭରେ ପାର୍ବତୀ ଦେବୀ ବିଜେ କରି ।
ନିର୍ବିରେ ଉମାଦେବୀ ଦ୍ୱାରେ ନିରୋଧିଲେ
ଅକ୍ଷୟ କ୍ରୋଶ ଦରି ଦରେ ଉଭା ହେଲେ ।
ଦେଖିକରି ଗଉରୀ ସେଠାରୁ ଚଳିଗଲେ
ଅମରପୁର ମଧ୍ୟେ ପ୍ରବେଶ ହୋଇଲେ ।
ଉମା ବୋଇଲେ ତୁମ୍ଭ ଶୁଣ ସୁରପତି
ଗିରିମାନଙ୍କୁ କିମ୍ପା ଦେଉଛ ବିପତ୍ତି ।
ମୋହର ଆଗରେ ବଚନ କହସି
ନୋହିଲେ ଅସ୍ତ୍ରାଘାତେ ପକାଇବି ନାଶି ।
ଶୁଣିଣ ସୁରରାୟେ କହନ୍ତି ବଚନ
ମୋତେ ବିପତ୍ତି ପାଞ୍ଚିଲେ ଗିରିରାଜା ଜାଣ ।
ତେଣୁ ମୁଁ ତୁମ୍ଭର ସ୍ୱାମୀଙ୍କି କହିଲି
ତାଙ୍କ ଆଦେଶେ ବଜ୍ରେ ଡେଣାକୁ ଛେଦିଲି ।
ଶୁଣି କରି ଗିରିରାଜା କହିଲେ ଇନ୍ଦ୍ରଙ୍କୁ
ଡରିଲେ ଗିରିମାଳ ନ ଯାଅ ପାଶକୁ ।
ଗିରିମାନଙ୍କର ପକ୍ଷ ଛେଦିବାର ଦୋଷ
ବେଳକୁ ସ୍ୱର୍ଗପୁର ହୋଇବଟି ନାଶ ।
ସେହି କନ୍ୟାରେ ଇନ୍ଦ୍ରଦେବତା ହେଲେ ତୋଷ
ଗିରିମାନେ ନ ରହିଲେ ପାଇବ ଆଶ୍ୱାସ ।
ସେଠାରୁ ଗଉରୀ କପିଳାସକୁ ଆସି
କ୍ରୋଧ ଶାନ୍ତି କରି ଦେବୀ ଶିବଙ୍କ ସଙ୍ଗେ ବସି ।
ଶୁଣ ହେ ହନୁମନ୍ତ ପବନର ବଳା
ଏ ରୂପେ ବିପତ୍ତି ଗିରିଙ୍କି ଇନ୍ଦ୍ର ଦେଲା ।
ସେଠାରୁ ଅଷ୍ଟଗିରି ହୋଇଲୁଁ ନାଚରି
ନୋହିଲୁଁ ଦ୍ୱନ୍ଦକାରୀ ଶୁଣ ହେ କପିଶ୍ୱର ।
ଯେତେବେଳେ ପର୍ବତେ ଭୟରେ ପଳାଇଲେ
ନୀଳଗିରି ପର୍ବତରେ ବିଷ୍ଣୁଙ୍କୁ ଦେଖିଲେ ।

ଅନେକ ଗିରି ରହିଲେ ଶମ୍ଭୁଙ୍କୁ ଆଶ୍ରେ କରି
ଅଚଳ ହୋଇ ରହିଲେ ଚଳିବ ନ ପାରି ।
ଅନେକ ଗିରିବର ବିଷ୍ଣୁଙ୍କୁ ଆଶ୍ରେ କଲେ
ବାସୁଦେବ ବୋଇଲେ ନିଶ୍ଚିନ୍ତେ ରହ ଭଲେ ।
ଯେ ଯାହା ସ୍ଥାନରେ ତାଙ୍କୁ ରଖିଲେ ଶ୍ରୀହରି
ହେମାଳ ପରେ ହେମ ରଖିଲେ ନେଇ କରି ।
ନର ବାନର ଅସୁର ଯିବାକୁ ବାଟ ମନା
ବଳବନ୍ତ ପଣ କଲେ ନାଶ ଯାଉ ସିନା ।
ସେଠାରୁ ଅଷ୍ଟଗିରି ଆମ୍ଭେ ଯେ ରହିଲୁ
ଆତଙ୍କ ମନରେ ପବନଙ୍କୁ ସୁମରିଲୁଁ ।
ତେଣୁ କରି ମାରୁତ ଆମ୍ଭଙ୍କୁ ଦୟା କଲେ
ଅଣଚାଶ ମୂର୍ତ୍ତି ହୋଇ ପବନ ବହିଲେ ।
ପବନ ଘାତେ ଆମ୍ଭେ ଉଡ଼ିଣ ଅଇଲୁ
ମହାର୍ଣ୍ଣବ ଭିତରେ ସମସ୍ତେ ପଡ଼ିଲୁଁ ।
ସମୁଦ୍ରରେ ନିଶ୍ଚିନ୍ତେ ରହିଲୁଁ ଅଷ୍ଟଗିରି
ଆଶ୍ରିକାର କହିଲେ ଜଳଧି ଦଣ୍ଡଧାରୀ ।
ତୋହର ପିତା ମୋତେ କରିଛି ଉପକାର
କୁହିଁଇ ମାୟା ମୁଁ ମୋ ଅପ୍ରତେ ନ କର ।
ଆସ ଆସ ମାରୁତି ବିଶ୍ରାମ କର ଏଥି
ଫଳ ଭୁଞ୍ଜିଣ ସୁଖେ ଯାଅ ଶୀଘ୍ର ଗତି ।
ପ୍ରତେ ଗଲା ହନୁ ମୋ କହିବାର ବାଟେ
ଶୂନ୍ୟ ଖସି ଆସେ ମାରୁତି ଯେ ବେଗେ ।
ନକ୍ଷତ୍ର ଛାଡ଼ିଲା ପ୍ରାୟ ଶୂନ୍ୟରୁ ଖସିଲା
ମଣିନାଗ ପର୍ବତ ଉପରେ ବସିଲା ।
ଶତେକ ଯୋଜନ ଯେବଣ ଗିରିବର
ଦୁର୍ବଳ ଜନ୍ତୁମାନେ ଅଛନ୍ତି ଅପାର ।
ହନୁମନ୍ତ ଭାର ଯେ ସହି ନ ପାରିଲା
ତେତେ ମହାବୀର ଯେ ଜଳରେ ବୁଡ଼ିଗଲା ।
ସେଠାରୁ ମଣିନାଗ ସୁମରେ ହନୁମନ୍ତ
ବୋଇଲା ରାମକାର୍ଯ୍ୟ ଜୟ କର ତୁ ତ ।
ଶ୍ରୀରାମର ଦୂତ ତୁ ଯେ ପବନର ସୁତ
ମୋତେ ତୁ ଦୟାକର ମୁଁ ହେଉଛଇ ଅନାସ୍ଥ ।
ଜୀବଜନ୍ତୁ ବୃକ୍ଷଲତା ସହିତେ ସର୍ବେ ମରି
ମତ୍ସ୍ୟ ମଗର ଖାଇବେ ନ ଯିବେ ଉବୁରି ।
ମଣିନାଗ ସ୍ତୁତି ଶୁଣି ହନୁମନ୍ତ ତୋଷ
ତକ୍ଷଣେ ହୋଇଲା ସେ ଶିଶୁଙ୍କ ସଦୃଶ୍ୟ ।
ଉଶ୍ୱାସ ହେବାରୁ ସେହି ମଣିନାଗ ପୁଣ
ଜୀବଜନ୍ତୁ ଘେନି ବାହାର ତକ୍ଷଣ ।
ସାମାନ୍ୟ ରୂପ ଧରି ଜଳ ମଧ୍ୟେ ରହି
ଦେବୃଦ ଜୀବଜନ୍ତୁ ଆନନ୍ଦ ଯେ ହୋଇ ।

ଏଥୁ ଅନନ୍ତରେ ଶୁଣ ହେ ଭଗବତୀ
ହନୁମନ୍ତ ପ୍ରସଙ୍ଗରେ ମଣିନାଗ ଶାନ୍ତି ।
ନରରୂପ ଗୋଟିଏ ଧରି ମଣିନାଗ
କରଯୋଡ଼ି ସ୍ତୁତି କଲା ହନୁମାନ ଆଗ ।
ତୁହି ହନୁମନ୍ତ ଲଙ୍କାକୁ ଯେ ଯାଉ
ମୁଁ ଯେ ମଣିନାଗ ଗିରିଙ୍କର ରାଜୁ ।
ମୋହର ବଚନ ଏବେ ଶୁଣ ମୋ ମାରୁତି
ତୋହର ପିତାଠାରେ ମୋହର ଭକତି ।
କିସ ଦେଇ ତୋତେ ମୁହିଁ କରିବି ସନମାନ
ତୁ ଏବେ ଲଙ୍କାକୁ ଯିବାକୁ ପ୍ରସନ୍ନ ।
ଦଇତଙ୍କର ମାୟା ଜାଣିକି ମାରୁତି
ମଣକରେ ଧରନ୍ତି ସେ ଆନୁଆନ ମୂର୍ତ୍ତି ।
ବିଷମସ୍ଥାନକୁ ତୋତେ ପେଷିଲେ ରଘୁନାଥ
ମୋହିନୀ ମନ୍ତ୍ର ମୋଠାରୁ ଶୁଣ ହନୁମନ୍ତ ।
ଅସୁର ଭୂମିକୁ ତୁ ଯାଉଛୁ ମାରୁତି
ନୟନରେ ରହିଲେ ଦିଶିବ ଦିବାରାତି ।
ରାତ୍ର ଦିଶିବ ପରାୟ ଦିଶିବ ହନୁମନ୍ତ
ଏମନ୍ତ ଗୋଟି ପଢ଼ି ଯେନିବୁ ଅଞ୍ଜନତ ।
ତୁ ଦେଖିବୁ ସବୁଙ୍କୁ ତୋତେ ନ ଦେଖିବ କେହି
ଉଲୁକି ବିଦ୍ୟା ତୋତେ ଦେଉଅଛି ମୁହିଁ ।
ଜୁହୁକ ବିଦ୍ୟା ତୋତେ ଦେଉଛି ହନୁମନ୍ତ
ଏମନ୍ତ ପଢ଼ି ଧୂଳି ମାଖିବୁ ନିଜଗାତ୍ର ।
ଦିବସେ ବସିଥିଲେ ନ ଦେଖିବେ କେହି
ତୋହର ପିତା ମୋତେ ଜୀବନ ଅଛି ଦେଇ ।
ସ୍ତମ୍ଭନ ମୋହନ ଯେ ବଶ୍ୟ ଉଚ୍ଚାଟନ
ଘୋଟି କରି ଅଞ୍ଜନ ହୃଦୟରେ ଘେନ ।
ସକଳ ବିଦ୍ୟା ଯହୁଁ କହିଲେ ମଣିନାଗ
ଗର୍ଭରେ ହନୁମନ୍ତ ସମ୍ଭାଳିଲା ବେଗ ।
ଫଳମୂଳ ଖାଇଣ ହୋଇଲା ସନ୍ତୋଷ
ଯାଉଛି ଗିରିବର ଦିଅ ହେ ଆଦେଶ ।
ପର୍ବତ ବୋଲେ ଧୀର ହୋଇ ଯାଅ ତୁହି
ପ୍ରବଳ ରୂପ ନୁହ ତୁ ପବନ ତନୟୀ ।
ଶୁଣିଣ ମାରୁତି ସାମାନ୍ୟ ରୂପ ହେଲା
ମଣିନାଗକୁ କହିଣ ଶୂନ୍ୟରେ ବିକ୍ରମିଲା ।
ଶେଣୀ ପକ୍ଷୀ ପ୍ରାୟେକ ଶୂନ୍ୟରେ ଉଡ଼ିଗଲା
ଦେଖିକରି ମଣିନାଗ ହରଷ ହୋଇଲା ।
ଚଉରାଶି କାଠି ଯେବଣ ଗିରିବର
ସେ ଗିରି ବୁଡିଗଲା ହନୁର ପାଦ ଭର ।
ତେଡ଼େ ଗିରିବର ଜଳରେ ବୁଡିଗଲା
ହନୁମନ୍ତ ଯିବାରୁ ଗିରି ବାହାର ହୋଇଲା ।

ବରୁଣ ଛାମୁରେ ପ୍ରବେଶ ହେଲା ଯାଇ
ମାରୁତିର ସବୁକଥା କହିଲା ବୁଝାଇ ।
ସମସ୍ତ ଚରିତ କହିଲା ଗିରିବର
ଶୁଣିକରି ସନ୍ତୋଷ ହୋଇଲେ ରତ୍ନାକର ।
ଶୁଣ ଗୋ ପାର୍ବତୀ ହନୁମନ୍ତର ଚରିତ
ଶୂନ୍ୟେ ଯେପିଯାଏ ପବନର ସୁତ ।
ଗଉରୀ ବୋଲଲେ ଶୁଣ ସଦାଶିବ
କଥାରେ କେତେ ଦୂରେ ଚଳେ ଗିରିରାଜ ।
ମଣିନାଗ ଗିରି ଯେ ଜଳରେ ବୁଡ଼ିଗଲା
କେଉଁଠାରୁ ହନୁମାନ ଫଳ ଯେ ଖାଇଲା ।
ଈଶ୍ୱର ବୋଇଲେ ଶୁଣ ଆଗୋ ଦେବୀ
ହନୁ ବସନ୍ତେ ଗିରି ଜଳରେ ଗଲା ବୁଡ଼ି ।
ନେଣୁ ସେ ହନୁମନ୍ତକୁ ଅନେକ ସ୍ତୁତି କଲା
କାକୁସ୍ଥ ନୁଅନ୍ତେ ହନୁ ଉଶ୍ୱାସ ନୋଇଲା ।
କଥା ନୁଅନ୍ତେ ହନୁ ଦ୍ୱାଦଶ ଦଣ୍ଡ ଗଲା
ଦୁଇଜଣ ମଧ୍ୟରେ ଅନେକ କଥା ହେଲା ।
ଏତୁଅନନ୍ତରେ ଶୁଣ ଗୋ ହନୁବାଣୀ
ବୀରବର ହନୁ ଯେ ଗଗନେ ଗମେ ପୁଣି ।
ବେନି ବାହା ତାର ଯେ କରଇ ଘୋର ରଡ଼ି
ଆଷାଢ଼ ମାସରେ କିବା ମେଘ ଘଡ଼ ଘଡ଼ି ।
ସ୍ୱର୍ଗର ଦେବତାଏ ଆକାଶରେ ଚାହିଁ
ଇନ୍ଦ୍ରଙ୍କୁ ତାହିଁଣ ବୃହସ୍ପତି କହି ।
ଲଙ୍କାକୁ ଗମନ କରେ ରାମଦୂତ
ଶୂନ୍ୟରେ ଯାଉଅଛି ପବନର ସୁତ ।
ଶ୍ରୀରାମଙ୍କ କାର୍ଯ୍ୟ ଏହୁ ଅବଶ୍ୟ କରିବ
ଲଙ୍କାକୁ ଭେଦିଲେ ରାମ ବିଚାରିଣ ଶୁଭ ।
ଏ ବଚନ ଶୁଣିଣ ଉଠିଲେ ସୁରପତି
ବୋଇଲେ ହନୁମନ୍ତର ଜାଣିବା ଆଜି ରୀତି ।
ଏକାରେ ଲଙ୍କାକୁ ସେ କରଇ ଗମନ
କେମନ୍ତେ ଦୈତ୍ୟସଙ୍ଗେ କରିବ ଦ୍ୱନ୍ଦ୍ୱ ପୁଣ ।
ଏମନ୍ତ ବିଚାରି ଉଗ୍ରତାରାକୁ ହକାରିଲେ
ଶୁଣି ଉଗ୍ରତାରା ଇନ୍ଦ୍ର ଆଗରେ ମିଳିଲେ ।
ଇନ୍ଦ୍ର ବୋଇଲେ ଦେବୀ ଶୁଣ ମୋ ବଚନ
ଲଙ୍କାକୁ ଯାଉଅଛି ପବନ ନନ୍ଦନ ।
ଶ୍ରୀରାମ ଭେଦିଲେ ସୀତୟା ଖୋଜିବାକୁ
ତୁହି ଯାଇଣ ବାଟେ ଓଗାଳି ତାହାକୁ ।
ବିଳମ୍ବ ନ କରି ବହନ ଚଳି ଯାଅ
ଯେତେ ତୋତେ ଜଣାଅଛି କୁମନ୍ତ୍ର କରାଅ ।
ପୂର୍ବେ ସେ ଦାନବ ବଳ ତୁହି ଅଛୁ ସାଧି
ଶମ୍ଭୁ ନିଶମ୍ଭୁଙ୍କୁ ମାଇଲୁ ସ୍ୱର୍ଗେ ଖେଦି ।

ଯମ ଘଣ୍ଟକାଳ ଘଣ୍ଟ ଆବର ଦୈତ୍ୟବଳୀ
ମୈସାସୁର ଦୈତ୍ୟକୁ ପକାଇଲୁ ଦଳି ।
ତୋତେ ହନୁ ବଳିଲେ ଜାଣିବା କାର୍ଯ୍ୟ ସିଦ୍ଧି
ଏଣୁକରି ତୋତେ କହିଲି ଯେ ବୋଧି ।
ଯେମନ୍ତ ପାରୁ ମାଗୋ ପଥ ତୁ ନିରୋଧ
ହନୁର ପରାକ୍ରମ ଭଲ କରି ବୁଝ ।
ଶୁଣିଣ ଉଗ୍ରତାରା ଗଗନୁ ଖସି ଆସି
ବାଟରେ ଓଗାଳିଲେ ପବନର ଶିଷି ।
ବିକଟ ବଦନ ତାର ତେଜ ବିକରାଳ
ରକତ ନୟନ ଦିଶେ ମୁକୁଳା କେଶଭାର ।
ଭୁଜ ଦୁଇ ବଢ଼ାଇ ଆକଷେ ସେ ଆସି
କେଣେ ଯାଉଛୁ ବୋଲି କହିଲା ଯେ ହସି ।
ଆଜସି ପଡ଼ିଲୁରେ ମୋହର ଆଗେ ବଳି
ଆତ୍ମା ଶାନ୍ତି କରିବି ତୋତେ ମୁହିଁ ଗିଳି ।
ଦେଖିଣ ହନୁମନ୍ତ ହୋଇଲେ ସ୍ତମ୍ଭୀଭୂତ
ତିରିଶି ଯୋଜନ ଯେ ବଢ଼ିଲା ହନୁମନ୍ତ ।
ଦେଖିଣ ଉଗ୍ରତାରା ବଢ଼ିଲାକ ପୁଣ
ଚାଳିଶି ଯୋଜନ ହୋଇଗଲା ତତକ୍ଷଣ ।
ପ୍ରତିଜ୍ଞା କରି ବୋଲେ ତୋତେ ମୁଁ ଖାଇବି
ଯେତେ ମତେ କହିଲେ କେବେ ହେଁ ନ ଛାଡ଼ିବି ।
ହନୁମନ୍ତ ବୋଇଲା ବେଗେ ଘୁଞ୍ଚି ଯାଅ
ନୋହିଲେ ଆଜ ପ୍ରାଣ ହାରିବୁ ନିଶ୍ଚୟ ।
ଶୁଣିଣ ଉଗ୍ରତାରା ମନରେ କ୍ରୋଧ ହେଲା
କେତେ ବଳୀୟାର ଆଜ ଜାଣିବି ବୋଇଲା ।
ହନୁମନ୍ତ ହୋଇଲା ତୁ ଯାର ବୋଲେ ଆସୁ
ସେ ପୁଣି ଦୈତ୍ୟ ଶରଣ ପଡ଼ିଅଛି ଦେଖୁ ।
ଶୁଣିଣ ଉଗ୍ରତାରା ହସ୍ତ ବଢ଼ାଇଲା
କେ ତୋତେ ରଖିବରେ ଶୁଣ ଏବେ ଭଲା ।
ତ୍ରିଦଶ ଦେବତାଙ୍କର ଅଟେ ମୁଁ ଜନନୀ
ଏମନ୍ତ ବୋଲିଣ ଯେ ଘୋଟିଲା ମେଦିନୀ ।
ମର୍ତ୍ତ୍ୟରେ ପାଦ ତାର ଆକାଶେ ମୁକୁଟ
ଦେଖି ହନୁମନ୍ତ ସୁମରେ ରଘୁଚାଟ ।
ଜଳସ୍ଥଳ ଆବୋରି ରହିଲା ଯହୁଁ ଦେବୀ
ଶୂନ୍ୟ ମହି ବ୍ୟାପିଲା ବିକଟ ଭଇରବୀ ।
ଦେଖିଣ ହନୁମନ୍ତ ବିଚାରିଲା ମନ
ବଡ଼ କଷ୍ଟ ମୋତେ ଦେବୀ ଦେଲା ଯେ ଏ ସ୍ଥାନ ।
ଏମନ୍ତ ବିଚାରି ପିତାଙ୍କୁ ସୁମରିଲା
ଯାଇଣ ପବନ ଯେ କର୍ଣ୍ଣରେ କହିଲା ।
ବୋଇଲା ତୋର ବଳ ଜାଣିବାର ପାଇଁ
ଦେବତାଏ ତାରାକୁ ଦେଲେ ପଠିଆଇ ।
କ୍ଷୁଦ୍ରରୂପ ଧରି କରି ଏହାକୁ ତୁ ଜିଣ
ତେବେ ସେ ଦେବଙ୍କର ଯିବ ବ୍ୟଥା ଜାଣ ।
ଶୁଣିକରି ମାରୁତି କହଇ ବଚନ
ଯାଇତ ପଥ ଏଥି ନ ଦିଶଇ ପୁଣ ।
ସକଳ ଭୁବନ ଘୋଟିଲା ଏ ଯେ ବ୍ୟାପି
ଇନ୍ଦ୍ର ଛାର ହୋଇଣ ମୋହର ବଳ ମାପି ।
ଏତେ ଭାଳି ବୋଲଇ ପବନର ସୁତ
ସଂକଟ ପଡ଼ିଲା ମୋତେ ରଖ ରଘୁନାଥ ।
ଉଗ୍ରତାରା ଆସିଣ ଓଗାଳେ ମୋତେ ପଥ
ଶିବ ଘରଣୀ ଏ ଯେ ଅଟଇ ମୋର ମାତ ।
ଯୁଦ୍ଧ କେତେ କରିବି ମାତାର ସଙ୍ଗେ ମୁହିଁ
ଉପର ଶୂନ୍ୟ ଅଟେ ତଳରେ ଜଳ ରହି ।
ଏମନ୍ତ ବିଚାରି ହନୁ କ୍ଷୁଦ୍ରରୂପ ଧରି
ଉଗ୍ରତାରା ମାତାର ନାସା ରନ୍ଧ୍ରବାଟେ ଗଳି ।
ପବନ ରୂପ ଧରି ତକ୍ଷଣେ ଗଳିଗଲା
ଶ୍ରବଣ ବାଟେ ବାହାରି ପଛରେ ଉଭା ହେଲା ।
ପଛ ଭାଗରେ ରହି ଡାକଇ ହନୁମନ୍ତ
ଆଜି ତୋତେ ନିଶ୍ଚେ ମୁଁ କରିଥାନ୍ତି ହତ ।
ତୁମ୍ଭେ ମୋ ଜନନୀ ସଦାଶିବଙ୍କର ନାରୀ
କେଉଁଠାରେ ପୁତ୍ର ମାତାଙ୍କୁ ଅଛି ମାରି ।
ରାମର ଦୂତ ମୁଁ ଯେ ଅନେକ ବଳ ବପୁ
ତୁ ମୋହର ଜନନୀ ଦେବଙ୍କ ବୋଲେ ରିପୁ ।
ଅନ୍ୟ ଲୋକ ହୋଇଥିଲେ ଶରୀର ଥାନ୍ତି ଦଳି
ମେଦ ମାଂସ ତୋହର ମଗର ଥାନ୍ତେ ଗିଳି ।
ଏତେ କହି ହନୁମାନ ଦେଲା ସିଂହ ରଡ଼ି
ଦେଖିଣ ଉଗ୍ରତାରା ପଳାଇଲା ଛାଡ଼ି ।
ହନୁମନ୍ତଙ୍କୁ ଡାକି କହେ ଗୋସାମଣି
ଶୁଣରେ ନନ୍ଦନ ମୁଁ ତ୍ରୈଲୋକ୍ୟ ପାଳିଣୀ ।
ଦେବଙ୍କର ମାତା ମୁଁ ଈଶ୍ୱର ଘରଣୀ
କେମନ୍ତେ ମୋତେ ତୁ ଯେ ଚିହ୍ନିଲୁ ପୁତ୍ରମଣି ।
ତୋର ବଳ କଷିବାକୁ ପେଶିଲେ ଦେବେ ମୋତେ
ତେଣୁ କରି ଆସି ମୁଁ ନିରୋଧ କଲି ତୋତେ ।
ଅନ୍ୟଲୋକ ହୋଇଲେକି ମୋ ମୁଖୁ ହୋନ୍ତ ପାର
ନିଶ୍ଚୟ ନାଶଗଲା ପ୍ରତାପି ଲଙ୍କେଶ୍ୱର ।
ଯାଅରେ ହନୁମନ୍ତ ହେଉ ସୁକଲ୍ୟାଣ
ଘେନରେ ମୋରଠାରୁ ଘେନରେ ପ୍ରମାଣ ।
ତୁହି ତ ଲଙ୍କାକୁ ଯାଉଅଛୁ ପୁଣ
ଜାନକୀଙ୍କି ଦେଖି ତୁ ଆସିବୁ ବହନ ।
ଘେନ ଚଣ୍ଡୀ ବୃକ୍ଷବଜ୍ରଶିଳା ଯେ ମୋହର
ଏହି ସହସ୍ର ବାବୁ ବହରେ କରେ ତୋର ।

କରିବୁ ରଣଭଣ ମାରିବୁ ଦଇତ
ଶ୍ରୀରାମର କାର୍ଯ୍ୟ ବାବୁ କରିବୁ ନିୟତ ।
ଯେବଣ କାଳରେ ମୁଁ ଯେ ହୋଇଲିରେ ଜାତ
ଆଦ୍ୟ ନାରୀଠାରୁ ମୁଁ ହୋଇଲି ସମ୍ଭୁତ ।
ଯୋଗମାୟା ନାମ ମୋତେ ସେହି ମାତା ଦେଲା
ଦେବତାଙ୍କୁ ଜାତ କର ବୋଲିଣ ବୋଇଲା ।
ମୁଁ ବୋଇଲି ମୋହର ସ୍ୱାମୀ କେ ହୋଇବ
ଜନନୀ ବୋଇଲେ ତୋତେ ଯୋଗ ମହାଦେବ ।
ଶୁଣିଣ ମାତାଠାରୁ ସ୍ୱର୍ଗକୁ ଅଇଲି
ତପବଳ ସାଧିଣ ଈଶ୍ୱର ସେବା କଲି ।
ତେଣୁ ସେ ପଞ୍ଚାନନ ସ୍ୱାମୀ ଯେ ମୋହର
ଦେବଙ୍କୁ ଜାତ କଲି ଈଶ୍ୱର ଅଂଶର ।
ଯେଉଁଦିନ ଈଶ୍ୱର ମୋ ସଙ୍ଗେ ଲୀଳା କଲେ
ଶରୀରୁ ରୂପମଳି ଝଡ଼ିଣ ପଡ଼ିଲେ ।
ସେ ମଳିରୁ ନବକୋଟି ଦେବୀ ଜାତ ହେଲେ
ପାର୍ବତୀର ଅଂଶ ବୋଲି ଈଶ୍ୱର ଲଭିଲେ ।
ତେଣୁ ସେ ଦୈତ୍ୟବଳ ହୋଇଲେ ପ୍ରବଳ
ଆଦି ଅସୁର ନାମ ଅଟେ ମହିଁଷାସୁର ।
ଜଳେ ସ୍ଥଳେ ନ ମରେ ନ ମରେ ଦେବହସ୍ତେ
ତେଣୁ ସେ ପଞ୍ଚାନନ କହିଲେ ଯେ ମୋତେ ।
ବୋଇଲେ ଅସୁରକୁ ବେଗ କରି ମାର
କୌଣସି କଥାକୁ ଲଜ୍ୟା ତୁ ନ କର ।
ଶୁଣିଣ ନବକୋଟି ଦେବୀ ଅଣାଇଲି
ଦୈତ୍ୟବଳ ମାରିବା ବୋଲିଣ ବୋଇଲି ।
ଶୁଣି ଦେବୀକୁଳ ଉଗ୍ର ମୂର୍ତ୍ତି ହେଲେ
ଚଉଷଠି ଯୋଗ୍ନୀ ଜାତ ତାଙ୍କ ଠାରୁ ହେଲେ ।
ଯୋଗ୍ନୀଠାରୁ ଜାତ ହୋଇବେ ପିଚାଶୁଣୀ
ବାଉନ କୋଟି ସେ ଲେଖାରେ ହେଲେ ପୁଣି ।
ଯୋଗ୍ନୀଦେବୀ ଦୈତ୍ୟଯାକ କଲେ ନିସୁଦନ
ମୈସାକୁ ମାଇଲେ ଜୟଦୁର୍ଗା ଆପେ ଜାଣ ।
ପିଚାଶୁଣି ମାନେ ଯେ ମେଦ ମାଂସ ଖାଇ
ତେଣୁ ସେ ଦୈତ୍ୟବଳ ନାଶ କଲେ ତହିଁ ।
ତେଣୁ ଆମ୍ଭ ହସ୍ତରେ ଦୈତ୍ୟବଳ ମଲେ
ଚଣ୍ଡୀ ଯୁଦ୍ଧ ବୋଲିଣ ସେ ଯୁଦ୍ଧ ନାମ ଦେଲେ ।
ସେ ଯୁଦ୍ଧ ଭୂମିରେ ବୃକ୍ଷେକ ଉପୁଜିଲା
ଚଣ୍ଡୀ ବୃକ୍ଷ ବୋଲିଣ ବିଧାତା ନାମ ଦେଲା ।
ସେ ବୃକ୍ଷ ମଧ୍ୟରେ ଯେତେକ ଶାଖା ଅଛି
ସକଳ ଯୋଗ୍ନୀ ପିଚାଶୁଣୀ ସେଥେ ବସି ।
ଏବୃକ୍ଷ ନିଅ ବାବୁ ବିପତ୍ତି ତୋତେ ନାହିଁ
ମୁହିଁ ସେ ଦେବତାଙ୍କର ମାତା ଯେ ଅଟଇ ।

ହନୁମନ୍ତ ବୋଲେ ଯେବେ ହେଲ ପରସନ୍ନ
ଭେଟିଣ ଜାନକୀ ମୁଁ ତୋଷିବି ମୋର ପ୍ରାଣ ।
ଭୋ ମାତା ଜନନୀ ଗୋ ଦର୍ଶନ ଆଜ୍ଞା କର
ପ୍ରସନ୍ନ ହୋଇଣ ଦିଅ ମୋତେ ବର ।
ଶୁଦ୍ଧକାଳେ ମାଗିଲେ ବାହନ ରୂପ ଦେବୁ
ତୁ ମୋର ଜନନୀ ମୋତେ ସତ୍ୱରେ ବର ଦେବୁ ।
ଉଗ୍ରତାରା ବୋଇଲେ ପ୍ରାପତ ତୋତେ ପୁଣ
ଅବଶ୍ୟ ଲଙ୍କାଗଡ଼ କରିବୁ ରଣଭଣ ।
ଏତେ କହି ଉଗ୍ରତାରା ଚଣ୍ଡୀ ବୃକ୍ଷ ଦେଲେ
ବଜ୍ରଶୀଳା ଦେଇ ଦେବୀ ସ୍ୱର୍ଗପୁରେ ଗଲେ ।
ଦେବଙ୍କର ଆଗରେ ଯାଇଣ କହିଲା
ବିଷ୍ଣୁଙ୍କ ଦୟାରୁ ହନୁ ମୋତେ ଜିଣିଗଲା ।
ନ କର ଭୟ ତୁମ୍ଭେ ଧନ୍ୟ ସେ ରାମଦୂତ
ଆଜହୁଁ ଦଶକନ୍ଧ ହେଲା ନିଶ୍ଚେ ହତ ।
ଯେବଣ ଚରିତ ହନୁର ଦେଖିଲଇଁ
ମୋର ଯୋଗୁ ଉବୁରିଲା ଭୟ ତାର ନାହିଁ ।
ନିଶ୍ଚେ ତୁମ୍ଭର ଆଜୁ ହେଲା ଦେବକାର୍ଯ୍ୟ
ଏସନକ ଚରିତ ମୁଁ ଦେଖିଲଇଁ ଆଜ ।
ତେଣୁ କରି ପରତେ ଗଲି ଶଚୀନାଥ
ବଡ଼ାଇ ମହିଁମା ସେ ପବନର ସୁତ ।
ଶୁଣି କରି ସୁର ଗଣେ ଆନନ୍ଦ ହୋଇଲେ
ମାରୁତି ଶିରରେ କୁସୁମ ବୃଷ୍ଟି କଲେ ।
ମଳୟ ପବନ ଯେ ମନ୍ଦେ ମନ୍ଦେ ବହି
ଆନନ୍ଦରେ ମାରୁତି ଶୂନ୍ୟକୁ କ୍ଷେପିଯାଇ ।
ସେ କଥା ଶୁଣି ପାର୍ବତୀ ବୋଲନ୍ତି ବଚନ
ଉଗ୍ରତାରା ଗଲା ପୁଣି ସେ ସ୍ୱର୍ଗ ଭୁବନ ।
ଭଇରବୀ ମୂର୍ତ୍ତି ସେ ଦେବୀ ଧଇଲା
ମର୍ତ୍ତ୍ୟରେ ପାଦ ଦେଇ ସ୍ୱର୍ଗରେ ଶିର ଦେଲା ।
ତାହାକୁ ହନୁମନ୍ତ ଉପାୟରେ ଜିଣି
କେଉଁଠାରୁ ବର ଯେ ପାଇଥିଲା ପୁଣି ।
ସଦାଶିବ ବୋଇଲେ ଶୁଣ ଭଗବତୀ
ଆଗରୁ ଦେବତାଏ ବର ଦେଇଛନ୍ତି ।
ସେ ବଳରେ ଅଟଇ ହନୁମନ୍ତ ପ୍ରବଳ
ପୁଣି ବିଷ୍ଣୁ ତେଜ ଯେ ହୃଦରେ ତାର ମେଳ ।
ଦଶରଥ ନନ୍ଦନ ଅଟନ୍ତି ବାସୁଦେବ
ପରମବ୍ରହ୍ମ ମୂର୍ତ୍ତି ମନୁଷ୍ୟେ ସମ୍ଭବ ।
ଜନକର ଦୁହିତା ଅଟେ କମଳିନୀ
ଅସୁର ମାରିବାକୁ ଲଙ୍କାକୁ ଗଲେ ପୁଣି ।
କେଉଁଠାରେ ଅଛି ବୋଲି ପେଶିଲେ ରାମଦୂତ
ଆଗରୁ ହନୁକୁ ବସ୍ତାମୁଦି ସେ ଦେଲେ ତ ।

ସେ ମୁଦି ଘେନି ହନୁ ବିଜୟ ଲଙ୍କାକୁ
ଦେବ ଦାନବେ କିସ କରିବେ ତାହାକୁ ।
ଏମନ୍ତ ପ୍ରକାରେ ହନୁର ସନ୍ଦେଶ
ଶୁଣି କରି ପାର୍ବତୀ ମନରେ ହେଲେ ତୋଷ ।
ବୋଇଲେ ଜାନକୀର ନୁହଇ ବିହିତ
ସେ କେମନ୍ତେ କରିବେ ରାବଣକୁ ହତ ।
ତା ପତି ରଘୁନାଥ ସ୍ୱୟଂ ନାରାୟଣ
ଆପେ ନ ମାରିକି ତା ଘରଣୀ ଭେଦେ ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଯେତେବେଳେ ମୈଁଷାସୁର ମାରିଲୁ ତୁହିଟି ।
ସେତେବେଳେ ନାରାୟଣ କମଳାଙ୍କୁ କହି
ଶିବର ଘରଣୀ ମୈଁଷା ମାଇଲଇଁ ।
ଶୁଣି କରି କମଳା ବୋଲନ୍ତି ବଚନ
ମୁଁ କିଶେ ଅସୁରଙ୍କୁ କରିବି ନିଧନ ।
ନାରାୟଣ ବୋଇଲେ ହେ ଦେବୀ ବଳବନ୍ତ
ତାର ସ୍ୱାମୀ ନାଶ କଲେ ତ୍ରିପୁର ଦଇତ ।
କମଳା ବୋଇଲେ ତୁମ୍ଭେ ମାରିଲ ହିରଣ୍ୟ
ମୋ ସକାଶେ ମରିବେ ଚାରି ଯେ ରାବଣ ।
ବାସୁଦେବ ବୋଇଲେ ମୁହିଁ ଜାତ ହେବି
ଦୈତ୍ୟଙ୍କୁ ମାରି ପୃଥ୍ୱୀ ଉଶ୍ୱାସ କରିବି ।
ତୁ ଯେବେ ଅସୁରଙ୍କୁ ମାରିବାକୁ ଯିବୁ
ଅକୀର୍ତ୍ତି କଥା ସିନା କାଳାନ୍ତେ ବହିବୁ ।
କମଳା ବୋଇଲେ ସେ ଶିବଙ୍କ ଘରଣୀ
ଉଲଗ୍ନ ହୋଇ ଦୈତ୍ୟ ନାଶି ଯାଇ ପୁଣି ।
ସେ ନାରୀକି ସେକଥା ଲଜ୍ୟା ଯେ ନୋହିଲା
ମୋତେ କିମ୍ପା ଲଜ୍ୟା ସେକଥା ହେବ ଭଲା ।
ଶୁଣିଣ ବାସୁଦେବ ବୋଲନ୍ତି ବଚନ
ଶିବ ନାରୀ ସଙ୍ଗେ ଯେବେ ହୋଇବୁ ସମାନ ।
ତେବେ ତୁ ଅସୁର ସଙ୍ଗରେ ଲଙ୍କା ଯିବୁ
ତିନି ରାବଣ ମରାଇ ବଡ଼ ରାବଣ ମାରିବୁ ।
ଶୁଣି କରି କମଳା ହରଷ ହୋଇଲେ
ଯିବି ଅସୁର ସଙ୍ଗେ ବୋଲିଣ ବୋଇଲେ ।
ତେଣୁ କରି ଜାନକୀ ଅସୁର ସଙ୍ଗେ ଗଲା
ଚାରି ରାବଣ ମଲେ ଆସିବ ସତୀ ଭଲା ।
ପାର୍ବତୀ ବୋଇଲେ ଶୁଣ ତ୍ରିଲୋଚନ
ସେଠାରୁ କିସ କଲା ପବନ ନନ୍ଦନ ।
ସଦାଶିବ ବୋଇଲେ ଶୁଣଗୋ ଗଉରି
ହନୁମନ୍ତ ବିକ୍ରମେ ଶୂନ୍ୟରେ ବେଗ କରି ।
ପାଞ୍ଚଶ ଯୋଜନ ହନୁମନ୍ତ ଗଲା
ଗମନ କରିବାରୁ ଶବଦ ଶୁଭେ ତ୍ୱରା ।

ଶୂନ୍ୟ ଗଙ୍ଗା କୂଳରେ ସିଂହିକା ଦଇତୁଣୀ
ସ୍ନାନ କରୁଥିଲା ଶବଦକୁ ଶୁଣି ।
ଦେଖିଲା ମାରୁତି ଶୂନ୍ୟରେ କ୍ଷେପିଯାଇ
ଶୂନ୍ୟକୁ ଆସି ସିଂହିକା ପଥ ଓଗାଳଇ ।
ସହସ୍ରେ ଯୋଜନ କରି କାୟା ବଢ଼ାଇଲା
ହନୁମନ୍ତ ଆଗରେ ଯାଇଣ ଉଭା ହେଲା ।
କେଣେ ଯାଉଛୁ ବୋଲି କହିଲାକ ହସି
ଦଶଦିଗ ଯାକକୁ ଓଗାଳେ ରାକ୍ଷସୀ ।
ଦେଖିକରି କ୍ଷୁଦ୍ରରୂପ ଧରିଲା ମାରୁତି
ମନରେ ବିଚାରିଲା ପଡ଼ିଲା ବିପତ୍ତି ।
ବେଳେ ବେଳେ ମୋତେ ତ ପଡ଼ୁଛି ପ୍ରମାଦ
ବିଶ୍ରାମ ନେବାକୁ ଠାବ ନାହିଁ ଏଥି ମଧ୍ୟ ।
କେମନ୍ତ ଉପାୟରେ ଏଥିରୁ ଯିବି ତରି
ଦଶଦିଗ ରାକ୍ଷସୁଣୀ ଅଛି ମୋ ଆବୋରି ।
ହନୁମନ୍ତକୁ ଯାଇ ଧଇଲାକ ଘୋସି
ରାହୁ ଯେସନେ ପୂର୍ଣ୍ଣଚନ୍ଦ୍ରମାକୁ ଦିଏ ଗ୍ରାସି ।
ମୁଖବିସ୍ତାରି ସେ ଗଣ୍ଡକୁ ଦେଲା ଗିଳି
ସିଂହିକାର ଗର୍ଭରେ ମାରୁତି ଯାଇ ମିଳି ।
ମନରେ ବିଚାରଇ ଗଲି ମୁଁ ଏବେ ନାଶ
ପାମରୀ ରାକ୍ଷସୁଣୀ ମୋତେ କଲା ଗ୍ରାସ ।
ଶ୍ରୀରାମଙ୍କ କାର୍ଯ୍ୟ ତ ବିଫଳ ହୋଇଲା
ଏତେ ବିଚାରି ବୀର ବୁକୁ ବିଦାରିଲା ।
ଅନ୍ତନାଡ଼ ଛିଣ୍ଡାଇଣ ପକାଇଲା ଯହୁଁ
ବିକଳରେ ରାକ୍ଷସୁଣୀ ପ୍ରାଣ ଛାଡ଼େ ତହୁଁ ।
ପ୍ରାଣଛାଡ଼ି ରାହୁମାତା ପଡ଼ିଲା ସମୁଦ୍ରରେ
ହିଆକୁ ବିଦାରି ହନୁ ହୁଦରୁ ବାହାରେ ।
ଜଳ ଭିତରେ ବିକଳ ହେଲା ଦଇତୁଣୀ
ହାଦୋଳି ହୋଇଲା ସେ ବାରାନିଧି ପାଣି ।
ଯୋଗମାନଙ୍କର ଭାଜିଗଲା ଯୋଗଧ୍ୟାନ
ବୋଇଲେ ଦେତ୍ୟେ ନିଶ୍ଚେ ନାଶ ହେବେ ଜାଣ ।
ଅଚଳନ୍ତି ପଥେ ହନୁ କେମନ୍ତେ ଆସିଲା
ଅଧାଡ଼ି ସ୍ଥାନରେ ଆସି ଧାଡ଼ି ଦେଲା ।
ଅପାର କାଳରୁ ଏହା ଦେଖିଲା ତ ନାହିଁ
ଏବେ ବୋଲି ସର୍ବ ମୁନି ହୁଅନ୍ତି କୁହାକୁହି ।
ଏକକୁ ଆରେକ ଯେ କହନ୍ତି ବଚନ
କ୍ଷୁଦ୍ରରୂପ ଧରିଣ ଆସେ ହନୁମାନ ।
କଣ୍ଠେ ରୁଦ୍ରାକ୍ଷ ତାର ହସ୍ତରେ ତୁଳସୀ
ଏସନ ରୂପ ଧରି ହନୁମାନ ଆସି ।
କ୍ରେକାଛଟାକୁ ଚଢ଼ାଇ କଉପୁନି
ମୁଖ ବିକଶଇ ପୂର୍ଣ୍ଣମୀର ଚାନ୍ଦ ଜାଣି ।

ବିଷାଦରେ ଭାଳନ୍ତି ହେଲା ପରମାଦ
ଋଷିମାନେ ବୋଇଲେ ଶୁଣ ଆରେ ମନ୍ଦ ।
ଜଳଋଷିମାନେ ଏମନ୍ତ ବିଚାରିଲେ
ଅସୁରୁଣୀ ମରିବାରୁ ଭଲ ସେ ବୋଇଲେ ।
ପାର୍ବତୀ ବୋଇଲେ ଶୁଣ ତ୍ରିଲୋଚନ
ଜଳର ଭିତରେ ତପ କରନ୍ତି କେ ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋସାମଣି
ମତ୍ସ୍ୟ କଚ୍ଛପ ମଗର ଜଳରେ ବାସ ପୁଣି ।
ଯେଉଁମାନେ ଶାନ୍ତି ଯେ ଯେଉଁମାନେ ଦୁଷ୍ଟ
ସେଥିଙ୍କୁ ତପି ବୋଲି ବୋଲନ୍ତି ଯେ ଶ୍ରେଷ୍ଠ ।
ତେଣୁ ସେ ଜଳରେ ଯେତେକ ସଘପୂଣ
ସମସ୍ତେ ତପି ଅଟନ୍ତି ଭଗବତୀ ଶୁଣ ।
ପାର୍ବତୀ ବୋଇଲେ ସିଂହିକା ଦଇତୁଣୀ
ମାତ୍ସ୍ୟପିଣ୍ଡ ଜଳରେ ଭାସଇ ତାର ପୁଣି ।
ସେ କିଷ୍ଟ କିସ ହେଲା କହ ତ୍ରିଲୋଚନ
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ ।
ସିଂହିକା ଦଇତୁଣୀ ହନୁକୁ ଗିଳିଦେଲା
ଗର୍ଭରେ ଥାଇଣ ହନୁ ତାହାର ପ୍ରାଣ ନେଲା ।
ବାହାର ହୋଇ ହନୁ ଶୂନ୍ୟରେ ବିକ୍ରମଇ
କ୍ରୋଧରେ ହନୁମନ୍ତ ପଥ ବହିଯାଇ ।
ଶତେ ଚାଳିଶ ଯୋଜନ ହନୁ ବେଗେ ଗଲା
ପବନହୁଁ ବେଗରେ ଅଧିକ ଚଳିଗଲା ।
ଲଙ୍କାକୁ ବାମ ଭାଗେ ଛାଡ଼ିଲା ମାରୁତି
ତେତେବେଳେ ହୋଇଲାଣି ବେନି ଘଡ଼ି ରାତି ।
ବିଲଙ୍କା ସୀମାରେ ହେଲା ପରବେଶ
ଏଥୁ ଅନନ୍ତରେ ଶୁଣ ଦିବ୍ୟରସ ।
ସିଂହିକା ଦଇତୁଣୀ ଜଳରେ ଭାସୁଥିଲା
ରାଘବ ତାହାକୁ ଦେଖି ଗିଳିଦେଲା ।
ରାହୁକୁ ବାରତା କହିଲେ ନାରଦ
ମାତା ତୋର ମଲା କରିଣ ପ୍ରମାଦ ।
ଜାନକୀ ଖୋଜିବାକୁ ହନୁ ଯାଉଥିଲା
ଶୂନ୍ୟ ଗଙ୍ଗା କୂଳରେ ମାତା ତୋର ଥିଲା ।
ହନୁକୁ ଦେଖିଣ ଯେ ବେଗେ ଧାଇଁଗଲା
ଧରିଣ ବେନି ହସ୍ତେ ଗର୍ଭକୁ ଗିଳିଦେଲା ।
ତେଣୁ ସେ ହନୁମନ୍ତ ଉଦର ଚିରିଦେଲା
ମହାଜଳେ ପଡ଼ନ୍ତେ ରାଘବ ଗିଳିଲା ।
ଶୁଣି ରାହୁ ବୋଲେ ତାକୁ ବିଅର୍ଥେ ଦଣ୍ଡ ଦେଲ
ଶ୍ରୀରାମର ଦୂତ ସଙ୍ଗେ କିମ୍ପାଇଁ ଲାଗିଲ ।
ମଲା ଭଲ ହେଲା ପାଇଣ କାରଣ
ନାରଦ ଭାବିଲେ ଯାର ରିପୁନାହିଁ ଜାଣ ।

ରାହୁ ବୋଇଲେ ଋଷି ସର୍ବୁଦିନେ ସଳ
ବାରତା କହି ମୋତେ ଲଗାଇବୁକି ଗୋଳ ।
ପିତା ତୋର ରାବଣକୁ ବର ଅଛି ଦେଇ
ପିତାମ୍ଭତ୍ରେ ଏବେ ସମ୍ଭାଳ ତାକୁ ଯାଇ ।
ଲାଜ ନ ମାନ୍ଦଇ ମୃତ୍ୟୁର କଥା କହୁଁ
କଳହ ଋଷି ତୋର ସ୍ୱଭାବ ଯିବ କାହୁଁ ।
ଶୁଣିଣ ନାରଦ ସେଠାରୁ ପଳାଇଲେ
ରାହୁର ଧିକ୍କାର କଥା ଯହୁଁ ସେ ଶୁଣିଲେ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଈଶ୍ୱର କହିଲେ ହନୁ ସେଠାରୁ ଚଳିଗଲା ।
ଶତେ ନଉଯୋଣ ଯେ ହେଳେଣ ବିକ୍ରମିଲା
ଦେଖିଲା ବିଲଙ୍କା ଅତି ଶୋଭା ଭଲା ।
ରାତ୍ରକୁ ଦିଶଇ ଯେ ଦର୍ପଣ ପରାଯେଣ
ଦେଖିଣ ହନୁମନ୍ତ ବିଚାରେ ମନେ ମନ ।
ଏହୁ ଲଙ୍କାପୁର ବୋଲିଣ ବିଚାରିଲା
ଗର୍ଜନ କରି ବୀର ଗଗନୁ ଖସିଲା ।
ହନୁମାନ ଗର୍ଜନ ଶୁଣି ଭବଋଷି
ଭାଳନ୍ତି ପଡ଼ିଲା କି ପ୍ରମାଦ ଏବେ ଆସି ।
ନଉସହସ୍ର ଋଷିଙ୍କର ଭାଜିଲା ତପ ପଦ
ଋଷିମାନେ ବିଚାରିଲେ ପଡ଼ିଲା ପ୍ରମାଦ ।
କେଉଁ ମହାତମା ଆସି ବିଜୟ କଲା ଏଥି
ଏମନ୍ତ ବିଚାରି ସର୍ବେ ପୁଚ୍ଛା ପୁଚ୍ଛି ସେଥି ।
ଏଥୁଅନନ୍ତରେ ଶୁଣ ଶାକମ୍ଭରୀ
ହନୁମନ୍ତ ପ୍ରବେଶ ବିଲଙ୍କା ନାମେ ପୁରୀ ।
ଦେଖିଲାକ ବଡ଼ ଗହଳ ସେ ବିପିନ
ତପିମାନଙ୍କର ଅଟଇ ଗୋପ୍ୟସ୍ଥାନ ।
ବାରଯୋଣ ପର୍ଯ୍ୟନ୍ତ ସେ ଗିରି ଅଟେ ସୀମା
ଦେଖିଣ ମନେ ମନେ ବିଚାରେ ମହାତମା ।
ସେ ବନ ଦେଖିଣ ମାରୁତି ବୁଲିଲା
କୌଣସିଠାରେ ଘରଦ୍ୱାର ନା ପାଇଲା ।
ଭାବିଲା ଏ ସ୍ଥାନ ନୁହଇ ଲଙ୍କାପୁର
ବାଟବଣା ହେଲି ହେତୁ ନ ରହିଲା ମୋର ।
ରାତ୍ରରେ ଭ୍ରମିଣ ଦେଖିଲା ଚଉକତି
ଯେଉଁ ସ୍ଥାନକୁ ଯାଏ ସେ ସ୍ଥାନରେ ଯତି ।
କେଉଁ ତପି ହୋମ କରେ କେହୁ କରେ ତପ
ସକଳ ଋଷି ଚେତା ଅଚେତା ନୁହେଁ ତପ ।
ଦେଖିଣ ହନୁମନ୍ତ ବିଚାରିଲା ମନେ
ମଣିନାଗ କଥା ଦେଖି ବିଡ଼ବି ଏ ସ୍ଥାନେ ।
ମଣିନାଗ କହିବା ଅଞ୍ଜନକୁ ଘେନିଲା
ଅଞ୍ଜନ ଘେନିଣ ହନୁ ସଚେତ ହୋଇଲା ।

ରଜନୀ ଦିଶିଲା ତାକୁ ଦିବସ ପରାଏ
ଦେଖିଣ ହରଷ ହେଲା ପବନ ତନୟେ ।
ମନରେ ବିଚାର କରଇ ମାରୁତି
ନୁହଇ ଲଙ୍କା ଏ ଯେ କେବଣ ଦ୍ୱୀପପୃଥ୍ୱୀ ।
ସମ୍ପାତି କହିବାର ଶୁଣିଛି ମୁହିଁ କର୍ଣ୍ଣେ
ସୁବର୍ଣ୍ଣର ପୁର ସେ ଲଙ୍କା ଆୟତନେ ।
ସେ ପୁରକୁ ଛାଡ଼ି ମୁଁ ଏବେ ବଣା ହେଲି
କେବଣ ସ୍ଥାନରେ ଆସି ଭ୍ରମରେ ପଡ଼ିଲି ।
ଏମନ୍ତ ବିଚାରି ଭାଳଇ ମନେ ମନ
ଥୟକରି ନ ପାରଇ କେବଣ ଏ ସ୍ଥାନ ।
ମନେ ଚେତିଣ ସେ ଦେଲା ଏକ ରଡ଼ି
ବନଗିରି ଚମକିଲା ଚମକି ତପଚାରୀ ।
ଲତା ବୃକ୍ଷମାନେ ସମସ୍ତେ ଥରହର
କିଅବା ମେଦିନୀକି ଛାଡ଼ିବେ ମହୀଧର ।
ଶୁଣିଣ ମୁନିମାନେ ମନରେ ବିଷାଦ
ଭାବିଲେ ଏ ସ୍ଥାନରେ ପଡ଼ିଲା ପ୍ରମାଦ ।
ସଂଯୋଗି ତପଙ୍କର ଭାଙ୍ଗେ ଯୋଗଧ୍ୟାନ
ବୋଇଲେ ଦୈତ୍ୟ ନିଶ୍ଚେ ମିଳିଲା ଏ ସ୍ଥାନ ।
ନିଶଙ୍କ ଭୂମିକି ସେ କି ରୂପେ ଭ୍ରମିଲା
କେବଣ ଦୈତ୍ୟ ଅବା ଏଥକୁ ଅଇଲା ।
ଅପାର କାଳରୁ ଏହା ଦେଖିଲା ତ ନାହିଁ
ଏମନ୍ତ ବୋଲି ମୁନି କୁହାକୁହି ହୋଇ ।
ଏକକୁ ଆରେକ କହିନ୍ତି ବଚନ
କ୍ଷୁଦ୍ରରୂପ ଧରିଣ ମିଳେ ହନୁମାନ ।
କଣ୍ଠରେ ରୁଦ୍ରାକ୍ଷ ଯେ ହସ୍ତରେ ତୁଳସୀ
ଏହି ବେଶ ଧରି ହନୁମନ୍ତ ଚାଲିଆସି ।
ବଜ୍ରକାଛଟା ଯେ କଟିରେ ଅଛି ଖୋସି
ମୁଖ ତାର ବିକାଶଇ ପୂର୍ଣ୍ଣମୀର ଶଶୀ ।
ଦେଖିଣ ମୁନିମାନେ ମନରେ ବିଷାଦ
ଋଷିମାନେ ବୋଇଲେ ମର୍କଟ ବଡ଼ ମନ୍ଦ ।
ପଚାରନ୍ତି କେବଣ ମହାତ୍ମା ଏଠାକୁ ଅଇଲୁ
ଯୋଗମୁଦ୍ରା ଆମ୍ଭର କିମ୍ପାଇଁ ଭାଙ୍ଗିଲୁ ।
ହନୁମନ୍ତ ବୋଲେ କ୍ରୋଧ ନୁହହେ ଗୋସାଇଁ
ଦଶରଥ ସୁତ ଶ୍ରୀରାମଙ୍କ ଦୂତ ମୁହିଁ ।
ଜନକ ଋଷିଙ୍କ ଝିଅ ଜାନକୀ ବୋଲି ଜାଣ
ଶିବଧନୁ ଭାଙ୍ଗି ରାମ ବିଭା ହେଲେ ପୁଣ ।
ବଇମାତୃ କେକେୟୀ ପିତାରେ ସତ୍ୟ କଲେ
ପିତାସତ୍ୟ ପାଳି ରାମ ବନକୁ ଅଇଲେ ।
ଶ୍ରୀରାମଙ୍କ ଘରଣୀକି ରାବଣ ଆଣେ ହରି
ଋଷ୍ୟମୁକେ ସୁଗ୍ରୀବକୁ ଭେଟିଲେ ଚାପଧାରୀ ।

ସୁଗ୍ରୀବର ସଙ୍ଗରେ ମଇତ୍ର ହୋଇଲେ
ମଇତ୍ର ଛଳେ ଶ୍ରୀରାମ ବାଳିକି ନାଶ କଲେ ।
ସୀତୟା ଖୋଜିବାକୁ ବରଗିଲେ ଦୂତ
ଦକ୍ଷିଣକୁ ଅଇଲୁଁ ଆମ୍ଭେ ଜଣ ଆଠ ।
ଶୁଣିଲୁ ରାବଣ ନେଇଛି ଚୋରାଇ
ପବନ ସୁତ ମୁଁ ଅଇଲି ପଥ ବାହି ।
ବାଟରେ ଆସନ୍ତେ ମୋତେ ପ୍ରମାଦ ପଡ଼ିଲା
ପଥବଣା ହେଲି ମୁଁ ହେତୁ ନ ରହିଲା ।
ଶୁଣିକରି ମୁନିମାନେ ହୋଇଲେ ତୃପତି
ଆଜିଠାରୁ ରାବଣର ସରିଲା ସମ୍ପତ୍ତି ।
ବିଚାରିଲେ ଶ୍ରୀରାମ କରିବେ ଦୈତ୍ୟ ହତ
ଦେବଙ୍କର ଛଳରେ ନାରାୟଣ ଜାତ ।
ନର ବାନର ଯେ ଆସିବେ ଲଙ୍କା ଭୂଇଁ
ପୂର୍ବେ ନନ୍ଦୀକେଶ୍ୱର ଶାପ ଅଛି ଦେଇ ।
ଏବେ ତାଙ୍କର କଥା ହେବ ପରାପତ
ଜାଣିଲେ ମୁନିମାନେ ଶ୍ରୀରାମଙ୍କ ଦୂତ ।
କପିତନୁ ଧରିର ପବନର ସୁତ
ଶିରରେ ଶୋଭାବନ ମୁକୁଟ ବିରାଜିତ ।
କର୍ଣ୍ଣରେ ଅମୃତ କୁଣ୍ଡଳ ବିରାଜଇ
ତାର ତେଜେ ତିମିର ଅନ୍ତର ହୋଇଯାଇ ।
ବାହାରେ ବୀରନେତ କଟିରେ କାଛେଣିଟା
ସଦାଶିବ ବୀର୍ଯ୍ୟରୁ ଜାତ ଏହି ବେଟା ।
ଶ୍ରୀରାମ ଦର୍ଶନରେ ପାଇଲା ଦିବ୍ୟଗତି
ଖୋଜିଣ ଆସିଅଛି ଏ ଜନକ ଦୁହିତୀ ।
ତୁ ଯେଉଁ କାର୍ଯ୍ୟରେ ଆସିଛୁ ହନୁମାନ
ଲଙ୍କାକୁ ଛାଡ଼ିଲୁ ତୁ ଉତ୍ତର ଦିଗେ ଜାଣ ।
ଲଙ୍କାକୁ ଛାଡ଼ିଣ ତୁ ବିଲଙ୍କା ଅଇଲୁ
ଆମ୍ଭର ତପଯଜ୍ଞ ଭାଙ୍ଗି ଦୋଷ କଲୁ ।
ଶୁଣି କରି ମାରୁତି ଋଷିଙ୍କ ପାଦେ ଲୋଟି
କେବଣ ପ୍ରକାରେ ମୁଁ ଲଙ୍କାକୁ ଯାଇ ଭେଟି ।
ମୁନିମାନେ ବୋଇଲେ ନୁହ ତୁ ବିକଳ
ବାରଯୁଣ ବନ ଏ ଯେ ଏଠାରେ ଋଷିଠୁଳ ।
ନଉସହସ୍ର ମୁନି ଅଛନ୍ତି ଏ ବନର
ତୋତେ ଦେଖି ସମସ୍ତେ ହେଲେଣି କାତର ।
ବେଦବର ଏ ବନକୁ ପ୍ରବେଶ ଆସି ପୁଣ
ବୋଇଲେ ନିଶ୍ଚିନ୍ତରେ ରହ ଏ ସ୍ଥାନେଣ ।
ଆମ୍ଭେମାନେ ବୋଇଲୁଁ ଏ ଅସୁରଙ୍କ ଭୂମି
ଏ ବନରେ ସମ୍ଭାଳି ନୋହିବୁଁ ଆମ୍ଭେ ପୁଣି ।
ଶୁଣିଣ କୁଶପାଣି ବୋଇଲେ ବଚନ
ଏ ସ୍ଥାନକୁ ଅସୁର ନ ଆସିବେ ଜାଣ ।

ଯେ ବଳବନ୍ତ ପଣେ ଆସିବେ ଦଇତ
ଭସ୍ମ ହୋଇଯିବେ ମୁହିଁ ଦେଉଛି ଶପଥ ।
ନର ବାନର ଯେବେ ଆସିବେ ଏ ପୁର
ତୁମ୍ଭଙ୍କୁ ଭକତିହେଲେ ନୋହିବେ ଦୋଷାଚାର ।
ଗର୍ବ କଲେ ନୟନ ଫୁଟିଯିବ ତାର
ଏତେ କହି ବିଧାତା ଗଲେ ନିଜ ପୁର ।
ତୁହି କିରେ ମାରୁତି ଶ୍ରୀରାମର ଦୂତ
ଭଲରେ ଅଇଲୁ ତ ନ ଜାଣି ଏ ସ୍ଥାନ ତ ।
ଆମ୍ଭମାନଙ୍କୁ ଦେଖି ଭକତି ହୋଇଲୁ
ତେଣୁ ତୋହର ଦୋଷ ଆମ୍ଭେ କ୍ଷମା କଲୁ ।
ଏବେ କୁଶବଟୁ ଦେଉଛୁ ମାରୁତି
ଏ କୁଶରେ ପାଦ ଦେଇ ଚଳ ତୁ ଝଟତି ।
ପବିତ୍ର ଅଟଇ ଏ ଯେଉଁ ଦିବ୍ୟକୁଶ
ଏ କୁଶରେ ଚଢ଼ିଗଲେ କାର୍ଯ୍ୟ ହେବ ଯଶ ।
ଶୁଣି କରି ବିଷାଦ ହୋଇଲେ ମାରୁତି
ବୋଇଲେ ମୁନିମାନେ କଲେ ଯେ ଅନୀତି ।
ଯେବଣ ପଦାଘାତେ ପାଷାଣ ହୁଏ ଚୁର
ଏ କୁଶବଟୁ କେମନ୍ତେ ସହିବ ମୋର ଭାର ।
ଏମନ୍ତ ବିଚାରି ସେ କୁଶରେ ଦେଲା ପାଦ
ଚରଣେ ଫୁଟିଗଲା ମୂର୍ଦ୍ଧନୀରେ ଭେଦ ।
ଦନ୍ତ ନିକୁଟିଣ ପଡ଼ିଲା ମାରୁତି
ରାମନାମ ପଦକୁ ସୁମରଇ ମତି ।
ଦେଖିଣ ମୁନିମାନେ ବଚନ ବୋଲନ୍ତି
ମନରେ ଅନ୍ତର କି ଧରିଲୁ ମାରୁତି ।
ପଡ଼ିଲୁ ଅଚେତା ହୋଇ ତୁ ପିଣି ଏଡ଼େ ବୀର
ଶ୍ରୀରାମର କାର୍ଯ୍ୟ କର ବିଳମ୍ବ ନ କର ।
ଏ ଯେଣୁ ପବିତ୍ର ଅଟଇ ଯେ କୁଶ
ଜଙ୍ଗଲରୁ ଉତପତି ହୋଇଛି ବିଶେଷ ।
ସାମାନ୍ୟ ପ୍ରାୟ ଯାକୁ ମଣିଲୁ କପିମଣି
ଏତେ କହି କୁଶ ନାଡ଼ ପାଦରୁ କାଢ଼େ ପୁଣି ।
ମହାମନ୍ତ୍ର ପଢ଼ିଣ ସିଞ୍ଚିଲେ ତହିଁ ପାଣି
ସଚେତ ହୋଇଣ ମାରୁତି ବସେ ପୁଣି ।
ମୁନିମାନେ ବୋଇଲେ ନ ଭାଳ ମାରୁତି
ଏ କୁଶବଟ ହେ ବ୍ରହ୍ମା ସାଇତି ରଖିଛନ୍ତି ।
ଯାଗହୋମ କର୍ମରେ ଏହିଟି ଉଦ୍ଦେଶ୍ୟ
ଯାଗହୋମ ଏ କୁଶରେ କରେ ବ୍ରହ୍ମଶିଷ୍ୟ ।
ଏହି ସେ ପବିତ୍ର ଯଜ୍ଞ ହୋମ କରି
ଭଦ୍ର ନାମଗୋଟି ଯେ ଦେଲେ ବ୍ରହ୍ମଚାରୀ ।
ବୀରଶୂର ପଣ ଯେ ଦେଖାଉ କପିମଣି
ଏବେ ତୁ ନିର୍ଭୟ ହୋଇ ଯାଅ ଏଥୁଁ ପୁଣି ।

ଶୁଣନ୍ତି ପାର୍ବତୀ କହନ୍ତି ଦେବକାଶୀ
ତେଣୁଟି ବନର ବାନର ବଳ ଭାଷି ।
ହସିଣ ବଚନ କହନ୍ତି ମୁନିବର
ଏବେ ତୁ ନିର୍ଭୟରେ ଚଳ କପିବର ।
ଏତେ ବୋଲିଣ ମୁନି କୁଶ ପୋତି ଦେଲେ
ଚରଣ ଦେଇ ହନୁ ଶୂନ୍ୟେ ବିକ୍ରମିଲେ ।
ଶତେକ ଯୋଜନ ତକ୍ଷଣେ ଚଳିଗଲେ
ଲଙ୍କାର ପଶ୍ଚିମଦ୍ୱାରେ ପ୍ରବେଶ ହୋଇଲେ ।
ଯେବଣ ସ୍ଥାନରେ ଶୋଇଲେ ସେ ଯାଇ
ଭାରାପାଇ ତଳକୁ ଲମ୍ବିଗଲା ମହୀ ।
ତହୁଁ ମହାବୀର ସାଞ୍ଚୋଇ ଉଠିଲେ
ଉଗ୍ରରୂପ ଛାଡ଼ିଣ ସାମାନ୍ୟ ରୂପ ହେଲେ ।
ବନଗିରି ଲତା କନ୍ଦର ପାହାଡ଼
ପାଚେରୀକି ଯୁଣେ ଛିଡ଼ା ହୋଇଛଇ ଉହାଡ଼ ।
ଦେଖିଣ ମାରୁତି ଶୀଘ୍ର କରି ଚାହିଁ
ସୁବର୍ଣ୍ଣର ପାଚେରୀ ଶୋଭା ଯେ ଦିଶଇ ।
ମନରେ ବିଚାରିଲା ଏହିଟି ଲଙ୍କାଗଡ଼
ସମ୍ପ୍ରତି କହିବା କଥା ଅଟଇଟି ଗାଢ଼ ।
ଏତେ କହି ବୀର ପଶ୍ଚିମଦ୍ୱାରେ ମିଳି
ସେହି ଦ୍ୱାରେ ରତ୍ନ ଶାର୍ଦ୍ଦୁଳ ମହାବଳୀ ।
ତମ୍ଭାର କବାଟ ବାଘ ମୁହିଁ ଝଞ୍ଜିରୀ
ଅର୍ଗଳୀ ଫେର ଦ୍ରୋଣା କରିଛି ଭଳି ଭଳି ।
ଦେଖିଣ ହନୁମନ୍ତ ବିଚାରଇ ମନେ
ଅସୁର ଜାଗ୍ରତ ଅଛଇଁ ସୁବିଧାନେ ।
ଦେଖିଣ ମାରୁତି ସେଠାରୁ ଫେରିଗଲା
ବନ କନ୍ଦର ମାନ ବୁଲିଣ ଦେଖିଲା ।
ଚାରିଯୁଣ ପ୍ରତିରେ ଘୋଟିଛି ବନଲତା
ସେ ଲତା ଦେଖିଣ ହନୁ ମନରେ ହେଲା ମତା ।
ଅନେକ ଫଳମୂଳ ବନଲତାରେ ଭରି
ଫଳଭରେ ତରୁଲତା ଭୂମିରେ ଲୋଟଗାଳି ।
ଦେଖି କରି ହନୁମନ୍ତ ହରଷ ହୋଇଲା
ପଶ୍ଚିମଦିଗ ବୁଲି ଦକ୍ଷିଣ ଦିଗେ ଗଲା ।
ପଶ୍ଚିମକୁ ଦକ୍ଷିଣ ଅଟଇ ବଡ଼ ସ୍ଥଳୀ
ଫଳଭରେ ଲତା ଲଟିକାମାନ ଭରି ।
ଆମ୍ବ ପଣସ ଯେ ନଡ଼ିଆ ଗୁଆ ତାଳ
ଖଜୁରି କଇଁଥ ବେଲ ଭଇଁଚ ଗହଳ ।
ଫଳନ୍ତି ଫୁଟନ୍ତି ଯେ ପାଚିଣ ତଳେ ପଡ଼ି
ଦେଖିକରି ମାରୁତି ମନରେ ବିଚାରି ।
ଉତ୍ତମ ବନ ଗୋଟି ଅଛଇଁ ଏଥିରେ
ଅମୃତ ସମାନ ଫଳ ଫଳିଛି ବନରେ ।

ଏମନ୍ତ ବିଚାରି ଦକ୍ଷିଣ ଦ୍ୱାରେ ମିଳି
ଦେଖିଲା ରତ୍ନ ଅଶ୍ୱ ସେ ଦୁଆର ଘେରି ।
ବେନି ଗୋଟି ଅଶ୍ୱ ଯେ ଦ୍ୱାର ମାଡ଼ି ବସି
ଅର୍ଗଳୀ ଫେର ଧରିଛି ବିଶ୍ୱନାର ଦସି ।
ହନୁକୁ ଦେଖିଣ ଅଶ୍ୱ ଯେ ହସିଲେ
ଦେଖି କରି ହନୁମନ୍ତ ଦୂରୁ ଅପସରେ ।
ବିଚାରଇ ମାରୁତି ହେବ କଥା ମନ୍ଦ
କାର୍ଯ୍ୟ ତ କରିନାହିଁ କରିବା କିମ୍ପା ଦ୍ୱନ୍ଦ୍ୱ ।
ଏମନ୍ତ ବିଚାରି ସେଠାରୁ ଚଳିଗଲା
ବନଗିରିଲତା ମାନ ବୁଲିଣ ଦେଖିଲା ।
କେଉଁଠାରେ ବ୍ୟାଘ୍ର ଯେ ଶାର୍ଦ୍ଦୁଳ ପଲପଲ
କେଉଁଠାରେ ଗଣ୍ଡ ଯେ ଘୁଷୁରୀଙ୍କର ମେଳ ।
କେଉଁଠାରେ ଶ୍ୱାନ ଯେ ଶୃଗାଳ ପରିପରି
କେଉଁଠାରେ ହସ୍ତୀ ଘୋଡ଼ା ବନ ଭ୍ରମିଛନ୍ତି ।
କେଉଁଠାରେ ଗୃଧ୍ର ପକ୍ଷୀ କାକ ସଙ୍ଗେ ମେଳି
କେଉଁଠାରେ ନାନାଜୀବ କରୁଛନ୍ତି କେଳି ।
କେଉଁଠାରେ ସାରେଣୀ ଖେଳନ୍ତି ଯୋଡ଼ି ଯୋଡ଼ି
କେଉଁଠାରେ ବାରେହା ବ୍ୟାଘ୍ର ଲାଗେ ଦଳି ।
କେଉଁଠାରେ ମୃଗଶମ୍ବରମାନଙ୍କର ଖେଳ
କେଉଁଠାରେ ହରିଣ ଚାଲନ୍ତି ପଲପଲ ।
କେଉଁଠାରେ ଚନ୍ଦ୍ରଚୂଡ଼ ଦେଉଛନ୍ତି ରଡ଼ି
କେଉଁଠାରେ ଗୟଳ ଚାଲନ୍ତି ଧାଡ଼ି ଧାଡ଼ି ।
କେଉଁଠାରେ କୋକିଳ ଶବଦ କରେ ଭିନ୍ନ
କେଉଁଠାରେ ବନମାନେ କୁହୁକନ୍ତି ପୁଣ ।
କେଉଁଠାରେ ବିଚାର କରନ୍ତି ଶୃଗାଳ
ଅସୁରଙ୍କ ପିକର ଗୋଳ ହେବ ଘୋର ।
କେଉଁଠାରେ ଗୃଧ୍ରପକ୍ଷୀ କରନ୍ତି ବିଚାର
ଶ୍ରୀରାମ ରାବଣର ହୋଇବ ଯୁଦ୍ଧ ଘୋର ।
କେଉଁଠାରେ ଶ୍ୱାନ ଯେ ହେଉଛନ୍ତି କଥା
ମେଦମାଂସ ଖାଇଣ ସନ୍ତୋଷ ହେବ ଆତ୍ମା ।
ବରେହା ଶୂକର ଯେ କରନ୍ତି ବିଚାର
ଲଙ୍କା ଆଳୁ ପକ୍ଷକେ ଯୁଦ୍ଧ ହେବ ଘୋର ।
ଶୁକର ପଚାରଇ କିଏ ସେ ଅଛି ଗାଢ଼
ରାବଣକୁ ମାରିବାକୁ କେହୁଅଛି ବଡ଼ ।
ବରେହା ବୋଇଲା ତୁହେ ନ ଜାଣୁଟି କିଛି
ରାବଣକୁ ମାରିବାକୁ ଶ୍ରୀରାମ ଜନମିଛି ।
ଶୁକର ବୋଇଲା ତୁ ଦେଖୁ ଦେଖୁ ବଣା
ଯାହାକୁ ଦେବତାଏ ଡରନ୍ତି ରଣେ କିନା ।
ନ ପାରି ଦେବତାଏ ଖଟଣୀ ସେବା କଲେ
ରାବଣର ବୋଲରେ ଦେବତା ରହିଲେ ।

ବେଦବର ଶଙ୍କର ଯାହାର ବୋଲ କରି
ତାହାକୁ ମାରିବାକୁ କାହାନ୍ତି ତିନିପୁରୀ ।
ପୁଣି ବରେହା ଯେ ବୋଇଲା ଦେଖିବୁ
ଶ୍ରୀରାମଙ୍କ ଦର୍ଶନରେ ମୁକତ ହୋଇଯିବୁ ।
ଏମନ୍ତ ବିଚାର ଯେ ବରେହା ଶୂକରର
ଶୁଣିଣ ହନୁମନ୍ତ ବିଚାରେ ମନର ।
ଏ ଜୀବମାନେ ସବୁ ଆଗତ କଥା ଜାଣି
ବିଚାରି ହନୁମନ୍ତ ସେଠାରୁ ଗଲା ପୁଣି ।
ପୂର୍ବଦ୍ୱାରେ ଯାଇଣ ହେଲା ପରବେଶ
ସେ ଦ୍ୱାରେ ଦେଖେ ରତ୍ନ ସିଂହ ଯେ ବିଶେଷ ।
ଅର୍ଗଳୀ ଚନ୍ଦ୍ରାଗାଖମ୍ବ ବିଶାଳ ସେହିମତି
ଦିଗବାରଣ ଖମ୍ବ ସିଂହ ଦ୍ୱାରେ ଅଛି ।
ସେହି ଖମ୍ବ ଉପରେ ବରୁଣ ବିଜେ କରି
ରଙ୍ଗବର୍ଣ୍ଣ ସେହି ସ୍ଥାନ ଦିଶଇ ସେ ଘେରି ।
ରଜନୀ ଦିବସରେ ରଙ୍ଗ ଜ୍ୟୋତି ଜାଣି
ପୂର୍ବଦିଗ ବର୍ଣ୍ଣ ସେ ଭିନ୍ନ ଦିଶେ ପୁଣ ।
ସେ ଦିଗର ବନରେ ଯେତେକ ଜୀବ ଜନ୍ତୁ
ସମସ୍ତେ ରଙ୍ଗବର୍ଣ୍ଣ ଅରୁଣର ହେତୁ ।
ଦେଖିଣ ହନୁମନ୍ତ ଚମତ୍କାର ହେଲା
ସିଂହର ଆଗରେ ପ୍ରବେଶ ହୋଇଲା ।
ଯେତେବେଳେ ରଜନୀ ହୋଇଛି ଦଶଘଡ଼ି
ସମସ୍ତେ ନିର୍ଜନ ନିଦ୍ରାରେ ଛନ୍ତି ପଡ଼ି ।
ହନୁକୁ ଦେଖି ବେନି ସିଂହରଡ଼ି କଲେ
ବନଗିରି ଲଙ୍କାଗଡ଼ ଚେତା କରାଇଲେ ।
ସକଳ ଜୀବଜନ୍ତୁ ଚେତା ହେଲେ ଜାଣ
ଲଙ୍କାଗଡ଼ ଅସୁରେ ଉଠିଲେ ଚିଆଇଣ ।
କେ ବୋଲନ୍ତି ନିର୍ଘାତ କେଉଁ ଆଡ଼େ ହେଲା
କେ ବୋଲେ ନିର୍ଘାତ ଯେ ଏ ଦିଗେ ପଡ଼ିଲା ।
ଏମନ୍ତ ବଚନ ବୋଇଲେ ମନ୍ଦୋଦରୀ
ଶୁଣିଣ ସମସ୍ତେ କହିଲେ ତାଙ୍କୁ ଘେରି ।
ଆମ୍ଭେ ସର୍ବେ ସ୍ୱପନ ଦେଖିଲୁଁ ଆଜ ନିଶି
ମର୍କଟ ଗୋଟାଏ ଯେ ଯୁଦ୍ଧ କରେ ଆସି ।
ଏମନ୍ତ ବଚନ ବୋଇଲେ ରାଣୀ ହଂସ
ପଞ୍ଝା ପଞ୍ଝା ହୋଇଣ ହୋଇଲେ ପ୍ରବେଶ ।
କେହୁ ବୀଣା ବାଇଲା କେ ସିତାର ବଜାଏ
କେଉଁ ଜନ ମର୍ଦ୍ଦଳ ଧରିଣ ବଜାଏ ।
କେହୁ ନାଚେ କେହୁ ଡିଏଁ କେହୁ ଦେଖେ ପୁଣ
ଏମନ୍ତ ପ୍ରକାରେ ନୃତ୍ୟ କଲେ ଯେ ଭିଆଣ ।
ଜାହା ମନ ହରଷ ତାହାମନ ନିରସ କରି
କେଉଁ ରାଣୀମାନେ ଯେ ସ୍ୱପନ ପାସୋରି ।

ଏଥି ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାବଣ ଚମକିଲା ନିଦ୍ରା ତ୍ୟାଗ କରି ।
ଅଠର ଗଣ୍ଡା କୁମର ତେରଶତ ନାତି
ବେନିଲକ୍ଷ ଜ୍ୱାଇଁ ଉଠିଲେ ଯେ ଚେତି ।
ସମସ୍ତେ ବିଚାରିଲେ ଘୋଟିଲା ଆସି କାଳ
ନିର୍ଜନ ରାତିରେ ଯେ ଲାଗିଲାକ ଗୋଳ ।
କେବେ ବୋଲେ ନିର୍ଘାତ ତ କେ ବୋଲେ ସିଂହରଡ଼ି
କେ ବୋଲେ ଶବଦ ମୁଁ ବାରି ନ ପାରିଲି ।
ଏମନ୍ତେ କୁହାକୁହି ହୋଇଲେ ସକଳ
ରାବଣ ଭାବିଲା ନିଶ୍ଚେ ହେବ ଗଣ୍ଡଗୋଳ ।
ଦଶରଥ ପୁତ୍ର ନିଶ୍ଚେ ଆସିବ ଲଙ୍କାକୁ
ଶୋଇଲା ସ୍ଥାନେ ସ୍ୱପନ ଦେଖିଲି ମୁଁ ତାକୁ ।
ମହିଁଷୀ ବାହନେ ମୋର ରଙ୍ଗ ପୁଷ୍ପମାଳ
ଦକ୍ଷିଣ ଦିଗକୁ ଗମନ କରଇ ଚଞ୍ଚଳ ।
ଏମନ୍ତ ସ୍ୱପନ ଯେ ଆଜିର ନିଶିରେ
ଦେଖି କରି ଚେତା ମୁଁ ପାଇଲି ସତ୍ୱରେ ।
ଏହି ସମୟରେ ପୁଣି ଶବଦ ଶୁଭିଲା
ଉଲୁକାରଡ଼ି ଆସି ଜଗତି ପରେ ଦେଲା ।
ଏମନ୍ତ ବଚନ କହଇ ଦଶଗ୍ରୀବ
ଦଶରଥ ପୁତ୍ର ମୋତେ ନିଶ୍ଚୟ ମାରିବ ।
ରାବଣ ବଚନ ଶୁଣି ସମସ୍ତେ ମନେ ଦକା
ସିଂହରଡ଼ି ଶୁଣିଣ ଅସୁରେ ହେଲେ ଚେତା ।
ଏଥିଅନନ୍ତରେ ଶୁଣ ଗୋ ଭଗବତୀ
ଜାନକୀ ସେଦିନ ସ୍ୱପନ ଦେଖିଛନ୍ତି ।
ସ୍ୱେତହସ୍ତୀ ଶ୍ୱେତସିଂହ ଶ୍ୱେତ ଯେ ବୃଷଭ
ଶ୍ୱେତ ପୁଷ୍ପ ଅଙ୍ଗେଟି ଭୂଷଣ ରାମ ଦେବ ।
ଶ୍ୱେତ ଛତ୍ର ଜନକ ସିଂହାସନ ଶୋଭା
କନକର ମଣ୍ଡପରେ ବିଜୟ ରାମଦେବା ।
ମଣିମୟ କିରୀଟି ଯେ ମୁକୁଟ କଙ୍କଣ
ସର୍ବାଙ୍ଗେ କସ୍ତୁରୀ ଚନ୍ଦନ ବିଲେପନ ।
ମର୍କଟ ଭାଲୁ ସୈନ୍ୟ ସଙ୍ଗରେ ବହୁତ
ସମୁଦ୍ରେ ବନ୍ଧବାନ୍ଧିବାକୁ ବିଚାରେ ରଘୁସୁତ ।
ଏମନ୍ତ ସ୍ୱପନ ଯେ ଦେଖିଲେ ଜାନକୀ
ନିଦ୍ରା ତେଜ୍ୟା କରିର ପଲ୍ୟଙ୍କରେ ବସି ।
ଏହି ସମୟରେ ସିଂହରଡ଼ି ଶୁଭି
ଅସୁରୀ ତ୍ରିଜଟା ଯେ ଚମକି ଉଠି ବେଗି ।
ଅସୁରୀମାନେ ବୋଇଲେ କି ଶବଦ ହେଲା
ତ୍ରିଜଟା ବୋଇଲେ ଯେ ନିର୍ଘାତ ପଡ଼ିଲା ।
ଜାନକୀ ବୋଇଲେ ଏ ଅଶୁଭ ସିଂହରଡ଼ି
ତ୍ରିଜଟା ବୋଇଲା ମୁଁ ନିଦ୍ରାରେ ଥିଲି ପଡ଼ି ।

ଆଜର ସପନ ମୁଁ ଦେଖିଲି ଆଚମ୍ବିତ
ମର୍କଟଟିଏ ଲଙ୍କାକୁ ଭେଦିଲେ ରଘୁନାଥ ।
ସେ ବାନର ଆସିଣ ଏ ବନରେ ମିଳିଲା
ତୁମ୍ଭର ଚରଣେ ସେ ନମସ୍କାର କଲା ।
ମଧୁବନ ଭାଙ୍ଗିଣ ଦୈତ୍ୟଙ୍କ ସଙ୍ଗେ କଳି
ଅନେକ ଅସୁରଙ୍କୁ ପକାଇଲା ଦଳି ।
ଜମ୍ବୁମାଳି ସଙ୍ଗରେ ପାଞ୍ଚ ସେନାପତି
ରାବଣର ସାନ ପୁତ୍ରକୁ ମାଇଲା ସେହୁ କପି ।
ଦେଖି କରି ରାବଣ ଇନ୍ଦ୍ରଜିତକୁ ଭେଦି
ନାଗଫାଶ ଶରରେ ନେଲା ତାକୁ ବାନ୍ଧି ।
ଜାନକୀ ବୋଇଲେ ଯେ ଏ ସ୍ୱପନ ମୋର
ଅପର ନିଶିରେ ମୁଁ ଦେଖିଲି ଏ ପ୍ରକାର ।
ଏମନ୍ତ ବିଚାରି ଯେ ତ୍ରିଜଟା ଜାନକୀ
ସତେ କି ରାମଚନ୍ଦ୍ର ଆସିବେ ଏଠିକି ।
ଏଥି ଅନନ୍ତରେ ପାର୍ବତୀ ଶୁଣ ଭଲେ
ହନୁକୁ ଦେଖି ସିଂହ ଘୋର ରଡ଼ି କଲେ ।
ଚେତା କରାଇଲେ ସେ ଲଙ୍କାର ଦଇତ
ଶୁଣି ହନୁ ଘୁଞ୍ଚିଣ ହୋଇଲେ ଗୁପତ ।
ହନୁମନ୍ତ ଘୁଞ୍ଚିବାରୁ ସିଂହ ନିବର୍ତ୍ତିଲେ
ବନରେ ପଶି ହନୁ ବିହରେ ନିଶ୍ଚିନ୍ତରେ ।
ପୂର୍ବଦିଗ ବନରେ ଶ୍ୱାନଶୃଗାଳ ମେଳ
ହନୁକୁ ଦେଖିବାରୁ କରନ୍ତି ବିଚାର ।
ରାମରାବଣ ଯୁଦ୍ଧ ହେବ ଏ ଲଙ୍କାରେ
ଶ୍ରୀରାମ ଜିଣିବେ ମରିବେ ଅସୁରେ ।
ଶ୍ୱାନ ପଚାରେ ରାମର କେତେ ଅଟେ ବଳ
ଅସୁରକୁ ମାରିବାକୁ ସକ୍ଷ କି ଅଟେ ତାର ।
ଶୃଗାଳ କହିଲା ଯେ ଅଟନ୍ତି ନାରାୟଣ
ଚାରି ରାବଣକୁ ଏଥେ ମାରିବେ ରାମରାଣ ।
ଚଉଦ ଦିନ ଯୁଦ୍ଧରେ ମରିବ ଦଶଶିରୀ
ପୁତ୍ର ନାତି ବନ୍ଧୁ କୁଟୁମ୍ବ ଆଦି କରି ।
ସତୁରି ସାଗର ଅଟନ୍ତି ଦୈତ୍ୟବଳ
ବାର ସାଗର ରହି ମରିବେ ସକଳ ।
ଏ ଲଙ୍କା ଗଡ଼େ ବିଭୀଷଣ ହେବ ରଜା
ଦଇବର ଲିଖନ କେ କରିବ ତେଜ୍ୟା ।
ପୁତ୍ର ନାତି ଜୁଆଇଁ ଗୋଟିଏ ନ ରହିବେ
ଦୁହିତା ନାତୁଣୀ ବଧୂ ସମସ୍ତେ ସତୀ ଯିବେ ।
ମେଦ ମାଂସ ଆମ୍ଭଙ୍କୁ ପ୍ରାପତ ବହୁତ
ବେନିମାସ ପର୍ଯ୍ୟନ୍ତ ଆହାର ହେବ ସୁସ୍ଥ ।
ଶୁଣି କରି ଶ୍ୱାନ ବୋଲେ କେମନ୍ତେ ଜାଣିଲୁ
ଆଗତ ଭବିଷ୍ୟ କଥା ମୋ ଆଗେ କହିଲୁ ।

ଶୃଗାଳ ବୋଇଲା ମୋତେ ମାତା ଅଛି କହି
ଜାନକୀ ଲଙ୍କା ଅଇଲେ ରାବଣ ମରଇ ।
ଏବେ ସେ ସେହିକଥା ଘଟଣା ହୋଇଲା
ମର୍କଟକୁ ଦେଖି ସିଂହ ଡରି ରଡ଼ି ଦେଲା ।
ଏବେ ସେ ଏଥି ଆସି ମିଳିଲା ହନୁମନ୍ତ
ନିଶ୍ଚୟ ଜଣାଗଲା ମରିବ ରାବଣ ତ ।
ଏମନ୍ତ ବିଚାର ସେ ବେନି ଜନ କଲେ
ସେଠାରେ ମାରୁତି ରହିଣ ଶୁଣିଲେ ।
ମନେ ମନେ ହନୁ କଲାକ ବିଚାର
ଆଗହୁଁ ବିଧାତା ଉପାୟ କରିବାର ।
ଏମନ୍ତ ବିଚାରି ହନୁ ପୂର୍ବଦିଗକୁ ଗଲା
ଉତ୍ତର ଦିଗ ଦେଖନ୍ତେ ମେଲା ସେ ଦେଖିଲା ।
ଉତ୍ତର ଦିଗଠାରୁ ସିନ୍ଧୁକୂଳ ଯାଏଁ
ମେଲା ଅପନ୍ତରା ଯେ ଅଟଇ ବାଲିମୟେ ।
ଧବଳାଙ୍ଗୀ ନଦୀ ଯେ ବହିଯାଏ ପୁଣି
ଚାରି ଦିଗକୁ ମାଡ଼ିଣ ଆସଇ ସେ ପାଣି ।
ଦେଖି କରି ମାରୁତି ପରମ ତୋଷ ହେଲା
ଏହି ଦ୍ୱାରେ ଯିବାକୁ ହୋଇବ ଯେ ଭଲା ।
ଏମନ୍ତ ବିଚାରି ମନରେ ହନୁମନ୍ତ
ଉତ୍ତରଦ୍ୱାରେ ଯାଇ ମିଳିଲା ତୁରିତ ।
ଦେଖିଲା ହନୁମନ୍ତ ଦ୍ୱାରେ ହସ୍ତୀ ଛିଡ଼ା
ସୁବର୍ଣ୍ଣରେ ନିର୍ଭା ଯେ ହୋଇଛି ନାଗଯୋଡ଼ା ।
ମାରୁତିକି ଦେଖି ସେ ଗରଜନ କଲେ
ତିନିରାବ ଦେଇଣ ନିର୍ବର୍ତ୍ତି ରହିଲେ ।
ଦେଖିଣ ମାରୁତି ଘୁଞ୍ଚିଣ ତହିଁ ଗଲା
ସମୁଦ୍ର କୂଳରେ ପରବେଶ ହେଲା ।
ଦେଖିଲା କାକ ଗୃଧ୍ର ଅନେକ ଛନ୍ତି ରହି
ହସ୍ତୀଙ୍କର ପ୍ରାୟ ଗୃଧ୍ର ପକ୍ଷୀ ଦିଶେ ତହିଁ ।
ହନୁକୁ ଦେଖି କରି ସେମାନେ କଥା ହୋନ୍ତି
ଅଇଲା ଏଠାକୁ ରାମଦୂତ ମର୍କଟଟି ।
ହୋଇବ ଅନର୍ଥ ଏଥି ଜଣାଗଲା ଏବେ
କାକବୋଲେ ରାମ ଜିଣିବେ ଦୈତ୍ୟ ନାଶ ଯିବେ ।
ତେବେ ସେ ଲଙ୍କାପୁରେ ରାଜା ବିଭୀଷଣ
ତାର ଶିରେ ମୁକୁଟ ବାନ୍ଧିବେ ରାମ ରାଣ ।
ସାତଦିନ ଉତାରୁ ରାବଣ ଭାଇ ଯିବ
ଶ୍ରୀରାମ ଚରଣରେ ଶରଣ ପଶିବ ।
ତେବେ ସେ ଲଙ୍କାକୁ ଆସିବେ ଚାପଧାରୀ
ସୁବଳୟା ଗିରିରେ ରହିବେ ଠାବ କରି ।
ଗୃଧ୍ର ପକ୍ଷୀ ବୋଇଲା କୁଆ ନୁହେଁ ଜଣା
ଏକଥା ନୁହଇ ମୋ ମନ ହେଲା ଊଣା ।

ବାୟସ ବୋଇଲା ଶୁଣ ମୋର ଠାରୁ
ଶ୍ରୀରାମ ଅଟନ୍ତି ଯୁଦ୍ଧକୁ ହନ୍ତାକରୁ ।
ଏକା କାଣ୍ଡକରେ ବାଳିକି ବଧ କଲେ
କିଷ୍କିନ୍ଧାରେ ସୁଗ୍ରୀବକୁ ରାଜା କରାଇଲେ ।
ଏବେ ଲଙ୍କାପୁରକୁ ଭେଦିଲେ ହନୁମନ୍ତ
ତିନିଦିନେ ଦେଖିବୁ ଯୁଦ୍ଧର ବିଧାନ ତ ।
ଅନେକ ଅସୁରଙ୍କୁ ମାରିବ ମାରୁତି
ସୀତାଙ୍କୁ ଠାବ କରି ଯିବ ସେ ତଡ଼ତି ।
ଶ୍ରୀରାମର ଆଗରେ ବାରତା କହିବେ
ତେବେ ସେ ଚାପଧାରୀ ଲଙ୍କାକୁ ଆସିବେ ।
ମାସେ ସତାଇଶ ଦିନ ଏଠାରେ ହେବ ରଣ
ଏମନ୍ତ ବୋଲି ବାୟସ ବୋଲଇ ବଚନ ।
ଶୁଣିଣ ହନୁମନ୍ତ ହରଷ ହୋଇଲା
ସେଠାରୁ ମାରୁତି ବେଗେ ଚଳିଗଲା ।
ସମୁଦ୍ର କୂଳେ କୂଳେ ଚଉକତି ଫେରେ
ଉତ୍ତର ପଶ୍ଚିମେ ଯେ ଦକ୍ଷିଣ ଦିଗରେ ।
ପୂର୍ବଦିଗ ବୁଲି ହନୁ ଉତ୍ତରେ ଦମ୍ଭ ହେଲା
ରାମନାମ ପଦକୁ ହୃଦରେ ଘୋଷିଲା ।
ସମୁଦ୍ର ଚଉକତି ଫେରେ ତିନିଭାଗ
ସବୁ ବୁଲି ଦେଖଇ ପବନ ତନୁଜ ।
ଆଗରେ ଦେଖିଲା ସୁବର୍ଣ୍ଣ ପର୍ବତ
ସେଥିପରେ ବିଶ୍ରାମ ନେଲା ହନୁମନ୍ତ ।
ସେ ଗିରି ପରେ ବସିଣ ଲଙ୍କାକୁ ଦୃଷ୍ଟି ଦେଲା
ଧନ୍ୟ ଏ ଲଙ୍କାଗଡ଼ ମନରେ ବିଚାରିଲା ।
ସପତ ପୀଢ଼ରେ ବସିଛି ଲଙ୍କା ଦେଶ
ତିନି ପାଖେ କନକ ଲତା ଯେ ବିଶେଷ ।
ତାର ଚଉପାଶରେ ସନ୍ଧି ଅଛି ବେଢ଼ି
ପାହାଡ଼ ସମାନରେ ମାରଇ ଲହଡ଼ି ।
ବନର ଭିତରେ ନଦୀ ନଦ ପୂରି ରହି
ଦେଖିକରି ହନୁମନ୍ତ ପରମ ତୋଷ ହୋଇ ।
ବିଚାରିଲେ ଏ ସ୍ଥାନରେ ରହି ଯୁଝିବାକୁ
ଉତ୍ତମ ସ୍ଥାନ ହୋଇଛି ଠଣା କରିବାକୁ ।
ସୈନ୍ୟବଳ ସମସ୍ତେ ଏଠାରେ ରହିବେ
ଏହି ସ୍ଥାନେ ଶ୍ରୀରାମ ଯୁଦ୍ଧ ଯେ କରିବେ ।
ଏମନ୍ତ ବିଚାରି ହନୁ ସୁବଳ ଗିରିପରେ
ଦେଖିଲା ଫଳ ମୂଳ ଅଛଇଁ ଅପାରେ ।
ଏମନ୍ତ ବିଚାରି ଯେ ଲଙ୍କାକୁ ପୁଣ ଚାହିଁ
ସୁବର୍ଣ୍ଣମୟ ଲଙ୍କା ଆଲୋକ ଦିଶଇ ।
ନଦୀ ପୁଷ୍କରିଣୀମାନ ସେଠାକୁ ଦିଶଇ
ମୁଖରାବ ଚହଳରେ ଶବଦ ଶୁଭଇ ।

ମେଘନାଦ ପାଚେରୀ ସୁନ୍ଦର ସୁର୍ଣ୍ଣମୟେ
ପକ୍ଷୀମାନେ ଉପରେ ବଳିଲେ ଉଡ଼ି ନୁହେ ।
ଦ୍ୱାରମାନଙ୍କରେ ଅଟ୍ଟାଳି ଚାଙ୍ଗୁ ଫେର
କାଙ୍ଗଲାମାନ ବସିଅଛି ଯେ ଅପ୍ପାର ।
ଠାବେ ଠାବେ ଠଣା ଯେ ଚାରି ଦ୍ୱାରମାନ
ବସି କରି ଯୁଝିବାକୁ କରିଛି ଦିବ୍ୟସ୍ଥାନ ।
ବାଘ ମୁହିଁ ଶାଙ୍କୁଳୀ ପଡ଼ିଛି ନିଶୁଣୀ
ସଜ କରି ବସିଛି ସେଥିରେ ଛିଟିକିଣି ।
ଠଣାରେ ପ୍ରତିହାରୀ ପଦାତି ଜଗିଛନ୍ତି
ସଦାବେଳେ ସେମାନେ ଚହଳ କରୁଛନ୍ତି ।
କଟକ ଶୋଭାବନ ଦିଶେ ଶିରୀବନ୍ତ
ଦ୍ୱିତୀସ୍ୱର୍ଗ ଜାଣି ସେ ଦିଶେ ଶୋଭାବନ୍ତ ।
ଘରେ ଘରେ ସ୍ୱର୍ବର୍ଣ୍ଣ ନବରତ୍ନେ କମ
ମନ୍ଦିର ଲେପିଛନ୍ତି ଘେନିଣ ଚତୁଃସମ ।
ଅଗ୍ରଗନ୍ଧ ଚୂରିକରି ଦେଇଛନ୍ତି ଚିତା
କର୍ପୂର ଗୁଣ୍ଡି ମୁରୁଜ ଲିହନ୍ତି ବନିତା ।
ଦ୍ୱାରେ ବୃତପତ୍ର କଦଳୀ ବୃକ୍ଷମାନ
ମର୍କତର କଳସ ସଙ୍ଗେ ବିତପନ ।
ନାନା ବର୍ଣ୍ଣରେ ନେତ ଉଡ଼ଇ ଘରଘର
ମଙ୍ଗଳ ଦିଶଇ ଯେ ସବୁଙ୍କରି ଘର ।
ଦର୍ପଣର ଚାମରେ କୁସୁମ ମଣ୍ଡିତ
ମେଡ଼ ମଣ୍ଡପ ଜଗତି ଦିଶଇ ବହୁତ ।
ପୁଷ୍ପର ବନମାନେ ଦିଶନ୍ତି ଶୋଭାବନ
ପିକ କାକ ଶୁକ ରାବନ୍ତି ଘନ ଘନ ।
ଦେବତାଙ୍କ ଆଳରେ ଶୁଭଇ ଭେରି ତୂରି
କି ଜାଣି ପଟାନ୍ତର ସ୍ୱର୍ଗର ଦେବପୁରୀ ।
ପାତ୍ରଙ୍କର ଉଆସ ରାଜାଙ୍କ ନବର
ଆବର ବିଶେଷେ ଯେ ଦୋଷାଧୁଙ୍କ ଘର ।
ବାହାରକୁ ଦିଶଇ ଅତି ଶୋଭାବନ
ଦେଖି କରି ପ୍ରଶଂସା କରଇ ହନୁମାନ ।
ସାଧୁ ସାଧୁ ରାଜା ତୁରେ ଅଟୁ ଦଶଶିରୀ
ଏପୁରକୁ ଶୋଭା ସିନା ଶଙ୍ଖଚକ୍ରଧାରୀ ।
ନାହିଁ ଯାକୁ ପଟାନ୍ତର ମର୍ତ୍ତ୍ୟପୁରେ ସ୍ଥାନ
ବାବୁରେ ରାବଣ ତୋର ମହିମା ଅଟେ ଧନ୍ୟ ।
ଏ ସମ୍ପଦ ଭୋଗ କରିବାକୁ ତୁ ଛାଡ଼ିଲୁ
ଏଡ଼େ ବଡ଼ ପଣ ଥାଉ ଅଧର୍ମକୁ ଗଲୁ ।
ଜଗତରେ ଅଜୟ ତୁ ପାଇଥିଲୁ ବର
ଶ୍ରୀରାମ ଘରଣୀକୁ ଆଣିଲୁ ପାମର ।
ତେଣୁ ଏ ପୁର ତୋତେ ପ୍ରାପତ ନୋହିବ
ଏପରି ପୁର ତୋର ଅଗ୍ନିରେ ଭସ୍ମ ହେବ ।
ଅକାରଣେ ମରଣ ପାଇବେ ଏଥି ଲୋକ
ଏଡ଼େ ହୀନବୁଦ୍ଧି ତୋର ଅସୁର ନାୟକ ।
ଏସନ ଭାଳନ୍ତେ ଯାମିନୀ ଶେଷ ହେଲେ
ପୂର୍ବଦିଗେ ଦିନମଣି ଉଦୟେ ହୋଇଲେ ।
ଦେଖି କରି ମାରୁତି ମନରେ ବିଚାରଇ
ଆଜି ସନ୍ଧ୍ୟା ହୋଇଲେ ଲଙ୍କାକୁ ଯିବି ମୁହିଁ ।
ଦିବସରେ ଗଲେ କଥା ହୋଇବ ପ୍ରଘଟ
ସୀତାଙ୍କୁ ଠାବ ନ କଲେ ସକଳ ଯିବ ନଷ୍ଟ ।
ରଜନୀରେ ଗଲେ ମୁଁ ଖୋଜିବି ସର୍ବପୁରୀ
ଶ୍ରୀରାମ ଘରଣୀଙ୍କି ଦେଖିଲେ କୁଶଳ ମୋହରି ।
ଏମନ୍ତ ବିଚାର ମନରେ ହନୁ କରି
ସାମାନ୍ୟ ରୂପ ଧରି ଗିରିରେ ବିହରି ।
ତରୁବନ ଲତାମାନେ ଦେଖେ ହନୁମନ୍ତ
ପାଚିବାର ଫୁଟିବାର ବୃକ୍ଷ ଯେ ବହୁତ ।
ଫଳ ଭରେ ଗିରିପରେ ବୃକ୍ଷମାନେ ଲୋଟି
ଦେଖିକରି ହନୁମାନ ମନରେ ସନ୍ତୋଷଟି ।
ଖାଲ ଖଣା ସରହ୍ରଦ ସେଥିରେ ଦେଖିଣ
ଏକକୋଟି ଗିରି ଯେ ସହସ୍ର ପ୍ରକାରେଣ ।
ସେ ଗିରି ସ୍ଥଳି ଗୋଟି ଚଉଦ ଯୁଣ ଅଟେ
ଦୁଇଯୁଣ ଉଚ୍ଚ ଯେ ଓସାର ପ୍ରକଟେ ।
ସବୁଠାରେ ବର୍ତ୍ତୁଳ ସ୍ଥାନ ଅଟେ ଜାଣ
ଶୋଇବା ବସିବାକୁ ଏ ଉତ୍ତମ ସ୍ଥାନ ।
ଦେଖିଣ ମାରୁତି ଆନନ୍ଦ ମନ ହେଲା
ଆଗହୁଁ ବିଧାତା ଯେ ଏ ସ୍ଥାନ ନିର୍ମା କଲା ।
ଠଣାମାନ ସେଥିରେ ଅଛି ଯେ ଆଡ଼ ହୋଇ
ରହି ଯୁଝିବାକୁ ପୁଣି ଭିଆଇଛି ବିହି ।
ଅନେକ କନ୍ଦମୂଳ ଅଛଇଁ ଗିରିରେ
ନଟିକାଳ ଫଳ ଯେ କଳିତ ନ ପାରେ ।
ଆମ୍ବ ପଣସ ଯେ କଦଳୀ ଅନେକ
କେନ୍ଦୁ କରମଙ୍ଗା କଇଁଥ ଭଇଁଚ ।
ଖଜୁରୀ ଟଭା ଜମକା ନାରଙ୍ଗ କରୁଣା
ଏମନ୍ତ ଅନେକ ଫଳ ସେ ବନେ ଫଳେ କିନା ।
ଜାଇପତ୍ର ନାଗେଶ୍ୱର ଚମ୍ପା ଯେ ବକୁଳ
ମଲ୍ଲୀ ମାଳତୀ ଅଇଁଳା ନାନା ଜାତି ଫୁଲ ।
ରଙ୍ଗ କଳା ଧଳା ଯେ ବସନ୍ତ ନେଳି ବର୍ଣ୍ଣ
ସୁବାସ କରନ୍ତି ପୁଷ୍ପ ଗିରିଯାକ ପୁଣ ।
ଚନ୍ଦନ ଅଗୁରୁ ଯେ କର୍ପୂର କସ୍ତୁରୀ
ନାନା ଦ୍ରବ୍ୟ ସେ ବନରେ ରହିଅଛି ପୂରି ।
ଦେଖି କରି ମାରୁତି ହରଷ ହୋଇଲା
ଏ ଗିରିରେ ରାମବିଜେ କରିବେ ବିଚାରିଲା ।

ଆଗରୁ ଜାଣିଣ ଦଇବ ଅଛି ସଞ୍ଚି
ଏସନ ବନ ଗୋଟି ନେତ୍ରରେ ନାହିଁ ଦେଖି ।
ଏମନ୍ତେ ବିଚାରି ହନୁଗିରିରେ ବୁଲେ ପୁଣ
ଫଳମୂଳ ଖାଇଣ ହୋଇଲା ସୁସ୍ଥ ମନ ।
ଏମନ୍ତେ ବନଗିରି ବୁଲିଣ ଠାବ କଲା
ଲଙ୍କାର ଆୟତନ ବାହାରେ ବୁଲିଲା ।
ସୁବଳୟା ଗିରିକି ଦେଖିଲା ଯାଇ ପୁଣ
ଖାଲ ଖଣାରେ ଦେଖିଲା ନିର୍ମଳ ଜଳ ଜାଣ ।
ସେ ପର୍ବତ ତଳରେ ନଦୀ ଯାଏ ବହି
ସୁସ୍ୱାଦୁ ନିର୍ମଳ ଯେ ପାତାଳ ଜଳ ସେହି ।
ଦେଖିକରି ମାରୁତି ପରମ ତୋଷ ହେଲା
ଧନ୍ୟ ବିଧାତା ଏହା ଭିଆଇଛୁ ବୋଇଲା ।
ଏ ସ୍ଥାନରେ ଶ୍ରୀରାମ କରିବେ ନିଶ୍ଚେ ଠଣା
ଏ ସ୍ଥାନରେ ସୈନ୍ୟବଳ ହୋଇବେ ଫୁଲଣା ।
ସମସ୍ତ ବୁଲି ଦେଖନ୍ତେ ଦିବସ ଶେଷ ହେଲା
ମେରୁ ନିକଟେ ମିଳିଲେ କଶ୍ୟପର ବଳା ।
ଏହି ସମୟରେ ଆଦିତ୍ୟ ଅସ୍ତ ହେଲା
ଜଗତ ସଂସାର ତିମିର ଆଚ୍ଛାଦିଲା ।
ସନ୍ଧ୍ୟା ସମୟରେ ତହିଁ ଶୁଭେ ଶଙ୍ଖ ଧ୍ୱନି
ଦଇତେ ହୋମ କରି ପୂଜନ୍ତି ଯେ ଅଗ୍ନି ।
ରାଜାର ସିଂହଦ୍ୱାରେ ବୀର ତୁର ବାଜେ
କିଜାଣି ପଟାନ୍ତର ଶରତ ମେଘ ଗର୍ଜେ ।
ଦୀପ ଦିହୁଡ଼ା ଯେ ଲାଗିଲା ଅପାର
ଠଣା ଆବୋରି ଯେ ରହିଲେ ପୟେକାର ।
ଯେତେ ଲୋକ ଗଡ଼ରୁ ବାହାର ହୋଇଲେ
ରଜନୀ ହେବାରୁ ସେ ଭିତରେ ପଶିଲେ ।
ଗୋରୁ ଗାଈ ମହିଷୀ ମେଷ ଯେ ପଶନ୍ତେ
ମହାଘୋର ଶବଦ ଶୁଭଇ ଅନୁବ୍ରତେ ।
ଗିରି ପରେ ଥାଇଣ ବିଚାରେ ହନୁମାନ
ଏହି ସମୟେ ଲଙ୍କାକୁ କରିବି ଗମନ ।
ବିଳମ୍ବ ହୋଇଲେ କବାଟ ପାଡ଼ିବେ
ଘାଟ ବାଟ ଦାଣ୍ଡ ଠଣା ସମସ୍ତ ଜଗିବେ ।
ଦିବସେ ପଶିଲେ ଯେ ହୋଇବ ପ୍ରକଟ
କାର୍ଯ୍ୟ ନୋହୁ କଥା ଯେ ହୋଇଯିବ ନଷ୍ଟ ।
ଏତେବେଳେ ଯେବେ ପଶିବି ଲଙ୍କାପୁର
ତେବେ ସବୁ ଭଲ ହୋଇବ ମୋହର ।
ତେବେ ସିନା ଗୁପତେ ଲୋଡ଼ିବି ଘରଦ୍ୱାର
ଏମନ୍ତ ବିଚାରି ସେ ପବନ କୁମର ।
ଶ୍ରୀରାମଙ୍କୁ ସୁମରିଲା ଅଞ୍ଜନାର ସୁତ
ପର୍ବତ ଉପରୁ ଓହ୍ଲାଇଲା ତ୍ୱରିତ ।

ସାମାନ୍ୟ ରୂପ ଗୋଟି ମାରୁତି ଧଇଲା
ଗିରିରୁ ଯାଇ ଦ୍ୱାର ନିକଟେ ମିଳିଲା ।
ମଣି ନାଗ ଯେଉଁ ଅଞ୍ଜନ ଦେଇଥିଲା
ଅଞ୍ଜନକୁ ମାରୁତି ନୟନେ ଲଗାଇଲା ।
କୁହୁକ ମନ୍ତ୍ର ଧୂଳି ଶରୀରରେ ଲେପି
କ୍ଷୁଦ୍ରରୂପ ଧରିଣ ଗମନ କରେ କପି ।
ଗୋରୁଙ୍କର ସଙ୍ଗରେ ଗଡ଼ରେ ପଶିଲା
ଯିବାର ବେଳେ ତାକୁ କେହି ନ ଦେଖିଲା ।
ହାରୀ ପ୍ରତିହାରୀ ପଦାତିକ ରାଇ
କିଏ ସେ ପଶିଲା ଗଡ଼େ ନ ଜାଣିଲା କେହି ।
କି ଅବା ମର୍କଟ ସାଳିଆ ନିଜି ବ୍ୟାଘ୍ର
ଶୁଣିଲେ ନୃପତି ଯେ ହୋଇବେ ବଇରାଗ ।
ଏତେବେଳ ଯାଏଁ କବାଟ ପଡ଼ିନାହିଁ
ଏ କଥାରେ ତୁମ୍ଭେ କେବଣ ଯଶ ପାଇ ।
ଏତେ ବୋଲି ଦ୍ୱାରକୁ ପାଡ଼ିଲା ପ୍ରତିହାରୀ
କିଳିଣୀମାନ କିଳିଲା ଅତି ଯତ୍ନ କରି ।
ଖମ୍ଭମାନ ପୋତି ସେ ତ୍ରିଶୂଳ ମେଲିଦେଲା
ପଥର ଆଉଜାଇଣ ଅର୍ଗଳୀ ପକାଇଲା ।
ଦ୍ୱାର ନିରୋଧିଣ ନିଶ୍ଚଳେ ସର୍ବେ ବସି
ଦ୍ୱାରୀମାନଙ୍କୁ ଚାହିଁ ପ୍ରତିହାରୀ ଭାଷି ।
ଆମ୍ଭ ରାଜା ରାବଣ ଅନ୍ୟାୟ କରୁଛି
ଶ୍ରୀରାମଙ୍କ ଘରଣୀକି ଚୋରାଇ ଆଣିଛି ।
ସେଥିସକାଶେ ଆକଟ ଅଟେ ନୃପବର
ସେ କଥାକୁ ତୁମ୍ଭେମାନେ ବିଚାର ନ କର ।
ଏମନ୍ତ ବଚନ ଯେ ପ୍ରତିହାରୀ କହି
ରଜାର ଆକଟରେ ଚେତାରେ ରହ ତୁହି ।
ଶୁଣିକରି ଦ୍ୱାରୀମାନେ ବଡ଼ ଆକଟ କଲେ
ଚେତାରେ ଦ୍ୱାରୀମାନେ ଯତନେ ଜଗିଲେ ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିଲୋଚନ
ଉତ୍ତର ଦ୍ୱାରବାଟେ ପଶିଲା ହନୁମାନ ।
ପ୍ରଥମରୁ ଲଙ୍କାଗଡ଼ ଚଉପାଶ ବୁଲି
ବନଗିରି ଲତା ଦେଖିଲା ପଦା ଫେରି ।
ଚାରିଦ୍ୱାର ଦେଖିଣ ସୁବଳ ଗିରି ବୁଲି
ସମସ୍ତ ତଥ୍ୟମାନ ସଂଗ୍ରହ କଲା ଚାଲି ।
ଖାଲ ଖଣା ନଦୀ ଯେ ଆବର ସରୋବର
ଏମାନ ସବୁସ୍ଥାନ ଦେଖିଲା ହନୁବୀର ।
ପଶୁ ଖଗମାନଙ୍କର ବିଚାର ଶୁଣିଲା
ତେଣୁ କରି ସେଦିନ ପର୍ବତେ ରହିଲା ।
ରଜନୀ ପ୍ରବେଶନ୍ତେ ପଶିଲା ଲଙ୍କାପୁର
ଦ୍ୱାରପାଳ ଜାଣିଲେ ସେହୁ ପଶିବାର ।

ତେଣୁ ସେ ଉତ୍ତରଦ୍ୱାର ନିବିଡ଼େ ନିରୋଧିଲେ
ଆଉ ତିନିଦ୍ୱାର କଥା କହ ଦେବ ଭଲେ ।
ସେ ଦ୍ୱାରମାନ କିଳି ରୋଧ ହୋଇଥାଇ
ରଜନୀ ଦିବସେ କି ସେ ଦ୍ୱାର ନ ଫିଟଇ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଦିବସରେ ଚାରିଦ୍ୱାର ଫିଟାଇ ଲଙ୍କପତି ।
ଚାରିଦ୍ୱାରେ ଦ୍ୱାରପାଳ ଅଛନ୍ତି ଜଗାଇ
ସରଦାର କରିଛି ପ୍ରତିହାରୀଙ୍କି ତହିଁ ।
ଚାରିଦ୍ୱାରେ ସୈନ୍ୟବଳ ନଗ୍ରବାସୀଗଣ
ଆସନ୍ତି ଯାଆନ୍ତି ଯେ ଯାହା ସୁଖେଣ ।
ସନ୍ଧ୍ୟା ହୋଇଲେ ପଡ଼ଇ ଚାରିଦ୍ୱାର ଜାଣ
ରଜନୀରେ ଆକଟ କରଇଁ ରାବଣ ।
ଏହିରୂପେ ଚଉଦଗଣ୍ଡା ଯୁଗ ଗଲା
ଏଥିରେ ରାବଣର ନଥାଇ ଯେ ହେଳା ।
ନିୟତ ପୂରିବାରୁ ଦେବଙ୍କ ସଙ୍ଗେ କଳି
ପରିବାର ନିମନ୍ତେ ସୀତାଙ୍କୁ କଲା ଚୋରୀ ।
ଆୟୁଷ ସରିଲେ ଯେ ଉତ୍ପାତ ଦେଖାଯାଇ
ଉତ୍ପାତ ହେଲେ ଯେ ବର୍ତ୍ତିବକି କେହି ।
ଦେବେ ଉତ୍ପାତ ହେଲେ ଅସୁରରେ ସାଧ୍ୟ
ଅସୁର ଉତ୍ପାତ ହେଲେ ନାରାୟଣରେ ବଧ ।
ନାରାୟଣ ଉତପାତ ହେଲେ ନିଦ୍ରା ତାଙ୍କୁ ଘାରି
ଅନନ୍ତ ଶୟନରେ ବିଜେ କରନ୍ତି ହରି ।
ମୁହିଁ ଯେତେବେଳେ ଉତ୍ପାତ ଲଭଇ
ଯୋଗ କରିବାରେ ମୋ ମନ ଭୋଳ ହୋଇ ।
ବିଧାତା ଉତପାତ ହେଲାବେଳେ ଜାଣ
ସଂସାର ଚିନ୍ତା ସବୁ ଛାଡ଼ଇ ତକ୍ଷଣ ।
କେତେବେଳେ ପ୍ରଜାପତି ସଂସାର ପାଳଇ
ଗର୍ବ ଶାନ୍ତି ହେଲେ ପୁଣ ସନ୍ଥକୁ ଭଜଇ ।
ଧରଣୀ ଉତ୍ପାତ ହେଲେ ବାସୁକୀ ଶିରଗରୁ
ବାସୁକୀ ଉତ୍ପାତ ହେଲେ ଅଷ୍ଟନାଗ ମେରୁ ।
ଛପନ କୋଟି ଜୀବ ଯେତେ ଉତ୍ପାତ ହୋଇ
ରବିର ତନୟ ଶନି ତାହାଙ୍କୁ ମାରଇ ।
ରବିର ଉତ୍ପାତ ହେଲେ ମେଘ ଭାଙ୍ଗେ ତେଜ
ରଜନୀ ଉତ୍ପାତ ହେଲେ ଚନ୍ଦ୍ର ହ୍ରନ୍ତି ତେଜ ।
ଚନ୍ଦ୍ର ଉତ୍ପାତ ହେଲେ ବଢ଼ଇ ଛିଡ଼ଇ
ଏ ରୂପେ ବାସୁଦେବ ଆଗରୁ ଭିଆଇ ।
ପାର୍ବତୀ ବୋଇଲେ ଶୁଣ ତ୍ରିଲୋଚନ
ଚାରିଦିଗେ ଅସୁରେ ଯେ କରନ୍ତି ଗମନ ।
କେତେବେଳେ ଆସନ୍ତି ଯାଆନ୍ତି ସେ ପୁଣ
ରଜନୀରେ ନିରୋଧ ଦ୍ୱାରମାନ ଜାଣ ।
ବାହାରେ ରହନ୍ତି କି ଭିତରକୁ ଯାନ୍ତି ।
ସେ କଥା ମୋର ଆଗେ କହ ପଶୁପତି ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ଅସୁରମାନେ ଦ୍ୱୀପମାନଙ୍କୁ ଯାନ୍ତି ଫେରି ।
ରଥମାନ ଚଢ଼ିଣ ସମୁଦ୍ର ତରିଯାନ୍ତି
ମନଇଚ୍ଛା ପୂରିଲେ ଫେରିଣ ଆସନ୍ତି ।
ଯାନର ଉପରେ ସେ କରନ୍ତି ଗମନ
ପାଚେରୀ ଡେଇଁ ସ୍ୱପୁରେ ପ୍ରବେଶ ହୋନ୍ତି ଜାଣ ।
ପାର୍ବତୀ ବୋଇଲେ ଏକଥା ଅଟେ ସତ
ହନୁମନ୍ତ କିମ୍ପାଇଁ ନ ଡିଏଁ ପାଚେରୀ ତ ।
ଈଶ୍ୱର ବୋଇଲେ ସେ ନ୍ୟୁନ ରୂପହୋଇ
ପ୍ରବଳ ରୂପ ସିନା ପାଚେରୀ ଡେଇଁଯାଇ ।
ପାର୍ବତୀ ବୋଇଲେ ହନୁ କି କଲା ସେଠାରୁ
ସେକଥାମାନ ମୋ ଆଗେ କହ ମହାମେରୁ ।
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ
ଉତ୍ତର ଦ୍ୱାରେ ହନୁ ଲଙ୍କାପୁରୀ ।
ଦ୍ୱାରକୁ ଡେଇଁଯାଇ ବିଚାରେ ହନୁମନ୍ତ
ଦ୍ୱାରପାଳ ମୋତେ ଦେଖି ହୋଇଲା ସଚେତ ।
ଗଣ୍ଠିରୁ ବାହାର କରି ହସ୍ତେ ଧରେ ସୁନା
ମୁଷାକୁ ପୂରାଇଣ ଢୋଲକୁ ସିଏଁ ସିନା ।
ପେଟର ଭିତରେ ଡାକିନୀ ପୂରାଇ
କିସ କରିବ ମୋତେ ଦ୍ୱାର ସେ ପକାଇ ।
ସନ୍ନିପାତ ମନ୍ତ୍ରତ ପାଣି ପିଆଇଲେ ।
ଏସନକ ପ୍ରକାରେ କାର୍ଯ୍ୟ ଭିଆଇଲେ ।
ନବଗ୍ରହମାନଙ୍କୁ ଧରିବା ବିଚାରି
ଏମନ୍ତ ପ୍ରକାରେ ଅଛି କି ରୂପ ଧରି ।
ଜାଣିଲି ବିବେକ ତ ନାହିଁଟି କାହାରି
ସମସ୍ତେ ଅଛନ୍ତି ତ ଦେଖଣାହାରୀ ପରି ।
ଏତେ ଭାବି ହନୁ ସେଠାରୁ ଚଳିଗଲା
ଲଙ୍କାଦେବୀ ଆସି ତାକୁ ବାଟ ଓଗାଳିଲା ।
ଲଙ୍କାଗଡ଼ ଦେବତାର ନାମ ଅଟେ ତାରା
ସଦା ଦେଉଥାଏ ସେ ଗଡ଼ରେ ପହରା ।
ହନୁକୁ ଚାହିଁଣ ଦେବୀ କରେ ପୁଚ୍ଛା
କେଉଁ ଦେଶେ କପି ତୁରେ ଗଡ଼େ ପଶୁ ନିଶା ।
ତୁ କିମ୍ପା ରାତ୍ରକାଳେ ବୁଲୁ ଲଙ୍କାପୁରୀ
କ୍ରୋଧରେ ଜର୍ଜର ଲଙ୍କାର ଈଶ୍ୱରୀ ।
ଧାଇଁ ଦେବୀ ହନୁକୁ ଧଇଲା ଆକର୍ଷି
ଦେଖିଣ କୋପ କଲା ପବନର ଶିଷି ।
ନିର୍ଘାତ ଶବଦରେ ବିଧାଏ ମାଇଲା
ଛାଡ଼ିଣ ଲଙ୍କାଦେବୀ ମୂର୍ଚ୍ଛାଗତ ହେଲା ।

ଘଡ଼ିଏ ପରିଯନ୍ତେ ଭୂମିରେ ଲୋଟ ଗାଳି
ମନେ ମନେ ଦେବୀ ଈଶ୍ୱରଙ୍କୁ ଭାଳି ।
ମୋତେ ଚିନ୍ତା କରିବାରୁ ଚେତା ସେ ପାଇଲା
ମନରେ ଦୁଃଖ କରି ଉଠିଣ ବସିଲା ।
ସଚେତରେ ହନୁକୁ କହେ ମୃଦୁବାଣୀ
ତୁହି ତ ମାରୁତିରେ କପିକୁଳମଣି ।
ଶ୍ରୀରାମ କାର୍ଯ୍ୟ ନିମନ୍ତେ ଅଇଲୁ କି ଏଥ
ଆଜିଠାରୁ ନିଶ୍ଚୟ ମଲାଟି ଲଙ୍କନାଥ ।
ଶୁଣିଣ ହନୁମନ୍ତ ବଚନ ବୋଇଲା
ତୁ କିଏ ତୋତେ ମୁହିଁ ନ ଚିହ୍ନଇଁ ଭଲା ।
ତୁ କେମନ୍ତେ ଜାଣିଲୁ ମୁଁ ଅଟେ ରାମଦୂତ
ତୁ ଯେବେ ଜାଣୁ ମୋତେ କଟାଳ କି ନିମନ୍ତ ।
ଲଙ୍କାଦେବୀ ବୋଇଲା ଶୁଣରେ ମାରୁତି
ଯେତେବେଳେ ଏଥି ମୋତେ ସ୍ଥାପେ ବେଦପତି ।
ତେତେବେଳେ ମୋତେ କହିଲେ ବିଧାତା
ଏ ଲଙ୍କାରେ ଯେତେବେଳେ ଅସୁର ହୁଏମତା ।
ତେତେବେଳେ ଅସୁରଙ୍କ ଶିରୀ ଯେ ତୁଟିବ
ବାନର ହସ୍ତରେ ତୁ ପାଇବୁ ପରାଭବ ।
ତେବେ ତୁ ଜାଣିବୁ ରାବଣର ଶିରୀଗଲା
ବିଭୀଷଣର ରାଜ୍ୟ ସେହିଦିନୁ ହେଲା ।
ରାବଣ ଛପନ ଗଣ୍ଡାଯୁଗ ଭୋଗ
ମୋତେ ସେକଥା ଆଗରୁ କହିଲେ ଦଇବ ।
ଆନରେ ପରାଭବ ନୋହିବ ମୋତେ ପୁଣ
ତେଣୁ ଜାଣିଲି ଶ୍ରୀରାମ ଦୂତ ନିଶ୍ଚୟେଣ ।
ସେହି କଥା ମୋତେ ପ୍ରାପତ ହେଲା ଆଜ
ତୁହୋ ହନୁମନ୍ତ କର ଦେବ କାର୍ଯ୍ୟ ।
ଧର୍ମରେ ମୁହିଁ ତୋର ଅଟଇ ଜନନୀ ।
ଈଶ୍ୱର ଦେବତାର ଅଟଇ ଘରଣୀ ।
ମୁହିଁ ନ ଜାଣିଣ କଟାଳ ତୋତେ କଲି
ନ ଜାଣିବା ପଣରୁ ପ୍ରଭାବ ପାଇଲି ।
ମୁଁ ଆଉ ତୋତେ ପୁଣ କହିବିରେ କିସ
ଜାଣିଲି ରାବଣର ଗୋତ୍ର ଯିବ ନାଶ ।
ତୁହି ନ ଜାଣି ମୋତେ ପ୍ରଭାବ ବିହିଲୁ
ନ ଜାଣିବା ଦୋଷ ଭୋଗ କରିବୁରେ ବାବୁ ।
ଅନେକ ତ୍ରାସ ତୁରେ ଅର୍ଜିବୁ ଏ ପୁରେ
ଥରେକ ବନ୍ଧାହେବୁ ନାଗପାଶ ଶରେ ।
ଶୁଣି କରି ମାରୁତି ନମସ୍କାର କଲା
ମୋହଠାରେ କୋପଚିତ୍ତ ନୁହ ତୁ ବୋଇଲା ।
ଲଙ୍କାଦେବୀ ବୋଇଲା ମୁଁ ହେବି ପରସନ୍ନ
ନାଶଫାଶୁ ଫିଟିଯିବୁ ପହରେକ ଜାଣ ।

ସୀତାଙ୍କୁ ଠାବ କରି ଶ୍ରୀରାମେ କହିବୁ
ତିନିପୁରରେ ତେବେ ଯଶ ତୁହି ନେବୁ ।
ହନୁମନ୍ତ ବୋଇଲେ ଶୁଣ ଗୋ ଜନନୀ
ଏ ପୁରରେ ରାମନାରୀ ଅଛନ୍ତିକି ପୁଣି ।
ଲଙ୍କ ଦେବୀ ବୋଇଲେ ଅଛନ୍ତି ଜାନକୀ
ଖୋଜିଣ ଠାବ କର ଯାଇଣ ମାରୁତି ।
ଯେବେଣ ଦିନ ରାବଣ ସୀତାଙ୍କୁ ଆଣିଲା
ସେକଥା ମୋର ମନେ ଅଛଇ ଜାଣିଲା ।
ଦଶଶିର ଆୟୁଷ ସେଦିନୁଁ ହେଲା ଶେଷ
ଆଗରୁ ଏହା ଭ୍ୟାଇ ଅଛି ଲୋକଈଶ ।
ଏତେ ବୋଲି ଲଙ୍କଦେବୀ ଅସୁରୀ ଦେହଲେଛି
ପ୍ରସନ୍ନରେ ବିଘ୍ନସେନୀ ରୂପ ହେଲେ ସେଟି ।
ସିଂହ ଯେ ବାହନ ହୁମ୍ଭେ ଆସି ମିଳି
ସିଂହ ଉପରେ ଦେବୀ ତକ୍ଷଣେ ବିଜେ କରି ।
ମାରୁତି ବୋଇଲେ ଶୁଣ ଗୋ ଜନନୀ
ରାବଣ ତ ଜାନକୀଙ୍କୁ ଆଣିଲା ଯାଇ ପୁଣି ।
ରାମନାରୀ ତାହାକୁ କି ଭବୁସି ହୋଇଲା
ଏ ଲଙ୍କାଗଡ଼ରେ ସେ କେମନ୍ତେ ରହିଲା ।
ଲଙ୍କା ଦେବୀ ବୋଲେ ଶୁଣରେ ହନୁମନ୍ତ
ଆସିଲା ବେଳୁ ସତୀ ହୋଇଛି ରୂପବନ୍ତ ।
ଯେତେବେଳେ ରାବଣ ତାହାକୁ ଦେଖିଲା
ସେତେବେଳେ ଜାନକୀ ଅଶୌଚରେ ଥିଲା ।
ଅଶଉଚ ସୀତାଙ୍କୁ ରାବର ଦେଖେ ଯେଣୁ
ରାବଣକୁ କାଳ ଆସି ଘୋଟିଲାକ ତେଣୁ ।
ମରିବାର କାଳରେ ବୁଦ୍ଧି ବଣା ଜାଣ
ସତୀକି ବଚନ ଯେ କହିଲା ରାବଣ ।
ସେଠାରୁ ଜାନକୀଦେବୀ ରାବଣକୁ କହି
ତୋତେ ମାରିବା ପାଇଁ ଶ୍ରୀରାମ ଜନ୍ମ ହୋଇ ।
ଏବେ ତୁ ପଳାଅ ନ ରହ ଏହିସ୍ଥାନ
ଶ୍ରୀରାମ ଅଇଲେ ତୋତେ କରିବେ ନିଧନ ।
ରାବଣ ବୋଇଲା ମୁଁ ଏକାରେ ସିନା ମରି ।
ଅନେକ ସନ୍ତାନ ଯେ ଅଛନ୍ତି ମୋହରି ।
ତୁ ଯେବେ ଲଙ୍କାକୁ ବିଜୟ କରିବୁ
ଅସୁର ବଳଙ୍କୁ ତୁହି ମରାଇବୁ ।
ତେବେ ସିନା ପୃଥ୍ୱୀ ହୋଇବ ଉଶ୍ୱାସ
ଶ୍ରୀରାମ ଜନ୍ମିବାର ହେବ ପଉରୁଷ ।
ଜାନକୀ ବୋଲେ ମୋତେ ନେଲେ ତୁ ମରିବୁ
ସେତେବେଳେ ତୋତେ କେହି ନ ରଖିବ ବାବୁ ।
ରାବଣ ବୋଇଲା ମୁଁ ସତ୍ୟେକଲି ଜାଣ
ମୋହର ମରିବାର ନିଶ୍ଚେ ମାତ ପୁଣ ।

ଜାନକୀ ବୋଇଲେ ମୁଁ ନିଶ୍ଚେ ଲଙ୍କା ଯିବି
ଏତେ ବୋଲି କ୍ରୋଧ ଯେ ହେଲେ ସୀତାଦେବୀ ।
ପ୍ରଖର ଅଗ୍ନି ଜାନକୀ ଶରୀରୁ ଜାତ ହେଲା
ରଥପରେ ବସିଣ ଲଙ୍କାକୁ ଅଇଲା ।
ତାହାର ତେଜରେ ରାବଣ ତଳେ ରହି
ଛୁଇଁବାକୁ ଯୋଗ୍ୟ ଯେ ଅସୁର ନ ଜାଣଇ ।
ତଳପୀଢ଼େ ରାବଣ ଉପରେ ଠାକୁରାଣୀ
ଶତେ ରବିର ତେଜ ତେସନେ ଜଳେ ଜାଣି ।
ରାବଣ ଭୟ କରି ଘରକୁ ନ ନେଲା
ଅଶୋକ ବନରେ ରଖି ଅସୁରୀ ଜଗାଇଲା ।
ଏଥୁ ଅନନ୍ତରେ ପାଞ୍ଚଦିନ ଗଲା
ଶ୍ରଦ୍ଧାସ୍ନାନ କରିବାର ସତୀର ଦିନ ହେଲା ।
ତ୍ରିଜଟା ହସ୍ତରେ ଡକାଏ ଜାନକୀ
ଶୁଣି କରି ରାବଣ ଅଇଲା ଝଟତି ।
ରାଣୀହଂସ ତାହାର ସକଳ ଘେନିଣ
ଅଶୋକ ବନରେ ସେ ମିଳିଲା ତତକ୍ଷଣ ।
ରାବଣ ଦେଖିଲା ଜାନକୀ ଅଗ୍ନିରେ ସ୍ନାନ କଲା
ତାହା ଦେଖି ରାବଣ ସେଠାରୁ ପଳାଇଲା ।
ତାର ସଙ୍ଗେ ରାଣୀ ହଂସ ଗଲେ ପଳାଇ
ଲଙ୍କାରେ ହାଲହୋଳି ପଡ଼ିଲା ସବୁଠାଇଁ ।
କେ ବୋଲଇ ରାବଣ ଆଣିଛି କେଉଁ ନାରୀ
ଅଗ୍ନି ଲଗାଇଣ ସେ ସେଥିରେ ସ୍ନାନ କରି ।
ଶୁଣି କରି ଅସୁର ଅସୁରୁଣୀଗଣ
ବିଚାରିଲେ ଏ ପୁରରେ ପଡ଼ିଲା କଷଣ ।
କେ ବୋଲଇ ଏ ନାରୀ ତ ଲଙ୍କାକୁ ନାଶିବ
କେ ବୋଲନ୍ତି ରାବଣ ନିଶ୍ଚୟ ମରିବ ।
କେ ବୋଲଇ ଅସୁର ମରିବେ ବହୁତ
କେ ବୋଲନ୍ତି ଲଙ୍କାକୁ ଆସିବେ ରଘୁନାଥ ।
ଏମନ୍ତ ବିଚାର ବସି ସକଳେ କରନ୍ତି
ଏକଥାମାନ ତୁହି ଶୁଣରେ ମାରୁତି ।
ମନ୍ଦୋଦରୀ ପୁରେ ନାରଦ ଆସି ପୁଣ
ରାବଣ ମରିବାର କହିଲେ କାରଣ ।
ତେଣୁ ସେ ସତୀବ୍ରତ ସକଳ ରାଣୀ ତେଜି
ବିଭୀଷଣ ସଙ୍ଗରେ ପ୍ରୀତିକଲେ ମଜି ।
ତେଣୁ ସେ ରାବଣର ଆୟୁଷ ହେଲା ହତ
ଶ୍ରୀରାମ ଅଇଲେ ତ ମରିବ ଦଶମାଥ ।
ଏତେ କହି ନାରଦ ନିଜପୁରେ ଗଲା
ଶୁଣି କରି ହନୁମନ୍ତ ହରଷ ହୋଇଲା ।
ବିଚାରଇ ମନରେ ପବନର ସୁତ
ଜାନକୀ ଥିବାର ମିଳିଲା ତ ତଥ୍ୟ ।
କି ଅବା ଲଙ୍କାଦେବୀ ମୋତେ ଭୁଲାଇଲା
ମାଡ଼ ଖାଇବାରୁ କି ରାଗରେ କହିଲା ।
ଆଜ ମୁଁ ଲଙ୍କାଗଡ଼ ଖୋଜିବି ପ୍ରତିଘର
ନ ପାଇଲେ ବନ ଲୋଡ଼ିବି ସତ୍ୱର ।
ଏମନ୍ତ ବିଚାର ମାରୁତି ମନେ କଲା
ଦେବୀ ଯିବାରୁ ସେଠାରୁ ବେଗେ ଚଳିଗଲା ।
ଏଥୁଅନନ୍ତରେ ଶୁଣ ଗୋ ପାର୍ବତୀ
ସନ୍ଦେଶ ପାଇ ତୋଷ ହୋଇଲା ମାରୁତି ।
ପ୍ରବଳ ବଳବନ୍ତ ପବନର ସୁତ
ଦେବୀଠାରୁ ବାରତା ପାଇଲା ସଂକେତ ।
ଲଙ୍କାଗଡ଼େ ପଶିଣ ଜାନକୀ ଖୋଜଇ
କନ୍ଦି ବିକନ୍ଦି ମାନ ସବୁ ସେ ଭେଦଇ ।
ଇନ୍ଦୁରକୁ ମାର୍ଜାରୀ ଯେମନ୍ତରେ ଦିଶି
ମଞ୍ଜାରୀକୁ ଶ୍ୱାନ ତେମନ୍ତ ପ୍ରାୟେ ଦିଶି ।
ଶ୍ୱାନକୁ ଶାର୍ଦ୍ଦୁଳ ବ୍ୟାଘ୍ରକୁ ମତ୍ତହସ୍ତୀ
ହସ୍ତୀକୁ ଯେମନ୍ତେ ଗଣ୍ଡାକୁ ସିଂହ ଖେଦି ।
ଅସୁରକୁ ମନୁଷ୍ୟ ଚୋରକୁ ଦଣ୍ଡୁଆସି
ଦୋଷାଧିକୁ ତସ୍କର ପରାଏ ସେ ଦିଶି ।
ଉଲୁକ ବିଦ୍ୟା ଗୋଟି କରିଛି ଭିଆଣ
ଧନ୍ୟରେ ମଣିନାଗ ପର୍ବତ ସିହାଣ ।
ଘରେ ଘରେ ପଶିଣ ଲୋଡ଼ଇ ପୁରେ ପୁର
ନିଶ୍ଚେଷ୍ଟ ହୋଇ ଶୋଇ ଅଛନ୍ତି ଅସୁର ।
ସୁବର୍ଣ୍ଣର କଟକ ସବୁ ରତ୍ନମୟ
ରାତ୍ର ତାକୁ ଦିଶଇ ଦିବସ ପରାୟ ।
ହାଟ ବାଟ କନ୍ଦି ବିକନ୍ଦି ବାହାର
ଖୋଜଇ ହନୁମନ୍ତ ପଶିଣ ସବୁ ଘର ।
ପ୍ରାସାଦ ଅଟାଳି ଯେ ଦେଉଳ ମଣ୍ଡପ
ଜଗତୀ ବେଢ଼ାଘର ଖୋଜଇ ସମସ୍ତ ।
ନଦୀ ପୁଷ୍କରିଣୀ କୂପ ବାମ୍ପୀ ଯେତେ
ଠାବେ ନ ଛାଡ଼ଇ ପବନର ସୁତେ ।
ଏକ ରଜନୀରେ ନଉସାଗର ଘର ଖୋଜି
ଅସୁରୁଣୀମାନଙ୍କୁ ଚିହ୍ନିଣ ସେ ହେଜି ।
କାହାର ଘରେ ଚନ୍ଦନ କର୍ପୂର ଛେରାପଡ଼ି
କେଉଁଠାରେ ପଲଙ୍କ ଉପରେ ଶଯ୍ୟା କରି ।
କେଉଁଠାରେ ଖଟଦୋଳି ପଲଙ୍କରେ ଢଳି
ଏସନ ଦେଖି ଦେଖି ହନୁମାନ ଚଳି ।
କେଉଁଠାରେ ଅସୁର ଭୂମିରେ ନିଦ୍ରାଯାଇ
କେଉଁଠାରେ ସଉପ ମସିଣା ପଡ଼ିଛଇଁ ।
କେଉଁଠାରେ ହେମ ପଲଙ୍କରେ ଜାଣ
ଅସୁର ଅସୁରୁଣୀ କରିଛନ୍ତି ଶୟନ ।

କେଉଁଠାରେ ମାଣ୍ଡି ମୁଚୁଳା ସଜାଇ
ସେଥି ଉପରେ ଯେ ଶୟନ କରେ କେହି ।
କେଉଁଠାରେ ପାନ ଗୁଆ କରନ୍ତି ଚର୍ବଣ
କେଉଁଠାରେ ଜାଇଫଳ ଚୋବାଉଛନ୍ତି ଜାଣ ।
କେଉଁଠାରେ ଅସୁର ଭୁଞ୍ଜନ୍ତି ଶ୍ରୀଫଳ
କେଉଁଠାରେ କେନ୍ଦୁ ଯେ କଇଁଥ ଆହାରି ।
କେଉଁଠାରେ ଅସୁର ଘରଣୀ କୋଳେ ଧରି
ଭାବ ବିନୋଦରେ ସେ କରନ୍ତି ରସକେଳି ।
କେଉଁପୁରେ ଅସୁର ଘରଣୀ କୋଳେ ଶୋଇ
କେଉଁଠରେ ଅସୁର ଘରଣୀ କଥା କହି ।
କେଉଁଠାରେ କୁମର ଦୁହିତା କରେ ଅଳି
କେଉଁଠାରେ ପୁତ୍ରକୁ ପିତା ଦିଏ ଗାଳି ।
କେଉଁଠାରେ ଅସୁରେ ଭୁଞ୍ଜନ୍ତି ଘୃତ ଅନ୍ନ
କେଉଁଠାରେ ଗୃହସ୍ଥକୁ ଘରଣୀ କରେ ମାନ ।
କେଉଁଠାରେ ମଦମାଂସ କରନ୍ତି ଭୋଜନ
କେଉଁଠାରେ ପଶା ଶକଟା ଖେଳପୁଣ ।
କେଉଁଠାରେ ଅସୁରେ ଦଶବିଂଶ ମିଳି
କେଉଁଠାରେ ଭୋଜନ କରନ୍ତି ମାଂସ ଜାଳି ।
କେଉଁଠାରେ ଗୀତ ହୁଏ କେଉଁଠାରେ କଥା
କେଉଁଠାରେ ରତିରଙ୍ଗ କରଇ ସମଥା ।
କେଉଁଠାରେ ମସାରୀ ଟାଣିଣ ଯେ ଶୋଇ
କେଉଠାରେ ଘର ଜଞ୍ଜାଳ କରେ କେହି ।
କେଉଁଠାରେ ଗୃହସ୍ଥକୁ ଉଠାଉଛି ନାରୀ
କେଉଁଠାରେ ବୋହୂକୁ ଶାଶୁ ଦିଏ ଗାଳି ।
କେଉଁଠାରେ ବାପକୁ ପୁଅ କହେ ବାଣୀ
କେଉଁଠାରେ ଲାଗିଅଛି ଗହଳ ଯେ ପୁଣି ।
ଏମନ୍ତ ପ୍ରକାରେ ଯେ ଲଙ୍କାରେ ନରନାରୀ
ମଞ୍ଜାରୀ ରୂପ ଧରି ହନୁ ଯେ ବିହରି ।
କେଉଁଠାରେ ମହିଁଷୀ କେଉଁଠାରେ ଗୋରୁ
କେଉଁଠାରେ ଗଧ ଶୂକର ଶବଦରୁ ।
କେଉଁଠାରେ ଶ୍ୱାନ ଯେ ଶୃଗାଳ ଶବଦ
କେଉଁଠାରେ ଗୃଧ୍ର ପକ୍ଷୀ କାକ କରେ ନାଦ ।
କେଉଁଠାରେ ବେଶ୍ୟାସ୍ତିରୀ କରନ୍ତି ଗମନ
କେଉଁଠାରେ ଅସୁର ନାଗର ରୂପେ ଜାଣ ।
ଶତେ ପୁଣ ଲଙ୍କାରେ ନିଘଞ୍ଜନ ଘର
ଚାରିଶତ ପୁଣ ଯେ ଚଉକତି ତାର ।
ବୁଲି କରି ମାରୁତି ଦେଖଇ ଘରେ ଘରେ
କେଉଁଠାରେ ସୀତାଙ୍କୁ ନ ଦେଖେ ସେ ପୁରେ ।
କେଉଁଠାରେ ଅସୁରୁଣୀ ମାନେ ଦିବ୍ୟକେଶ
କେଉଁଠାରେ ଅସୁରୁଣୀ ଲଗାଇ ରତ୍ନ ବେଶ ।

କେଉଁଠାରେ ଖଡୁବଳା ଲଗାଇ ଅସୁରୁଣୀ
କେଉଁଠାରେ ବାସପାଣି ପିଅନ୍ତି ଧରି ପୁଣି ।
କେଉଁଠାରେ କୁଙ୍କୁମ ବୋଳି ହୁଅନ୍ତି ନାରୀ
କେଉଁଠାରେ ସିନ୍ଦୂର ଅଞ୍ଜନ ଘେନେ ସ୍ତିରୀ ।
କେଉଁଠାରେ ବିଦ ମୁଦୀ ବାହୁଟି କଙ୍କଣ
କେଉଁଠାରେ ବାଜୁବନ୍ଧ ଲଗାଏ କେ ପୁଣ ।
ଏମନ୍ତ ପରକାରେ ବେଶ ଆନୁଆନ
କେହୁ ଫୁଲ ଲଗାଇଛି ବେଣୀରେ ଯତନ ।
କେହୁ ପାଟ ପିନ୍ଧିଛି କେ ପିନ୍ଧିଛି ପତନୀ
କେହୁ ଝୀନବସ୍ତ୍ର ଯେ ଅଙ୍ଗରେ ଅଛି ଘେନି ।
ଦେଖିକରି ମୋହିତ ହେବେ ମୁନିଜନ
କେ କୋମଳ ଭାଷା କହେ କେହୁ କରେ ଟାଣ ।
କେଉଁ ନାରୀ ବୋଲେ ରାଜା ଅଟେ ହୀନିମାନ ।
ଚୋରାଇ ଘେନି ଆଣିଲା ରାମନାରୀ ଜାଣ
କେଉଁ ନାରୀ ବୋଲେ କେତେ ଯୁବତୀ ନାହାନ୍ତି ।
କେଉଁ ନାରୀ ବୋଲେ ରାଜାର ନୁହଇ ସୁଗତି
କେଉଁ ନାରୀ ଗୃହସ୍ଥକୁ କହେ ମୃଦୁବାଣୀ
ରାବଣ ଲଙ୍କାରେ ଠାକୁର ଅଟେ ପୁଣି ।
ତିନିକୋଟି ପଞ୍ଚାଶ ସହସ୍ର ଅଟେ ନାରୀ
ତିନିପୁର ବାଛିକରି ଆଣିଛି ସୁନ୍ଦରୀ ।
ନାତୁଣୀ ଯେତେକ ତାର ଶୋଭା ଯେ ସୁନ୍ଦର
ଦେଖି ତାକୁ ବିଭାହୁଏ ଦଶାନନ ବୀର ।
କେ ବୋଲନ୍ତି ତାର କଥା ନକହଗୋ ଏବେ
ସ୍ତିରୀମାନଙ୍କୁ ଦୁଃଖ ଦିଅଇ ପ୍ରୀତି ଭାବେ ।
କେଉଁ ନାରୀ ସଙ୍ଗରେ ସେ କରି ଲୀଳାରସ
କେଉଁ ନାରୀକି ନରମେ କହେ ଦଶାଈଶ ।
କେଉଁ ନାରୀ ବୋଲନ୍ତି ସେ ଅଟଇ ଅଧର୍ମୀ
ବଳବନ୍ତ ପଣରେ ଦେବଙ୍କୁ ଦଣ୍ଡେ ପୁଣି ।
କେ ବୋଲଇ ବିଧାତା ଅଟଇ ତାର ଗୁରୁ
ଗୁରୁଙ୍କୁ ଦଣ୍ଡଇ ସେ ଉପ୍ରୋଧ ଛାଡ଼ିବାରୁ ।
କେ ବୋଲେ ରାବଣର କୁଳ ଅଟେ ବଡ଼
ଦେବଙ୍କ କୂଟରେ ସେ ମରିବ ଏଥର ।
କେ ବୋଲଇ ବିଧାତା ନୁହଇ ପୁଣ ସାନ
କେତେ କେତେ ଅସୁରଙ୍କୁ ମାଇଲେ ଦେବଗଣ ।
କେ ବୋଲଇ ମୋତେ ଦିଶୁଛି ଅସାର
ଶ୍ରୀରାମ ହସ୍ତରେ ମରିବ ଦଶଶିର ।
ଘରଣୀ ଯାହାରଟି ଅଗ୍ନିରୁ ଅଧିକଟି
ପକ୍ଷରେ ଅଗ୍ନିରେ ସ୍ନାନ କରେ ସେଟି ।
ତେରମାସ ହୋଇଲା ଭୋଜନ ତାର ନାହିଁ
କ୍ରୋଧରେ ଅଗ୍ନିରୂପ ହୋଇଅଛି ସେହି ।

ରଜନୀ ଦିବସରେ ଏକାପରି ଦିଶେ
ପବନ ଆହାରରେ ଦିବା ରାତ୍ର ବଞ୍ଚେ ।
ସେ ନାରୀକି ଘରଣୀ କରିବ ବୋଲି ଆଣି
ଅଶୋକ ବନରେ ତାକୁ ରଖିଛି ବିଂଶପାଣି ।
ଜଣା ଯାଉଅଛି ସେ ସତୀର ସକାଶେ
ବିଶର୍ବା ତନୟ ନାଶ ଯିବ ନିଶ୍ଚେ ।
କେ ବୋଲଇ ଅଳପ ଦିନରେ ଗୋଳ ହେବ
କେ ବୋଲଇ ସେ ସତୀ କହିଛି ମୃତ୍ୟୁ ଭାବ ।
କେ ବୋଲଇ ଦୁଇମାସ ଦୁଇ ଦିନେ ଜାଣ
ଯମର ପୂରକ ନିଶ୍ଚେ ଯିବଟି ରାବଣ ।
କେ ବୋଲଇ ବିଭୀଷଣ ଏ ଗଡ଼େ ହେବ ରାଜା
କେ ବୋଲେ ରାବଣନାରୀ ହେବେ ତା ଭାରିଯା ।
କେ ବୋଲଇ ଆପେ ମରି ଅନ୍ୟକୁ ମରାଇବ
କେ ବୋଲଇ ଏ ଲଙ୍କା ତ ଅଙ୍ଗାରପୁର ହେବ ।
କେ ବୋଲଇ ଆମ୍ଭର ସରିବ ସୁଖଶିରୀ
କେ ବୋଲଇ ଏ ଦେଶରେ ନ ଥାଇ ଘର କରି ।
ଏମନ୍ତ ବିଚାର ଯେ କରନ୍ତି ନରନାରୀ
ହନୁମନ୍ତ ଶୁଣିଲା ମଞ୍ଜାରୀ ରୂପ ଧରି ।
ମନରେ ବିଚାର କରଇ ମାରୁତି
ଗୁପତରେ ଶୁଣିଲା ଜାନକୀର ରୀତି ।
ରାବଣକୁ ସୀତା ଯେ ନୋହିଲା ଭବୁଷି
କ୍ରୋଧରେ ରାମନାରୀ ଏ ପୁରେ ରହିଅଛି ।
ଭଲାରେ ଜାନକୀ ଜନକ ଦୁହିତା
ଉତ୍ତମପଣ ଯେ କରିଛି ବିଧାତା ।
ଏମନ୍ତ ବିଚାରି ହନୁ ହରଷ ହୋଇଲା
ଲଙ୍କାରେ ସବୁଠାରେ ଖୋଜିବି ଭାବିଲା ।
ଚଉଷଠି ଦାଣ୍ଡ କନ୍ଦି ଯେ ବିକନ୍ଦି
ବାହାର ଭିତର ଖୋଜିଲା ହନୁ ଶୋଧି ।
ନଉସାଗର ଘର ରାତ୍ରକେ ଖୋଜିଲା
ସନ୍ଧି ବିସନ୍ଧିର କଥା ସେଠାରୁ ଜାଣିଲା ।
ସୀତାର ବାରତା ପାଇ ମନେ ହେଲା ତୋଷ
ବିଚାରିଲା ସେନାପତି ରହିଲା ରାଜବଂଶ ।
ଏମନ୍ତ ସମୟରେ ରଜନୀ ଶେଷ ହେଲା
ପୂର୍ବଦିଗେ ଦିନମଣି ଉଦୟ ହୋଇଲା ।
ଦେଖି ମାରୁତି ମନରେ ବିଚାରଇ
ତିନି ଦିବସ ତିନି ରଜନୀ ଗଲା ବହି ।
ମୁହିଁ ଏବେ ଏଠାରୁ ଗୁପତ ହୋଇଯିବି
ସୁସ୍ଥାନ ଦେଖିଣ ମୁଁ ଦିବସ ବଞ୍ଚିବି ।
ଏମନ୍ତ ବିଚାରି ନଗ୍ରରୁ ବେଗେ ଗଲା
ସାରୀ ରୂପ ଧରି ଶାଳ ବନରେ ମିଳିଲା ।

ଶାଳବନ ବୁଲି ସେ ଦେଖେ ସର୍ବସ୍ଥାନ
କୂପ ବାମ୍ପୀ ମଣ୍ଡପ ଜଗତୀ ଭିନ୍ନ ଭିନ୍ନ ।
ସେ ବନ ଦେଖିଣ ଶିଶୁ ବନଗଲା
ଶିଶୁ ଫଳ ଖାଇକରି ସେ ବନେ ବିହରିଲା ।
ପିଣ୍ଡା ପ୍ରାଙ୍ଗଣ ମାନ ଦେଖେ ଭିନ୍ନ ଭିନ୍ନ
ସେଠାରୁ ହନୁମନ୍ତ ଚଳିଲା ପବହନ ।
ଅଗୁରୁ ଚନ୍ଦନ ବନରେ ମିଳିଲା
ନିର୍ମଳ ବନଗୋଟି ନୟନେ ଦେଖିଲା ।
ସେ ବନରେ ବସନ୍ତ ବହଇ ଶୀତଳ
ମଳୟ ଲାଗି ସେ ବନ ସୁଗନ୍ଧ ମଞ୍ଜୁଳ ।
ବୃକ୍ଷଙ୍କର ମୂଳରେ ମର୍କତ ଯେ ବେଦୀ
କର୍ପୂର ଗୁଣ୍ଡି ବୃକ୍ଷ ମୂଳରେ ଯେ ଭେଦି ।
ପନିର ପାଣି ବହେ ସେଥି ନିରନ୍ତର
ଦଣ୍ଡକେ ସେ ବନ ବୁଲିଲା ହନୁବୀର ।
ଶୀତଳ ଲାଗିବାରୁ ସେ ବନରୁ ଗଲା
ମଧୁବନରେ ଯାଇଣ ପ୍ରବେଶ ହୋଇଲା ।
ଦେଖିଲା ବନରେ ଅନେକ ତୋଟାଳିଆ
ଜଗତୀ ଅଟ୍ଟାଳୀ ଯେ ଦିଶୁଛି ସବୁ ନୂଆ ।
ଅନେକ ଦ୍ରୋଣା ଖମ୍ଭ ସେ ବନରେ ଅଛି
ଗନ୍ଧର୍ବା ନଦୀ ଗୋଟି ସେଥିରେ ବହୁଛି ।
ଆମ୍ଭ ପଣସ ଯେ ଅନେକ ନଟିକାଳ
ନାନା ବର୍ଣ୍ଣର ବୃକ୍ଷ ରୋପିଛଇ ଲଙ୍କପାଳ ।
ବୃକ୍ଷ ମୂଳରେ କନକର ବେଦୀ
ନାନା ଆରାଧନା ଯେ କରଇ ଲଙ୍କନିଧି ।
ଜଗତି ଅଟ୍ଟାଳି ଯେ ମଣ୍ଡପ ବହୁତ
ସେଥିରେ ନଗର କରିଛି ଲଙ୍କନାଥ ।
ଗ୍ରୀଷ୍ମକାଳେ ସେଥିରେ ରାବଣେଶ୍ୱର ରହି
ରାଣୀମାନଙ୍କୁ ଘେନି ସେଥିରେ ବିହରଇ ।
ନବରତ୍ନ ମଣ୍ଡପ ଯେ ଦେଖିଲା ହନୁମନ୍ତ
କୂପବାମ୍ପୀ ପୋଖରୀ ବୁଲି ଦେଖଇ ସେ ତ ।
ଦେଖିକରି ମାରୁତି ସେଠାରୁ ଚଳିଗଲା
ଫୁଲବନ ଭିତ୍ରରେ ପରବେଶ ହେଲା ।
ବୁଲିଣ ଫୁଲବନ ଦେଖେ ହନୁମାନ
ନାନାଜାତି ଫୁଲ ସେଥି ରୋପିଛଇ ଦଶାନନ ।
ଦେଖିକରି ମାରୁତି ସେଠାରୁ ଚଳିଗଲା
ତୁଳସୀ ବନରେ ପ୍ରବେଶ ହୋଇଲା ।
ତୁଳସୀବନକୁ ଦେଖି ମାରୁତି ହେଲା ତୋଷ
ସେ ବନକୁ ଚାହିଁଣ ଓଳଗେ ବାତ ଶିଷ୍ୟ ।
ଏମନ୍ତ ସମୟରେ ରବି ଅସ୍ତ ହେଲା
ତିମିରୀ ଆଛାଦିଣ ରଜନୀ ହୋଇଲା ।

ଦେଖିଣ ମାରୁତି ସେଠାରୁ ଚଳିଗଲା
ନବର ଭିତରେ ପ୍ରବେଶ ହୋଇଲା ।
ସେନାପତିମାନଙ୍କର ଘର ଯାଇ ଦେଖି
ମନରେ ବିଚାରଇ ଅଞ୍ଜନାର ବସି ।
ପଞ୍ଚାଶ କୋଟି ଯେ ସେନାପତି ଜାଣ
ତାହାଙ୍କର ଘର ଯେ ଦକ୍ଷିଣ ଭାଗେଣ ।
ସେମାନଙ୍କ ଘର ଦେଖଇ ମାରୁତି
ଅପସରୀ ପ୍ରାୟେତ ତାହାଙ୍କ ଯୁବତୀ ।
ଶୋଭାରେ ସୁନ୍ଦର ଯେ ରାଜଜେମା ପରି
ଆୟ ଅଳଙ୍କାର ଦେହରେ ଅଛି ପୂରି ।
କେହୁ ରଙ୍ଗବର୍ଣ୍ଣ ଯେ କେହୁ ବିଶେ କଳା
କେଉଁ ଅବଳା ଯେ ବସନ୍ତ ବର୍ଣ୍ଣ ଭଲା ।
ଅଷ୍ଟରତ୍ନ ଜଡ଼ିତ ହୃଦୟ ତାଙ୍କର
ବଡ଼ ସାନ କେହୁ ବାରି ନୁହଇ ସେଠାର ।
ଦେଖିକରି ମାରୁତି ମନରେ ବିଚାରି
ସକଳ ସୁନ୍ଦରୀ ଯେ ଏଠାରେ ଛନ୍ତି ପୂରି ।
ପାଟପଟନୀ କାଞ୍ଚୁଲା ବସଣି ଗୁଣାରଞ୍ଜି
ଚୂଡ଼ିବିଦ ବାହୁଟି ବେନି ହସ୍ତେ ଖଞ୍ଜି ।
ଚରଣରେ ନୁପୁର ଝୁଣ୍ଟିଆ ବଳାସାର
କାଟିଣ ମେଖଳାକୁ ପାହୁଡ଼ ସୁନ୍ଦର ।
ମଲ୍ଲୀକଡ଼ି ଫାସିଆ ଝଲକା ପରେ କାପ
ଚାପସରି ପଦକ ଚନ୍ଦ୍ରହାର ଧାପ ।
ଜୁଡ଼ାର ଚାରିପାଖେ ଲଗାଇଛନ୍ତି ଫୁଲ
ଅଳକା ମଥାମଣି ସୁନ୍ଦର ମସ୍ତକର ।
ଏପରି ବେଶ ଦେଖି ମାରୁତି ମନେ ଭାଳି
ବୋଲିବା ବିଧାତାକୁ କି କହିବା ବଳି ।
କେଉଁଠାରେ ଖେଳ ଯେ କେଉଁଠାରେ ମେଳ
କେଉଁଠାରେ ପ୍ରେମରସରେ ହୋନ୍ତି ଭୋଳ ।
ସବୁଠାରେ ହରଷ ବିରସ କାହିଁ ନାହିଁ
ପଞ୍ଚା ପଞ୍ଚା ହୋଇଣ ହରଷେ କଥା ହୋଇ ।
କେ ବୋଲଇ ଏ ଲଙ୍କା ଜିଣିଲା ରାମନାରୀ
କେ ବୋଲଇ ମନୁଷ୍ୟ ନୁହଁଇ ସେ ସ୍ତିରୀ ।
କେ ବୋଲେ ଏ ତେରମାସ ଉପବାସ ଅଛୁ କରି
କେ ବୋଲେ ଅଗ୍ନିରେ କେମନ୍ତେ ସ୍ନାନ କରି ।
କେ ବୋଲେ ଅଗ୍ନିଦେହ ଅଟେ ତାର ଜାଣ
ଦେବସ୍ତିରୀ ଅଟଇ ସେ ମାନବ ନୁହେଁ ପୁଣ ।
କେ ବୋଲେ ରାବଣ ଲଙ୍କାକୁ ଆଣିଲା
କେ ବୋଲଇ ଜାଣୁ ଜାଣୁ ବିଷପାନ କଲା ।
କେ ବୋଲେ ଏ ସତୀର ଶ୍ରୀରାମ ଅଟେ ସ୍ୱାମୀ
ଶ୍ରୀରାମ ହସ୍ତରେ ମରିବ ବଂଶ ପାଶି ।

କେ ବୋଲେ ଶ୍ରୀରାମ କିପରି ଏଠାକୁ ଆସିବେଟି
ମହାଜଳ ସମୁଦ୍ର ଦେଖିତ ଅଛି ଘୋଟି ।
ସ୍ଥଳକୂଳ ନାହିଁ ତ ଆସିବ କେମନ୍ତେ
କେ ବୋଲେ ବେନିମାସେ ଦେଖିବା ତ ଏଥେ ।
ଏମନ୍ତ ବିଚାର କରନ୍ତି ନାରୀଗଣ
ରହି କରି ମାରୁତି ଶୁଣଇ କଥାମାନ ।
ଏଥୁ ଅନନ୍ତରେ ନାରୀମାନେ ଭାଷି
କେ ବୋଲେ ଲଙ୍କାକୁ ପକାଇବ ଧ୍ୱଂସି ।
କେ ବୋଲଇ କପି ଭାଲୁ କଲେ ଶ୍ରୀରାମଠୁଳ
କେ ବୋଲଇ ମାରିଲେଣି ବାଳି ମହାମଲ୍ଲ ।
କେ ବୋଲଇ ମୋହର ଦିଅର ଯାଇଥିଲା
ଶ୍ରୀରାମର ଥାଟରେ ସେ ଦେଖିଣ ଅଇଲା ।
କେ ବୋଲଇ ଯେବେ ହୋଇବ ଏଥିଗୋଳ
ଶ୍ରୀରାମ ତେବେ ମାରିବ ନିଶ୍ଚେ ଦୈତ୍ୟକୁଳ ।
କେ ବୋଲଇ ମୋହର ଗୃହସ୍ଥ ଯାଇଥିଲା
ଜମ୍ବୁଦ୍ୱୀପ ମଣ୍ଡଳରେ ଦେଖିଣ ଅଇଲା ।
କେ ବୋଲଇ ମୋହର ପୁତୁରା ଯାଇଥିଲା
ଚାରିଦିଗ ରାମଦୂତ ଖୋଜନ୍ତି ବୋଇଲା ।
ତେତେବେଳେ ଆମ୍ଭେମାନେ ଉପାୟ କରିବା
ସ୍ୱାମୀ ମଲେ ଆମ୍ଭେମାନେ ଜଳେ ଝାସ ଦେବା ।
ସ୍ୱାମୀଙ୍କ ସଙ୍ଗରେ ବସିବା ସ୍ୱର୍ଗେ ଯାଇ
ବିଧବା ହୋଇ ରହିଲେ ଦିନ ନ ସରଇ ।
କେ ବୋଲଇ ସ୍ୱାମୀଙ୍କର ସଙ୍ଗେ ଚାଲିଯିବା
ଏ ଲଙ୍କାଗଡ଼ରେ ଥାଇ କି ସୁଖ ପାଇବା ।
ଏମନ୍ତ ବିଚାର କରନ୍ତି ଅସୁରୁଣୀ
ମଞ୍ଜାରୀ ରୂପକୁ ଧରି ହନୁମନ୍ତ ଶୁଣି ।
ଶୁଣି କରି ହନୁମନ୍ତ ବିଚାର କରେ ମନ
ଜାନକୀର କୁଶଳ ମୁଁ ଶୁଣିଲି ସର୍ବସ୍ଥାନ ।
ଏମନ୍ତ ବିଚାରି ହନୁ ତହୁଁ ଚଳିଗଲା
ରାବଣର ନାତିପୁରେ ପ୍ରବେଶ ହୋଇଲା ।
ମାର୍ଜାର ରୂପକୁ ତେଜ୍ୟା କରିଣ ସେ ପୁଣ
ଚେମେଣି ପକ୍ଷୀ ରୂପ ଧରି ହନୁମାନ ।
ତେରଶତ ନାତି ଯେ ଅଛନ୍ତି ରାବଣର
ସେହିପୁରେ ମାରୁତି ପଶିଲେ ସତ୍ୱର ।
ପୁରେ ପୁରେ ପଶିଣ ଖୋଜଇ ଜାନକୀ
କୌଣସି ଠାବରେ ନ ଦେଖିଲା ସତୀ ।
କେଉଁ ପୁର ମର୍କତର ସାଣରେ ନିର୍ଭା
କେଉଁପୁର ଗୋଟି ଦିଶଇ ଅତି ଶୋଭା ।
କେଉଁ ପୁର ଗୋଟି ମାଣିକ୍ୟେ ନିର୍ମାଣ
କେଉଁପୁର ଗୋଟି ମୁକ୍ତାରେ ଗଠନ ।

ଦେଖିଲା ମାରୁତି ପୁରମାନ ରୀତି
ଦେଖିଲା ରାବଣର କୁବେର ସମ୍ପତ୍ତି ।
ବଧୂମାନଙ୍କୁ ଦେଖିଲେ ଅପସରୀସମ
ଅଷ୍ଟରତ୍ନେ ଜଡ଼ିତ ସେ ସ୍ତିରୀ ଉତ୍ତମ ।
ଦାସୀ ପରିବାରୀ ଯେ ଅନେକ ସଙ୍ଗେ ଛନ୍ତି
ମେଳ ହୋଇ ସବୁଠାରେ ବସିଣ ଅଛନ୍ତି ।
କେଉଁଠାରେ ଖେଳରେ ହୋଇଛନ୍ତି ରତ
କେଉଁଠାରେ ସ୍ତିରୀରତ୍ନ ହୁଅନ୍ତି ମଦମତ୍ତ ।
କେଉଁଠାରେ ମଦିରା କରୁଛନ୍ତି ପାନ
କେଉଁଠାରେ କରୁଛନ୍ତି ନୃତ୍ୟଗୀତମାନ ।
କେଉଁଠାରେ ମାଦମାଂସ କରୁଛନ୍ତି ଭୋଜନ
କେଉଁଠାରେ ଆନନ୍ଦ ହୁଅନ୍ତି ସ୍ତିରୀଗଣ ।
କେଉଁଠାରେ ବସି ଫୁଲଫଳଚନ୍ଦନ ଲଗାନ୍ତି
କେଉଁଠାରେ ଚନ୍ଦନ ଲେପନ ହୁଅନ୍ତି ।
କେଉଁଠାରେ ବେଶହୋଇ ପଲଙ୍କେ ବସିଛନ୍ତି
ନାନା ପରିବନ୍ଧରେ ସୁରତି କରନ୍ତି ।
ଏମନ୍ତ ପ୍ରକାରେ ସବୁ ଦେଖି ହନୁମନ୍ତ
ମନରେ ବିଚାରିଲା ଅଛନ୍ତି କୁଶଳେ ତ ।
ବୁଲି କରି ମାରୁତି ଦେଖିଣ ଚଳିଗଲା
ରାବଣ ସ୍ତ୍ରୀଙ୍କର ଭୁବନ ଦେଖିଲା ।
ଦୁହିତାଙ୍କୁ ଦେଖିଣ ବିଚାର ମାରୁତି
ଅନେକ ସୁଖ ତ ଏମାନେ କରୁଛନ୍ତି ।
ଦେଖିଲା ମାରୁତି ପୁରମାନ ପୁଣି
ଉତ୍ତମ ରୂପବତୀ ରାବଣ ଦୁଲଣୀ ।
ଦେଖିଣ ହନୁମନ୍ତ ମନରେ ବିଚାରିଲା
ଏବେ ସମ୍ପତ୍ତି ରାବଣ କୁବୁଦ୍ଧିରେ ହରାଇଲା ।
ନିଶ୍ଚୟ ରାବଣକୁ ଦଇବ ହେଲା ବାମ
ସମସ୍ତେ ଦିଶୁଛନ୍ତି ଦେବଙ୍କ ଅନୁପମ ।
ଲଙ୍କପୁର ମାରୁତି ଦେଖି ଲେଉଟିଲା
ସେଠାରୁ ଚେମେଣି ପକ୍ଷୀ ରୂପକୁ ତେଜିଲା ।
ଇନ୍ଦ୍ରର ରୂପ ଧରି ମାରୁତି ଗଲା ଚଳି
ବେଶ୍ୟା ସ୍ତିରୀମାନଙ୍କ ନବରେ ମିଳି ।
ଦୁଇଲକ୍ଷ ବେଶ୍ୟାଙ୍କର ଅପୂର୍ବ ପୁରମାନ
ଅପସରୀମାନେ ତାଙ୍କୁ ନୋହିବେ ସମାନ ।
କେ ଫୁଲ ଚନ୍ଦନ କେ ଘେନେ ଚତୁଃସମ
କେହୁ ଅମଳାନ ପିନ୍ଧି ବେଶ ହୋନ୍ତି ଜାଣ ।
କେହୁ ଅଳଙ୍କାରେ ଭୂଷଣ ମଣ୍ଡିଛନ୍ତି
କେହୁ ଦାଣ୍ଡ ପ୍ରାଙ୍ଗଣରେ ବସିଣ ଅଛନ୍ତି ।
କେଉଁମାନେ ପଲଙ୍କରେ ସୁପାତିରେ ରହି
କେଉଁ ନାରୀ ଦର୍ପଣରେ ବଦନ ଦେଖଇ ।

ମାରୁତି ସକଳପୁର ଦେଖିଲା ବୁଲିଣ
ବିଚାରିଲା ଏ ସ୍ତିରୀମାନେ ସ୍ୱର୍ଗ ନାୟିକା ଜାଣ ।
ଏମନ୍ତ ବିଚାରି ସେ ପୁରରୁ ଲେଉଟିଲା
ଧନ୍ୟ ଧନ୍ୟ ସ୍ତିରୀବୋଲି ତାଙ୍କୁ ପ୍ରଶଂସିଲା ।
ବଳରାମ ଦାସ ଯେ ହନୁର ପାଦ ସେବି
ବିଚାରିଲା ରାମ କାର୍ଯ୍ୟ ଅବଧି କରିବି ।
ଏଥୁଅନନ୍ତରେ ପାର୍ବତୀ କହେ ପୁଣ
ନଗର ବୁଲିଣ ଦେଖିଲା ହନୁମାନ ।
ରାବଣର ନାତିପୁର ଜୁଆଁଇପୁର ଦେଖି
ହଟାରୀ ବଜାରିପୁର ଦେଖିଲା ପାଲଟି ।
ପଦାତି ସେନାପତି ଏମାନଙ୍କ ପୁର
ବୁଲି କରି ସବୁ ଦେଖିଲା ହନୁବୀର ।
ଅପସରୀ କିନ୍ନରୀ ବିଦ୍ୟାଧରୀଙ୍କ ପୁର
ଏମାନ ମାୟାରୂପରେ ଦେଖିଲା ବୀରବର ।
ଜାନକୀର ସନ୍ଦେଶ ସବୁପୁରେ ପାଇ
ଅଶୋକବନ ଭିତରେ ଅଛନ୍ତି ବଇଦେହୀ ।
ଫଳବନ ମଧୁବନ ତୁଳସୀ ଯେ ବନ
ଶାଳଶିଶୁ ଚନ୍ଦନ ବନକୁ ଦେଖିଣ ।
ବାହାର ଦେଖିଣ ସେ ଭିତର ଠାବ କଲା
ଅଶୋକ ବନେ ସତୀ ଅଛନ୍ତି ଜାଣିଲା ।
ସେ ସ୍ଥାନକୁ କିମ୍ପାଇ ନ ଯାଏ ହନୁମନ୍ତ
ସେଥିର କଥା ମୋତେ କହ ବିଶ୍ୱନାଥ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ତୁ ବୋଲୁ ଅଶୋକ କିମ୍ପା ନ ଯାଏ ମାରୁତି ।
ନଗର ନ ବୁଲି ଗୋ ପ୍ରତେ କାହିଁପାଇଁ
ଗୁପତେ ଦେଖିଣ କି ସମର୍ଥ ହୋଇବଇଁ ।
ସେଥିସକାଶେ ହନୁ ସବୁସ୍ଥାନ ଦେଖି
ଶୋଭା ସୁନ୍ଦରୀ ସ୍ତିରୀ ଦେଖି ମନତୋଷି ।
ସବୁପୁରେ ପଶିଣ ଦେଖିଲା ସବୁ କଇଁ
କେଉଁଠାରେ ଜାନକୀ ଥିବାର ନ ଦେଖଇ ।
ପାର୍ବତୀ ବୋଇଲେ କମ୍ପା ରାଜନବରକୁ
ନ ଯାଏ ମାରୁତି କିବା ଡରି ରାବଣକୁ ।
ଈଶ୍ୱର ବୋଇଲେ ସେ ସକଳ ଖୋଜିଲା
ଗୁପତ କଥାମାନ ସଂକେତ ପାଇଲା ।
ଏବେ ରାଜ ନବର ପୁତ୍ରଙ୍କ ଉଆସ
ଖୋଜିବାକୁ ହନୁମାନ କରିଚି ମୁହାଁସ ।
ପାର୍ବତୀ ବୋଇଲେ ସେ କଥା ମୋତେ କହ
ଏଠାରୁ କିସ କଲା ପବନର ପୁଅ ।
ଈଶ୍ୱର ବୋଇଲେ ହନୁ ସକଳ ଖୋଜିଲା
ପୁତ୍ରଙ୍କର ଉଆସରେ ବୁଲିଣ ଦେଖିଲା ।

ଭ୍ରମର୍ ରୂପ ଧରି ପଶିଲା ମାରୁତି
ପାତ୍ରମନ୍ତ୍ରୀ ଉଆସ ଗୁପତେ ଖୋଜେ ସେଟି ।
ପ୍ରଶସ୍ତର ଉଆସଟି ଯାଇଣ ଖୋଜିଲା
ଶେତ ସୁନ୍ଦରୀ ଦେଖି ସେ ପୁରୁ ବାହାରିଲା ।
ଶୁକସାରଣ ମନ୍ଦିରେ ମିଳିଲା ମାରୁତି
ଦେଖିଲା ସେହିପୁର ଶୋଭା ଅଟଇ ସତି ।
ସୁବର୍ଣ୍ଣମୟ ପୁର ହୋଇଅଛି ଚିତ୍ର ପୁଣ
ସ୍ଥାନେ ସ୍ଥାନେ ବିଚିତ୍ର କରିଛି ଭିଆଣ ।
ବାହାର ଜଗତୀ ରତ୍ନରେ ନିର୍ମାଣ
ଦେଖିଣ ବିଚାର କରଇ ହନୁମାନ ।
ପାତ୍ରଙ୍କର ପୁରକୁ କେହି ନୁହେଁ ସରି
ରତ୍ନର ଉପରେ ଯେ ଚିତ୍ରପଟ କରି ।
ସେଠାରେ ରାମନାରୀ ନ ଦେଖିଲା ଯହୁଁ
ଚଳିଗଲା ମାରୁତି ହରଷମନେ ତହୁଁ ।
ଶାର୍ଦ୍ଦୁଳର ଉଆସେ ପ୍ରବେଶ ହୋଇଲା
ପଲ୍ୟଙ୍କପରେ ଶାର୍ଦ୍ଦୁଳ ବସିଛି ଦେଖିଲା ।
ଶତେକ ଯୁବତୀ ଯେ ଚାରିପାଶରେ ଘେରି
ହାସ୍ୟରସ ନୃତ୍ୟଗୀତ ହେଉଛି ଆଗେ ତାରି ।
ଅପସରି ସଦୃଶ୍ୟ ସେ ନାରୀଙ୍କର ଶୋଭା
ନାନାପ୍ରକାରେ ବେଶ ମସ୍ତକେ ଶୋଭେ ଗଭା ।
ଦେଖିକରି ହନୁମନ୍ତ ସେଠାରୁ ଚଳିଗଲା
ମନ୍ତ୍ରୀର ସେ ମଣିମୟପୁର ପୁରରେ ମିଳିଲା ।
ଦେଖିଲା ସହସ୍ରେକ ନାରୀ ଯେ ତାହାର
ଶୋଭା ଦିଶନ୍ତି ସେ ଚିତ୍ରପଟ ପରକାର ।
ସମସ୍ତେ ନବଯୁବା ପରାଏ ସ୍ୱରୂପ
ଦେଖିକରି ମାରୁତି ହେଲା ସ୍ତମ୍ଭୀଭୂତ ।
ସେଠାରୁ ଜାନକୀର ନ ପାଇ ସନ୍ଦେଶ
ଚଳିଲାକ ମାରୁତି ହୋଇଣ ବିରସ ।
ପାତ୍ରମନ୍ତ୍ରୀ ଯେତେକ ରାଜାର ସେଥି ଥିଲେ
ପ୍ରତିପୁର ମାରୁତି ଦେଖିଲା ଗୁପ୍ତରେ ।
ସବୁ ପାତ୍ର ମନ୍ତ୍ରୀଙ୍କର ଉଆସ ଗୁପ୍ତେ ଦେଖି
ଶ୍ରୀରାମ ଦୂତ ମନେ ହେଲା ମହାସୁଖୀ ।
ରାବଣର କୁମର ଇନ୍ଦ୍ରଜିତ ପୁର
ପଶିଲା ମାରୁତି ଭ୍ରମର ରୂପର ।
ଦେଖିଲା ଇନ୍ଦ୍ରଜିତ ପଲ୍ୟଙ୍କେ ଅଛି ଶୋଇ
ଲକ୍ଷେକ ଯୁବତୀ ବସିଛନ୍ତି ତହିଁ ।
ତ୍ରିପୁର ସୁନ୍ଦରୀ ଲାବଣ୍ୟ ମୂର୍ତ୍ତିପ୍ରାୟେ
ମାଣିକ୍ୟର ଦୀପାବଳୀ ଚଉପାଶେ ଶୋହେ ।
ଦେଖି କରି ମାରୁତି ସେଠାରୁ ଲେଉଟିଲା
ଅକ୍ଷୟ କୁମରର ମନ୍ଦିରେ ମିଳିଲା ।
ଦେଖିଲା ଶତେ ନାରୀ ବସିଛନ୍ତି ପୁଣ
ଷୋଡ଼ଶୀ ବୟସୀ ସମସ୍ତେ ଅଟେ ଜାଣ ।
ସେ ମଧ୍ୟରେ ଅକ୍ଷୟ କୁମର ଅଛି ଶୋଇ
ଦେଖିକରି ମାରୁତି ମନରେ ବିଚାରଇ ।
ଏହା କୁମର ନିଶ୍ଚେ ଆଗ ଯିବ ନାଶ
ଏବେ ଅସୁରକୁ ମୁଁ କହିବି ଭବିଷ୍ୟ ।
ଏତେକ ବିଚାରି ଲିଭାଏ ଦୀପାବଳୀ
ପଲ୍ୟଙ୍କ ସହିତେ ରାବଣ ସୁତ ତୋଳି ।
ଉତ୍ତର ଦିଗକୁ ତାର ମସ୍ତକ କରିଦେଲା
ପଲଙ୍କ ସହିତେ ମାରୁତି ବୁଲାଇଲା ।
ଦୀପାବଳୀ ଲିଭନ୍ତେ ସମସ୍ତ ବାଳୀ ଶୋଇ
ଭବିଷ୍ୟ କଥାମାନ ନ ଜାଣନ୍ତି କେହି ।
ନାରୀମାନେ ଶୋଇବାରୁ ରାମର ଦୂତ ପୁଣ
ସମସ୍ତଙ୍କର ଭୂଷଣ କାଢ଼ିଲା ତକ୍ଷଣ ।
ବିବସନ କଲା ସେ ପୁରେ ଯେତେ ନାରୀ
ସେଠାରୁ ହନୁମାନ ଗଲାକ ବାହାରି ।
କୁମ୍ଭ ନିକୁମ୍ଭ ଯେ ଧୂମାଳି ନବର ।
ମହୋଦର ମହାପାରୁଷର ପୁର ।
ସକଳ ଯୁଜୁପାକ୍ଷ ନରାନ୍ତକ ସୁରୁନ୍ତକ
ରାବଣର ଯେତେ ପୁତ୍ର ତାଙ୍କ ପୁରତକ ।
ସମସ୍ତଙ୍କ ପୁର ଯେ ମାରୁତି ଖୋଜେ ବୁଲି
କେଉଁଠି ଜାନକୀଙ୍କି ନ ଦେଖି ମନେ ଭାଳି ।
ରାବଣର ପୁତ୍ରମାନେ ଅନେକ ନାରୀ ଘେନି
ନାନା ବିନୋଦରେ ବଞ୍ଚନ୍ତି ରଜନୀ ।
ନୃତ୍ୟଗୀତ କେଳିରସ ସୁରତି ଯେ ପୁଣ
ନାନାବନ୍ଧେ ଅସୁର ରତି କରନ୍ତି ଜାଣ ।
ସେ ରୀତି ହନୁମାନ ଦେଖିଣ ମନେ ଭ୍ରାନ୍ତି
ସବୁ ପୁତ୍ର ପୁର ଦେଖି ଚଳଇ ମାରୁତି ।
କୁମ୍ଭକର୍ଣ୍ଣ ମନ୍ଦିରେ ହେଲା ପରବେଶ
ଦେଖିଲା ମାଣିକ୍ୟ ଦୀପ ଜଳଇ ଚଉପାଶ ।
କୁମ୍ଭକର୍ଣ୍ଣର ସ୍ତ୍ରୀମାନେ ସୁବେଶ ଯେ ହୋଇ
ଦାସୀମାନଙ୍କର ସଙ୍ଗେ ନୃତ୍ୟ ଗୀତ ହୋଇ ।
ନାଚରଙ୍ଗ ଗୀତ ଯେ ସିତାର ମର୍ଦ୍ଦଳ
ଗିନିମାନ ବଜାଇ ନାରୀମାନେ ଭୋଳ ।
ମିଳିଣ ମାରୁତି ଦେଖି ତାଙ୍କ କେଳି
ନାରୀଙ୍କର ରୀତି ଦେଖି ମନେ ମନେ ଭାଳି ।
ଏହୁ କୁମ୍ଭକର୍ଣ୍ଣ ତ ଅଚଳ ମହାଗିରି
ଭଲା ବିହି ଗଢ଼ିଛି ଏହାକୁ ବସି କରି ।
ଲମ୍ବରେ ଶୋଇ ଅଛି ପନ୍ଦର ଯୁଣପଥ
ଓସାର ବାର ଯୁଣ କେ କରିବ ଅନ୍ତ ।

ନିଃଶ୍ୱାସ ବାୟୁରେ ଚାଳ ଉଠଇ ପଡ଼ଇ
କି ଅବା ଅଣଚାଶ ପବନ ବହଇ ।
ଦେଖିକରି ହନୁମାନ ତାଟକା ହୋଇଲା
ଏଡ଼େ ଅସୁର ଲଙ୍କାରେ ଅଛି ସେ ଭାଳିଲା ।
କେମନ୍ତେ ରାମଚନ୍ଦ୍ର ଏହାକୁ ଯେ ମାରି
ମର୍କଟ ଭାଲୁ ସୈନ୍ୟ ଦେବ ସବୁଙ୍କୁ ଗିଳି ।
ମୁଁ ଯେବେ ଏହାକୁ ବଳରେ ଟେକିବି
ଉତ୍ତରକୁ ମୁଣ୍ଡ କରି ଶୁଆଇଣ ଦେବି ।
ତେବେ ଶ୍ରୀରାମ ଏହାକୁ କରିବେ ବିନାଶ
ଏତେ ବିଚାର କଲା ପବନର ଶିଷ୍ୟ ।
ଲକ୍ଷେକ ଦିହୁଡ଼ି ଯେ ଜଳେ ଦୀପାବଳୀ
ହନୁମନ୍ତ ଲିଭାଇଲା ସବୁ ମାୟା କରି ।
ଦିହୁଡ଼ି ଚନ୍ଦ୍ର ଦୀପ ଲିଭନ୍ତେ ଅନ୍ଧାର
ଦେଖିକରି ମାରୁତି କରଇ ବିଚାର ।
ଭଇରବ ମୂରତି ଧରି ହନୁବୀର
କୁମ୍ଭକର୍ଣ୍ଣକୁ ଟେକିଲା ଧରିଣ ହସ୍ତର ।
ପଲଙ୍କ ସହିତେ ଟେକି ବୁଲାଇଲା
ଉତ୍ତରକୁ ମୁଣ୍ଡ କରି ଶୁଆଇଣ ଦେଲା ।
ଯେତେବେଳେ ହନୁମନ୍ତ କୁମ୍ଭକର୍ଣ୍ଣକୁ ଧରି
ଶ୍ରୀରାମକୁ ସେ ମନରେ ସୁମରି ।
ସେଠାରୁ ହନୁମନ୍ତ ଶାନ୍ତଶୀଳ ହେଲା
ଭଇରବ ମୁରତିକୁ ପରିତ୍ୟାଗ କଲା ।
ଭ୍ରମର ରୂପଗୋଟି ଧଇଲା ମାରୁତି
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ ।
ଅନ୍ଧାର ହୋଇବାରୁ କୁମ୍ଭକର୍ଣ୍ଣର ରାଣୀ
ପୁତ୍ରମାନଙ୍କୁ ଡାକିଲା ଆସରେ ବେଗେ ପୁଣି ।
ଦିହୁଡ଼ି ଚନ୍ଦ୍ରଦୀପ ଲିଭିଲା ଏ ପୁରୁ
ପବନ ନ ବହିଲା ସ୍ଥାନ ଲାଗେ ଗରୁ ।
ଶୁଣି କରି ପୁତ୍ରମାନେ ଅଇଲେକ ଧାଇଁ
ହୁଳା ଘେନିଣ ଦୀପ ଦିହୁଡ଼ି ଲଗାଇ ।
ଦିହୁଡ଼ି ଲାଗନ୍ତେ ଦିଶିଲା ଚଉକତି
ଦେଖିଲେ ପୁତ୍ରମାନେ ପିତାର ଦୁର୍ଗତି ।
ଉତ୍ତର ଦିଗ ମୁଣ୍ଡ ଉପରେ ଅଛି ହୋଇ
ବିଚାରିଲେ ନିଦ୍ରାରେ ପିତା ବା ବୁଲଇ ।
ଏଥୁ ଅନନ୍ତରେ ସେଠାରୁ ହନୁମନ୍ତ
ଭ୍ରମର ରୂପ ଧରି ଚଳିଲା ତ୍ୱରିତ ।
ରାଜାର ନବରକୁ ଚଳଇ ମାରୁତି
ସେତେବେଳେ ହୋଇଅଛି ସପ୍ତଘଡ଼ି ରାତି ।
ସାମାନ୍ୟ ରୂପ ଧରି ଭିତରକୁ ଗଲା
ମରିବାକୁ ନ ଡରି ଅଗ୍ନିରେ ଝାସ ଦେଲା ।

ଦେଖିଲା ମନ୍ଦିର ଅତି ଶୋଭାବନ
କେବଣ ପୁରଗୋଟି ହିଙ୍ଗୁଳେ ନିର୍ମାଣ ।
କେବଣ ପୁର ମନଃଶିଳାରେ ନିର୍ଭା କଲା
କେବଣ ଘରରେ ସେ କାଚ ଢାଳିଦେଲା ।
କେବଣ ପୁରଗୋଟି କର୍ପୂରେ ଅଛି ଗଢ଼ି
କେଉଁ ଘରଗୋଟି ଯତନେ ସଜାଡ଼ି ।
କେଉଁ ଘରରେ ହୀରା କରିଛି ଯତନ
କେଉଁ ଘର ନୀଳାରେ ବିଶେଷ ଶୋଭାବନ ।
କେଉଁ ଘର ମୋତିରେ ନିର୍ମାଣ ଅଛି କରି
କେଉଁ ଘରଗୋଟି ଯେ ମାଣିକ୍ୟ ନିବାଡ଼ି ।
କେଉଁ ଘରଗୋଟି ଯେ ବୈଦୁର୍ଯ୍ୟରେ କାମ
କେଉଁ ଘରଗୋଟି ଯେ ସିନ୍ଦୂର ବିଲେପନ ।
କେଉଁ ଘରଗୋଟି ଯେ ପିତଳେ ଯତନ
କେଉଁ ଘରଗୋଟି କଂସାରେ ବିତପନ ।
କେଉଁ ଘରଗୋଟି ଯେ ଖର୍ପରେ ଅଛି ଭ୍ୟାଇ
କେଉଁ ଘରଗୋଟି ଲୁହାରେ ଅଛି ହୋଇ ।
କେଉଁ ଘରଗୋଟି ଯେ ଦର୍ପଣରେ ସାର
କେଉଁ ଘରଗେଟି ଜଳୁଛି ଜର ଜର ।
ଏମନ୍ତ ପ୍ରକାରେ ଅନେକ କରି ଘର
ଚାରିକୋଟି ଘର ଯେ କରିଛି ଦଶଶିର ।
ଘରର ଉପରେ କଳଶ ତପନ
କଳଶ ଉପରେ ଚିରାଳ ଉଡ଼େ ପୁଣ ।
କେଉଁଠାରେ ମାଟଙ୍ଗ କେଉଁଠାରେ ନେତ
ତଳରେ ଧାଡ଼ି ଧାଡ଼ି ଚଉରା ପ୍ରସ୍ତୁତ ।
କାନ୍ଥରେ ଚିତ୍ରପଟ କରିଛି ଚିତ୍ର କରି
ସୂଚୀକର୍ମ କେଉଁଠାରେ କରିଛି ଦଶଶିରୀ ।
ଚନ୍ଦନ କସ୍ତୁରୀ ଯେ କେଉଁଘରେ ରଖି
କେଉଁଠାରେ ସୁବର୍ଣ୍ଣ କୁଞ୍ଚ ସେ କରିଛି ।
କେଉଁ ଘରେ କାହିଁରେ ଅଛି ତମ୍ବା ପଟା
କେଉଁଠାରେ ନାନା ଗନ୍ଧ କରିଛି ଉକୁଟା ।
କେଉଁଠାରେ ନବରତ୍ନ ଥୋଇଛି ଦଶାନନ
କେବଣ ଘରେ ଅଛି ବିଚିତ୍ର ବସନ ।
ନେତର ପତନୀ ପାଟ ଯେ ପାଏଡ଼ା
କେଉଁ ଘରେ ରଖିଛି କର୍ପୂର ପେଡ଼ା ପେଡ଼ା ।
କେଉଁଘରେ ଡଇଳ କାଟମାନ ଥୋଇ
କେଉଁଘରେ ମାଳପା ରଖିଛି କୁଆଇ ।
କେଉଁ ଘରେ କସ୍ତୁରୀ ରଖିଛି କୁଢ଼ କରି
କେଉଁଘରେ ଲବଙ୍ଗ ଅଳାଇଚ ଭରି ।
କାହିଁରେ ଯୁଆଣି ପତନୀ ଗନ୍ଧ ଗୁଣ୍ଡି
କେବଣ ଘରେ ନେଇ ଅଞ୍ଜନ ଅଛି ଭେଦି ।

ଏମନ୍ତ ପ୍ରକାରେ କରିଛି ଘରମାନ
କେଉଁଠାରେ କାଣ୍ଡ ଖଣ୍ଡା ରଖିଛି ସାଇତିଣ ।
ଚାରିକୋଟି ଘର ଯେ ଦେଖିଲା ହନୁ ବୁଲି
ଧନ୍ୟ ଧନ୍ୟ ରାବଣ ବୋଲିଣ ମନେ ଭାଳି ।
କେଉଁ ଘରେ ଭୂମିରେ ସଜାଇଣ ଶେଯ
କେଉଁ ଘରେ ପଲ୍ୟଙ୍କ ଶଯ୍ୟା କରି ଉଚ୍ଚ ।
କେଉଁଠାରେ ଧବଳ କାହିଁରେ ରଙ୍ଗଟେରା
କେଉଁଠାରେ ଚାନ୍ଦୁଆରେ ଗଜ ମୋତି ଝରା ।
କାହିଁରେ ଶ୍ୱେତଚାମର ଦର୍ପଣ ପନ୍ତି ପନ୍ତି
କେଉଁ ଘର ଗୋଟିକ ପୁଷ୍ପରେ ମଣ୍ଡିଛନ୍ତି ।
ଦୀପ ବିହୁଡ଼ି ଯେ ନିରନ୍ତର ଜଳି
ଠାବେ ଠାବେ ଜଗାଇଛି ଠଣା ପ୍ରତିହାରୀ ।
ଦେଖିଣ ହନୁମନ୍ତ ପରମ ତୋଷ ହୋଇ
ଧନ୍ୟରେ ଲଙ୍କପତି ବୋଲିଣ ପ୍ରଶଂସଇ ।
ତୋହର ପରା ରାଜାରେ ଅଧର୍ମକୁ ଗଲା
ଶ୍ରୀରାମ ଘରଣୀଙ୍କୁ ଚୋରିକଲୁ ଭଲା ।
ତେଣୁ ଏ ପୁର ତୋତେ ପ୍ରାପତ ନୋହିବ
ଏ ତାର ପରା ପୁର ଅଗ୍ନିରେ ନାଶ ଯିବ ।
ଅକାରଣରେ ମୃତ୍ୟୁ ପାଇବେ ଏଥେ ପ୍ରାଣୀ
ହୀନବୁଦ୍ଧି କଲୁରେ ଅସୁରକୁଳ ମଣି ।
ଅବଶ୍ୟ ଏତେକ ତ ସମ୍ପଦ ନାଶ ଯିବ
ସ୍ୱାମୀରେ ଦୋରେହା ହେଲୁରେ ଦଶଗ୍ରୀବ ।
ଏତେ କହି ହନୁ ସେଠାରୁ ଚଳିଗଲା
ଘରବାଡ଼ି ବଗିଚା ସମସ୍ତ ଦେଖିଲା ।
କୂପ ବାମ୍ଫୀ ପୋଖରୀ ଦେଖିଲା ସରୋବର
ଖୋଜିଣ ମାରୁତି ଫେରିଲା ଧାତିକାର ।
ସେଠାବରୁ ମାରୁତି ବହନ ଚଳିଗଲା
ସକଳ ପୁରମାନ ଲୋଡ଼ିଣ ଖୋଜିଲା ।
ଦେଖିଲା ଏକପୁରେଯୁବତୀ ଛନ୍ତି ଶୋଇ
ଅଲେଖ ତିଳକ ଯେ ଦିବ୍ୟ ବେଶ ହୋଇ ।
ଦାସୀ ପରିବାରୀମାନେ ଖଟିଛନ୍ତି ପାଶ
ଦେଖିକରି ହରଷ ହେଲା ବାତ ଶିଷ୍ୟ ।
ଜଣେ ଜଣେ ନିରୂପଇ ଶ୍ରୀରାମର ଦାସ
ଭାବିଲା ରାବଣର ଏ ଅଟନ୍ତି ରାଣୀହଂସ ।
ସୀତୟାଙ୍କୁ ମୁହିଁ ଯାଉଅଛି ଖୋଜି
ଚାରିକୋଟି ରାବଣର ରାଣୀଙ୍କ ମୁଖ ହେଜି ।
ଦେଖିଲା ସବୁ ରାଣୀ ସୁନ୍ଦରୀ ସୁଲକ୍ଷଣୀ
ସ୍ୱର୍ଗର ଅପସରାଙ୍କୁ ପାରନ୍ତି ଏ ଜିଣି ।
ଗୋଟିଏ ଘରରେ କରନ୍ତି ଲୀଳାରସ
କେଉଁଠାରେ ଶୋଇଛନ୍ତି କେଉଁଠାରେ ବେଶ ।

କେଉଁଠାରେ ନୃତ୍ୟଗୀତ କେଉଁଠାରେ ହସ
କେଉଁଠାରେ ରାଣୀମାନେ କଥା ଯେ ପ୍ରକାଶ ।
ଏମନ୍ତ ଘଟଣା ଦେଖି ଅଞ୍ଜନାର ସୁତ
ମନେ ମନେ ବିଚାର କରଇ ସେହିତ ।
କପଟ କୁଟୀଳ ଏ ଜାଣନ୍ତି ଦଇତେ
ରାଜାକୁ ଭୟ କରି ତରସ୍ତ ସମସ୍ତେ ।
ଏମାନଙ୍କୁ ଦେଖିଲେ ପ୍ରତେ ସିନା ଯିବା
ଅନ୍ତଃପୁର ଭିତରେ ପଶିଣ ଖୋଜିବା ।
ଏତେ ବୋଲି ମାର୍ଜାର ରୂପ ହନୁ ଧରି
ପଶିଲା ରାଜାର ଅବକାଶ ପୁରି ।
ବାହାରେ ଅବକାଶ ରାବଣ ନିରନ୍ତର
ନବରତ୍ନ ନବରେ ବାଜଇ ବୀର ତୂର ।
ଭିତରପୁରେ ହନୁ ଖୋଜଇ ଯାଇ ପୁଣି
କାନ୍ଥରେ ଚିତ୍ରପଟ ବିହିଛି ବିଂଶପାଣି ।
ଧବଳ କାନ୍ଥରେ ଲେଖିଛି ହିଙ୍ଗୁଳ
ନାନାରଙ୍ଗେ ଚିତ୍ର କରିଅଛି ମହୀପାଳ ।
ସୀତାଙ୍କୁ ହରିଲେ ଅବଶ୍ୟ ମରିବ
ଶ୍ରୀରାମର ହସ୍ତେ ମଲେ ସଂସାର ତରିବ ।
ବିଷ୍ଣୁଙ୍କର ଘରଣୀ ଜନକ କୁମାରୀ
ତାହାଙ୍କୁ ଆଣିଲେ ମାରିବେ ଚାପଧାରୀ ।
ଯଦ୍ୟପି ଶ୍ରୀରାମ ନ ମାରିବେ ମୋତେ
ତେବେ ମୁଁ ସଂସାରୁ ତରିବି କେମନ୍ତେ ।
ଯଦ୍ୟପି ଶ୍ରୀରାମ ମୋତେ ଉପ୍ରୋଧ କରିବେ
କେବେ ହେଁ ଜାନକୀଙ୍କୁ ନେଇ ନ ପାରିବେ ।
ଯଦି ମୁଁ ସୀତାଙ୍କୁ ଆଣି ନ ଥାନ୍ତି ଏଥ
ସଂସାରୁ କଦାପି ନୁହନ୍ତି ମୁକତ ।
ଏସନ ପ୍ରକାରେ କାନ୍ଥରେ ଲେଖାଅଛି
ପଢ଼ି କରି ହସିଲା ପବନର ବତ୍ସି ।
ହନୁମନ୍ତ ଭାବିଲା ଏକଥା ଅଟେ ସତ
ପୂର୍ବରୁ ବିଧାତା ଭିଆଇଛି ଏ କୃତ୍ୟ ।
ବିଧାତା କହିବାରୁ ଚେତା ଯା ଶରୀର
ରାମ ହସ୍ତେ ମରିବାକୁ କରିଅଛି ସ୍ଥିର ।
ଅନାଥ ବୋଲି ଏହାକୁ ଜାଣିବା କେମନ୍ତ
ଜାଣୁ ଜାଣୁ ମରିବାକୁ ବିଚାରୁ ଦଶମାଥ ।
ମନେ ନ ରହିବ ବୋଲି କରିଛି ଲିଖନ
ତେଣୁ କରି ଜାନକୀଙ୍କି ଆଣିଛି ଏ ସ୍ଥାନ ।
ଏମନ୍ତ ମନରେ ବିଚାରେ ହନୁମନ୍ତ
ନିଶ୍ଚୟ ରାମ ହସ୍ତେ ମରିବ ଦଶମାଥ ।
ଏତେ ବୋଲି ମାରୁତି ସେଠାରୁ ଚଳିଯାଇ
ପୁଣି ସୁବର୍ଣ୍ଣ କାନ୍ଥରେ ଲେଖାକୁ ଦେଖଇ ।

ସେଠାରେ ଅଞ୍ଜନରେ ଲେଖିଛି ଦଶକନ୍ଧ
ସ୍ୱୟଂ ନାରାୟଣ ଯେ ଅଟନ୍ତି ରାମଚନ୍ଦ୍ର ।
ତାହାଙ୍କର ଘରଣୀକି ଆଣିଲେ ଚୋରି କରି
ଅବଶ୍ୟ ଆସି ମୋତେ ମାରିବେ ଚାପଧାରୀ ।
ଏମନ୍ତ ବିଚାରି ରାବଣେଶ୍ୱର ମନେ
ସୀତାଙ୍କୁ ଆଣିବାକୁ ପରସନ୍ନ ମନେ ।
ପଢ଼ିଣ ହନୂମନ୍ତ ମନରେ ହରଷ
ବିଚାରିଲା ରାବଣ ନିଶ୍ଚେ ଯିବ ନାଶ ।
ଏତେ ଭାଳି ମାରୁତି ସେ ଠାବରୁ ଗଲା
ଆଗରେ ଦର୍ପଣ କାନ୍ଥ ଯାଇଣ ଦେଖିଲା ।
ସେ କାନ୍ଥରେ ଲେଖାହୋଇ ଅଛଇଁ ଯେ ଜାଣ
ଜାନକୀ ଆଣିଲେ ରାମ ସଙ୍ଗେ ହେବ ରଣ ।
ଶ୍ରୀରାମଙ୍କୁ ଯେବେ ଜିଣିବି ରଣରଙ୍ଗେ
ତେବେ ଜିଣି ନ ପାରିବେ ମୋତେ ସୁରସିଦ୍ଧେ ।
ନିଶ୍ଚେ ତାର ଘରଣୀକି ଆଣିବି ମୁଁ ଯାଇ
ସେ ଆସିଲେ ମାରିବି ରଣ କରି ମୁହିଁ ।
ନୋହିଲେ ମୋତେ ରଣେ ମାରିବେ ରଘୁନାଥ
ତେବେ ମୁହିଁ ସାକ୍ଷାତେ ଯିବି ବୈକୁଣ୍ଠତ ।
ଏମନ୍ତ ବୋଲି ଲେଖିଛି ବିଶର୍ବା ନନ୍ଦନ
ଶତଠାବେ କରିଛି ଏମନ୍ତ ଲିଖନ ।
ପଢ଼ିଣ ହନୁମନ୍ତ ଆଶ୍ଚର୍ଯ୍ୟ ହୋଇଲା
ଜାଣିଲି ରାବଣର ଜ୍ଞାନ ଅଛି ଭଲା ।
ଶ୍ରୀରାମ ବିଷ୍ଣୁ ବୋଲି ଜାଣଇ ଲଙ୍କପତି
ଜାଣିକରି ଚୋରାଇ ଆଣିଛି ସେ ସତୀ ।
ଏବେ ସେ ମନରୁ ଭ୍ରାନ୍ତି ତୁଟିଲା ମୋହର
ଦଶରଥ ନନ୍ଦନ ଅଟନ୍ତି ଚକ୍ରଧର ।
ଏମନ୍ତ ଭାବିଣ ଜାଣିଲା ମାରୁତି
ଲଙ୍କାପୁର ଖୋଜଇ କାହିଁଛନ୍ତି ସତୀ ।
ରାଣୀମାନଙ୍କ ଭୁବନରେ ପ୍ରବେଶ ହୋଇଲା
ସେ ସ୍ଥାନ ବୁଲିଣ ହନୁ ଯେ ଦେଖିଲା ।
ଜାମ୍ବୁ ଜମ୍ବିଳ ଯେ ଅଛି ନଟିକାଳ
ଫଳ ଭାରେ ଡାଳମାନ ଲୋଟନ୍ତି ଯେ ତଳ ।
ନାନା ବର୍ଣ୍ଣେ କୁସୁମ ଅଛି ତହିଁ ଫୁଟି
ମଧୁରସ ଲୋଭରେ ଭ୍ରମରେ ଗୋଷ୍ଠୀ ଗୋଷ୍ଠୀ ।
କୋଇଲି ସାରିକା ଯେ ଭାଷନ୍ତି ଘନ ଘନ
କି ଜାଣି ନନ୍ଦନ ବନ କି ବିପିନ ।
ସୁବର୍ଣ୍ଣର ଚଉରା କର୍ପୂରର ଧୂଳି
ପନିର ଗୁଣ୍ଡି ଯେ ଗଛର ମୂଳେ ମେଲି ।
ଫଳନ୍ତି ପାଚନ୍ତି ଫୁଟିଣ ପଡ଼ନ୍ତି
ନାନା ବର୍ଣ୍ଣରେ ପୁଷ୍ପ ଦିଶନ୍ତି ପନ୍ତିପନ୍ତି ।

କେନ୍ଦୁ କରମଙ୍ଗା ଅର୍ଏଁଳା ନିମ୍ବ ବୃକ୍ଷ
ତାଳ ଖଜୁରୀ ଅନୁପମ ଯେ ଦାରାକ୍ଷ ।
ବୀରଭଦ୍ର ମନ୍ଦାର ମରୁଆ ତୁଳସୀ
ପୋଲାଙ୍ଗ ଦୟଣା ଯେ ଯେତକୀ ଜଟାମାଂସୀ ।
ନାଗେଶ୍ୱର ମଲ୍ଲୀ ଯେ ଛୁରୀଅନା ଜୁଇ
ବକୁଳ ମରୁଆ ଚମ୍ପା ଯେ ଅଛଇଁ ।
କସ୍ତୁରୀ କରବୀର କଞ୍ଚଣ କଇଁଥ
ବେଲ ଅର୍ଏଁଳା ଯେ କେନ୍ଦୁର ବନସ୍ତ ।
ପାଟଳୀ ପାଳଧୂଆ ଶିମୁଳି ବଧୂଆ
ତରାଟ କୁରୁବେଲି ଲଣ୍ଡା ବାବୁଲିଆ ।
ବିବିଧ କୁସୁମ ଯେ ଅଛଇଁ ସେ ବନେ
ମର୍କତ ଚାନ୍ଦୁଆ ପୋହଳା ରସାଣେ ।
ପଦ୍ମରାଗ ଶ୍ରେଣୀ ଯେ ଦୁବିନ୍ଦର ତରା
ଗୁଜମାନ କରିଛି ବ୍ରହ୍ମଜାତି ହୀରା ।
ବିବିଧ ରତ୍ନରୂଅ ଓରା ଘରେ ଘରେ
ଲଇକରି ବାନ୍ଧିଅଛି ପାଟ ସୂତା ଡୋରେ ।
ସୁବର୍ଣ୍ଣର ଛାଏଣୀ ମୁକୁତାର ଚୂଳ
ବାର କୋଟି କଳସ ଦିଶଇ ଢଳ ଢଳ ।
ନେତର ଚିରାଳ ପାଟର ପତାଙ୍ଗ
ରଙ୍ଗ ଝୀନ ପତନୀ ଉଡ଼ଇ ସୁରଙ୍ଗ ।
ଚନ୍ଦ୍ର କିରଣ ଜାଣି ଚାନ୍ଦୁଆ ବିରାଜି
ନାନା ବର୍ଣ୍ଣରେ ସବୁ ଅଛି ତାହା ଖଞ୍ଜି ।
ନାନା ବର୍ଣ୍ଣରେ ଚାମର ଲମ୍ବେ ଚଉପାଶ
ରଙ୍ଗ କନା ଧଳା କୁଙ୍କୁମ ନୀଳ ଶ୍ୱେତ ।
ହସ୍ତୀଦନ୍ତ ପଲଙ୍କରେ ମୁକୁତା ମାଳି ମାଳି
ସ୍ପଟିକର କାନ୍ଥରେ ସୁବର୍ଣ୍ଣ ପିତୁଳି ।
ନେତର ପତନୀ ଦେବାଙ୍ଗ ଝୀନ ବାସ
ଅମଳାଣ ବସନ ସୁଗନ୍ଧ ସୁବାସ ।
ମୁକୁତାର ଝରା କୁଙ୍କୁମ ମାଳ ମାଳ
ଚନ୍ଦ୍ର ଦୀପହୁଳା ଯେ ଜଳଇ କୁତୁହଳ ।
ସ୍ଫଟିକର କାନ୍ଥରେ ଠଣା ଯେ ଅପାର
ଦିହୁଡ଼ି ଚନ୍ଦ୍ର ଦୀପ ଜଳେ ନିରନ୍ତର ।
ନୀଳମଣିକି ବେଢ଼ିଛି ବୈଦୁର୍ଯ୍ୟର ହାରା
କି ଜାଣି ଗଗନରେ ଉଦୟ ହୁଏ ତାରା ।
ଗଜମୋତି ପଲଙ୍କରେ ନେତର ଯେ ତୁଳି
ସୁରଙ୍ଗିନୀ ପାଟରେ ବିବିଧ ମୁତୁଳି ।
ଶୁକ୍ଳଝୀନ ବସନ ଶେଯରେ ସଜାଇ
ନାନା ବର୍ଣ୍ଣେ କୁସୁମ ତହିଁରେ ବିଛାଇ ।
ସେ ଶେଯ ପରେ ରାବଣ ଦିବ୍ୟ ବେଶ ହୋଇ
ମନ୍ଦୋଦରୀ ରାଣୀକି ଘେନିଣ ଅଛି ଶୋଇ ।

ଅନେକ ଦାସୀଗଣ ପାଶରେ ଖଟିଛନ୍ତି
କେହୁ ଛୁରୀ ଖଣ୍ଡା କେ ବିଞ୍ଚଣା ଧରିଛନ୍ତି ।
କେ ଶ୍ୱେତ ଚାମର ଛାମୁରେ ଢାଳେ ପୁଣି
ଚନ୍ଦ୍ରଦୀପ ଘେନି ଉଭା କେବଣ ତରୁଣୀ ।
କେହୁ ପୁଷ୍ପ ବିଞ୍ଚଣା ଧରି ଧୂପକାଠି
ପାଦ ମଞ୍ଚାଳଇ କେବଣ ବିମ୍ବୋଷ୍ଠୀ ।
କେହୁ ସଜ କରିଣ ଧରିଅଛି ପାନ
ଶେଯପାଡ଼ି ଉଭା କେବଣ ହିଁ ଜନ ।
କେହୁ ବାସ ପାଣି ଝରିରେ ଧରିଛନ୍ତି
ଏମନ୍ତ ଭାବେ ଦାସୀ ସେବିଣ ଅଛନ୍ତି ।
କେଉଁ ନାରୀ ବଇଁଶୀ ସ୍ୱନ କରେ ଧୀରେ
କେହୁ ଗାୟନ କରଇ ମାଳବ ରାଗରେ ।
କେ ଆଳାପ କରିଣ ତାଳ ମର୍ଦ୍ଦଳ ବାଇ
କେଉଁ ନାରୀ କେଦାର ରାଗରେ ଗୀତ ଗାଇ ।
କେହୁ ସାରୀ ଶୁଆଙ୍କୁ ପଢ଼ାଏ ପାଠମାନ
କେବଣ ନାରୀ ଯେ ନିଦ୍ରାରେ ଅଚେତନ ।
କେହୁ ଟେକସାର କରି କହୁଛନ୍ତି ବାଣୀ
କେହୁ ପାନ ପିକ ତୁଣ୍ଡରେ ଭରିପୁଣି ।
କେହୁ ପାଦ ମଞ୍ଚାଳନ୍ତି ଫୁଟାନ୍ତି ଆଙ୍ଗୁଠି
କେହୁ ପଛଘୁଞ୍ଚା ଦେଇ ଆସନ୍ତି କରି ପିଠି ।
ସେ ସ୍ଥାନେ ହନୁମନ୍ତ ପ୍ରବେଶ ହେଲା ଯାଇ
ଭିତରେ ପଶିଲା ସେ ଭ୍ରମର ରୂପ ହୋଇ ।
ଖମ୍ବର ଉପରେ ଯାଇ ବସିଲା ମାରୁତି
ଦେଖିଲା ପଲଙ୍କରେ ସୁନ୍ଦରୀ ଶୋଇଛନ୍ତି ।
ଲଙ୍କପତି ଶୋଇଛି ଅଚେତା ହୋଇଣ
ମନ୍ଦୋଦରୀ ତାର କୋଳେ ଶୋଇଅଛି ଜାଣ ।
ଦେଖିଣ ଆନନ୍ଦ ହେଲା ପବନର ସୁତ
ବିଚାରିଲା ଏ ସୁନ୍ଦରୀ ଅଟଇ କିଏତ ।
ଏମନ୍ତ ସୁନ୍ଦରୀ ନେତ୍ରେ ଦେଖିଲା ତ ନାହିଁ
ଈଶ୍ୱରଙ୍କ ଘରଣୀ କି ହରିର ପ୍ରିୟା ଏହି ।
ହନୁମନ୍ତ ମନରେ ବିଚାର କରେ ସେଠି
ଶ୍ରୀରାମଙ୍କ ନାରୀ ଏ କି ବଇଦେହୀ ସ୍ୱତୀ ।
ଜନକର ନନ୍ଦିନୀ କି ରାମର ଘରଣୀ
ରାବଣର ଭବୁଷି ହେଲେ କି ସେହି ପୁଣି ।
ଶ୍ରୀରାମଙ୍କୁ ମୁହିଁ ଯାଇ କହିବି ବାରତା
ରାବଣକୁ ଦେହ ଦେଲେଣି ତୁମ୍ଭ ସୀତା ।
ଚଣ୍ଡାଳୁଣୀ ରାମନାରୀ କେଡ଼େ ଏ ଅଜ୍ଞାନ
ଶ୍ରୀରାମଙ୍କ ଆଶା ତ ଛାଡ଼ିଲା ସେ ଜାଣ ।
ରାବଣର ସଙ୍ଗରେ ଏହାର ଏଡ଼େ ପ୍ରୀତି
ପୋଡୁ ଏହାର ମୁହଁ ରସାତଳେ ପଡୁ ପୃଥ୍ୱୀ ।

ଜଗତ ଲୋକେ ତୋତେ ବୋଲନ୍ତି କମଳିନୀ
ତୁ କିମ୍ବା ମନ୍ଦବୁଦ୍ଧି କଲୁ ଲୋ ତରୁଣୀ ।
ମାରିବି ମୁଁ ରାବଣ ସୀତା ବେନି ଜନ
ଏତେ ବିଚାରି ଖମ୍ବରୁ ଖସିଲା ବହନ ।
ମନ୍ଦୋଦରୀ ନିକଟକୁ ଉଡ଼ିଗଲା ତହୁଁ
ମଦିରା ମାଂସ ସେ ବାସିଲାକ ତହୁଁ ।
ଜାନକୀ ନୁହେ ବୋଲି ତହୁଁ ବାହୁଡ଼ିଲା
ପାପ କଥାମାନ ସବୁ ହୃଦରୁ ତେଜିଲା ।
ଲେଉଟି ହନୁମାନ ମନ୍ଦୋଦରୀ ପାଶ
ମନ୍ଦୋଦରୀ ରାଣୀର ଧଇଲା ସେ କେଶ ।
ଚାପୋଡ଼େ ମାରି ତାକୁ ଉଠାଇଣ ଦେଲା
ଚେତିଣ ସୁନ୍ଦରୀ ଯେ ପଲଙ୍କେ ବସିଲା ।
କିମ୍ଭୂତ କଥା ବୋଲି ମନରେ ବିଚାରି
କେହୁ ମୋର ବାଳ ଝିଙ୍କିଲା ଆସି କରି ।
କିସ ଅବା ସ୍ୱପନେ ଏମନ୍ତେ ଲାଗିଲା
ବିପରୀତ କଥା ପରି ମୋତେ ଜଣାଗଲା ।
ଦାସୀକି ବୋଇଲା ଶୁଣ ଲୋ ମୋର ବାଣୀ
ଦଶଗ୍ରୀବ ମୋତେ କି ଚେତା କଲେ ପୁଣି ।
ଦାସୀମାନେ ବୋଇଲେ ଅଚେତା ତୋର ନାଥ
କେମନ୍ତ କଥାମାନ କହୁ ବିପରୀତ ।
ସ୍ୱପନରେ ଦେଖିଲକି ବିପରୀତ କଥା
ସେ କଥାକୁ ଚେତିଣ ପାଉଅଛ ବ୍ୟଥା ।
ଶୁଣି କରି ମନ୍ଦୋଦରୀ ନିବର୍ତ୍ତି ରହିଲା
ଗାଲକୁ ଆଉଁସିଣ ଚେତା କରାଇଲା ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ହନୁମନ୍ତ ମନ୍ଦୋଦରୀ କି ଚେତା କରି ।
ଓରାର ଉପରେ ବସିଲାକ ଯାଇ
ଭାଳଇ ହନୁମନ୍ତ ବିସ୍ମୟ ମନ ହୋଇ ।
କାହିଁରେ ଲୁଚାଇଛି ରାମର ଘରଣୀ
ଅନେକ ସ୍ଥାନମାନ ଖୋଜିଲି ଯେ ପୁଣି ।
ସମସ୍ତେ କହନ୍ତି ଅଶୋକ ବନେ ସୀତା
ଅଇଲା ଦିନରୁ ସୀତା କରୁଅଛି ଚିନ୍ତା ।
ମୁଁ କେମନ୍ତେ ପାଇବି ତାର ଭେଟ
ଏମନ୍ତ ବିଚାରଇ ପବନର ଚାଟ ।
କି ଅବା ଜାନକୀ ପଡ଼ିଲା ସିନ୍ଧୁ ଜଳେ
ପବନ ଦୁଲାଳ ଏହିପରି ଭାଳେ ।
ସୀତାଙ୍କୁ ନ ଦେଖି ଯେବେ ବାହୁଡ଼ି ଯିବି
ସାତ ଦୂତଙ୍କ ଆଗେ କି ବୋଲି କହିବି ।
ଶୁଣିଣ ପ୍ରାଣ ଯେ ଛାଡ଼ିବେ ସାତଜଣ
ବାରତା ନ ପାଇଲେ ମରିବେ ରଘୁରାଣ ।

ଶ୍ରୀରାମ ନିଧନରେ ଲକ୍ଷ୍ମଣ ନ ବଞ୍ଚିବ
ଆଉ କି ସୁଗ୍ରୀବର ଜୀବନ ରଖିବ ।
ଅଯୋଧ୍ୟା କିଷ୍କିନ୍ଧ୍ୟା ଦୁଇ ଦେଶ ଯିବ ନାଶ
ପାପିଷ୍ଠ ରାବଣ କଲା ଏବେ କିସ ।
ଏତେ ବିଚାରି ସେ ସ୍ଥାନୁ ବାହାର ହୋଇଲା
ବିଭୀଷଣ ନବରେ ପ୍ରବେଶ ହୋଇଲା ।
ମନରେ ବିଚାରିଲା ମୁଁ ନ ପାରିଲି ଭେଦି
କେଉଁପୁର ବୋଲି ଏ ମନରେ ହୁଏ ଛନ୍ଦି ।
ଦେଖିଲା ସେ ପୁରେ ଯୁବତୀ ଅଛି ଶୋଇ
ଅଲେଖକ ତିଳକ ଦିବ୍ୟବେଶ ହୋଇ ।
ଦାସୀ ପରିବାରୀମାନେ ଖଟିଛନ୍ତି ପାଶ
ନିରୋଳେ ନିରୋପଇ ଶ୍ରୀରାମର ଦାସ ।
ସୀତାର ରୂପଗୁଣ ଯାଉଅଛି ମିଶି
ଦେଖିଲା ତାରା କନ୍ୟା ଅତ୍ୟନ୍ତ ରୂପସୀ ।
ଶରତ ଚନ୍ଦ୍ରମା ପରି ମୁଖ ଯେ ତାହାର
ଦେଖିକରି ହନୁମନ୍ତ କରଇ ବିଚାର ।
ଏହି କି ରୂପବତୀ ଜାନକୀ ଅଟଇ
ଏପରି ଭାବି ତାର ବଦନ ନିରୋପଇ ।
ହନୁମନ୍ତ ଚାହାଁନ୍ତେ ଚାହେଁ ତାରା ସତୀ
ବୋଇଲା ରାମଦୂତ ଏବେ ତୁ ଅଇଲୁକି ।
ପୂର୍ବରେ ଯାହା ମୁଁ ଶୁଣିଥିଲି କର୍ଣ୍ଣ
ତୁହି କି ରାମଦୂତ ଅଟୁ ହନୁମାନ ।
ଏତେ କହି ସୁନ୍ଦରୀ ହନୁକୁ କହେ ବାଣୀ
ନୁହଇ ମୁଁ ଜାନକୀ ରାମଙ୍କ ଘରଣୀ ।
ମୁହିଁ ତ ବିଭୀଷଣ ଦୁହିତା ତାରା କନ୍ୟା
ମୋର ସ୍ୱାମୀ କେହି ନାହିଁ ବିଭା ମୁଁ ନୋହିକିନା ।
ଦେବଙ୍କ କାର୍ଯ୍ୟ ନିମନ୍ତେ ଏଠାରେ ଜନ୍ମ ହୋଇ
ଶ୍ରୀରାମଙ୍କୁ ଦେଖିଲେ ସ୍ୱର୍ଗକୁ ଯିବି ମୁହିଁ ।
ହନୁମନ୍ତ ବୋଇଲେ ଏ କେବଣ କାରଣ
ଏକଥା ସଞ୍ଚପୀ ମୋତେ କହ ନାରୀପୁଣ ।
ଆଜକୁ ଚାରିଦିନ ଆସିଲି ସିନ୍ଧୁ ଡେଇଁ
ବଣା ହୋଇ ବିଲଙ୍କାରେ ବୁଲିଲି ଯେ ଯାଇ ।
ଋଷିମାନେ ଚିହ୍ନି କରି ମୋତେ କହିଦେଲେ
ତେଣୁ ମୁଁ ଏ ସ୍ଥାନକୁ ଅଇଲଇଁ ଭଲେ ।
ଏକଦିନ ରାତ୍ରିରେ ମୁଁ ବାହାରେ ବୁଲିଲି
ଭିତରେ ପଶିଣ ମୁଁ ବହୁତ ଖୋଜିଲି ।
କୌଣସି ପୁରେ ମୋତେ ଚିହ୍ନିଲା କେହି ନାହିଁ
ତୁ ଏବେ ସୁନ୍ଦରୀ ଗୋ ଚିହ୍ନିଲୁ ମୋତେ ରହି ।
ଶୁଣି କରି ତାରାସତୀ କହେ ତାକୁ ବାଣୀ
ଏହି ତ ରାକ୍ଷସ ପୁର ଲଙ୍କା ବୋଲି ଜାଣି ।

ଏ ଗଡ଼ର ରାଜା ଯେ ଅଟଇ ରାବଣ
ତାହାର ମୃତ୍ୟୁ ଆସି ନିକଟ ହେଲା ଜାଣ ।
ତେଣୁ ସେ ବିଷ୍ଣୁଙ୍କର ଘରଣୀ ଚୋରାଇ
ଭିକ୍ଷାଶୀ ରୂପ ଧରି ମାୟାରେ ଗଲା ସେହି ।
ଜାନକୀ ଆଗରେ ପ୍ରବେଶ ହୋଇଲା ଜାଣ
ଚାଲ ମୋର ପୁର ବୋଲି ତାଙ୍କୁ ସେ କହିଣ ।
ମୁହିଁଟି ରାବଣ ମୋର ଘର ଲଙ୍କାପୁରେ
ତୋତେ ନେବାପାଇଁ ମୋର ଶରଧା ଯେ ବଳେ ।
ଜାନକୀ ବୋଇଲେ ତୁରେ ଯେବେ ନେବୁ ଲଙ୍କା
ନିଶ୍ଚୟ ମରିବୁ ତୁ ଏହା ପୂର୍ବଲେଖା ।
ରାବଣ ବୋଇଲା ମୁହିଁ କରିଛି ପ୍ରମାଣ
ରାମବାଣେ ମୋର ମୃତ୍ୟୁ ହେଲେଟି କାରଣ ।
ଜାନକୀ ବୋଇଲେ ଦଣ୍ଡେ ରହିଲେ ମରିବୁ
ଶ୍ରୀରାମଙ୍କ ବାଣେ ତୁ ସ୍ୱର୍ଗପୁର ଯିବୁ ।
ରାବଣ ବୋଇଲା ମୁଁ ଏକା ମଲେ କିସ
ଭାଇ ବନ୍ଧୁ କୁଟୁମ୍ବ ତ ମୋହର ବିଶେଷ ।
ତୁ ଗଲେ ରଣ ଗୋଳ ଲଙ୍କାରେ ହୋଇବ
ରାମଙ୍କୁ ଦେଖି ମଲେ ମୁକ୍ତ ହେବେ ସର୍ବ ।
ଶୁଣି କରି ଜାନକୀ ଅଗ୍ନିରୂପ ହେଲା
ଯିବି ମୁଁ ଲଙ୍କାଗଡ଼ ବୋଲିଣ ବୋଇଲା ।
ରାବଣ ସତୀକି ଲୋଭ କରିଥିଲା
ଅଗ୍ନିରୂପ ଦେଖିବାରୁ ମନରେ ବିଚାରିଲା ।
ବୋଇଲା ଏ ସତୀ ଗଲେ ପାଇବି ମରଣ
ଶାପରୁ ମୁକ୍ତ ହେବି ପାଇବି କାରଣ ।
ସୀତା ବୋଇଲେ ମୁଁ ତୋର ପୁରକୁ ନ ଯିବି
ଯାଇଣ ବାହାର ସ୍ଥାନରେ ରହିବି ।
ରାବଣ ବୋଇଲା ଯେ ତୋର ମନଇଚ୍ଛା
ନିଃଶଙ୍କେ ରଥରେ ବସ ଜନକର ବତ୍ସା ।
ସେଦିନ ରଜସ୍ୱଳା ଜାନକୀ ହୋଇଥିଲା
ଗଣ୍ଡ ଭଇରବ ଦୋଷ ରାବଣକୁ ହେଲା ।
ଲଙ୍କାଗଡ଼େ ଜାନକୀ ହେଲେ ପରବେଶ
ଅଶୋକବନେ ତାଙ୍କୁ ରଖିଲା ଦଶାଶ ।
ମୋହର କନିଷ୍ଠ ଭଗ୍ନୀ ଅଟଇ ତ୍ରିଜଟା
ସହସ୍ରେ ଅସୁରୀ ସଙ୍ଗେ ଜଗିଅଛି ସୀତା ।
ରଖିଣ ରାବଣ ନିଜ ପୁରେ ଆସି
ପାଞ୍ଚଦିନେ ଜାନକୀ ଶୁଦ୍ଧ ସ୍ନାନ ଘଟି ।
ରାବଣର ରାଣୀ ହଂସ ରାବଣକୁ ପୁଣ
ଡକାଇଲେ ସତୀ ତ୍ରିଜଟା ହସ୍ତେଣ ।
ଅଗ୍ନିରେ ଶୁଦ୍ଧସ୍ନାନ କରିଲେ ଜାନକୀ
ତାଟକା ହୋଇଲେ ରାଣୀ ହଂସ ଦେଖି ।

ସ୍ୱାହାନ ସାରି ସତୀ ରାବଣକୁ କହି
ଚଉଦ ମାସ ଦି ଦିନେ ମରିବୁ ଲଙ୍କସାଇଁ ।
ପୁତ୍ର ନାତି ଭାଇବନ୍ଧୁ କୁଟୁମ୍ବ ସୈନ୍ୟବଳ
ହସ୍ତ ଅଶ୍ୱ ସାରେଣୀ ଯିବେ ଯମଆଳ ।
ଶୁଣି କରି ରାବଣ ସେଠାରୁ ପଳାଇଲା
ଅଗ୍ନିର ତେଜେ ସେ ସ୍ଥାନେ ରହି ନ ପାରିଲା ।
ରାଣୀ ହଂସକୁ ଜାନକୀ କହିଲେ ବଚନ
ରାବଣର ଆଶା ଛାଡ଼ ଗୋ ତୁମ୍ଭେ ପୁଣ ।
ବିଭୀଷଣର ସଙ୍ଗେ କର ଯା ପ୍ରୀତି ଭାବ
ଲଙ୍କାଗଡ଼େ ବିଭୀଷଣ ରାଜନ ହୋଇବ ।
ପୁତ୍ର ନାତି ଭାଇବନ୍ଧୁ ସମସ୍ତେ ଯିବେ ଯମ
ମୋ ଆଗେ ସତ୍ୟକରି କରିଛି ନିୟମ ।
ମନ୍ଦୋଦରୀ ବୋଇଲା ସୁଦୟା ମୋତେ କର
ଶ୍ରୀରାମ ଛାମୁକୁ ତୋତେ ନେବି ଗୋ ନିକର ।
ଜାନକୀ ବୋଇଲେ ନୁହଇ ସେ କଥା
ଆଗ କରି ମୋତେ ମନାଇଛି ଦଶମଥା ।
ଶୁଣି କରି ମନ୍ଦୋଦରୀ ନିରାଶ ହୋଇଲା
ସପତଣୀଙ୍କ ସଙ୍ଗରେ ସଦନକୁ ଗଲା ।
ମୋହର ପିତାଙ୍କୁ ସେ ଡକାଇ ଆଣିଲା
ସକଳ ବୃତ୍ତାନ୍ତ ବୁଝାଇ କହିଲା ।
କହିଣ ମନ୍ଦୋଦରୀ ଦିଅର ସଙ୍ଗେ ପ୍ରୀତି
ରାବଣ ପ୍ରତି ଆଶା ଛାଡ଼ିଲେ ସର୍ବ ସ୍ତ୍ରୀ ।
ହନୁମନ୍ତ କହିଲା ତାହାର ଗତି କହ
ରାବଣଠାରୁ ମନ୍ଦୋଦରୀ ଛାଡ଼ିଲା ତ ସ୍ନେହ ।
ତାରାବତୀ ବୋଇଲା ସେ ବେନିକୁଳ ରଖେ
ସତମିଛ ବୋଲିଣ ନ ଯାଏ ପରତେ ।
ଶୁଣ ତୁ ହନୁମାନ ମୋହର ଚରିତ
ବିଧାତା ଜାତ କଲା କରିଣ ଛନ୍ଦକୃତ୍ୟ ।
ଯେତେବେଳେ ଜାନକୀ ଲଙ୍କାକୁ ଅଇଲା
ରାବଣର ଭୋଗ ଛପନ ଗଣ୍ଡା ଗଲା ।
ତେଣୁ ସେ ମୋହର ପରତେ ଯେ ହେଲା
ଶ୍ରୀରାମ ଆସିଲେ ବୋଲି ମନରୁ ଭ୍ରାନ୍ତି ଗଲା ।
ଜାଣିଲି ରସାତଳ ହେବ ଲଙ୍କାଭୂଇଁ
ଶକ୍ତିରେ ଭେଦ ହେବ ଶ୍ରୀରାମର ଭାଇ ।
ମୁହିଁ ଯେ ଏକସ୍ତନୀ ଅଟେ ଦେବ ନାରୀ
ମୋର କ୍ଷୀରେ ବଟା ହେବ ଔଷଧ ତାହାଙ୍କରି ।
ଆନରେ ନ ବର୍ତ୍ତଇ ସୁମିତ୍ରାର ସୁତ
ଏଣୁ ଦେବ ମୋତେ କରିଛନ୍ତି ଜାତ ।
ରାମର କାର୍ଯ୍ୟରେ ମୁଁ ରହିଛି ଗୁପତେ
ନୁହଇ ମାୟାସ୍ତିରୀ ଶୁଣ ତୁ ହନୁମନ୍ତେ ।

ହନୁମନ୍ତ ସମ୍ମୁତେ ମୋତେ ଦେଖା
ତାରା ବୋଇଲା ଦେଖ ଶିଳ ଶିଳପୁଆ ।
ହନୁମନ୍ତ ବୋଇଲା ଏ କେଉଁଠାରେ ଥିଲା
ତାରା ନାରୀ ବୋଇଲା ଏ ସ୍ୱର୍ଗରୁ ଅଇଲା ।
ମଣିଶିଳ ମଣିଶିଳ ପୁଆ ଅଟେ ସାର
ଚନ୍ଦ୍ରମଣି ଅଟଇ ଏ ଦେଇଛି ଶଶଧର ।
ଶରୀରୁ ବସ୍ତ୍ର କାଢ଼ି ହନୁକୁ ଦେଖାଇଲା
ଏକସ୍ତନ ତାହାର ହନୁମନ୍ତ ଦେଖିଲା ।
ଦେଖିଣ ଅନନ୍ତରେ ହରଷ ହୋଇଲା
ଏକଥା ସତ୍ୟ ବୋଲି ମନରେ ବିଚାରିଲା ।
ଏଥୁ ଅନନ୍ତରେ ତାରା ଯେ କହଇ
ବେଗେ ତୁ ରାମ ଆଣ ବୋଲିଣ ବୋଲଇ ।
ମୋତେ ଯେ ବିଳମ୍ବ ହୋଇଲାଣି ଦିନ
ଯିବି ମୁଁ ସ୍ୱର୍ଗପୁର ନ ରହିବି ଜାଣ ।
ତୁ ଯେବେ ଅପ୍ରତେ କରୁଅଛ ମୋତେ
ଜାନକୀର ପାଦକୁ ସରିନୁହେ ଜଗତେ ।
କୋଟି କୋଟି ଜନ୍ମରେ ଦାସୀ ମୁଁ ନୋହିଲି
ତେଣୁ ଜନ୍ମ ହୋଇଣ ମର୍ତ୍ତ୍ୟରେ ବିହରିଲି ।
ହନୁମନ୍ତ ବୋଇଲା ଶୁଣରେ ସୁନ୍ଦରୀ
କେବଣ ଗୁଣରେ ତୁ ମର୍ତ୍ତ୍ୟରେ ଅବତରି ।
କେଉଁ ଦେବତା ପୂର୍ବେ ଥିଲୁ ତୁହି ନାରୀ
ସେକଥା ମୋର ଅଗେ କହ ପେଡ଼ିକରି ।
ତାରା ବୋଇଲା ବାବୁ ପୂର୍ବ ଜନ୍ମକଥା
ଶୁଣିଲେ ହେବୁ ତୋଷ ବୀର ମହାରଥା ।
ଅନିରୁଦ୍ଧ ବିଦ୍ୟାଧରର ଅଟେ ମୁଁ ଘରଣୀ
ଅନେକ ସମ୍ଭର୍ବରେ ଅଟଇ ପାଦେ ପୁଣି ।
ମୋତେ ଧରି ବିଦ୍ୟାଧର କରେ କାମଲୀଳା
ସତେ ବରଷ ପର୍ଯ୍ୟନ୍ତେ ଅନ୍ତର ନୁହେଁ ପରା ।
ଏକ ଦିନେ ଗଙ୍ଗାକୁ ମୁଁ ସ୍ନାନ କରିଗଲି
ଗଙ୍ଗା କୂଳେ ନିଶି ଋଷି ତପିଙ୍କି ଦେଖିଲି ।
ଦେଖି କରି ଋଷିଙ୍କି କହିଲି ବଚନ
ସଂସାର ନ କର କିମ୍ପା ଏକାରେ କରଧ୍ୟାନ ।
ସେ ମୁନି ବୋଇଲେ ତୁ ଅଟୁ ନଷ୍ଟନାରୀ
ରମଣ ଶ୍ରଦ୍ଧାରେ ମନ କି ତୋର ବଳି ।
ଏବେ ତୋର ରମଣ ଶ୍ରଦ୍ଧା ଯାଉ ସରି
ଉନ୍ମାଦର ଶାପ ତୁ ପାଅଗୋ ସୁନ୍ଦରୀ ।
ମର୍ତ୍ତ୍ୟରେ ଜନମ ତୁ ଅସୁର ଘରେ ହୁଅ
ଶତେ ବରଷ ପର୍ଯ୍ୟନ୍ତେ ଗୃହସ୍ଥ ନ ପାଅ ।
ରାମଙ୍କୁ ଯେତେବେଳେ ଦେଖିବୁ ନୟନେ
ତେତେବେଳେ ମୁକ୍ତି ତୁ ଲଭିବୁ ସ୍ୱର୍ଗ ସ୍ଥାନେ ।

ବୋଇଲି ତାଙ୍କୁ ମୁଁ କେଉଁଠାରେ ଭେଟ
ମୁନି ବୋଇଲେ ଲଙ୍କାରେ ଭେଟିବୁ ରଘୁଚାଟ ।
ରାବଣକୁ ମାରିବାକୁ ଜନ୍ମ ହେବେ ହରି
ରାମ ନାରୀଙ୍କି ରାବଣ ନେବ ଚୋରୀ କରି ।
ସେହି ଛଳେ ଶ୍ରୀରାମ ଲଙ୍କାରେ ଯୁଦ୍ଧ କରି
ଶ୍ରୀରାମର ଭାଇଙ୍କି ରାବଣ ଶକ୍ତି ମାରି ।
ଏକସ୍ତନୀ ହୋଇ ତୁ ଲଙ୍କାଗଡ଼େ ଥିବୁ
ତୋର କ୍ଷୀରେ ଔଷଧ ବାଟିବେ ମହାପ୍ରଭୁ ।
ଚନ୍ଦ୍ରମଣି ଶିଳ ତୋର ନିକଟରେ ଥିବ
ରବିମଣିଶିଳ ପୁଅ ଇନ୍ଦ୍ର ନେଇ ଦେବ ।
ଏକ ସ୍ତନରୁ ତୋର ସ୍ରବିବ ଯେ କ୍ଷୀର
ତେବେ ସେ ବଞ୍ଚିବେ ଭାଇ ରାମଙ୍କର ।
ଲକ୍ଷ୍ମଣ ବଞ୍ଚନ୍ତେ ରାମ ଆନନ୍ଦ ହେବେ
ସ୍ୱର୍ଗକୁ ଯାଅ ବୋଲି ସେ କାଳେ କହିବେ ।
ତେବେ ତୁହି ମୁକ୍ତ ହୋଇଣ ଆସିବୁ
ଅନେକ ସୁଖେ ସ୍ୱାମୀ ସଙ୍ଗରେ ବିଳସିବୁ ।
ମୁଁ ବୋଇଲି ମୋତେ ତୁମ୍ଭେ ବିନା ଦୋଷେ କୋପ
ମୁନି ବୋଇଲେ ଦେଖିବୁ ତୁ ନାରାୟଣ ରୂପ ।
ଶୁଣି କରି ମୋର ମନ ସନ୍ତୋଷ ହୋଇଲା
ତେଣୁ ମୋତେ ଲଙ୍କାଗଡ଼େ ବିଧାତା ଜାତ କଲା ।
ମୁହିଁ ଜାତ ହୋଇବାରୁ ଅଇଲେ ଶଶଧର
ଶୀତଳ ମଣିଶୀଳ ଦେଲେ ମୋର କର ।
ଶଶଧର ଯିବାରୁ ଅଇଲେ ରବି ପୁଣି
ମଣିର ଶିଳପୁଆ ଦେଲେ ମୋତେ ଆଣି ।
ଛାୟାପତି ଯିବାରୁ ଅଇଲେ ବୃହସ୍ପତି
ସଙ୍କେତ ଗଣାଇଁ ମୋତେ କହିଲେ ଦେବଟି ।
ତେଣୁ ସେ ଇନ୍ଦ୍ର ଆସି ମୋତେ ଚେତାଇଲା
ବିଧାତା ଆସି ମୋତେ ସୁଗତି କରାଇଲା ।
ଶଙ୍କର ଆସିଣ ମୋତେ ସୁନ୍ଦର ରୂପ କଲେ
କୁବେର ଆସିଣ ଅଳଙ୍କାର ଦେଲେ ।
ସେହିଦିନୁଁ ଲଙ୍କାଗଡ଼େ ରହିଛଇଁ ମୁହିଁ
ରାବଣ ଜାନକୀଙ୍କି ଆଣିଲା ଚୋରାଇ ।
ଆଣି କରି ତାଙ୍କୁ ଛୁଇଁ ନ ପାରିଲା
ଯେଣୁ ସେ ଜନକ ପୁତ୍ରି ଅଗ୍ନିରୂପ ହେଲା ।
ତେଣୁ ସେ ନାରୀକି ଅଭାବ ଦଶଗ୍ରୀବ
ଅଗ୍ନିସ୍ନାନ ଦେଖିବାରୁ ଭାଙ୍ଗିଲା ତାର ଗର୍ବ ।
ତେରମାସରେ ଛବିଶିଥର ଅଗ୍ନିସ୍ନାନ
ଦେଖିଣ ଲଙ୍କାଗଡ଼େ ଚମକ ପଡ଼େ ପୁଣ ।
ଶୁଣି କରି ମାରୁତି ଛାଡ଼ିଲା ବିଷାଦ
କେଉଁଠାରେ ସୀତାଛନ୍ତି କହ ତାର ଭେଦ ।

ତାରା ବୋଇଲା ଜାନକୀ ଅଶୋକବନେ ଅଛି
ସେ ବନକୁ ଯାଇଣ ଦେଖ ବାୟୁ ବସି ।
ସହସ୍ରେ ଅସୁରୀ ଜଗିଛନ୍ତି ତାଙ୍କୁ
ମଧ୍ୟେ ବସି ଚିନ୍ତାକୁଳ ରାମ ଆସିବାକୁ ।
ହନୁମନ୍ତ ବୋଇଲା ଧନ୍ୟ ତୋ ଜୀବନ
ଅସୁର କୁଳରେ ତୁହି ମହତ ସୁଜନ ।
ପରମ ସାଧବୀ ତୁ ଅଟୁ ଦୟାବନ୍ତ
ବିଷ୍ଣୁଭକ୍ତି କଥା ଅଛି ତୋ ଅନ୍ତର୍ଗତ ।
କଥାଏ ପଚାରିବି କହିବୁ ସତ ମୋତେ
ଯେତେକଥା କହିଲୁ ତୋର ମାୟା ନାହିଁ ଚିତ୍ତେ ।
ସ୍ତିରୀ ରତ୍ନମଣି ସେ ଶ୍ରୀରାମ ଘରଣୀ
ସାକ୍ଷାତେ କମଳା ସେ ଶିରୋମଣି ।
ରାବଣ ଚାଣ୍ଡାଳ କି ଛୁଇଁଣ ଅଛି କହ
ଶୁଣିଣ ତାରାର ସ୍ତମ୍ଭୀଭୂତ ଦେହ ।
ତାରା ଭୂଇଁ ଛୁଇଁଣ ଶ୍ରବଣେ ହସ୍ତ ଦେଲା
ଅଗ୍ନିରେ ମାଛି କେମନ୍ତେ ବସିବ ବୋଇଲା ।
ସୀତୟା ନିର୍ଧୂମ ଅଗ୍ନି ଅଟଇ ଯେ ଜାଣ
ଛୁଇଁବାକୁ ଭାଜନ ନୁହଇ ଦୈତ୍ୟରାଣ ।
ମୁକ୍ତି ହେବ ବୋଲି ଆଣିଲା ଚୋରି କରି
ଅଶୋକବନେ ରଖେ ସୀତାଙ୍କୁ ଦେଖି କରି ।
ହନୁମନ୍ତ ବୋଇଲେ ତାରାର ବଚନେ
କେଉଁଣଠାରେ ଅଶୋକ ବନେ ଯେ ବିପିନେ ।
ତାରା ବୋଇଲା ଏ ନଗ୍ର ପଶ୍ଚିମରେ ଜାଣ
ଅକ୍ଷୟ କାନନ ଯେ ଅଟେ ତାର ନାମ ।
ତହିଁର ଉତ୍ତାରେ ଅଶୋକ ବିପିନ
ସେ ଠାବରେ ସତୀ ଛନ୍ତି ହେ ହନୁମାନ ।
ସେ ସ୍ଥାନକୁ ବହନ ଯାଅ ହେ ମାରୁତି
ସେ ବନରେ ଦର୍ଶନ ପାଇବ ରାମସତୀ ।
ତୋତେ ଦେଖିଲାବେଳୁ ନିଦ୍ରା ମାଡ଼େ ଘନ ଘନ
ନିଶ୍ଚିନ୍ତ ଶୟନ ମୋତେ ମିଳିଲା ହନୁମାନ ।
ଆଜି ରଜନୀ ତ ହୋଇଲାଣି ଶେଷ
ଅଳ୍ପ ରଜନୀ ଅଛି ନ ଯା ସେ ବନେତ ।
ଏତେ ବୋଲି ନୟନ ବୁଜିଲା ଶଶୀମୁଖୀ
ସଙ୍ଗର ସଖୀମାନେ ଏକଥା ନ ଜାଣନ୍ତି ।
ତାରାସତୀ ଶୋଇବାରୁ ହନୁମନ୍ତ ଗଲା
ବିଭୀଷଣ ନବରେ ପ୍ରବେଶ ହୋଇଲା ।
ମନରେ ବିଚାରଇ ପବନର ସୁତ
କପଟକରି କୁଟିଳ କହନ୍ତି ଦଇତ ।
ଏମାନଙ୍କ କଥା ପ୍ରତେ ମୁଁ ନ ଯାଇ
ଏ ପୁର କାହାର ଅପୂର୍ବ ଦିଶଇ ।

ଏତେ ବୋଲି ମଞ୍ଜାରୀ ରୂପକୁ ସେ ଧରି
ଦେଖିଲା ନିଶ୍ଚିନ୍ତରେ ଶୋଇଛନ୍ତି ନାରୀ ।
ବହୁତ ଭୂଷଣ ତାଙ୍କଠାରେ ନାହିଁ
ଶୋଭାବନ୍ତ ସ୍ତିରୀମାନେ ଅଛନ୍ତି ଯେ ଶୋଇ ।
ଶତେକ ଯୁବତୀ ଏକ ପ୍ରାୟେ ଦିଶି
ମୁଖ ବିକାଶଇ ପଦ୍ମ ଦଳ ରାଶି ।
ଚରଣମାନ ଦିଶଇ ଡାଳିମ୍ବ ପୁଷ୍ପବନ
ନବ ଯଉବନୀ ସମସ୍ତେ ଯେ ଜାଣ ।
ଅମଳାନ ବସନ ସମସ୍ତେ ଛନ୍ତି ପିନ୍ଧି
ବାସ ଦ୍ରବ୍ୟମାନ ଅଙ୍ଗରେ ବେଳ ଛନ୍ଦି ।
ମଧ୍ୟରେ ବିଭୀଷଣ କରିଛି ଶୟନ
ଶତେକ ଯୁବତୀ ଚଉପାଶେ ଜାଣ ।
ତାଙ୍କର ଚଉପାଶେ ଦାସୀମାନେ ଶୋଇ
ସମସ୍ତେ ଧଳାବର୍ଣ୍ଣ କଳା କେହି ନାହିଁ ।
ବିଭୀଷଣର ଶୟନ ସ୍ଥାନ ମସ୍ତକ ଉପରେ
ଶ୍ୱେତଅହୀ ଗୋଟି ଫେଣ ଟେକିଛ ଉଚ୍ଚରେ ।
ଦେଖିଣ ମାରୁତି ମନରେ ବିଚାରିଲା
ଏମନ୍ତ ରୀତି ମୋର କାହିଁ ନ ଦେଖିଲା ।
ଅନନ୍ତପରେ ଶୟନ ଯେହ୍ନେ ବାସୁଦେବ
ତେସନେକ ଅହୀପରେ ଶୋଇଛି ଦାନବ ।
କିମ୍ଭୁତ କଥା ଏହି ମନରେ ବିଚାରଇ
ହନୁମନ୍ତକୁ ଦେଖି କହଇ ଶ୍ୱେତ ଅହୀ ।
ତୁ ଏବେ ମୋରଠାରୁ ଶୁଣ ରାମଦୂତ
ଯାହାକୁ ତୁ ଖୋଜୁଛୁ ଅଶୋକ ବନେ ସେ ତ ।
ତାହାର ଦୂତପଣେ ଅଗ୍ନି ପବନ ଛନ୍ତି
ପିତା ପୁତ୍ରଙ୍କର ଭେଟ ହେବ ସେଥି ।
ଅମୃତ ଆହାରରେ ତେରମାସ ଗଲା
ରାମନାମ ସୁମରେ ଜାନକୀ ସେଠି ଭଲା ।
ଲଙ୍କାପୁର ଅସୁର ଡରିଲେଣି ତାକୁ
ଅଗ୍ନିରେ ସ୍ନାନ କରେ ଭୟ ଦିଶିଲା ଅସୁରଙ୍କୁ ।
ଭୋଜନ କରିବାର ନ ଜାଣନ୍ତି ଦୈତ୍ୟ
ତେଣୁ ସେ ଭାଳେଣି କରନ୍ତି ସମସ୍ତ ।
ଲଙ୍କାର ଅସୁର ସମସ୍ତେ ଶୁଷ୍କକାଷ୍ଠ
ଜାନକୀ ଅଗ୍ନି ଯେ କରିବ ଭସ୍ମୀଭୂତ ।
ଏବେ ତୁ ମାରୁତି ଅଶୋକ ବନେ ଯାଅ
ରାମ ଘରଣୀଙ୍କି ସେଠାରେ ଭେଟ ପାଅ ।
ମାୟାରୂପ ଧରିଣ ସକଳ ଦେଖିବୁ
ଗୁପତ ସ୍ଥାନମାନ ନିଶାରେ ବୁଲିବୁ ।
ଦିବସେ ନଦୀ କୂଳେ କହିବୁ ସନ୍ଦେଶ
ସନ୍ତକ ନ ଦେଲେ ସତୀ କରିବ ନିଶ୍ଚେ ନାଶ ।

ଏତେ କହି ନାଗ ହୁକୁମ ଯେ ଦେଲା
ଗୁପତରେ ଯିବୁ ତୁ ପବନର ବଳା ।
ତୋହର ଆୟତରେ ଯେତେକ ହୁଏ କାର୍ଯ୍ୟ
ମାରିବୁ ଅସୁର ହୋଇଣ ତୁ ତେଜ ।
ଓପ୍ରୋଧ ନ କରି ମାରିବୁ ଦୈତ୍ୟବଳ
ରାମାୟଣ ଯୁଦ୍ଧେ ତୋ କଥା ହେବ ସାର ।
ଯେଉଁରୂପେ ଦେବତାଏ କରିବେ ପ୍ରଶଂସା
ରାମଟି ନାରାୟଣ ଚତୁର୍ବର୍ଗ ଦାତା ।
ନିଭରସା ହେଲେ ରାମନାମ ସୁମରିବୁ
କାଲିର ରଜନୀରେ ଜାନକୀ ଭେଟିବୁ ।
ଏତେ କହି ଅହୀ ଅନ୍ତର୍ଦ୍ଧାନ ହେଲା
ଦେବ ଆଳରେ ଶଙ୍ଖ ଶବଦ ଶୁଭିଲା ।
କାକ ରାବ ଦେଲେ କୋକିଳ କଲେ ସ୍ୱନ
କୂଳସ୍ତିରୀମାନେ ତେଜିଲେ ଶୟନ ।
ପୂର୍ବ ଦିଗରେ ଉଦୟ ହେଲେ ଦିନମଣି
ସେଠାରୁ ମାରିତି ଚଳିଲା ବେଗେ ପୁଣି ।
ମଞ୍ଜାରୀ ରୂପ ତେଜି କୋକିଳ ରୂପ ହେଲା
ସ୍ୱାଦ ବନ ଭିତରେ ଯାଇଣ ମିଳିଲା ।
ସ୍ୱାଦୁ ଫଳ ଖାଇଣ ରହିଲା ସେ ବନରେ
ଦିନ ହୋନ୍ତେ ମାରୁତି କୋକିଳ ରୂପ ଧରେ ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ମନ୍ଦୋଦରୀର ବାଳ ଝିଙ୍କିଲା ହନୁମାନ୍ତ ।
ଚାପୋଡ଼େ ମାରି ତାକୁ ଚେତା କରାଇଲା
ଅକ୍ଷୟ ଘରଣୀ ଯାକ ବିଧବା ଯେ କଲା ।
କୁମ୍ଭକର୍ଣ୍ଣକୁ ଶୁଆଇଲା ଉତ୍ତରକୁ ଶିର କରି
ସେ କଥାମାନ ରଜନୀ ଶେଷରେ ବିଚାରି ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ରଜନୀ ପାହିବାରୁ ବାରୁଣୀ ଏ ଦେଖି ।
କୁମ୍ଭକର୍ଣ୍ଣ ରାଣୀମାନେ ଉଠିଣ ଦେଖିଲେ
ଉତ୍ତର ମୁଖେ ସ୍ୱାମୀ ଶୋଇଛି ନିରେଖିଲେ ।
ବୋଇଲେ କିମ୍ଭୁତ କଥା ଏବେ ଏହୁ ହେଲା
କର ବଥାଇବାରୁ ଏ ଦିଗେ ଲେଉଟିଲା ।
ଏମନ୍ତ ବିଚାରିଣ ନାରୀ ତୁନି ହେଲେ
ବିଭୀଷଣକୁ ଡକାଇ ସେ କଥା କହିଲେ ।
ବିଭୀଷଣ ବୋଇଲେ ନକର ପ୍ରଘଟ
ଚେତା କଲେ ଭାଇ ଯେ ହେବ କ୍ରୋଧଚିତ୍ତ ।
ଏତେ କହି ବିଭୀଷଣ ସେଠାରୁ ଚଳିଗଲା
ନିତ୍ୟକର୍ମ ସାରି ରାଜା ଆଗରେ ମିଳିଲା ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ଅକ୍ଷୟ କୁମାରର ଯେତେକ ଯେ ନାରୀ ।

ଶୟନ ତେଜିଣ ସମସ୍ତେ ଉଠିଲେ
ବେଶଭୂଷା ଅଳାଙ୍କର ଅଙ୍ଗେ ନ ଦେଖିଲେ ।
ବିଧବା ନାରୀ ପ୍ରାୟେ ସମସ୍ତେ ଦିଶିଲେ
ଦେଖିଣ ଯୁବତୀଏ ମନରେ ଭାଳିଲେ ।
ଅଳଙ୍କାର ଭୂଷଣ ଖୋଜିଣ ଶଯ୍ୟାରେ
ଫୁଲଗଭାମାନ ଛିଡ଼ି ପଡ଼ଇ ତଳରେ ।
ଚୁଡ଼ି କରି ଅଳି ବାହୁଟି ଅଳକା ବିଦ ମୁଦି
ବସଣୀ ଗୁଣା ନୋଥ ଚାପସରି ଭେଦି ।
କାପ ଯେ ମଲ୍ଲି କଡ଼ି କାପ ଯେ ଫିରିଫିରା
ପଦକ ରତ୍ନମାଳି ହୃଦରେ ନାହିଁ ପରା ।
ଶଯ୍ୟାର ଉପରେ ସମସ୍ତ ଚୂର୍ଣ୍ଣ ହୋଇ
ଯେ ଯାହାର ବିତ୍ତ ନାରୀ ନେଲେକ ଗୋଟାଇ ।
ବାନ୍ଧିଣ ସ୍ୱାମୀ ଆଗେ କହିଲେ ସକଳ
ଦେଖିଣ ରାବଣ ସୁତ ହୋଇଲା ବିକଳ ।
ଜନନୀ ମନ୍ଦୋଦରୀକି ଡକାଇ କହିଲା
ବଧୂମାନଙ୍କୁ ତୋର ଦେଖ ଗୋ ବୋଇଲା ।
ମନ୍ଦୋଦରୀ ଦେଖିଣ ହେଲା ଚମତ୍କାର
ବୋଇଲା ଏକଥା ମାନ ଅଟେ ଅମଙ୍ଗଳ ।
ପୁତ୍ରକୁ କହିଣ ଯେ ଅଳଙ୍କାର ଆଣି
ବଧୂମାନଙ୍କୁ ଭୂଷଣ କରାଇଲା ପୁଣି ।
ସେଠାରୁ ମନ୍ଦୋଦରୀ ନିଜ ପୁରେ ଗଲା
ଆପଣାର କଥା ପୁତ୍ରକୁ ନ କହିଲା ।
ମାଜଣା ସ୍ନାହାନ ସାରି ମନ୍ଦୋଦରୀ
ନିଶ୍ଚଳ ଆସନେ ବସି ରାବଣର ନାରୀ ।
ପଦ୍ମକେଶରୀ ମାଳ ନାରଦ ଥିଲେ ଦେଇ
ସେ ମାଳରେ ଜପ କରନ୍ତେ ଚନ୍ଦ୍ରମୁହିଁ ।
ବେନିଥର ଜପନ୍ତେ ନାରଦ ଜାଣିଲେ
ଯଶୋବନ୍ତୀ ପୁରୁ ସେ ଲଙ୍କାରେ ମିଳିଲେ ।
ନାରଦଙ୍କୁ ଦେଖିଣ ସେ ମନ୍ଦୋଦରୀ ଉଠି
ଗଙ୍ଗାଜଳ ଆଣିଣ ଚରଣ ପଖାଳେଟି ।
ଝୀନବସନ ନେଇ ଚରଣ ପୋଛି ଦେଲା
ସୁବର୍ଣ୍ଣ ସିଂହସନରେ ନେଇଣ ବସାଇଲା ।
ଆଗରେ କରଯୋଡ଼ି କହେ ମନ୍ଦୋଦରୀ
ଆଜି ରଜନୀରେ ନିଦ୍ରା ମୋତେ ଘାରି ।
ମୋହର ନବରେ ମାଛିକି ନାହିଁ ବାଟ
କେହୁ ମୋତେ ଚାପୋଡ଼େ ମାଇଲା ମୁନିରାଟ ।
ଫୁଲଗଭା ଛିଣ୍ଡାଇ ମୋ ବାଳକୁ ଝିଙ୍କିଦେଲା
ମୋର ଜୁଡ଼ା ଧରି ମୋତେ ସଳଖେ ବସାଇଲା ।
ତେଣୁ ମୁଁ ଚେତା ହୋଇ ଚାହେଁ ଚଉକତି
ସଉତୁଣୀମାନଙ୍କର ଚେତା ନାହିଁ ତଥି ।
ଦାସୀମାନେ ସମସ୍ତେ ନିଦ୍ରାରେ ଅଚେତନ
ମୋର ସ୍ୱାମୀ ତାହା କିଛି ନ ଜାଣନ୍ତି ପୁଣ ।
ଦେଖିଣ କିମ୍ଭୁତ କଥା ଆଶ୍ଚର୍ଯ୍ୟିତ ହେଲି
ଚେତା ହୋଇ ମୁହିଁ ରଜନୀ ବଞ୍ଚିଲି ।
ପ୍ରଭାତୁ ସାନପୁତ୍ର ଅକ୍ଷୟ ମୋହର
ଡକାଇ ଘେନିଗଲା ତାହାର ମନ୍ଦିର ।
ମୋତେ ନେଇ ବଧୂମାନଙ୍କୁ ଦେଖାଇଲା
ସକଳ ବଧୂ ବିଧବା ଦେଖିଲି ନେତ୍ରେ ଭଲା ।
ନୂତନ ବେଶ କରାଇ ସେଠାରୁ ଆଇଲି
ବଡ଼ ଦିଅଇ ଦାସୀ ମିଳିଲା ଆସି କରି ।
ସେ କହିଲା ବିଚକ୍ଷଣ କଥା ଅନୁସରି
ଶୁଣିଣ ସନ୍ତାପ ଚିତ୍ତ ହୋଇଲା ମୋହରି ।
ବିଡ଼ମ୍ବନା ତଥା କହି ମୋତେ ଘେନିଗଲା
ଦିଅର ଶୋଇବାର ନେଇଣ ଦେଖାଇଲା ।
ଉତ୍ତର ଦିଗକୁ କରି ମୁଣ୍ଡ ପୁଣ
ଶୋଇଛି କୁମ୍ଭକର୍ଣ୍ଣ ଦେଖିଲି ନୟନ ।
ଶୁଣିଣ ବିଭୀଷଣକୁ ତହୁଁ ଡକାଇଲି
କିମ୍ଭୁତ କଥା ବୋଲି ତାହାକୁ ପଚାରିଲି ।
ସେ ବୋଇଲା ଜାନକୀ ଅଇଲା ଦିନୁଁ କାଳ
ଭସ୍ମ କରିବ ସୀତା ଏ ଲଙ୍କାମଣ୍ଡଳ ।
ତେରମାସ ହୋଇଲା ଭୋଜନ ତାର ନାହିଁ
ପକ୍ଷକେ ଅଗ୍ନିରେ ସେ ସ୍ନାହାନ କରଇ ।
ଦେଖୁଛୁ ଶୁଣିଛୁ ତ ସମ୍ପ୍ରତେ ସେ କଥା
ତୋର ଆଗେ କହିଅଛି ଜନକ ଦୁହିତା ।
ଚୌଦମାସ ଦି ଦିନେ ସ୍ୱାମୀ ଯିବେ ନାଶ
ବାରମାସ ପକ୍ଷେ ଏବେ ହୁଏ ଲେଖାରେତ ।
ତିନିପକ୍ଷ ଦୁଇଦିନ ରହିଲା ଏଥି କାଳ
ଲଙ୍କାକୁ ଆସିବେ ଏବେ ଦଶରଥବାଳ ।
ସେଥିର ସକାଶେ ଆଗତ କାଳ ଦେଖା
ପ୍ରତିଦିନ ନିର୍ଘାତ ଶୂନ୍ୟରେ ପଡ଼େ ଏକା ।
ରାତ୍ରରେ ଲଞ୍ଜାତାରା ଦକ୍ଷିଣ ଦିଗେ ରହି
ନକ୍ଷତ୍ର ମାଳମାଳ ଏ ଦିଗେ ଛିଡ଼ଇ ।
ମୁଁ ବୋଇଲି ନାରଦ ମୋତେ କହିଗଲେ
ବିଭୀଷଣ ରାଜା ହେବ ଏ ଲଙ୍କାମଣ୍ଡଳେ ।
ବିଭୀଶେ ପାଟରାଣୀ ତୁହି ହେବୁ ଜାଣ
ଶୁଣିଣ ବିଭୀଷଣ ବୋଇଲା ପ୍ରମାଣ ।
ମୁନିଙ୍କର କଥା ନୁହଇ ଆନ ଜାଣ
କାଳେ ସେ କଥା ହୋଇବ ଯେ ପୁଣ ।
ମୋତେ ବୋଇଲେ ସାନ ନ କର ପ୍ରଘଟ
ପ୍ରଘଟ ହେଲେ କଥା ହୋଇବ ଉତ୍ପାତ ।

ରାଜ୍ୟରେ ବୋଲିବେ ଦିଅର ସଙ୍ଗେ ମେଳ
ଦିଅର ଭାଉଜଙ୍କ ପାଞ୍ଚରେ ହେଲା ଗୋଳ ।
ସ୍ୱାମୀ ଦୁଷ୍ଟ ହେବାରୁ ରାଣୀ କୂଟ କଲା
ଦିଅର ସଙ୍ଗେ ମିଳି ସ୍ୱାମୀଙ୍କୁ ମରାଇଲା ।
ଶୁଣିଣ ସେ କଥାକୁ ମନରେ ତତ୍ତ୍ୱ କଲି
ପ୍ରଘଟ ନ କରି ଗୁପତେ ରଖିଲି ।
ତେଣୁ କରି ବୋଇଲି ମୋଠାରେ ଦୟା ଥିବ
ମୋର ଦେହଗୋଟି ତୁମ୍ଭର ବୋଲି ଭାବ ।
ସେଠାରୁ ମୁହିଁ ଆସି ନିତ୍ୟ କର୍ମ ସାରି
ତୁମ୍ଭଙ୍କୁ ସୁମରଣା କଲି ହେ ଯୋଗଧାରୀ ।
ଏ କଥାମାନ ମୋତେ ବୁଝାଇ କହିବ
ତେବେ ସେ ମୋର ମନରୁ ଶଙ୍କା ଦୂର ହେବ ।
ନାରଦ ବୋଇଲେ ଶୁଣ ଗୋ ସୁନ୍ଦରୀ
ବାଳିକି ମାରି ରାମ ସୁଗ୍ରୀକି ରାଜା କରି ।
ବାନର ଭାଲୁ ରାମ ଅଣାଇ ବହୁତ
ଚାରିଦିଗକୁ ଦୂତ ପେଶିଲେ ରଘୁନାଥ ।
ତିନି ଦିଗର ଦୂତେ ଖୋଜି ନ ପାଇଲେ
ରାମଙ୍କ ଆଗେ ଯାଇ ବାରତା କହିଲେ ।
ଦକ୍ଷିଣ ଦିଗକୁ ଅଇଲେ ଆଠଜଣ
ଅଙ୍ଗଦ ହନୁମନ୍ତ ଜମ୍ୱେବ ତାରାକ୍ଷ ।
ନଳ ନୀଳ ଗନ୍ଧମାଦନ ସୁଷେଣ
ଖୋଜି କରି ସୀତାଙ୍କୁ ନ ପାଇଲେ ଜାଣ ।
ପାତାଳ ବିମ୍ୱରେ ପଶି ପାତାଳ ଖୋଜିଲେ
ରାବଣ ନେଇଛି ବୋଲି ସେ ପୁରୁ ଶୁଣିଲେ ।
ସାତବୀର କୂଳରେ ରହିଲେ ପ୍ରମାଣ
ହନୁମନ୍ତ ଲଙ୍କାକୁ ଅଇଲା ଯେ ଜାଣ ।
ନଗର ଖୋଜି ତୋର ପୁରକୁ ଅଇଲା
ଜୁଡ଼ା ଧରି ଚାପୁଡ଼େ ମାରି ବସାଇଲା ।
ଚେତା କରି ଦେଇ ତୋ ପୁରୁ ଚଳିଗଲା
ବଧୂମାନଙ୍କୁ ତୋର ବିଧବା କରାଇଲା ।
ସେଠାରୁ କୁମ୍ଭକର୍ଣ୍ଣ ପୁରରେ ପ୍ରବେଶ
ଉତ୍ତରକୁ ମୁଖ କରି ଶୋଇଦେଲା ବାତଶିଷ୍ୟ ।
ଏମନ୍ତ ଭବିଷ୍ୟ କଲା ସେ ମାରୁତି
ମାସେ ସତରଦିନେ ମରିବ ତୋର ପତି ।
ସତରଦିନେ ବଡ଼ ଦିଅର ନାଶ ଯିବ
ମାସକ ଭିତରେ ତୋର କୁଳ ନ ରହିବ ।
ଭାଇ ବନ୍ଧୁ କୁଟୁମ୍ୱ ପୁତ୍ର ନାତି ତୋର
ସୈନ୍ୟବଳ ସହିତେ ମରିବେ ସକଳ ।
କେବଳ ବିଭୀଷଣ ରହିବ ସେ ଅଂଶ
ତୁହି ଚେତାହେଲେ ପୁଣି ରହିବେ ଚାରିଅଂଶ ।

ମନ୍ଦୋଦରୀ ବୋଇଲା ମୁଁ କି ପ୍ରକାରେ ଚେତା
ସେକଥା ମୋର ଆଗେ କହ ବ୍ରହ୍ମବେତ୍ତା ।
ନାରଦ ବୋଇଲେ ତୋର ଦିଅର କୁମ୍ଭକର୍ଣ୍ଣ
ତାହାର ଚରିତ ଶୁଣ ଦେଇ ମନ ।
ଯେତେବେଳେ କୁମ୍ଭକର୍ଣ୍ଣ ଯୁଝିବାକୁ ଯିବ
ତାର ପୁତ୍ର ନାତି ସଙ୍ଗରେ ସେ ନେବ ।
ସେତେବେଳେ ତାର ପୁତ୍ର ସୁକର୍ଣ୍ଣକୁ ତୁହି
କହିବୁ ରାମ ଚରଣେ ଶରଣ ପଶ ଯାଇ ।
ତେବେ ଯେ ଶ୍ରୀରାମ ରଖିବେ ତାହାକୁ
ରାମ ପାଶେ ବିଭୀଷଣ ଥିବେ ଯେ ସାହାକୁ ।
ତୋହର କୁମର ଅଟେ ବୀରବାହୁ
ତାହାର ସାନପୁତ୍ର ଅଟଇ ସୁବାହୁ ।
ସୁବାହୁ ଯୁଦ୍ଧବେଳେ ସେ ପୁତ୍ର ମଣାଇବୁ
ଶ୍ରୀରାମ ଚରଣେ ଶରଣ ରଖାଇବୁ ।
ତେବେ ସିନା ନାତି ତୋର ବଞ୍ଚିବେ ମରଣୁଁ
କହିଲି ତଥ୍ୟ କଥା ଚେତା ଥିବୁ ତେଣୁ ।
ଆହୁରି କଥାଏ କହୁଅଛି ତୋତେ
ନର୍ମଦା କୂଳେ ନାଦ କୁମର ତପ ରତେ ।
ତାହାକୁ ତୋର ସ୍ୱାମୀ ମନରୁ ପାଶୋରିବ
ମରିବା ପର୍ଯ୍ୟନ୍ତ ଯୁଦ୍ଧକୁ ନ ଆଣିବ ।
ତୋର ସ୍ୱାମୀ ମରନ୍ତେ ତାହାକୁ ଅଣାଇବୁ
ଶ୍ରୀରାମ ଚରଣେ ଶରଣ ନେଇ ଦେବୁ ।
ତୋହରି ସାନପୁତ୍ର ଅକ୍ଷୟ କୁମର
ପରଦିନ ମରିବ ମାରିବ ହନୁବୀର ।
ତୋର ପୁତ୍ର ସଙ୍ଗରେ ମରିବ ମଳାସୁର
ନଉକେଶା ଭାଇ ଜମ୍ୱୋମାଳି ବୀର ।
ସୁମାଳିର ପୁତ୍ର ଅଟେ ବିଦ୍ରୁମାଳି
ସେହି ମାରୁତି ହସ୍ତରେ ମରିବ ଜାମ୍ୱ ବାଳି ।
ତିନି ସେନାପତି ତା ସଙ୍ଗରେ ଯିବେ ନାଶ
ଲଙ୍କାକୁ ପୋଡ଼ିଦେବ ପବନର ଶିଷ୍ୟ ।
ପରଦିନ ଏକଥା ମାନ ତୁ ଦେଖିବୁ
ଏହା ପ୍ରକାଶ ନ କରି ଗୁପତେ ରଖିଥିବୁ ।
ପ୍ରକାଶ ନ କଲେ ଦୁଇକୁଳ ରହିବ
ବେଳନ୍ତେ ଜାନକୀର ବାଡ଼ି ତାଟି ଖଟିବ ।
ମନ୍ଦୋଦରୀ ବୋଇଲା ଜାଣିଲି ଏଥର
ବିଭୀଷଣ ଭବିଷରେ ଶ୍ରୀରାମ ହେବେ ମୋର ।
ମୋର ପରେ କିମ୍ପା ହନୁର ତକରାଳ
ପ୍ରହାର କଲା ମୋର ଝିଙ୍କି କରି ବାଳ ।
ନାରଦ ବୋଇଲେ ତୁ ଅନ୍ୟାୟ ଏବେ କଲୁ
ଜାନକୀ କହିବା କଥା ତୁହି ସେ ମେଣ୍ଟିଲୁ ।

ଲୁଚାଇ ଜାନକୀ ତ ନ କହିଲା ତୋତେ
ତୋର ସ୍ୱାମୀ ଥିଲା ତ କହିଲା ସାକ୍ଷାତେ ।
ସେକଥା ହନୁମନ୍ତ ପ୍ରସନ୍ନେ ଜାଣିଲା
ତେଣୁ ସେ ପ୍ରଭାବ ଆସିଣ ତୋତେ ଦେଲା ।
ଏତେ କହି ନାରଦ ସ୍ୱର୍ଗପୁରେ ଗଲେ
ସେଠାରୁ ମନ୍ଦୋଦରୀ ମନେ ବିଚାର କଲେ ।
ଜାନକୀ ବଚନ ନ ମାନିବାରୁ ଜାଣ
ଆସିଣ ପରାଭବ ଦେଲା ହନୁମାନ ।
ନାରଦ କଥା ଯେବେ କାଳେ ମୁଁ ନ ମାନିବି
ତାହାର ଘର ଘରଣୀ ମୁଁ ଯାଇଣ ହେବି ।
ଏମନ୍ତ ବିଚାରି ମନରେ ଶାନ୍ତ ହେଲା
କାହାକୁ ନ କହି ବିଭୀଷଣକୁ କହିଲା ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ସେଠାରୁ କିସ କଲା ବୀର ହନୁମାନ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଦିବସରେ ହନୁମାନ ବନେ ରହିଲାଟି ।
କଶ୍ୟପ ନନ୍ଦନ ଯେଣୁ ଗଲେ ଅସ୍ତଗିରି
ବନର ଭିତରୁକୁ ମାରୁତି ବାହାରି ।
ମନରେ ବିଚାରଇ ଅଞ୍ଜନାର ସୁତ
ଲଙ୍କାଗଡ଼ ସବୁଠାରେ ଖୋଜିଲି ମୁହିଁ ତ ।
ଜାନକୀଙ୍କି ନ ଦେଖିଲି କେଉଁଠାରେ ପୁଣ
ସମସ୍ତେ କହିଲେ ଅଛି ଅଶୋକ ବିପିନ ।
ଦେଖିବି ମୁଁ ଅଶୋକ ବନକୁ ଯାଇଣ
ଏମନ୍ତ ବିଚାର କଲା ମନେ ହନୁମାନ ।
ଯେତେ ଗୁଣ ଶ୍ରୀରାମ କହିଛନ୍ତି ମୋତେ
ଦେଖିଲେ ସିନା ମନରେ ଯିବି ମୁଁ ପରତେ ।
ଏତେ ଭାବି ହନୁ ବେଗେ ଚଳିଗଲା
ନଗ୍ରର ପଶ୍ଚିମ ଭାଗେ ପ୍ରବେଶ ହୋଇଲା ।
ପଶ୍ଚିମ ଭାଗରେ ଦେଖିଲା ହନୁମାନ
ଏକଇ ବନ ଅଛି ଅତି ଶୋଭାବନ ।
ଦେଖିଣ ହନୁମନ୍ତ ବିଚାର କଲା ମନ
ଏହାର ପୂର୍ବରେ ତ ଅଛଇ ଏକବନ ।
ତୁଣ୍ଡର ଚହଳ ଶୁଭୁଛି ସେହିବନ
ଅଶୋକ ବନ ଯେବା ହେବ ସେହିସ୍ଥାନ ।
ସେହି ବନକୁ ଦେଖିବା ଯିବା ପୁଣ ଏବେ
ଏମନ୍ତ ବିଚାର କଲା ସେହି ମନ ଭାବେ ।
ସେଠି ଯେବେ ନ ଦେଖିବି ଜନକ କୁମାରୀ
ଜାଣିବି ମଲାଣି ତ ଶ୍ରୀରାମଙ୍କ ନାରୀ ।
ଜାନକୀଙ୍କି ନ ଦେଖିଲେ ମରିବି ନିୟତ
କିମ୍ପାଇଁ ଯିବି ମୁହିଁ ଆଉ ମାଲ୍ୟବନ୍ତ ।

କାହାର ବଦନକୁ ଚାହିଁବି ମୁଁ ଯାଇ
ଛ'ମାସ ହେଲା ଅଇଲି ଖୋଜିବାର ପାଇଁ ।
ନିଶ୍ଚୟ ମୁଁ ବୁଡ଼ି ମରିବି ସିନ୍ଧୁ ଜଳେ
ଏମନ୍ତ ବିଚାର କରି ହନୁମାନ ଭାଳେ ।
ଅଶୋକ ବନକୁ ବୁଲିବଇଁ ଯାଇ
ସେ ବନେ ନଥିଲେ ଜାଣିବି ସ୍ୱତୀ ନାହିଁ ।
ଜାନକୀଙ୍କି ନ ଦେଖିଲେ ଛାଡ଼ିବି ଜୀବନ
ବାହୁଡ଼ି ଯିବାକୁ ତ ନ ଆସେ ମୋର ମନ ।
ପ୍ରାଣ ବିସର୍ଜିବି ସମୁଦ୍ରେ ଡେଇଁ ପଡ଼ି
ଗଲେ ତ ସୈନ୍ୟବଳ ଦେବେ ମୋତେ ଗାଳି ।
ଶ୍ରୀରାମଙ୍କ ସୁଖ ସେଠାରୁ ଭାଙ୍ଗିଯିବ
ସୁଗ୍ରୀବର ମୋତେ ବାହାର କରିଦେବ ।
ଲକ୍ଷ୍ମଣ ବୀର ମୋତେ ନିଶ୍ଚୟ ମାରିବ
ସେନାପତିମାନଙ୍କର ପ୍ରାଭବ ମୋତେ ହେବ ।
ଅଙ୍ଗଦ ନ ବର୍ତ୍ତିବ ସୁଗ୍ରୀବର ଡରେ
ଜମ୍ୱେବ ପଳାଇ ପଶିବ ପାତାଳରେ ।
ନଳ ନୀଳ ସୁଷେଣ ଗନ୍ଧ ମାରଦନ
ବାରତା ନ ପାଇଲେ ହୋଇବେ ନିଧନ ।
ଏମନ୍ତ ବିଚାର ମନରେ ହନୁ କଲା
ଶ୍ରୀରାମ ନାମକୁ ମନରେ ସୁମରିଲା ।
ଜୟ ଜୟ ଶ୍ରୀରାମ କୋଦଣ୍ଡ କାଣ୍ଡଧାରୀ
ଜୟ ଜୟ ଶ୍ରୀରାମ ସଂସାର ଅଧିକାରୀ ।
ଜୟ ଜୟ ଶ୍ରୀରାମ ସ୍ୱୟଂ ନାରାୟଣ
ଜୟ ଜୟ ଶ୍ରୀରାମ ଦଶରଥଙ୍କ ନନ୍ଦନ ।
ଜୟ ତୁ ଖଗପତି ଉପରେ କରୁ ବିଜେ
ଜୟ ତୁ ଶାରଙ୍ଗ ଧନୁ ଧରିଛୁ ବାମଭୁଜେ ।
ଜୟ ତୁ କମଳାର ଅଟ ପ୍ରାଣନାଥ
ସପ୍ତମ ଅବତାରେ ହୋଇଛୁ ସମ୍ଭୂତ ।
ମୁହିଁ ତୁମ୍ଭର ଦାସ କର ମୋତେ ରକ୍ଷା
ତୁମ୍ଭର ଘରଣୀ ସୀତାଙ୍କୁ ମୋତେ ଦେଖା ।
ଏମନ୍ତେ ସ୍ତୁତି ତହିଁ କଲେ ହନୁମାନ
ପ୍ରସନ୍ନ ହେଲେ ତାଙ୍କୁ ପ୍ରଭୁ ଭଗବାନ ।
ପୁଣି ସେ ମାରୁତି ମନରେ ବିଚାରିଲା
ଏ ବନକୁ ସ୍ତୁତି କରଇ ଦେଖି ଭଲା ।
ବୋଇଲା ଜୟ ତୁ ଅଶୋକବନ ଗୋଟି
ତୋର ନାମ ଧଇଲେ ଶୋକ ଭୟ ତୁଟି ।
ଯେଣୁ ତୁ ପାର୍ବତୀର ସଖା ଅଟୁ ପୁଣ
ତେଣୁ ତୋତେ ଶିରେ ଉଭା କରନ୍ତି ସେ ଜାଣ ।
ଅଶୋକ ଅଷ୍ଟକଢ଼ୀ ଯେଉଁ ଜନ ଭକ୍ଷି
ଶୋକ ଭୟ ତାହାର ହୃଦରୁ ଯାଏ ତୁଟି ।

ତେଣୁ କରି ତୋତେ ମୁଁ କରୁଛି ଜଣାଣ
ସୁଦୟାକର ମୋତେ ଅଶୋକ ବିପିନ ।
ଏମନ୍ତ ବୋଲି ହନୁ ଅଶୋକ ବନ ଚାହିଁ
ଶତେବାର ପର୍ଯ୍ୟନ୍ତେ ଓଳଗି ମେଲାଇ ।
ଅମୃତ ବେଳରେ ହନୁ ହୋଇଲା ବାହାର
ଚଳଇ ହନୁମନ୍ତ ବୁଦ୍ଧି କରି ସ୍ଥିର ।
ଧୀର ଧୀର ହୋଇଣ ସେଠାରୁ ଚଳିଗଲା
ଅଶୋକ ବନରେ ପ୍ରବେଶ ହୋଇଲା ।
ଦେଖିଲା ସେ ବନଗୋଟି ବିଶେ ଶୋଭାବନ
ନ ଲାଗଇ ଚନ୍ଦ୍ର ସୂର୍ଯ୍ୟଙ୍କର ପ୍ରଭା ଜାଣ ।
ନାନା ପୁଷ୍ପରେ ସେଠି ଫୁଟିଛି ପୁଷ୍ପମାନ
କଳାଧଳା ରଙ୍ଗ ବସନ୍ତ ବର୍ଣ୍ଣ ଜାଣ ।
ନୀଳ ଉତ୍ପଳ ବନ ଜିମୁତବର୍ଣ୍ଣ ଦିଶି
ଷଡ଼ପ୍ରକାରେ ପୁଷ୍ପ ସେ ବନେ ଫୁଟିଛି ।
ଧାଡ଼ି ଧାଡ଼ି ଚମ୍ପା ବକୁଳ ନାନାରଙ୍ଗ
କମଳା ଟଭା ଲେମ୍ବୁ କରମଙ୍ଗା ନାରଙ୍ଗ ।
ଆମ୍ବ ପଣସ ଯେ କଦଳୀ ନାଡିକାଳ
ଗୁଆ ଶ୍ରୀଫଳ ଯେ ଅଛଇଁ ବହଳ ।
ଅଶୋକ ବୃକ୍ଷ ସେଥି ରହିଛି ଧାଡ଼ି ଧାଡ଼ି
ବୃକ୍ଷଙ୍କର ନାମ କହିତ କେ ପାରି ।
ଗଣ୍ଡକା ନାମେ ନଦୀ ଯାଉଅଛି ବହି
ସ୍ୱାଦଶୀତଳ ଯେ ଜାହ୍ନବୀ ସଙ୍ଗେ ସେହି ।
ଦେଖିଣ ଜାନକୀ ଅଶୋକ ପୁଷ୍ପ ତୋଳି
ପୁଷ୍ପମାନ ଦିଶଇ ଯେହ୍ନେ ଡାଳିମ୍ବ କଳି ।
ସେଥିରୁ ଆଠଗୋଟି ହନୁମନ୍ତ ନେଲା
ଗଣ୍ଡକା ନଦୀରେ ପଶିଣ ସ୍ନାନ କଲା ।
ଗଣ୍ଡକା ନଦୀର ଜଳ ପୁଷ୍ପସଙ୍ଗେ ଭକ୍ଷି
ସେଠାରୁ ହନୁମନ୍ତ ଅଇଲା ପାଲଟି ।
ସେ ବନ ଭିତରେ ପଶିଲା ମାରୁତି
ଧୀରେ ଧୀରେ ଦକ୍ଷିଣା ପବନ ବହୁଛି ।
ଶୁକ ପିକ ସାରୀ କପୋତ ହୁଅନ୍ତି ଉନ୍ମତ୍ତ
ନାନାପକ୍ଷୀ ନାନାଜୀବ ଅଛନ୍ତି ବହୁତ ।
ସେ ବନର ଉତ୍ତରରେ ପୋଖରୀଏ ଅଛି
ସେହି କେଳି କରିବାକୁ ଜଗତୀ ହୋଇଛି ।
ସେ ଜଳେ ପଦ୍ମ କୁମୁଦ ଫୁଟିଛି ଅପାର
ଚଉକତି ପାବଚ୍ଛ ବାନ୍ଧିଛି ମର୍କତର ।
ମଧ୍ୟରେ ସୁବର୍ଣ୍ଣ କରିଛି ଦୀପ ଦଣ୍ଡୀ
ଆଦରେ ବିଶ୍ୱକର୍ମା ଗଢ଼ିଛି ରତ୍ନମଣ୍ଡି ।
ଶଉତ ନିର୍ମଳ ସ୍ୱାଦ ଅଟେ ଦିବ୍ୟ ପାଣି
ସେଥିରେ ଦଳପଙ୍କ ବାଲି ନାହିଁ ପୁଣି ।

ପୁଷ୍କରିଣୀ ଦେଖିଣ ପ୍ରଶଂସେ ମାରୁତି
ଧନ୍ୟ ମହିମା ତୋର ପୌଲସ୍ତିର ନାତି ।
ଚଉଦ ଭୁବନରେ ଯେତେକ ଯେ ଆୟ
ତୋହର ଭୁବନରେ ଅଛି ଲଙ୍କରାୟ ।
ଏତେ ବୋଲି ମାରୁତି ସେଠାରୁ ଚଳିଗଲା
ବନର ନିଗମ ସ୍ଥାନରେ ପଶିଲା ।
ଦେଖିଲା ସେ କାନନ ଅତି ଶୋଭାବନ
ଚନ୍ଦ୍ର କି ଉଇଁଅଛି ସେ ବନ ମଧ୍ୟେଣ ।
ଚନ୍ଦ୍ର କିରଣରେ ଯେହ୍ନେ ସଂସାର ଦିଶଇ
ସେ ବନ ମଧ୍ୟେ ସ୍ୱତୀ ତେମନ୍ତ ଜଣାଯାଇ ।
ଦେଖିଣ ହନୁମନ୍ତ ଚମତ୍କାର ହେଲା
ଚନ୍ଦ୍ର କିଏ ବନରେ ରହିଛି ବିଚାରିଲା ।
ଏମନ୍ତ ବିଚାରି ଥୋକେ ଦୂର ଚଳି
ବନଲତା ସମସ୍ତେ ଦିଶିଲେକ ବାରି ।
ସେଠାରୁ ହନୁମନ୍ତ ରୂପ ତେଜ୍ୟା କଲା
ଭ୍ରମର ରୂପ ଗୋଟି ସେଠାରେ ହୋଇଲା ।
ବୈଡୁର୍ଯ୍ୟ ମଣ୍ଡପ ତଳରେ ପ୍ରବେଶ
ଦେଖିଲା ବୈଡୁର୍ଯ୍ୟ ଚନ୍ଦ୍ରମା ସଦୃଶ ।
ସେଥିର ମଧ୍ୟରେ ବସିଛି ଜାନକୀ
ଅଗ୍ନିପ୍ରାୟ ଶରୀର ଜଳୁଛି ଝଟକି ।
ବେଶ ଭୂଷଣ ଯେ ଅଙ୍ଗରେ କିଛି ନାହିଁ
ମଙ୍ଗଳ କଙ୍କଣ ବେନି କରରେ ବିରାଜଇ ।
ଦେଖିଣ ହନୁମନ୍ତ ମନରେ ବିଚାରଇ
ଏହି ସେ ଶ୍ରୀରାମଙ୍କ ଘରଣୀ ଅଟଇ ।
ଦେଖିଲା ସହସ୍ରେ ଅସୁରୀ ଚାରିପାଶେ
ଶତେ ହସ୍ତ ଛଡ଼ାରେ ଅଛନ୍ତି ସମସ୍ତେ ।
ତାଙ୍କର ମେଳରେ ତ୍ରିଜଟା ଯୋଡ଼ିକର
ଜଣାଣ କରୁଛି ସୀତାଙ୍କ ଛାମୁର ।
ଅଳପ ବୟସ ଯୁବା ସେ ନୂତନ
ସ୍ୱର୍ଗ ଅପସରୀ ପ୍ରାୟ ତାର ଶୋଭା ଜାଣ ।
ଦେଖିଣ ମାରୁତି ମନରେ ବିଚାରିଲା
ବିଭୀଷଣ ଦୁହିତା କହିଛି ମୋତେ ଭଲା ।
ଯେତେ କଥା କହିଥିଲା ଦେଖିଲି ପ୍ରମାଣ
ରଜନୀକି ବଇଡୁର୍ଯ୍ୟ ଚନ୍ଦ୍ରମଣି ସମ ।
ମଧ୍ୟରେ ଜାନକୀ ନିର୍ଧୂମ ଅଗ୍ନି ଜାଣି
ଦେଖିଣ ବିଚାରଇ କପିକୁଳ ମଣି ।
ଏହି ତ ବଇଦେହୀ ଶ୍ରୀରାମଙ୍କ ନାରୀ
ସ୍ୱୟଂ କମଳିନୀ ଏ ଅଛଇଁ ଅବତରି ।
ଯେତେ ଗୁଣ ମୋତେ କହିଥିଲେ ଶ୍ରୀରାମ
ସେଥିରୁ ଶତେ ଗୁଣ ଅଟଇ ଅନୁପମ ।

ତ୍ରୈଲୋକ୍ୟ ମୋହିନୀ ଜନକ ଦୁହିତା
ଅନେକ ଯତନେ ଜାତ କଲେକ ବିଧାତା ।
ମୁଁ ହୀନ ଚଣ୍ଡାଳ କିଛି ହିଁ ନ ଜାଣି
ଅସୁରୀଙ୍କି ଦେଖିଣ ଜାନକୀ ପ୍ରାୟ ମଣି ।
ନୋହିଲେ କି ବିଧାତା ମୋତେ ବାନର ଜାତ କଲା
ଏ ମୋର ଜୀବନ ଗଣେ ହୁଅନ୍ତା ଯେ ଭଲା ।
ଯେବଣ ତୁଣ୍ଡରେ ମୁଁ ସୀତାଙ୍କୁ ନିନ୍ଦା କଲି
ରାବଣର କୋଳେ ସୀତା ଶୋଇଛି ବୋଇଲି ।
ସେ ତୁଣ୍ଡରେ ମୋର ଜଳୁ କିନା ଜୁଇ
ଏ ସକାଶୁଁ ମୁହିଁ ମହାପାପୀ ଯେ ଅଟଇ ।
ପାଟ ସଙ୍ଗରେ ମୁହିଁ ମିଶାଏ ଛଣପଟ
ବେଦାନ୍ତୀ ବ୍ରାହ୍ମଣଙ୍କୁ କହିଲି ଗଜମୂର୍ଖ ।
ଗୁଞ୍ଜର ମାଣିକ୍ୟକୁ କଲି ମୁହିଁ ସୁନା
ରୂପା ସାଙ୍ଗରେ ରଙ୍ଗ ମିଶାଇଲି କିନା ।
ଲବଣ କର୍ପୂରକୁ କଲି ମୁଁ ଏକସଙ୍ଗ
ବ୍ରହ୍ମଜାତି ହୀରାକୁ କଲି ପଥର ସଙ୍ଗ ।
କାଚ ସଙ୍ଗେ ମାରାଗ ସମ କଲି ଆଣି
ଗରଗଡ଼ ସଙ୍ଗେ ମୁକୁତାକୁ ଗଣି ।
ପାନ ପାଲଟାଇ ଆଳୁପତ୍ର ମୁଁ ଆଣିଲି
ଗୋରୁଙ୍କ ସଙ୍ଗରେ ଘୁସୁରୀ ଗଣିଲି ।
ଗଜଅଶ୍ୱ ସଙ୍ଗରେ ଗଧକି ସଙ୍ଗ କଲ
ସେବତୀ ଫୁଲ ସଙ୍ଗେ ପୋଲାଙ୍ଗ ଗୁନ୍ଥିଲି ।
କଦଳୀ ଫଳକୁ ମୁଁ ଅରଖ ଫଳ କଲି
କେନ୍ଦୁଫଳ ବୋଲିଣ କୋଚିଲା ଫଳକୁ ଖାଇଲି ।
କଳ୍ପତରୁ ସଙ୍ଗରେ ଖଜୁରୀ ସମ କଲି
କୋଇଲି ସଙ୍ଗରେ କାଉକୁ ଗଣିଲି ।
ନାରୀକେଳ ସଙ୍ଗେ କଲି ସଡ଼ପ ଉପାମ
ଉର୍ଣ୍ଣନାଭି ସଙ୍ଗରେ କଲି ବିଧାତାକୁ ସମ ।
ଶିମୁଳି ଫୁଲ ସଙ୍ଗେ ମନ୍ଦାର ସମ କଲି
ନୀଳୋତ୍ପଳ ସଙ୍ଗେ ଗୋବର କଇଁକି ଗଣିଲି ।
ଦେଖିକରି ବ୍ରହ୍ମଋଷି ଆସନ ତେଜିଲି
ଶବର ପଲ୍ଲୀକି ନଗରେ ଗଣିଲି ।
ପାପୀଷ୍ଠ ମନରେ ମୁଁ କଲି କିଛି ହେଜ
ଆନ ନୃପସଙ୍ଗରେ ଗଣିଲି ଧର୍ମରାଜ ।
ଭାର୍ଗବଙ୍କୁ କବି ସଙ୍ଗରେ ସମ କଲି
ଚିତ୍ରସେନକୁ ରାଜପୁତ୍ର ସଙ୍ଗରେ ଗଣିଲି ।
ଘୁଣାକ୍ଷର ସଙ୍ଗରେ ଲେଖିଲି ବର୍ଣ୍ଣାବଳୀ
ଶଙ୍ଖ ପୁଷ୍ପ ସଙ୍ଗରେ ଚନ୍ଦ୍ରମା କଳିଲି ।
ରମା ରମ୍ଭା ଦୁହିଁଙ୍କି କଲି ଏକପାଖ
ମହୀ ନୃପ ସଙ୍ଗରେ ଗଣିଲି ସହସ୍ରାକ୍ଷ ।

ମନରେ ସଙ୍ଗରେ ଲେଖିଲି ମେଷ ବେଗ
ଅନ୍ୟ ଗିରି ସଙ୍ଗରେ ଗଣିଲି ହେମ ନଗ ।
ବକର ସଙ୍ଗେ ସମାନ କଲି ରାଜହଂସ
କିରାତ ସଙ୍ଗେ ସାଙ୍ଗ କଲି ସୂର୍ଯ୍ୟବଂଶ ।
ଆନଜୀବ ସଙ୍ଗରେ କସ୍ତୁରୀ ଗଣିଲି
ଯୋଗୀର ସମୂହରେ ମହାଦେବଙ୍କୁ ଲେଖିଲି ।
ଧୀର ସଙ୍ଗରେ ସମଦେଲି ମୁହିଁ ଧରା
ଚନ୍ଦ୍ରକଳା ପୁରକୁ ସମାନ କଲିକାରା ।
କାଶୀପୁର ତେଜି ମୁଁ ମଗଧପୁର ଗଲି
ସୀତାଙ୍କୁ ମନ୍ଦୋଦରୀ ସଙ୍ଗରେ ସମ କଲି ।
ପୋଡୁ ପୋଡୁ ମୋ ଜୀବନ ପୋଡୁ ମୋର ତୁଣ୍ଡ
ନିଜ ଗାଲ ରାଗରେ ଛିଣ୍ଡାଏ ଖଣ୍ଡ ଖଣ୍ଡ ।
ଏ ସେ ମହାଲକ୍ଷ୍ମୀ ରାମଚନ୍ଦ୍ରଙ୍କର ଘରଣୀ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଅଟେ ଠାକୁରାଣୀ ।
ପବିତ୍ର ଅତି ପବିତ୍ର ମହାସ୍ୱଚ୍ଛ କାୟେ
ନୋହିଲେ କି ରାମଚନ୍ଦ୍ର ପରାଏ ପତି ପାଏ ।
ଏମନ୍ତେ ମନେ ଭାଳି ପବନ କୁମର
କରଯୋଡ଼ି ସ୍ତୁତି କରେ ଜାନକୀ ପୟର ।
ଜୟ ତୁ କମଳା ଗୋ ସିନ୍ଧୁର ଦୁହିତା
ଜୟ ତୁ କମଳା ଗୋ ଶ୍ରୀରାମ ବନିତା ।
ଜୟ ତୁ କମଳାଗୋ ଜନକର ଝିଅ ସୀତା
ଜୟ ତୁ ବେଦମତୀ ମେରୁର ଦୁହିତା ।
ଜୟ ତୁ କମଳା ଗୋ ଜଗତ ଜନନୀ
ଜୟ ତୁ କମଳା ଗୋ ମନରୁ ଜନମି ।
ଜୟ ସେ ବିଶ୍ୱାମିତ୍ର ମୋତେ ଭେଟ କଲେ
ଜୟ ସେ ରାମ ଶିବଧନୁକୁ ଭାଙ୍ଗିଲେ ।
ଜୟ ଦଶରଥ ନନ୍ଦନ ଅଟେ ରାମ
ପାତକ କ୍ଷୟ ପାଏ ଧଇଲେ ଯା ନାମ ।
ଏମନ୍ତେ ସ୍ତୁତି ଯେ ମାରୁତି ମନେ କଲା
ଭ୍ରମର ମୂର୍ତ୍ତି ଧରି ତଳରେ ଲୁଚିଲା ।
ଶତେବାର ପର୍ଯ୍ୟନ୍ତ ଓଳଗ ମେଲାଇଲା
ଗୁପତେ ସୁଗତି କଥା ଜାଣିବି ବୋଇଲା ।
ଏମନ୍ତ ବିଚାରି ହନୁ ନିକଟକୁ ଗଲା
ଅଗ୍ନି ପ୍ରତାପରେ ସେ ବେଗଳ ହୋଇଲା ।
ନନ୍ଦାବ୍ରତ ଓରା ଉପରେ ଯାଇ ବସି
ଅନୁସରି ବିଚାରଇ ପବନର ଶିଶି ।
ଗୁପତ ପ୍ରଘଟ ଖୋଜଇ ପୁଣ ପୁଣି
ଏଥୁ ଅନନ୍ତରେ କହନ୍ତି ଶୂଳପାଣି ।
ନିଜ ମନ୍ଦିରରେ ଶୋଇଥିଲା ଲଙ୍କପତି
ସ୍ୱପନେ କହିଲା ତାକୁ ଲଙ୍କାର ଦେବତୀ ।

ଶ୍ରୀରାମର ଦୂତ ଯେ ମର୍କଟ ସ୍ୱରୂପ
ପ୍ରବେଶ ହୋଇଲା ଆସି ଏ ଲଙ୍କା କଟକ ।
ଜାନକୀକି ଠାବ କରି ଶ୍ରୀରାମ ପାଶେ ଯିବ
ତେବେ ସେ ଶ୍ରୀରାମ ଲଙ୍କାକୁ ଆସିବ ।
ଜାଣିଣ ଦଶଗ୍ରୀବ ଉଠିଲା ଚେତା ପାଇ
ପଲଙ୍କ ପରେ ବସିଲା ବିସ୍ମୟ ଚିତ୍ତ ହୋଇ ।
ମନେ ବିଚାରିଲା ଏ ଅଟଇ ସ୍ୱପନ
ଜାନକୀର ଠାରେ ଯହୁଁ ରହିଲା ମୋର ମନ ।
ତେଣୁ କରି ନିଦ୍ରାରେ ପ୍ରକୃତି ଗଡ଼ିଲା
ଏତେ ବିଚାରି ରାବଣ ପଲଙ୍କେ ନିଦ୍ରାଗଲା ।
ନିଦ୍ରା ଯେ ନ ମାଡ଼ିଲା ଛନ ଛନ ମନ
ଭାଳିଲା ସତପୁଣ ହୁଅଇ ସ୍ୱପନ ।
ତେରମାସ ହୋଇଲା ଆଣିଲି ସୀତା ହରି
ସେ ନାରୀକି ମୁଁ ଭୋଗ ନ ପାରିଲି କରି ।
ସେ ଜାନକୀ କୋପ ଅଗ୍ନିରୂପ ହେଲା
ଏ ଲଙ୍କାଗଡ଼ରେ ଆସି ଅଗ୍ନିସ୍ନାନ କଲା ।
ତେରମାସ ହେଲା ସେ ନ କରେ ଭୋଜନ
ମୋହର ମରଣ ଆଗୁ ଥିଲା ସେ ଜାଣିଣ ।
ମାସେ ସାତଦିନ ଯେ ଅଛି ତାର କଥା
ସେଥିର ସକାଶେ ମନରେ ମୋର ବ୍ୟଥା ।
ସେହି କାରଣେ ଅବା ଦେଖିଲି ସ୍ୱପନ
କି ଅବା ଶାନ୍ତି ହୋଇ ଭଜିଲା ମୋତେ ପୁଣ ।
ସଂସାରର ମାୟାରେ ଏ ଜୀବ ଅସ୍ଥିର
ଏତେ ଭାଳି ବିମାନ ଆରୋହେ ଦଶଶିର ।
ମନ୍ଦୋଦରୀକି ରାବଣ ଡକାଇ ଆଣିଲା
ନଗର ଭ୍ରମଣ କରି ଆସଇ ବୋଇଲା ।
ମନ୍ଦୋଦରୀକି କହିଣ ଅଶୋକବନେ ଗଲେ
ଯେଉଁଠାରେ ଜାନକୀ ସେଠାରେ ମିଳିଲେ ।
ସେତେବେଳକୁ ସପ୍ତଘଡ଼ି ରାତ୍ର ହୁଏ
ନବଘଡ଼ି ରାତ୍ର ଅଛି ମିଳିଲା ଦୈତ୍ୟରାଏ ।
ସେଦିନ ଚଇତ ମାସ ଶୁକ୍ଳ ସପତମି
ଜାନକୀଙ୍କୁ ଭେଟିଲା କପିକୁଳମଣି ।
ପଞ୍ଚରାତ୍ର ଆସିଣ ସୀତାଙ୍କୁ ଠାବ କଲା
ଏସନ ସମୟରେ ରାବଣ ଅଇଲା ।
ବିମାନରୁ ଓହ୍ଲାଇ ଗଲା ସତୀ ପାଶ
ବେନି ସହସ୍ର ହାତରେ ରହିଲା ଲଙ୍କାଈଶ ।
ଦେଖିଲା ଦଶଗ୍ରୀବ ସତୀର ସ୍ୱରୂପ
ଅଗ୍ନିରୁ ଅଧିକ ସେ ଦିଶଇ ପ୍ରତାପ ।
ଦେଖିଣ ରାବଣ ମନରେ ଭୟ କଲା
ମରିବି ନିଶ୍ଚୟ ବୋଲି ମନେ ବିଚାରିଲା ।

ଦେଖିଣ ହନୁମନ୍ତ ଚିତ୍ତରେ ବିଚାରଇ
ତରୁ ଉପରେ ବସିଛି ଭ୍ରମର ରୂପ ହୋଇ ।
ମନରେ ବିଚାରିଲା ଏହି ସେ ଦଶଶିରୀ
ଦଶମୁଣ୍ଡ ଯାକ ଏ କନ୍ଧରେ ଅଛି ଧରି ।
ସୀତାର ଯେ ଭାବ ଅଭାବ କଥାମାନ
ଏହିକ୍ଷଣି ଜଣାଯିବ ସକଳ ବିଧାନ ।
ଏତେ ଭାବି ହନୁମନ୍ତ ଅଛନ୍ତି ଗୁପତେ
ଦୂରେ ଥାଇ ରାବଣ କହଇ ଧୀର ଚିତ୍ତେ ।
ଅନେକ ଆଶାରେ ଆଣିଲି ତୋତେ ହରି
ସପ୍ତଦୀପରେ ମୁଁ ଅଟଇ ଅଧିକାରୀ ।
ତୋହର ମନକୁ କି ନ ରୁଚେ ମୋର ରୂପ
କାମପୀଡ଼ା ମୋତେ ଯେ କରଇ ଅନୁବ୍ରତ ।
ଏବେ ତୁ ସୁନ୍ଦରୀ ମୋର ବୋଲ କର
ମୋହର ଗୁଣ ତୋତେ ଆନ ତୁ ନ ଧର ।
ମୁହିଁ ତୋତେ ଭାବରେ ଭଜିଲିରେ ସତୀ
ତୋ ରୂପ ଯୌବନ ଦେଖି ମୁଁ ଆସକ୍ତ ଅତି ।
ସୁରଙ୍ଗ ଅଧରେ ମୋର ଚୁମ୍ବ ଦିଅ ଆସି
ଅଗ୍ନିର ରୂପ ଗୋଟି ଶୀତଳ କର ତୋଷି ।
ବାହୁ ଦୁଇ ତୋଳିଗୋ ମୋତେ ଗାଢ଼େ ଭିଡ଼
କାମାନଳ ବ୍ୟାଧି ହୋଇଯାଉ ଆଡ଼ ।
ମୁଁ ତୋତେ ସୁନ୍ଦରୀରେ ହୋଇଲଇଁ ବଶ
ହସି ଭାଷା ଭାସିଣ କୋଳରେ ମୋର ବସ ।
ଯେତେକ ରାଣୀହଂସ ଅଛନ୍ତି ମୋହର
ସେହିମାନେ ଆଜ୍ଞାକୁ ନ ମେଣ୍ଟିବେ ତୋର ।
ମନ୍ଦୋଦରୀ ସହିତେ ଥିବେ ସେବାକରି
ଏ ଲଙ୍କାଗଡ଼ରେ ଛନ୍ତି ଯେତେ ନରନାରୀ ।
ଗାଢ଼େ ଆଲିଙ୍ଗନ କରି ଦିଅ ଗୋ ସୁରତି
ଶୁଣି କରି ଜାନକୀ ହେଲେ କ୍ରୋଧମତି ।
ବୋଇଲେ ରାବଣ ମନେ କି ନାହିଁ କଥା
ଆପଣେ କହିବା କଥା ହେବ କି ଅନ୍ୟଥା ।
ଚଉଦ ମାସ ଦୁଇଦିନକୁ ବରଷେ ପକ୍ଷେ ହେଲା
ତିନିଦିନ ଦୁଇଦିନ ମୋ କଣ୍ଠେ ରହିଲା ।
ଏଥିରେ ତୋତେ ଯେବେ ନ ହେବ ମରଣ
ନିଶ୍ଚୟେ ଲଙ୍କାଗଡ଼ ଭସ୍ମ ହେବ ଜାଣ ।
ମୋତେ ହରିବାକୁରେ କର୍ତ୍ତବ୍ୟ ନୁହେଁ ତୋର
ଶ୍ରୀରାମ ଅଟନ୍ତି ଯେ ତ୍ରିଲୋକ୍ୟ ଠାକୁର ।
ମାଛି ହୋଇ ଅଗ୍ନିରେ ବସିତ ମନ କରୁ
ଅନଳ ତରଙ୍ଗ ବର୍ଣ୍ଣ ଶୀତଳ ବିଚାରୁ ।
ଧଇଲେ ହସ୍ତପଦ ହୋଇବ ଫୋଟକା
ଲାଗିଲେ ଭସ୍ମ ହୁଏ ନାହିଁକି ମନେ ଶଙ୍କା ।

ଏତେ କହି ଜାନକୀ ତଳକୁ ମଥା ପୋତି
ମନରେ ବିଚାରଇ ଦୈତ୍ୟ ଦୁଷ୍ଟମତି ।
ବଦନ ନିରୋପିଣ ଅବନିକି ଚାହିଁ
ନଖରେ ମହୀକି ଚିରେ ବଇଦେହୀ ।
ଶ୍ରୀରାମଙ୍କୁ ସୁମରି ନୟନୁ ଅଶ୍ରୁ ବହି
ନ ଜାଣିବା ପଣେ ମୁଁ ଏତେ ଶାସ୍ତି ପାଇ ।
ପୁରୁଷହତ୍ୟା ନ କରିବି ବୋଲିଣ ଅଇଲି
ତେଣୁ କରି ଏତେ ପରାଭବ ଯେ ପାଇଲି ।
ଏତେ କହି ନୟନରୁ ଗଡ଼େ ଅଶ୍ରୁଜଳ
କ୍ରୋଧଭରେ ଜରଜର ଜାନକୀ ଶରୀର ।
ପୁଇଁ ସୂତାରୁ ଯେହ୍ନେ ଗଡ଼ଇ ମୁକୁତା
ଭୂମିରେ ପଡ଼ି ଲୋତକ ତେମନ୍ତରେ ଶ୍ରୋତା ।
କଥା ନ କହି ଦେବୀ ମଉନରେ ରହି
ସେକଥା ହନୁମନ୍ତ ଗୁପତେ ଶୁଣଇ ।
ସୀତାଙ୍କ କ୍ରୋଧବାଣୀ ଶୁଣି ଲଙ୍କାନାଥ
ବିନୟ ଭାବରେ କହିଲା ଯେ ବହୁତ ।
ମୁହିଁ ତ ମର୍ତ୍ତ୍ୟପୁରେ ଅଟେ ମହୀଧର
ସକଳ ଦେବତା ଚରଣେ ଖଟେ ମୋର ।
ଯେତେବେଳେ ପଲଙ୍କରେ ଆସନ କରଇ
ଅପସରୀ ବିଦ୍ୟାଧରୀ ଖଟନ୍ତି ତହିଁ ରହି ।
ଅମରପୁର ନାରୀ ମୋର ପରିଚାର
ଦେଖ ମୋର ଆୟୁଷ ତ୍ରିଜୀବୀ ଅସୁର ।
ବ୍ରହ୍ମାଙ୍କୁ ସେବିଣ ଅମର ବର ପାଇ
ଛପନ ଗଣ୍ଡା ଯୁଗକୁ ବିହି ବର ଦେଇ ।
ତିନିପୁରେ ଅପୂର୍ବ ଯେବଣ ପଦାର୍ଥ
ମୋର ପ୍ରତାପରେ ମିଳଇ ସମସ୍ତ ।
କେଉଁ କଥାକୁ ସଖୀ ଗୋ ମଉନବ୍ରତ ହେଉ
ମଉନୀ ସ୍ତିରୀ ପରାଏ ମୁଖ ପୋତି ରହୁ ।
ରାମ ତୋର ପତି ପରା ତୁମ୍ଭେ ଏକ ମୁଖ
ଆଲିଙ୍ଗନମାନ ବେନି କରେ ବେନି ହସ୍ତ ।
ତପସ୍ୱୀ ଲୋକଙ୍କୁ ଗୋ ମିଳଇ ଅବା କିସ
ମୋହର ଜ୍ୟେଷ୍ଠଭାଇ କୁବେର ଧନେଶ ।
ଜଟା କଉପିନୀ ଆବର ପାଉଁଶ
ଏହି ଛାର କଥାକୁ ଗୋ ତପସ୍ୱୀକି ରସ ।
କର୍ପୂର କସ୍ତୁରୀ ମୋହର ଅଙ୍ଗେ ଦେଖ
ଆଲିଙ୍ଗନ କାଳରେ ହେବ ବଡ଼ ସୁଖ ।
ମୋର ଦଶ ମୁଖେ ଚୁମ୍ବନ ଦେବି ତୋତେ
ବିଂଶଭୁଜେ ଆଲିଙ୍ଗନ କରିବି ପ୍ରିୟା ତୋତେ ।
ବେନିଭୁଜେ ଆଲିଙ୍ଗନ କବେରୀ ସାଜିବି
ଆର ବେନିଭୁଜେ ଧରି ଚନ୍ଦନ ରଞ୍ଜିବି ।
କେବଣ ବେନି ଭୁଜରେ ସାଜିବି ରତ୍ନଗୁଣା
ସିନ୍ଦୁଫଳ ଅଞ୍ଜନ କେବଣ ଭୁଜେ ସିନା ।
କେବଣ ଭୁଜରେ ପୁଷ୍ପମାଳା ଖଞ୍ଜି
କେବଣ ଭୁଜରେ କେଶ ବାସ ସାଜି ।
କେବଣ ଭୁଜରେ ଅଲେଖ ତିଳକ ବେଶ କରି
କସ୍ତୁରୀ ଚନ୍ଦନ କେଉଁ ଭୁଜେ ବୋଳି ।
କେବଣ ଭୁଜରେ ମୁଁ ବସନ ପିନ୍ଧାଇବି
କେବଣ ଭୁଜରେ ଅଳତା ରଞ୍ଜିବି ।
କେବଣ ଭୁଜେ ପାଦେ ଖଞ୍ଜିବି ନୂପୁର
କେବଣ ଭୁଜେ ଧରି ମୁଁ ଭିଡ଼ିବି ହୃଦୟର ।
କେବଣ ଭୁଜେ ଧରି କୋଳେ ବସାଇବି
ତୁ ଯାହା କହିବୁ ମୁଁ ସେକଥା କରିବି ।
ଏ ମୋହର ସତୀ ଗୋଟିଏ କଥା ପ୍ରମାଣ
ଅଠର ଗଣ୍ଡା କୁମରଙ୍କର ମୋର ରାଣ ।
ଚନ୍ଦ୍ର ଦେଲା ଶୀତଳ ଗଡ଼ରା ଛୁଇଁ ମୁହିଁ ।
ହସି କଥା କହଗୋ ଶରତ ଚନ୍ଦ୍ର ମୁହିଁ
ଅନେକ ଚାଟୁଭାଷା କହିଲା ରାବଣ ।
ଜାନକୀ ହୃଦୟରେ ହେଲେ କୋପମନ ।
ନିଷ୍ଠୁର ବଚନ ବୋଇଲେ ବଇଦେହୀ
ଓରାର ଉପରେ ହନୁମନ୍ତ ବିଚାରଇ ।
ନିଶ୍ଚେ ଯେବେ ଜାନକୀର ମନ ଯେ ଥାଆନ୍ତା
ରାବଣ କହିବା କଥାରେ ମୁଖ ସେ ଟେକନ୍ତା ।
ଧନ୍ୟରେ ସାଧବୀ ଅଟୁ ରାମନାରୀ
ଏମନ୍ତେ ହନୁମନ୍ତ ମନରେ ବିଚାରି ।
ଅନେକ ଘଞ୍ଚାଳ ଯହୁ କଲା ଲଙ୍କପତି
ଜାନକୀ ବୋଇଲେ ତୁରେ ଅଜ୍ଞାନ ମନ୍ଦମତି ।
ତୁହିରେ ରାବଣ କଟାଳ କରୁ ମୋତେ
ଯେତେ କଥା କହିଗଲୁ ନୁହଇ ଉଚିତେ ।
ସତ୍ୟ କଲା କଥା ନ ପାଶୋର ମନୁ ହୋଇ
ମାତାଲ ପ୍ରକୃତିରେ ଲୋଡୁ କାହିଁପାଇଁ ।
ଯେତେ କଥା କହିଲୁ ସବୁ ତୋର ନଷ୍ଟ
ଋଷିର ପୁତ୍ରହୋଇ ତୋ ବୁଦ୍ଧି କଲୁ ଭ୍ରଷ୍ଟ ।
ପରର ଯୁବତୀକି ଆଣିଲୁ ଚୋରାଇ
ଧର୍ମଶାସ୍ତ୍ର ତୋର କି ପଢ଼ା ଶୁଣା ନାହିଁ ।
ଧର୍ମଶାସ୍ତ୍ର ଶୁଣିଲା ନାହିଁକି ତୋର ଜାଣି
ମୁହିଁ ପତିବ୍ରତା ଅଟେ କମଳିଣୀ ।
ଶ୍ରୀରାମ ଠାକୁର ତ୍ରୈଲୋକ୍ୟରେ ପୁଣି
ତାହାଙ୍କର ମୁହିଁ ଅଟଇ ଘରଣୀ ।
ପୂର୍ବର ଦୋଷରୁ ତୁ ଅସୁର ହୋଇଲୁ
ଅଳ୍ପପୁଣ୍ୟ ଥିବାରୁ ଏ ଭୋଗ ଭୁଞ୍ଜିଲୁ ।

ଏ ଜନ୍ମରେ ଯେତେକ ପାପ ତୁ ଅଛୁ ଅଜି
ଷୋଳଯୁଗ ପର୍ଯ୍ୟନ୍ତେ ନର୍କରେ ହେବୁ ଭାଗି ।
ରାଜା ହୋଇଣ ତୁ ନ ଭାବୁ ଏମାନ
ଶୁଣିଣ କୋପ କଲା ବିଶ୍ରବା ନନ୍ଦନ ।
କରେ ଖଡ଼ଗ ଧରି ଉଠିଲା ତଡ଼ନ୍ତି
ବୋଇଲା ତୁ ଅଟୁ ମୋର ଶତ୍ରୁର ଯୁବତୀ ।
ଶିର ଛେଦିବି ତୋର କରିବି ପ୍ରାଣ ନାଶ
ଲାଗୁ ପଛେ ମୋତ ସ୍ତିରୀହତ୍ୟା ଦୋଷ ।
ଏତେ କହି ରାବଣ ଉଠିଲା କୋପ କରି
ବୋଇଲା ତୋତେ ଆଜି ପକାଇବି ମାରି ।
ଦେଖିଣ ଜାନକୀ ହେଲେ ଉଗ୍ରମୂର୍ତ୍ତି
ବୋଇଲେ ତୋର କାଳ ପୂରିଲା ଲଙ୍କପତି ।
ପୁରୁଷ ହତ୍ୟାକୁ ଯେ ଡର ଥିଲା ମୋର
ତୁହି ମୋତେ ଘଞ୍ଚାଳ କଲୁରେ ଅସୁର ।
ତୋହର ଆତ୍ମ ଏବେ ହୋଇଲା ପ୍ରମାଣ
ଭାଇବନ୍ଧୁ କୁଟୁମ୍ବ ପୁତ୍ରନାତି ଜାଣ ।
ସୈନ୍ୟବଳ ସହିତେ ହସ୍ତୀସାରେଣୀ ଅଶ୍ୱ
ମାସେ ସତର ଦିନରେ ସର୍ବେ ଯିବେ ନାଶ ।
କାହାରି ମୁଖକୁ ନ ଚାହିଁ ତୁହି ମରିବୁ
ତୋର ଘରଣୀମାନଙ୍କୁ ଦିଅର ନେବ ସବୁ ।
ଏଥିରୁ ବଳିଲେ ଲଙ୍କାରେ ଭସ୍ମ ହେବେ
ସାଗରକୁ ସମସ୍ତେ ଭାସିଣ ଯେ ଯିବେ ।
ମୋହର କଥାଗୋଟି ନୋହିବ ଯେ ଆନ
କାଲି ଭିତରେ ପୋଡ଼ିଯିବ ଏ ଲଙ୍କା ଭୁବନ ।
ଏତେ କହି ଦେବୀ ବସିବାଠାରୁ ଉଠି
ନୟନରୁ ଲୋତକ ଭୂମିରେ ପକାଏଟି ।
ବୋଇଲେ ଏପୁରେ ଯେତେକ ଅସୁର
ତିନିଭାଗେ ମରନ୍ତୁ ରାମଙ୍କ ହସ୍ତର ।
ରାବଣ କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ମରୁ
କାଲିଠାରୁ ଅରିଷ୍ଟ ଏଙ୍କାଗଡ଼େ ପଡୁ ।
ଦେଖିଣ ତ୍ରିଜଟା ଦୂରେ ଘୁଞ୍ଚିଗଲା
ସମ୍ଭାଳ ଗୋ ସ୍ୱତୀ ବୋଲି ଚରଣେ ନମିଲା ।
ତ୍ରିଜଟା କହିବାରୁ ସତୀ ତ୍ରିପୁତି ହେଲେ
ପ୍ରଜ୍ୱଳିତ ତେଜ ଦେବୀ ଯେ ହୋଇଲେ ।
ସେ ସ୍ଥାନରୁ ପଳାଇଲା ଲଙ୍କାର ରାବଣ
ଶୁଖିଲା କାଷ୍ଠକୁ ଯେହ୍ନେ ଧ୍ୱଂସେ ହୁତାସନ ।
ତେସନ ପ୍ରାୟେ ହୋଇ ପଳାଏ ରାବଣ
ଉଭା ହେଲା ଯାଇ ସେ କୋଶେକ ଅନ୍ତରେଣ ।
ତ୍ରିଜଟା ଯାଇଣ ଚରଣ ଦୁଇ ଧରି
କ୍ରୋଧ ଶାନ୍ତ କର ମା ସୁଦୟାକୁ କରି ।
ସତୀର କ୍ରୋଧରେ ହୋଇବ ବସୁଭସ୍ମ
ଦାବାନଳ ରାମନାରୀ ଅଟଇ ବିଶେଷ ।
ଭୋଦେବ ଲଙ୍କେଶ୍ୱର ବୀର ଚକ୍ରବର୍ତ୍ତୀ
ସରିଲାଟି ଆସିଣ ତୋହର ସମ୍ପତ୍ତି ।
ତୋହର କୋପକୁ ସତୀ କୋପ ଟାଣ
ଭସ୍ମ କରିଦେବ ସେହୁ ଯାଅନା ବହନ ।
ରାବଣ ବୋଇଲେ ସ୍ତିରୀଛାର ବାମା
ମୋହର ଆଜ୍ଞାକୁ କରୁଛି ଅବଜ୍ଞା ।
ରାମ ଲକ୍ଷ୍ମଣଙ୍କୁ ଦେଖାଉ ମୋତେ ଆଣି
ନୋହିଲେ ତାହାର ଶିର ପକାଇବି ହାଣି ।
ଦୁଇମାସଯାଏଁ ତାକୁ କଣ୍ଟ ଦେଇଗଲି
ଦେଖାଇ ନ ଦେଲେ ଘରଣୀ କରିବି ବୋଇଲି ।
ଏତେ କହି ବିମାନେ ବସିଲା ଦଶଗ୍ରୀବ
ତୋହର ବଚନକୁ ସହିଲି ମୁଁ ଆଜ ।
ସହସ୍ରେ ଅସୁରୁଣୀ ସେ ସନ୍ନିଧକୁ ରାଇ
ତ୍ରିଜଟାକୁ ରାବଣ ତିଆରି କହଇ ।
ଯେମନ୍ତେ ରାମନାରୀ ରାଜି ହୁଏ ମୋତେ
ତେମନ୍ତେ ପ୍ରକାର ବିଚାର କର ଚିତ୍ତେ ।
ଉପାୟେ କଥାମାତ ଦେଖାଇ କହିବ
ଆଣିଦେବ ଯେତେବେଳେ ଯାହା ସେ ମାଗିବ ।
ତୁମ୍ଭେମାନେ ମୋର ବିଶ୍ୱାସ ପ୍ରାଣହିତ
ଯେମନ୍ତେ ଜାନକୀର ବଳେ ମୋତେ ଚିତ୍ତ ।
ବୟସ ଦିନ ତ ଯାଉଅଛି ଦୁଃଖେ
ତୁମ୍ଭେମାନେ ତିଆରି କିହିବ ତାରମୁଖେ ।
ସୀତାଙ୍କୁ ତୁମ୍ଭେ ଯେବେ ମଣାଇ ବୋଧିବ
ତେବେ ତୁମ୍ଭେ ମନସଧ ପୁରାଇବି ସର୍ବ ।
ବୋଧିବ ସତୀକି ଅନେକ କଥା କହି
ଦେଣଘୋଷ ଦେବି ସତ୍ୟ କଥା ଏହି ।
ଏତେ କହି ଲଙ୍କାପତି ନିଜଆଳେ ଗଲା
ଆପଣା ନବରେ ପ୍ରବେଶ ହୋଇଲା ।
ସତୀର କୋପାନଳକୁ ଡରିଲା ଲଙ୍କପତି
ବୋଇଲା ସେ ମୋତେ ମାରିବେ ଦାଶରଥି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ତ୍ରିଜଟା ଅସୁରୀ ଲେଉଟି ଝଟତି ।
ଚଉପାଶେ ଅସୁରୁଣୀ ବେଢ଼ିଛନ୍ତି ରହି
ଛାମୁରେ କରଯୋଡ଼ି ତ୍ରିଜଟା ଉଭାହୋଇ ।
ଉରାର ଉପରେ ହନୁମାନ ଥିଲା
ସକଳ ଚରିତ୍ରମାନ ସେ ସ୍ଥାନେ ଦେଖିଲା ।
ଏହି ସମୟରେ ରଜନୀ ହେଲା ଶେଷ
ପୂର୍ବଦିଗେ ଉଦୟ ହୋଇଲେ ଦିନେଶ ।

ଦେବତାଙ୍କ ଆଳେ ଶୁଭଇ ଶଙ୍ଖଧ୍ୱନି
ସୁସ୍ୱରସୁରେ ଗୀତ ଗାଆନ୍ତି କାମିନୀ ।
ନଗ୍ର ନରନାରୀ ହୋଇଲେ ଉଚାଟ
ଯେ ଯାହା ଘରଦ୍ୱାର ଫିଟିଲା କବାଟ ।
କୁଳବଧୂମାନେ ଶଯ୍ୟାରୁ ଉଠିଲେ
ଗୃହକର୍ମେ ପଶିଣ ରତି ପାଶୋରିଲେ ।
ଏହି ସମୟରେ ବ୍ରହ୍ମା ବୃହସ୍ପତି
ନାରଦ ବସୁଦେବ ଯେ ଲଙ୍କାରେ ମିଳନ୍ତି ।
ରାବଣ ସିଂହଦ୍ୱାରେ ହେଲେ ପରବେଶ
ବ୍ରହ୍ମାଙ୍କ ଚତୁର୍ମୁଖରେ ବେଦ ଯେ ଅଭ୍ୟାସ ।
ଦ୍ୱାରପାଳ ବୋଲଇ ବ୍ରହ୍ମାଙ୍କ ମୁଖ ଚାହିଁ
ସମୟ ନ ଜାଣି ବେଦ ପଢ଼ କାହିଁପାଇଁ ।
ତୁନିହୋଇ ତୁମ୍ଭେ ଦ୍ୱାରେ ବସ ରହି
ବାହାର ହେଲେ ପୁଣି ଛାମୁରେ ଜଣାଇଁ ।
ସପତାଙ୍ଗ ପାଞ୍ଜି ଯେ କରନ୍ତି ଦେବ ଗୁରୁ
ଦ୍ୱାରୀମାନେ କହିଲେ କିମ୍ପା ଏହା ପଢୁ ।
ଇନ୍ଦ୍ରର ସଭା ପ୍ରାୟ ମଣିଲା କି ଏଥ
ଏ ବଚନ ଶୁଣି ବୋଲେ ଚଉମାଥ ।
କିମ୍ପାଇଁ ଦ୍ୱାରପାଳ ବୋଲୁ ଏ ବଚନ
କିସ ତୋତେ ଆଜ୍ଞା ଦେଇଛି ଦଶାନନ ।
ନୋହିଲେ କି କୋପ କରିଛି ଏବେ କହ
କିଅବା ଦୈତ୍ୟେ ତୁମ୍ଭେରେ ଗର୍ବ ଆମ୍ଭା ବହ ।
ଦ୍ୱାରପାଳ ବୋଇଲା ଶୁଣ ବେଦପତି
ରାବଣ ଚୋରି କରି ଆଣିଲା ଯେଉଁ ସତୀ ।
ସେହି ତାକୁ ହୋଇଲା ଗଳିତ କୁଷ୍ଟ ବ୍ୟାଧି
ତେଣୁ କରି ବ୍ୟଥା ଯେ ପାଉଛି ନୃପନିଧି ।
ବ୍ୟାଧି ଘେନି ପୀଡ଼ା ସେ ହୃଦୟେ ପାଉଛି
ତେଣୁ ସେ ବିରସ ହୁଏ ବିଶ୍ରବାର ବଛି ।
ଅଶୋକ ବିପିନକୁ ଆଜ ସେ ଯାଇଥିଲା
ନିରାଶ ବଚନ ପାଇଣ ବାହୁଡ଼ିଲା ।
କେବେ ହେଁ ରାମନାରୀ ନୋହିଲା ତାକୁ ବଶ
ବୋଇଲା ତୋର ବଂଶ କରିବି ମୁଁ ଭସ୍ମ ।
ତେଣୁ କରି ରାଏ ମନରେ ବିରସତ
ଅନିଦ୍ରା ହୋଇଣ ପଶିଛି ଭିତରେତ ।
ଦ୍ୱାରପାଳ ମୁଖରୁ ଏସନ ବାଣି ଶୁଣି
ହରଷ ମନ ଯେ ହେଲେ କୁଶପାଣି ।
ଆନନ୍ଦରେ ଦେବେ ହେଲେ ସିଂହଦ୍ୱାରେ
ଶୁଣ ଗୋ ପାର୍ବତୀ ଏଥୁ ଅନନ୍ତରେ ।
ଅଶୋକ ବିପିନରେ ଅଛି ଦେବୀ ସତୀ
କୋପ କରି ବାହୁଡ଼ି ଗଲା ଲଙ୍କାପତି ।

ଆସିବାର ବେଳେ ଅସୁରୀଙ୍କି ଚାହି
ବହୁତ ତିଆରିଲା ମନ୍ଦୋଦରୀ ସାଇଁ ।
ବୋଇଲା ସୀତାର ଯେମନ୍ତେ ବଳେ ମତି
ତେମନ୍ତ କରି କାର୍ଯ୍ୟ କରଗୋ ତଡ଼ତି ।
ଏତେ ବୋଲି ଦୈତ୍ୟ ନିଜ ପୁରେ ଗଲା
ଏକଥା ହନୁମାନ ଗ ୁପତେ ଶୁଣିଲା ।
ଓରାର ଉପରେ ଭ୍ରମର ରୂପ ହୋଇ
ଶରୀର ଗୁପ୍ତ କରି ମାରୁତି ଅଛଇଁ ।
ରାବଣ ଗଲାରୁ ଅସୁରୀମାନେ ଆସି
ତ୍ରିଜଟା ସହିତେ ସୀତାଙ୍କୁ ଜଗି ବସି ।
କେ ବୋଲଇ ଜାନକୀ ଆମ୍ଭର ବୋଲ କର
ତ୍ରୈଲୋକ୍ୟରେ ପ୍ରତାପି ଅଟଇ ଲଙ୍କେଶ୍ୱର ।
ଦେବେ ବେଶ୍ୟାବୃତ୍ତି ଅଟନ୍ତି ପାଦର
ଦଶବଦନ ବିଂଶଭୁଜ ଅଟଇ ତାହାର ।
ସୁବର୍ଣ୍ଣମୟ ଲଙ୍କା ଦିଶେ ଚଉକତି
ତିନିକୋଟି ପଚାଶ ସହସ୍ର ଯୁବତୀ ।
ପାଟମହାଦେଈ ଅଟଇ ମନ୍ଦୋଦରୀ
ଅକଣ୍ଟକ ରାଜ୍ୟ କରଇ ଦଶଶିରି ।
ଅଇଶ୍ୱର୍ଯ୍ୟ ପଣେ ବଳିଲା ତାର ମତି
ତୋ ରୂପଗୁଣକୁ ସେ ଧ୍ୟାନ କରେ ନିତି ।
ସୁନ୍ଦର ଦେଖି ତୋତେ କରଇ ରତିଲୋଡ଼ା
ଏଣୁ କରି ତୋତେ କରିଛି ମନବୁଡ଼ା ।
ତୋଠାରୁ ବଡ଼ ସୁନ୍ଦରୀ ଅଛନ୍ତି ତାର ନାରୀ
ତୁ ଏବେ ମନରେ କିସ ଅଛୁ ଗୋ ବିଚାରି ।
ବନରେ ବୁଲୁଥିଲୁ ପ୍ରତି ପ୍ରତି ହୋଇ
ଗିରିଘୋର କନ୍ଦରେ ଫଳମୂଳ ଖାଇ ।
ଦଇବ ଆଣି ଏବେ କଲା ଏତେ ଦୂର
ଏବେ ସୁଖଭୋଗ କରିବୁ ଲଙ୍କାପୁର ।
ଏହା ଛାଡ଼ି କିମ୍ପା ବିଷାଦ କଲୁ ମନ
କିସ ବିଚାରି ମନେ ନ କହୁ ବଚନ ।
ଯାହା ମାଗିବୁ ତାହା ଦେବ ଲଙ୍କସାଇଁ
କୌଣସି କଥା ଯେ ଅପୂର୍ବ ତାକୁ ନାହିଁ ।
ଶୁଣିଣ ଜାନକୀ କହନ୍ତି ବଚନ
ରାବଣର କଥା କେତେ ଟେକି କହୁପୁଣ ।
କିସ ଦେଇ ମୋତେ ବୋଧିବ ଦଶଗିରି
ମୋହର ସଙ୍ଗରେ ଯେବେ ଅଗ୍ନି ସ୍ନାନ କରି ।
ଶ୍ରୀରାମ ସଙ୍ଗରେ ଯେବେ ଯୁଦ୍ଧରେ ଜିଣିବ
କହିଲେ ସମୁଦ୍ର ଯେବେ ଶୁଖିଯିବ ।
ଦଶବଦନ ଯେବେ କରିବ ଅନ୍ତର
ଏତେ କଥା ଦେଖିଲେ ମୁଁ ହୋଇବି ତାହାର ।

ଏମନ୍ତ କହି ସତୀ ମଉନ ହୋଇଲେ
ଅସୁରୁଣୀମାନଙ୍କୁ ସମସ୍ୟାଦାନ ଦେଲେ ।
ଏଥୁଅନନ୍ତରେ ଶୁଣ ଭଗବତୀ
ଅସୁରୁଣୀ ଶୁଣିଲେ ଜାନକୀର ଗତି ।
ଶୁଣି କରି ଅସୁରୁଣୀ ବୋଲନ୍ତି ପ୍ରୀତିଭାବେ
ଅନେକ ସୁଖ ଭୋଗ କରଇ ଦଶଗ୍ରୀବେ ।
ଏତେ କାଳରେ ତୋତେ ବିଧାତା ଦେଲା ସୁଖ
ରାଜପତ୍ନୀ ହୋଇଣ ବୋଧ ତୁ ଦଶମୁଖ ।
ଜ୍ଞନଗୋଚର ଯେ ମେଳା ତୋର ନାହିଁ
ରାବଣ ପରା ରାଜାକୁ ନିନ୍ଦିଛୁ କାହିଁପାଇଁ ।
ଅମୃତ ପକାଇ ବିଷ କିମ୍ପା ଖାଉ
ବୁଝ ଏବେ ଏକଥା କି କହିବି ଆଉ ।
ଏ ବୁଦ୍ଧି ଗୋଟି ତୋର ଅଟେ ଅକାରଣ
ଶ୍ରବଣ ଦୂର କରି ଆମ୍ଭର କଥା ଶୁଣ ।
ବୋଲୁ ଯେ ଶ୍ରୀରାମ ଅଟେ ମୋର ପତି
ତାଙ୍କବିନୁ ଅନ୍ୟରେ ନବଳେ ମୋର ମତି ।
ସେହିଟି ଶ୍ରୀରାମ ମନୁଷ୍ୟ ଜଟାଧାରୀ
ତୁହି ସୁଲକ୍ଷଣୀ ସୁନ୍ଦରୀ ଯୁବା ନାରୀ ।
ରୂପ ଅନୁରୂପେ ପାଇଲୁ ଏବେ ବର
ରାଜାଧି ରାଜେଶ୍ୱର ଅଟଇ ଲଙ୍କେଶ୍ୱର ।
ସୁଗନ୍ଧ ଚନ୍ଦନ ସୁସ୍ୱାଦ ପୁଷ୍ପବାସ
ନାନା ଅଳଙ୍କାରେ ତୁହି ହୋଇଲୁ ସୁବେଶ ।
ଲଙ୍କପତି ସଙ୍ଗରେ ବଢ଼ାଅ ପୀରତି
ବହୁତ ସ୍ନେହ ତୋତେ କରିବ ନୃପତି ।
ଆମ୍ଭେମାନେ ପରିବାରୀ ହୋଇଣ ଖଟିବୁଁ
ଯହିଁକି ପଠାଇବ ସେ ସ୍ଥାନକୁ ଯିବୁ ।
ଅସୁରୀଙ୍କ ବଚନେ ବୋଲନ୍ତି ରାମରାଣୀ
ବିଧାତା ମୋତେ ଏଥକୁ ଯେବେ ଅଛି ଆଣି ।
ତୁମ୍ଭ କଥାକୁ ଛଳ କଲେ ହେବ କିସ
କର୍ଣ୍ଣରେ ଶୁଣିବାକୁ ଅଛଇ ଭବିଷ ।
ଯତିର ଭାରିଯା ମୁଁ ପତିବ୍ରତା ସତୀ
ରାଜା ହୋଇ ଲଙ୍କାପତି କରୁଛି ଅନୀତି ।
କପଟରେ କଥା କହି ମୋତେ ସେ ଆଣିଲା
ଘରଣୀ କରିବାକୁ ଏବେ ସେ ଲୋଡ଼ିଲା ।
ପୃଥ୍ୱୀ ଦେବୀ ଯେବେ ପଡ଼ିବ ରସାତଳେ
ମଧୁର ହେବ ଯେବେ ଲବଣ ସିନ୍ଧୁଜଳେ ।
ପୂର୍ବଦିଗ ଭାନୁ ଯେବେ ପଶ୍ଚିମେ ଉଦେ ହେବ
ପବନ ସ୍ତମ୍ଭୀଭୂତ ହୋଇ ନ ବହିବ ।
ପର୍ବତ ଉପରେ ଯେବେ ଫୁଟିବ ପଦ୍ମଫୁଲ
ସର୍ବଦା କାଳେ ନଦୀ ରହିବ ସମତୁଲ ।
ଜଳରେ ପଙ୍କ ନାସ୍ତି ଚନ୍ଦ୍ରରେ କଳଙ୍କ
ଜନ୍ତୁମାନେ ମରଣକୁ ହୋଇବେ ନିଶଙ୍କ ।
ପର୍ବତମାନେ ବଜ୍ରପାତକୁ ନ ଡରିବେ
ମେଘ ବରଷା କାଳେ ଗର୍ଜନ ନ କରିବେ ।
ଏମନ୍ତ ହେଲେ ପୁଣି ନଟଳେ ମୋର ମନ
ମୋର ସ୍ୱାମୀ ଅଟନ୍ତି ଶ୍ରୀରାମ ରାଜନ ।
ଜନ୍ମେ ଜନ୍ମେ ମୁହିଁ ଦାସୀ ଅଟଇ ନିକର
ସେ ରାମ ତ୍ରୈଲୋକ୍ୟର ଅଟନ୍ତି ଈଶ୍ୱର ।
ସତେ ଯେବେ ନାରାୟଣ ଅଟନ୍ତି ମୋର ବର
ରାବଣ ମାରିବେ ସେ ଆସିଣ ସତ୍ୱର ।
ଋଷିମାନେ ଯେବେ କହୁଥିବେ ସତ
ସୂର୍ଯ୍ୟବଂଶରେ ଯେବେ ଜନମ ବିଶ୍ୱନାଥ ।
କୋଦଣ୍ଡ ଚାପଧାରୀ ବୋଲାଉ ଥିବେ ଯେବେ
ରାବଣର ଦଶମୁଣ୍ଡ ଛେଦିବେ ଆସି ଏବେ ।
ଲଙ୍କାଗଡ଼ ଯାକ ଅଗ୍ନିରେ ପୋଡ଼ିଦେବେ
ବାନର ଭାଲୁ ଅସୁରୁଣୀଙ୍କ ସଙ୍ଗରେ ରମିବେ ।
ସମୁଦ୍ରରେ ସେତୁବନ୍ଧ ବାନ୍ଧିବେ କପି ଘେନି
ସୁବଳୟା ଗିରିରେ ଠଣା କରିବେ ଆସି ପୁଣି ।
ବିଭୀଷଣ ଯେବେ ଏ ଗଡ଼େ ରାଜା ହୋଇ
ତେବେ ସେ ଦେବତାଙ୍କ କଷ୍ଟ ଯେ ସରଇ ।
ମନ୍ଦୋଦରୀ ରାଣୀ ଯେବେ ଦିଅର ତଳେ ରହି
ଏକଥାମାନ ଦେଖିଲେ ମୋ ମନ ସ୍ଥିର ହୋଇ ।
ରାବଣ ସ୍ୱଗୋତ୍ର ସୈନ୍ୟବଳ ଜାଣ
ସମସ୍ତେ ମଲେ ସ୍ଥିର ହେବ ମୋର ମନ ।
କିମ୍ପାଇଁ ରଘୁନାଥ ନ ଆସନ୍ତି ଏଥ
କଷ୍ଟ ସରିଲେ ମୁଁ ଯେ ଜିଣିଲି ନିୟତ ।
ତେବେ ମୁଁ ଏ ଲଙ୍କାକୁ ଭସ୍ମ କରି ଦେବି
ଲବଣ ଜଳେ ଏ ପୁର ଲୁଚାଇ ଚଳିବି ।
ଦେବଙ୍କର କଷ୍ଟ କହିଲେ ନ ସରି
ମୋର ବାରତା ପାଇ ନାହାନ୍ତି ଚାପଧାରୀ ।
ମେଦିନୀ ଯୁଗେ ହେଲା କରୁଛି ରୋଦନ
ଅସୁର ମଲେ ବାସୁକୀ ଉଶ୍ୱାସ ପାଏ ଜାଣ ।
ମୁହିଁ ତ ଜାଣଇଁ ଶ୍ରୀରାମ ପରଂବ୍ରହ୍ମ
ଦେବଙ୍କର ଛଳେ ନାରାୟଣ ହେଲେ ଜନ୍ମ ।
ତିନିପକ୍ଷରେ ଯେବେ ନ ଆସନ୍ତି ରଘୁବଳ
ଜାଣିବି ନିଶ୍ଚୟ ସେ ନୁହନ୍ତି ଆଦିମୂଳ ।
ଦୁଇମାସ ବଳିରେ ମରିବି ନିଶ୍ଚେ ଜାଣ
ଦେବେ ନ ଜାଣି କିମ୍ପା ଅଣାଇଲେ ଏ ଭୁବନ ।
ଶୁଣିଣ ରାକ୍ଷାସୁଣୀ ପାଏ ବଇରାଗ
ବିକଟ ମୁରତି ସେ ଧଇଲେ ସୀତା ଆଗ ।

ନୟନ ତରାଟିଣ ବାଙ୍କରେ ସେ ଚାହିଁ
ଜିଭ କାମୁଡ଼ିଣ ବିଚାରିଲେ ଖାଇ ।
କେଶ ମୁକୁଳା କରି ଛାଡ଼ନ୍ତି ସିଂହରଡ଼ି
ଏକର ଉପରେ ଆରେକ ଯାଇ ପଡ଼ି ।
କେ ବୋଲଇ ବିଧାତା ନ ଜାଣଇଁ କିଛି
ଏହାକୁ ଏ ପୁରକୁ କିମ୍ପାଇଁ ଆଣିଛି ।
କେ ବୋଲଇ ଏ ସ୍ତିରୀ ନ ଜାଣଇଁ ଭୋଗ
ଯେବଣ ଲଙ୍କାଗଡ଼ ଦେବଙ୍କୁ ଦୁର୍ଲ୍ଲଭ ।
ଏ ପୁରେ ଠାକୁରାଣୀ ହୋଇବାକୁ ନାହିଁ
ଏଡ଼େ ବଡ଼ ସମ୍ପଦ କି ରୂପେ ଦେବ ବିହି ।
କନ୍ଦମୂଳ ଖାଇବ ବୁଲିବ ବନର
ବୃକ୍ଷବକଳ ବସନ କରିବ ଦେହର ।
ଦେଶାନ୍ତରେ ଜନର ଏ ଭାରିଜା ହୋଇବ
ରାଜାଭୋଗ ସୁଖ ଏହା ଛାର କି କରିବ ।
ଏମନ୍ତ ବୋଲି ଏକ ଆରକେ ପଚ୍ଚେ ମାଡ଼ି
କହଇ ଏହି ମତେ ମାରିବି ଅନ୍ତକାଢ଼ି ।
କେ ପେଟ ଖଙ୍କାଳି କେ ମାରେ ଗାଲ ତୁରୀ
ଶୂନ୍ୟକୁ ଡେଇଁ ଭୂମିରେ ପଡ଼ଇ ଗର୍ଜି କରି ।
କେ ବୋଲଇ ତଣ୍ଟି ମୋଡ଼ି ମାରିବି ଏହି ମତେ
କେ କହେ ଏହାକୁ ମୁଁ ଗିଳିବି ସ୍ୱାମୀହିତେ ।
କେ କହଇ ଏହାକୁ ମୁଁ ପକାଇବି ମାରି
ପୋଡୁ ଏ ପାପୀ ଶତ୍ରୁ ଯାଉଗୋ ସବୁଙ୍କରି ।
ଏହା ସଙ୍ଗେ ବନ୍ଦୀ ହୋଇଥାଇ ଏତେ ନାରୀ
ରାଜାଙ୍କର ସେବାମାନ ସମସ୍ତ ପାଶୋରି ।
କେ କହଇ ମୋହର ବଚନ କର ଆସ
ସମସ୍ତେ ମିଳି ଏହାର ଖାଇବା ମାଉଁସ ।
କେ କହଇ ମୋତେ ନ ଧର ତୁମ୍ଭେ ଛାଡ଼
ତୁଳା ପ୍ରାୟ ଏହାର ଚୋବାଇବି ହାଡ଼ ।
କେ କହଇ ଅଟଇ ଏ ଅତି ନିରିମାଖି
କେ କହଇ ଯାର ଖୋଳିବି ବେନି ଆଖି ।
କେ କହଇ ପ୍ରାଣ ଆଜି ଘେନିବି ଏହାର
କେ କହଇ ନ ରଖ ଗୋ ବେଗ କରି ମାର ।
କେ କହଇ ରାମ ତୋର କାହିଁ ରଖୁ ଆସି
କେ କହଇ ଦେଖିବା ତୋ ଲକ୍ଷ୍ମଣ ଆସସି ।
ମାର୍ଜାର ପରି ମୁଖ ବେନି ଶତ ଯୁବତୀ
ବେନି ଶତ ଉଲୁକ ମୁଖି ତହିଁ ଛନ୍ତି ।
ଗଧ ମୁଖା ଦୁଇଶତ ଅଛଇଁ ବଇତୁଣୀ
ବେନିଶତ ଓଟମୁଖି ଅଛନ୍ତି ଯେ ପୁଣି ।
ଅଶ୍ୱମୁଖି ବେନି ଶତ ଅତି ଘୋର ଦୁଷ୍ଟ
ଜିଭ କାଢ଼ି ଦନ୍ତ ସେ କରନ୍ତି ରଟମଟ ।

ଚାରିପାଶେ ବେଢ଼ି ରଡ଼ି ଦିଅନ୍ତି ଯୁବତୀ
ତାହା ଦେଖି ମହାଚିନ୍ତା ପାଇଲା ମାରୁତି ।
ମନରେ ବିଚାରଇ କରିବି କିସ ବୁଦ୍ଧି
ଏତେ ଦୁଃଖ ସହିଛି ଯୁବତୀ ରତ୍ନନିଧି ।
ଏହିକ୍ଷଣି ଅସୁରୀଙ୍କୁ ଯେବେ ମୁଁ ମାରିବି
ପ୍ରଭୁଙ୍କର କାର୍ଯ୍ୟ କିଛି କରି ନ ପାରିବି ।
ଏ ଲଙ୍କାଭୁବନେ କେହି ନ ଚିହ୍ନିବେ ମୋତେ
ରାବଣର ଗର୍ବ ନାଶ ନୋହିବ କିଞ୍ଚିତେ ।
ଅକଳ ହୋଇଅଛି ସମସ୍ତ କଥାମାନ
ତେଣୁ କରି ଏ ସମୟେ ହୋଇବି ମଉନ ।
ସୀତାକର୍ମେ ବିଧାତା ଏମନ୍ତ ଥିଲା ଲିହି
ତେଣୁ କରି ଏମାନ ମୁଁ ନୟନେ ଦେଖଇ ।
ଏତେ ବୋଲି ବିସ୍ମୟେ ମଉନ ମାରୁତି
ରାକ୍ଷାସୁଣୀମାନେ ମହାଭୟଙ୍କର ମୂର୍ତ୍ତି ।
କ୍ରୁରୁଡ଼ି ଦେଇଣ ଆକର୍ଷନ୍ତି ଯାଇ
ତ୍ରିଜଟା ବୋଇଲା ଆଲୋ ଅସୁରୀ ତୁମ୍ଭେ ବାଇ ।
ଏ ସତୀକି କିମ୍ପାଲୋ ଡରାଅ ତୁମ୍ଭେ ଜାଣି
କେଡ଼େ ବଳବନ୍ତ ତାର ପାଶକୁ ଯାଅ ପୁଣି ।
ଦେଖିକରି ରାବଣ ଡରି ପଳାଇଲା
ଦାବାନଳ ରୂପେ ସେ ଦେବୀର ଦେଖିଲା ।
ଆଜିର ରଜନୀରେ ସ୍ୱପ୍ନ ମୁଁ ଦେଖିଲି
ଯେତେବେଳୁଁ ନାରାୟଣ ଘରଣୀ ଜାଣିଲି ।
ଶ୍ରୀରାମ ନାମ ଅଟଇ ସ୍ୱାମୀ ଏହାଙ୍କର
ସଙ୍ଗରେ ଲକ୍ଷ୍ମଣ ଅଛନ୍ତି ତାଙ୍କର ।
ବାନର ଭଲ୍ଲୁକ ସଙ୍ଗରେ ବହୁତ
ସମୁଦ୍ରେ ବନ୍ଧ ବାନ୍ଧି ପଶିଲେ ଲଙ୍କାରେ ତ ।
ରାବଣର ବଂଶ ମାରି ଘେନିଗଲେ ସୀତା
ଲଙ୍କାରେ ନୃପତି ହୋଇଲେ ମୋର ପିତା ।
ମୋତେ ସେ ରାମ ନାରୀ ଡାକିଣ ପଚାରିଲେ
ମୋ ପ୍ରାଣ ରଖିଛୁ ବର ମାଗଲୋ ବୋଇଲେ ।
ଯାଙ୍କର ଦିଅର ଲକ୍ଷ୍ମଣ ନାମେ ବୀର
ସୀତାଙ୍କ ଚରଣେ କରେ ନମସ୍କାର ।
ବୋଇଲେ ଠାକୁରାଣୀ ମୋର ଠାରୁ ଶୁଣ
ଲଙ୍କାରେ ରାଜା ହେଲା ବିଭୀଷଣ ଜାଣ ।
ତାହାର ଦୁହିତା ତୋତେ କରିଛି ଉପକାର
ଏଣୁ କରି ଏଥିରେ ସେ ହେଲା ନୃପବର ।
ରାମ ରାବଣକୁ ମାରି ମୋ ପିତାଙ୍କୁ ରାଜା କଲେ
ମୋତେ ସୀତା ରାଜା କଲେ ବିଲଙ୍କା ଗଡ଼ରେ ।
ହେଉ ବୋଲି ଜାନକୀ ମୋ ମୁଣ୍ଡେ ପାଟ ବାନ୍ଧି
ରାଜପଣ ହେଲେ ସତୀ ସନ୍ତୋଷ ମନେ ଭାବି ।

ଚରଣ ତଳେ ପଡ଼ି ମୁଁ ତାଙ୍କୁ ଜଣାଇଲି
କେଉଁଠାରେ ରାଜା କଲେ ବୋଲି ପଚାରିଲି ।
ଲକ୍ଷ୍ମଣ ବୋଇଲେ ରାଜା ବିଲଙ୍କା ଗଡ଼ରେ
ସହସ୍ରମୁଖା ରାବଣ ମରିବ ଯା କରେ ।
ଏତେ କହି ବିଲଙ୍କାକୁ ଚାର ପଠାଇଲେ
ନ ଆସିବାରୁ ତାର ବଂଶ ନାଶ କଲେ ।
ତୁମ୍ଭଙ୍କୁ ଘେନିଣ ମୁଁ ସେ ବନକୁ ଗଲି
ବିଲଙ୍କା ଗଡ଼ରେ ରାଜନ ହୋଇଲି ।
ଏମନ୍ତ ସ୍ୱପନ ଦେଖିଲି ଆଜି ମୁହିଁ
ସପନରୁ ଜାଣିଲି ଘଟିବ କଥା ଏହି ।
ଏ ଜାନକୀ ଚରଣେ ପଶିଲେ ଶରଣ
ନୋହିଲେ ତୁମ୍ଭେମାନେ ନାଶ ହେବ ଜାଣ ।
ତୁମ୍ଭେ ସିନା ଥିଲେ ବହୁତ କାର୍ଯ୍ୟ ହେବ
ମୁହିଁ ରାଜାହେଲେ ତୁମ୍ଭେ ପ୍ରଜା ବୋଲାଇବ ।
ଏ ଜାନକୀ ଅଟନ୍ତି ଶ୍ରୀରାମଙ୍କ ପାଟରାଣୀ
ଅନନ୍ତ କୋଟି ଠାକୁର ଅଟନ୍ତି ରଘୁମଣି ।
ଅସୁର ବଳ ଯହୁଁ ହେଲେ ବଳବନ୍ତ
ତେଣୁ ସେ ମାନବ ରୂପ ଧରିଲେ ଜଗନ୍ନାଥ ।
ସୁରଗଣମାନଙ୍କର ମାନ ଉଦ୍ଧାରିବେ
ନିଶ୍ଚୟ ଅସୁରକୁଳ ନିପାତ କରିବେ ।
ତ୍ରିଜଟା ମୁଖରୁ ଏସନ ବାଣୀ ଶୁଣି
ଅସୁରୀମାନେ ମନେ ଭାଳିଲେ ବସି ପୁଣି ।
ଏଥୁ ଅନନ୍ତରେ କହେ ରାବଣର ଝିଅ
ଆଉ କଥା ମୋହଠାରୁ ଶୁଣି ହୁଅ ପ୍ରିୟ ।
ନିଦ୍ରାଭଗ୍ନ ବେଳେ ମୁଁ ସ୍ୱପ୍ନ ଦେଖି ପୁଣି
ଦୂତ ଜଣେ ହନୁରୂପେ ବୁଲେ ଏ ଧରଣୀ ।
ପ୍ରତିଘରେ ସୀତାଙ୍କୁ ଖୋଜଇ ମାରୁତି
ମୋହଜ୍ୟେଷ୍ଠ ଭଗ୍ନି ଚିହ୍ନିଲା ତାକୁ ଚେତି ।
ଅଶୋକ ବନେ ଅଛି ବୋଲିଣ କହିଦେଲା
ଏ ବିପିନେ ହନୁମନ୍ତ ଆସିଣ ରହିଲା ।
ଏମନ୍ତ ସ୍ୱପ୍ନ ଆଜି ନିଶିରେ ଦେଖି ମୁହିଁ
ଜାଣିଲି ମୁଁ ମନେ ଏ କମଳା ଅଟଇ ।
ତ୍ରିଜଟାର ବଚନ ଶୁଣି ହନୁମାନ
ବୋଇଲା ଏ ନାରୀର ଜୀବନ ଅଟେ ଧନ୍ୟ ।
ଧନ୍ୟ ଧନ୍ୟ ସାଧବୀ ଏ ସ୍ତିରୀରେ ପଣ୍ଡିତା
ଅସୁରୀ ହୋଇଣ ଏତେ ଜ୍ଞାନବନ୍ତା ।
ଏହା ଜନ୍ମ କଲା ସେ ସେହି ଅଟେ ଧନ୍ୟ
ଅସୁର କୁଳରେ ଜାତ ଅଛି ଦିବ୍ୟଜ୍ଞାନ ।
ଏତେ କହି ମନରେ ବିଚାରେ ମାରୁତି
ସକଳ ରାକ୍ଷସୁଣୀଙ୍କି ତ୍ରିଜଟା କରେ ଶାନ୍ତି ।

ବେନି ଘଡ଼ି ରଜନୀ ପୁଣ ଅଛଇଁ ରହି
ପୂର୍ବଦିଗ ରଙ୍ଗବର୍ଣ୍ଣ ସକଳ ଦିଶଇ ।
ଏମନ୍ତ ସମୟରେ ସବୁଙ୍କୁ ନିଦ୍ରା ଘାରି
ଅଚେତ ହୋଇଣ ଶୋଇଲେ ସର୍ବନାରୀ ।
ତ୍ରିଜଟା ମାତ୍ର ଯେ ସେଥିରେ ଚେତା ହୋଇ
ସୀତାଙ୍କୁ ପ୍ରବୋଧି ସେ କହଇ ମଣାଇଁ ।
ତୁଗୋ ମହାସତୀ ନ ଧର ବିମନ
ଅସୁରୀ ପାମରୀ ତ ଅଟନ୍ତି ଜାତିହୀନ ।
ଏହାଙ୍କ କଥା ମନରେ ନ ଧର ଗୋ ମାଏ
ଦଇବ କରିଅଛି ଏସନ ଉପାୟେ ।
ଆବର ବେନିମାସ ଥାଅ ଗୋ ମନମୁଞ୍ଚି
ଅଳପ ଦିନରେ ଭେଟ ପାଇବୁ ଶ୍ରୀବତ୍ସୀ ।
ଅସୁରୀଙ୍କି ତ୍ରିଜଟା ମନାଇଁବା ବେଳେ
ଶୋକଭରେ ଜାନକୀ ମନରେ କ୍ରୋଧ ଧରେ ।
ତ୍ରିଜଟାଠାରୁ ଶୁଣି ଅସୁରୀ ଡରିଲେ
ଜାନକୀ ଶୁଣିଣ ତ୍ରିପୁତି ମନ ହେଲେ ।
ଏଥୁ ଅନନ୍ତରେ ତ୍ରିଜଟା କହେ ପୁଣ
ଶୁଣ ଗୋ ଠାକୁରାଣୀ ମୋହର ସ୍ୱପ୍ନ ।
କେତେବେଳରେ ନିଦ୍ରା ଯାଇଥିଲି ମୁହିଁ
ଏକଇ ବାନର ଅଇଲା ସିନ୍ଧୁ ଡେଇଁ ।
ବସା ମୁଦି ଦେଇ ତୋତେ ମଥାମଣି ନେଲା
ତୋତେ ଠାବ କରି ମଧୁବନକୁ ଭାଙ୍ଗିଲା ।
ଅକ୍ଷୟ କୁମାରକୁ ମାଇଲା ବାନର
ଅନେକ ଦୈତ୍ୟ ମାରି ପୋଡ଼ିଲା ଲଙ୍କାପୁର ।
ସୁବର୍ଣ୍ଣମୟ ପୁର ଅଙ୍ଗାର କଲା ପୁଣି
ଅଲକ୍ଷେ କ୍ଷେପିଗଲା କପି କୁଳମଣି !
ବାରାନିଧି ତରି ତୁମ୍ଭ ସ୍ୱାମୀଙ୍କି କହିଲା
ସେତୁବନ୍ଧ ବାନ୍ଧି ରାମ ଏପୁର ଅଇଲା ।
ବିଜୟ କଲେ ଆସି ସୁବଳୟା ଗିରି
ଭାଲୁ ବାନର ସଙ୍ଗରେ ଅଛନ୍ତି ଅସୁମାରି ।
ରାବଣ କୁମ୍ଭକର୍ଣ୍ଣ ମାଇଲେ ସ୍ୱଗୋତ୍ର
ପିତା ମୋ ବିଭୀଷଣ ଶିରରେ ଦଣ୍ଡଛତ୍ର ।
ସମସ୍ତ ମହାମାୟୀମାନେ ଦେଖିଗଲେ
ବାଟରେ ରତ୍ନଚୁଡ଼ି ଖସି ପଡ଼େ ଭଲେ ।
ଏପୁରେ ରାଜା ହେଲା ପିଅର ମୋହର
ସକଳ ରାଣୀହଂସ ରହିଲେ ପିତା ତଳ ।
ସେଠାରୁ ଶ୍ରୀରାମ ତୁମ୍ଭଙ୍କୁ ସଙ୍ଗେ ନେଲେ
ତୁମ୍ଭଙ୍କୁ ଘେନି ଅଯୋଧ୍ୟାରେ ଅଭିଷେକ କଲେ ।
ଏକଥା ଶୁଣି ଜାନକୀ ମନରେ ଆନନ୍ଦ
ବିଚାରିଲେ ନିଶ୍ଚୟ ହୋଇବ କାର୍ଯ୍ୟ ସିଦ୍ଧ ।

ତ୍ରିଜଟା ଆଜ ଯାହା ଦେଖିଲେ ସ୍ୱପନ
ମୁହିଁ ଦେଖିଅଛି ସ୍ୱପନ ଏସନ ।
ବାମ ନୟନ ବାମ ଜାନୁ ମୋର ସ୍ଫୁରେ
ଏସନ ଶକୁନି ହେଲେ କଥା ହୁଏ ଭଲେ ।
ଏଥିଅନ୍ତରେ ଶୁଣ ଗୋ ପାର୍ବତୀ ।
ହନୁମନ୍ତ ଓରାର ଉପରେ ରହିଅଛି ।
ଯେତେବେଳେ ତ୍ରିଜଟା ସ୍ୱପନ କଥା କହି
ଧୀରବର ଶାରୀ କୋପମନ ହୋଇ ।
ବୋଇଲା ତ୍ରିଜଟା ଅଟୁ ମନ୍ଦ ନାରୀ
ତୁମ୍ଭଙ୍କୁ ବିଶ୍ୱାସ କରି ଜଗାଏ ଦଶଶିରି ।
ସ୍ୱାମୀଦ୍ରୋହ କଲୁ ତୋତେ ପାର ନାହିଁ
ପିତାଙ୍କୁ ମନ୍ଦ ଚିନ୍ତୁ ଶତ୍ରୁର ଆଗେ କହି ।
ଏବେ ଯେତେ ତୁହି କହିଲୁ ବଚନ
ରାତ୍ର ପାହିଲେ ତୋର ଜାଣିବା ବଡ଼ପଣ ।
ନାସା ଶ୍ରବଣ ଛେଦ କରାଇବି ତୋତେ
ତୁ ଛାର ପାମରୀ ମନ୍ଦଚିନ୍ତୁ ଲଙ୍କନାଥେ ।
ଉଠରେ ପାମରୀମାନେ ନିଦ୍ରାରେ କେତେ ଘାର
ରାଜା ଆଗେ କହି ତୁମ୍ଭେ ତ୍ରିଜଟାକୁ ମାର ।
ନିଷ୍ଠୁର ବଚନ ଯହୁଁ କହେ ପକ୍ଷୀବର
ଜାନକୀ ପ୍ରବୋଧିଣ କହନ୍ତି ଉତ୍ତର ।
ତୁ ଯେ ପକ୍ଷୀବର ପରମ ପଣ୍ଡିତ
ସୁବୁଦ୍ଧି ପକ୍ଷୀ ହୋଇ କ୍ରୋଧରେ କୁବୁଦ୍ଧିତ ।
ମୁହିଁ ଯେ ନିରେଖଜନ ସଖା ମୋର ନାହିଁ
ଗଛର ଜଳେ ପଡ଼ି ଭାସୁଅଛି ମୁହିଁ ।
ତୁ କିମ୍ପା କୋପମନ ହେଉଛୁ ନ ଜାଣି
ସୁବୁଦ୍ଧି ପକ୍ଷୀବର ସର୍ବକଥା ଜାଣି ।
ଜାନକୀ କହନ୍ତେ ଜାଣିଲା ହନୁମନ୍ତ
ବାତେ କଦଳୀପତ୍ର ପ୍ରାୟେ କମ୍ପେ ଗାତ୍ର ।
କନକ ପଞ୍ଜରୀରେ ଭ୍ରମର ପ୍ରାୟେ ପଶି
ପକ୍ଷୀର ମୁଣ୍ଡ ଛିଣ୍ଡାଏ କ୍ରୋଧରେ ମାରୁତି ।
ପଞ୍ଜରୀ ଭିତରୁ ହନୁ ହୋଇଲା ବାହାର
ଗୁପତରେ ରହିଲା ଓରାର ଉପର ।
ପକ୍ଷୀ ନିଶବଦ ରଜନୀ ଗଲା ପାହି
କହନ୍ତି ପାର୍ବତୀ ଶଙ୍କର ମୁଖ ଚାହିଁ ।
କିମ୍ପାଇଁ ଶାରୀପକ୍ଷୀ ହୋଇଲା ପଣ୍ଡିତ
କେଉଁଣଠାରୁ ତାକୁ ଆଣେ ଦଶମାଥ ।
କହ ହେ ତ୍ରିଲୋଚନ ଏଥିରେ କାହାଣୀ
ପୂର୍ବର କଥା ମୁଁ ଯେ ନାହିଁଟି କର୍ଣ୍ଣେ ଶୁଣି ।
ଶଙ୍କର ବୋଇଲେ ଶୁଣ ମାହେଶ୍ୱରୀ
ମନ୍ଦର ପର୍ବତକୁ ରାବଣ ଗଲା ଫେରି ।

ମାଧବ ଋଷିଙ୍କର ସେଥିରେ ଆଶ୍ରମ
ଶ୍ୱେତପୁଷ୍ପ ଆଶ୍ରମେ ଶାରୀ ଥିଲା ଜାଣ ।
ପ୍ରବଳ ଲୋକ ଆସିଲେ ଜାଣଇଁ ସେ ପକ୍ଷୀ
ଆଗତ କରି ବିଚାର କହଇ ବାରତାଟି ।
ଷଡ଼ଶାସ୍ତ୍ର ନବ ବ୍ୟାକରଣ ଆଦି
ଯୁଗ ଯୁଗାନ୍ତ କଥା ସବୁ ଅଛି ସାଧି ।
ଆଗମ ବିଦ୍ୟାର ଉପଦେଶ ଜାତ
ସେ ପକ୍ଷୀକି ସିଦ୍ଧାନ୍ତ ଅଛନ୍ତି ଶିଖାଇତ ।
ସେ ସ୍ଥାନରେ ଦଶାନନ ହୋଇଲା ପ୍ରବେଶ
ତେଣେ ଋଷି ଅଚେତା ତପରେ ନିର୍ଦ୍ଦୋଷ ।
ପକ୍ଷୀ ଡାକ ଦେଲା ଅଇଲେ ଦୈତ୍ୟରାଜ
ଯେଉଁ ଦୈତ୍ୟକୁ ଦେବେ କରନ୍ତି ପୂଜା ଭାବ ।
ସେ ଦୈତ୍ୟ ରାବଣ ଏ ସ୍ଥାନକୁ ଆସି
ତପ ତେଜ୍ୟା କର ବେଗେଣ ହେ ଋଷି ।
ତିନିଥର ଡାକନ୍ତେ ଋଷି ଚେତା ହେଲା
ନୟନ ଫେଡ଼ି ଚାରି ଦିଗକୁ ଚାହିଁଲା ।
ଏମନ୍ତ ସମୟରେ ବିଶ୍ରବା ନନ୍ଦନ
ଋଷିଙ୍କର ଆଗରେ ମିଳିଲା ଦଶାନନ ।
ଋଷିଙ୍କି ଦେଖି ନମସ୍କାର କଲା ବେଗେ
ମାଧବ ଋଷି ତାକୁ ପ୍ରସନ୍ନ ହେଲେ ଭାବେ ।
ବୋଇଲେ ଦୈତ୍ୟ କେଣେ ତୁ ଅଇଲୁ
ଆମ୍ଭଙ୍କୁ ଦେଖିବାକୁ ତୁ କି ଶ୍ରଦ୍ଧା କଲୁ ।
ରାବଣ ବୋଇଲା ମୁଁ ଏ ଦିଗେ ଫେରି ଆସି
ଯୋଗେ ତୁମ୍ଭଙ୍କୁ ଭେଟ ପାଇଲି ବ୍ରହ୍ମଋଷି ।
ତେରୁ ସେ ମୋର ମନ ସନ୍ତୋଷ ହୋଇଲା
କଥାଏ ମାଗିବି ମୋତେ ପ୍ରସନ୍ନ ହେବେ ଭଲା ।
ଏ ଯେଉଁ ସାରୀପକ୍ଷୀ ପୋଷିଣ ଅଛ ତୁମ୍ଭେ
ଏ ପକ୍ଷୀଗୋଟିକୁ ମୁନି ମୋତେ ଦିଅ ଏବେ ।
ଆଗତ ନିଗତ ଏ ଜାଣଇଁ ପକ୍ଷୀବର
ଅଚେତା ହୋଇଥିଲେ ଚେତା କରେ ଖର ।
ମୁନିବର ବୋଇଲେ ଶୁଣ ହେ ଲଙ୍କେଶ୍ୱର
ଏ ପକ୍ଷୀଗୋଟି ବ୍ରହ୍ମଜ୍ଞାନ ସାଧେ ମୋର ।
ମୋର ଏ ପକ୍ଷୀବର ସାଥି ହୋଇଥିଲା
ନିଅ ଏବେ ତୋର ଯେବେ ଶରଧା ବଳିଲା ।
ପ୍ରସନ୍ନରେ ମାଧବ ଋଷି ପକ୍ଷୀ ଦେଲେ
ରାବଣ ତୋଷ ହେଲା ସେ ଋଷିଙ୍କଠାରେ ।
ଦଶମୁଖ ବୋଇଲା ମାଧବ ଋଷିଙ୍କି
ଏ ପକ୍ଷୀବର କେମନ୍ତେ ପ୍ରାପତ ତୁମ୍ଭଙ୍କୁଟି ।
ମାଧବ କହିଲେ ଶୁଣ ଲଙ୍କେଶ୍ୱର
ଯେଉଁ ଶିଶୁ ବୃକ୍ଷଟି ଅଛି ମୋ ଆଗର ।

ଏହି ବୃକ୍ଷରେ ସାରୀ ବସା କରିଥିଲା
ଶୁଆ ସଙ୍ଗେ ରମନ୍ତେ ବେନି ଛୁଆ ହେଲା ।
ସେ ବେନି ଛୁଆ ଚେତା ପାଆନ୍ତେ ଯେ ପୁଣ
ତପନ ସାରୀ ପୁତ୍ରେ ଦେଲାକ ମୋତେ ଜାଣ ।
ବୋଇଲା ବୀରବର ଅଟେ ଏ କୁମର
ଏ କୁମର ଉପକାର କରିବ ମୁନିବର ।
ଆଗତ ନିଗତ କହିଲେ ଚେତା ହେବ
ବ୍ରହ୍ମଜ୍ଞାନ ସାଧିଲେ ମୁକତି ହୋଇବ ।
ଏମନ୍ତ କହି ସାରୀ ଅନ୍ୟସ୍ଥାନେ ଗଲା
ବୀରବର ପକ୍ଷୀ ଗୋଟି ମୋ ପାଶେ ରହିଲା ।
ଏଡ଼େ ବଡ଼ ସାରୀ ପୋଷିଲି ମୁହିଁ ଏଥେ
ବ୍ରହ୍ମଜ୍ଞାନ ଶିଖାଇଲି ତରିବା ନିମନ୍ତେ ।
ଏବେ ତୋତେ ଯୋଗ ହୋଇଲା ସାରୀପୂଣ
ଯତ୍ନ କରି ପାଳ ନେଇ ବିଶ୍ରବା ନନ୍ଦନ ।
ସନ୍ତୋଷେ ରାବଣ ନିଜପୁରେ ଆସି
ଲଙ୍କାଗଡ଼େ ପ୍ରବେଶ ନଉକେଶା ଶିଷି ।
ଯତ୍ନେ ରଖି ରାବଣ ସୁବର୍ଣ୍ଣ ପଞ୍ଜୁରୀରେ
ଅଷ୍ଟରତ୍ନ ଖଞ୍ଜିଲା ଶାରୀର ଶିରରେ ।
ସୁବର୍ଣ୍ଣ ପଞ୍ଜୁରୀ ଭିତରେଣ ଥୋଇ
ଶତ୍ରୁ ଉପଗତ ହେଲେ ସେ ପକ୍ଷୀ କହଇ ।
ଆପଣା ମନ୍ଦିରେ ପକ୍ଷୀକି ରଖିଥିଲା
ଜାନକୀଙ୍କୁ ନେବାର ସେ ସ୍ଥାନେ ରଖିଲା ।
ତ୍ରିଜଟାକୁ କହଇ ସୁକ୍ଷେଣ ଜେମା ଦେଇ
ଶତ୍ରୁ ଆସିଲେ ଏ ପକ୍ଷୀ ଆଗତ କହଇ ।
ସାରୀଠାରୁ ଶୁଣି ତୁଗୋ ମୋ ଆଗେ କହିବୁ
ଏତେ ବୋଲି ସେ ସ୍ଥାନରେ ରଖିଲା ଲଙ୍କା ପ୍ରଭୁ ।
ରାବଣର ମୃତ୍ୟୁକଥା ତ୍ରିଜଟା ମୁଖୁଁ ଶୁଣି
ଶୁଣିଣ ବୀରବର କ୍ରୋଧ ହୋଇ ପୁଣି ।
ତ୍ରିଜଟାକୁ ଗାଳି ଦେଇ ହେଲା କ୍ରୋଧଭର
ଜାନକୀ କହିବାର ନ ଶୁଣେ ପକ୍ଷୀବର ।
ତେଣୁ ସେ ମାରୁତି ମନରେ କ୍ରୋଧ ହେଲା
ପଞ୍ଜୁରୀ ଭିତରେ ପଶି ଶାରୀକି ମାରିଲା ।
ଏମନ୍ତ ପ୍ରକାର ଯେ ଅଟେ ଶାରୀ କଥା
ଯାହାର ଆହାର ଖାଏ ତାକୁ ପାଏ ବ୍ୟଥା ।
ଶୁଣିଣ ପାର୍ବତୀ ମନରେ ହେଲେ ତୋଷ
ବୋଇଲେ କହ ଏ ଉତ୍ତରୁ ହେଲା କିସ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ତିମିର ନାଶ ହେଲା ଉଦୟ ଛାୟାପତି ।
ସକଳ ରାକ୍ଷାସୁଣୀ ଉଠିଲେ ତଡ଼ତି
ଯେ ଯାହାର ନିତ୍ୟାଚାର ଆଚାର ଚଳନ୍ତି ।

କେଉଁ ନାରୀ ସ୍ୱଭାବ ପ୍ରକୃତିରେ ଗଲେ
କେଉଁ ନାରୀ ସ୍ନାନ କରିବାକୁ ଚଳେ ।
କେଉଁ ନାରୀ ଜଳ ଆଣନ୍ତି ନଦୀରୁ
କେହୁ ଶୁଷ୍କକାଷ୍ଠ ଆଣନ୍ତି ବନରୁ ।
କେଉଁ ନାରୀ ରାନ୍ଧଣା ବିଷୟରେ ଗଲେ
କେଉଁ ନାରୀ ଅନ୍ନ ବ୍ୟଞ୍ଜନ ଆଣିଲେ ।
କେଉଁ ନାରୀ ମଦିରା ମାଂସ ଯାଏ ଆଣି
ଏମନ୍ତେ ଅସୁରୀମାନେ ଭିନ୍ନ ଭିନ୍ନ ପୁଣି ।
ଦେଖିଣ ତ୍ରିଜଟା ସୀତାଙ୍କୁ କହିଲା
ନଦୀକି ଯିବା ଚାଲ ବୋଲିଣ ବୋଇଲା ।
ଶୌଚବନ୍ତ ହୋଇବା ନଦୀକି ଯିବା ପୁଣି
ଶୁଣିଣ ଜାନକୀ ବାହାର ତତକ୍ଷଣି ।
ଦେଖିକରି ହନୁମନ୍ତ ହୋଇଲା ସନ୍ତୋଷ
ଏକାକେ ସୀତାଙ୍କୁ ଆଜି କହିବି ବିଶ୍ୱାସ ।
ଏତେ ଭାବି ବୀର ଆଗସରି ଗଲା
ନଦୀ କୂଳରେ ଯାଇ ପ୍ରବେଶ ହୋଇଲା ।
ଶିଶୁପା ବୃକ୍ଷମୂଳେ ଯାଇଣ ବସିଲା
ଜାନକୀ ଆସିବାକୁ ଏକ ଦୃଷ୍ଟି ଦେଲା ।
ମନ ଛନ ଛନ ଖର ଯେ ନିଃଶ୍ୱାସ
ବାଟ ଚାହିଁ ବସିଅଛି ପବନର ଶିଷ୍ୟ ।
ସହସ୍ରେ ଅସୁରୀ ଆଗ ଯେ ପଛେଣ
ମଧ୍ୟରେ ଜାନକୀ ବିଜେ କଲେ ପୁଣ ।
ନଦୀ କୂଳକୁ ଆସେ ଜନକ ଦୁହିତା
ପଛରେ ବିଭୀଷଣ ଦୁହିତା ତ୍ରିଜଟା ।
ତାରାଗଣ ମଧ୍ୟରେ ଚନ୍ଦ୍ର ଯେହ୍ନେ ଦିଶି
ବନଜୀବ ମଧ୍ୟରେ କେଶରୀ ବିକଶି ।
ତେସନ ପରାଏ ଯେ ଦିଶେ ରାମନାରୀ
ଧୀରେ ଧୀରେ ଆସିବାରୁ ଧରଣୀ ସୁଖ କରି ।
ମଧ୍ୟରେ ଚନ୍ଦ୍ରମୁଖୀ କରଇ ଗମନ
ଯେସନେ ରାଜହଂସ କରନ୍ତି ଗମନ ।
ନଦୀର କୂଳରେ ଦେବୀ ହେଲେ ପରବେଶ
ଦେଖିଲେ ସେଠାରେ ଅଛି ଶିଶୁପାର ବୃକ୍ଷ ।
ସେ ବୃକ୍ଷର ତଳେ ବିଜେ କଲେ ରାମନାରୀ
ଅସୁରୀମାନେ ଗଲେ ନିତ୍ୟକର୍ମ ସାରି ।
ଏମନ୍ତ ସମୟେ ହନୁ ମନରେ ବିଚାରି
ଏହି ତ ଜାନକୀ ଶ୍ରୀରାମ ମନୋହରୀ ।
ବଇଦୁର୍ଯ୍ୟ ମଣ୍ଡପରୁ ଅଇଲେ ଦେବୀପୁଣ
ଗଣ୍ଡକୀ ନଦୀତୀରେ ମିଳିଲେ ଦୁଃଖ ମନ ।
ବେଶ ବାସ ନାହିଁ ନାହିଁ ଯେ ଆହାର
ଅନିଦ୍ରା ଶୋକରେ ତନୁ କ୍ଷୀନ ଏହାଙ୍କର ।

ହେଠ ମାଥ ହୋଇଣ ଆସଇ ସୁନ୍ଦରୀ
କେବଳ ଅଗ୍ନିରୂପ ଧରିଛି ରାମନାରୀ ।
ଅମଳାନ ବସ୍ତ୍ର ଯେ ପିନ୍ଧିଅଛି ସତୀ
ନୟନୁ ଅଶ୍ରୁଜଳ ନିରତେ ବହୁଅଛି ।
ଶରୀର ନିର୍ବଳ ଅଳଙ୍କାର ନାହିଁ
ଅନୁବ୍ରତେ ମନ ଶ୍ରୀରାମରେ ତହିଁ ।
ଅଳକା ବିହୁନେ ମସ୍ତକ ଅସମ୍ଭାଳ
ବେଣୀ ପଡ଼ିଅଛି ପୁଣି ଥୋକାଏକ ବାଳ ।
ତାମ୍ବୁଳ ବିହୁନେ ଯେ ଶିଠୁଆ ଦିଶେ ଓଷ୍ଠ
ଚିକ୍କଣ ବିହୁନେ ଯେ ଶରୀର ନିକୃଷ୍ଟ ।
ଅଞ୍ଜନହୀନ ନୟନ ସିନ୍ଦୂର ସୁଖ ନାହିଁ
କର୍ଣ୍ଣ ନାସା ପୁଟ ଯେ ଅଲଗା ଦିଶଇ ।
ବାହାରେ ବିଦବାକୁ ନାହିଁ ଯେ ମୁଦିଟି
ଆହାର ସୁଷ୍ଟ ନାହିଁ ଶରୀର ଦୁର୍ବଳଟି ।
ପର୍ବତ ଉପରୁ ଯେହ୍ନେ ନଦୀ ଆସେ ବହି
ତେସନ ପ୍ରକାରେ ଦିଶେ ବଇଦେହୀ ।
ଦିଅଁ ନ ଥିଲେ ଦେଉଳ ଯେଉଁପରି ଦିଶି
ତେସନ ପ୍ରାୟେକ ଦିଶଇ ଶୁଭ୍ରକେଶୀ ।
ଶିଶୁପା ବୃକ୍ଷପରେ ଥାଇ ହନୁମାନ
ବିଚାର କରଇ ଏମନ୍ତେ ମନେ ମନ ।
ବିଚାରଇ ବିଧାତା ଏହାକୁ ଦଶା ଦେଲୁ
ଜଗତ ଜନନୀଙ୍କୁ ଏ କଷ୍ଟ ବିହିଲୁ ।
ଶବରଣୀ ହସ୍ତରେ ଥୋଇଲୁ ମାଣିକ୍ୟ
ଗଜମୋତି ଚିକ୍କଣରେ ବୁଳାଇଲୁ ତୁ ତ ।
ତମ୍ବା ଯେ ଧାତୁରେ ପୁରାଇଲୁ ଦୁଧ
ମାଣିକ୍ୟକୁ ପକାଇଲୁ ହୁତାଶନ ମଧ୍ୟ ।
ପଙ୍କରେ ପାଟସୂତା ପକାଇଲୁ ନେଇ
ଜାନକୀକି ଥୋଇଛୁ ଅସୁର ଘରେ ନେଇ ।
କେହ୍ନେ ତୁ ସର୍ବଜ୍ଞ ଅଟୁ ହୋ ବିଧାତା
କିଦୋଷ କଲେ ତୋର ଜନକ ଦୁହିତା ।
ଏସନକ ବିଚାର କରଇ ମାରୁତି
ସେହି ତରୁମୂଳେ ରହିଲେ ସୀତା ସତୀ ।
ଯେ ଯାହାରେ ଅସୁରୀମାନେ ଚଳିଗଲେ
ସ୍ନାହାନ ଶଉଚ ସେ ନଦୀ ଜଳେ ଗଲେ ।
ଶିଶୁପା ବୃକ୍ଷର ମୂଳେ ଦେବୀ ରହି
ମନରେ ଦୁଃଖ ଯେ ଭାଳଇ ବଇଦେହୀ ।
ପୁରୁଷ ହତ୍ୟା ନ କରିବି ବୋଲି ମୋର ମନ
ତେଣୁ ସିନା ଅଇଲି ମୁଁ ଏ ଲଙ୍କାଭୁବନ ।
ମନେ ଭାବିଥିଲି ଶ୍ରୀରାମ ନାରାୟଣ
ଦୈତ୍ୟକୁଳ ବିନାଶ କରିବେ ଆସି ପୁଣ ।

ଏକଥା ବିଚାରି ମୁଁ ପ୍ରମାଣ ଯେ ଦେଲି
ଚଉଦ ମାସ ଦି ଦିନେ ମର ତୁ ବୋଇଲି ।
ଏବେ ତେର ମାସ ହୋଇଲା ଆସିଣ
ଆଜକୁ ତିନିପକ୍ଷ ଅଛି ଯେ ପ୍ରମାଣ ।
ରାବଣ ଆସି ଆଜି କଣ୍ଟ ଦେଇଗଲା
ବେନିମାସେ ରାମ ଲକ୍ଷ୍ମଣ ଦେଖା ଭଲା ।
ଦେଖାଇ ନ ପାରିଲେ ମୁଁ ଘରଣୀ କରିବଇଁ
ତାହା ଶୁଣି ମୋହର ବୁଦ୍ଧି ନ ସ୍ଫୁରଇ ।
ଏତେଦିନ ଗଲା ମୁହିଁ ନ ପାଏ ବାରତା
ରାମ ନ ଆସିଲେ ମୁଁ କରିବି ପୁରୁଷ ହତ୍ୟା ।
ଲଙ୍କାକୁ ଭସ୍ମ କରି ମୁଁ ନିଜ ପୁର ଯିବି
ଶ୍ରୀରାମଙ୍କର ମୁଖ ଆଉ ନ ଚାହିଁବି ।
ବେଳକୁ ବେଳ ଅସୁର କହଇ ବିଡ଼ମ୍ବନ
ଅଗ୍ନିର ସ୍ୱରୂପ ମୋର ଦେଖୁଛି ନୟନ ।
ମାସକେ ଦୁଇଥର ଅଗ୍ନି ସ୍ନାନ ଦେଖେ
ତେବେ ଘରଣୀ କରିବାକୁ ଅଛି ତାର ଲକ୍ଷେ ।
ବିଚାରୁ ନାହିଁ ଦୈତ୍ୟ ମନରେ ତାହାର
ଅଗ୍ନିକି ଛୁଇଁଲେ ମୁଁ ହେବି ଭସ୍ମାସାର ।
ଏସନକ ବିଚାର ନ କରେ ଦଇତ
ବିଡ଼ମ୍ବନ ଗତିରେ ତାର ବଡ଼ ଚିତ୍ତ ।
ସେ ବୃକ୍ଷମୂଳେ ଜାନକୀ ବିଚାର କରନ୍ତି
ଅନ୍ତର୍ଗତେ ବିକଳ ହୁଅଇ ମହାସତୀ ।
ପୋଡୁ ମୋର ଜୀବନ ମରଣ ବଡ଼ ସୁଖ
କେଉଁ ଦୋଷେ ବିଧାତା ଦେଇଛୁ ମୋତେ ଦୁଃଖ ।
ଶ୍ରୀରାମଙ୍କଠାରୁ ଅନ୍ତର ହୋଇବାରୁ ପ୍ରାଣ
କାହା ମୁଖରେ ସ୍ୱାମୀ ସମ୍ବାଦ ନ ପାଏ ପୁଣ ।
କେଉଁଆଡ଼େ ଗଲେ କେଉଁଠାରେ ରହିଲେ
ମୋତେ ବା ତେଜ୍ୟା କରି ଅଯୋଧ୍ୟାକୁ ଗଲେ ।
ଅଥବା ସୈନ୍ୟବଳ କରୁଥିବେ ସଜ
ଅଥବା ଖୋଜୁଥିବେ ମୋତେ ଚାରିଦିଗ ।
ନୋହିଲେକି ମନରୁ ତେଜ୍ୟା କଲେ ମୋତେ
ମଧୁଶଯ୍ୟାଳୟେ ସତ୍ୟ ଲଘିଲେ ରଘୁନାଥେ ।
ମୁହିଁ ତ ପାପିନୀ ଦୁରାମତି ମୋର
ଦାସପଣେ ଖଟିଥାଇ ସଉମିତ୍ରୀ ବୀର ।
ନ ଜାଣିବା ପଣରେ ମୁଁ ଅନେକ ଶାସ୍ତି ଦେଲି
ସେଥିର ସକାଶେ ମୁଁ ଏ ଦଶା ଭୋଗିଲି ।
ସେ ଯୋଗେ ଲକ୍ଷ୍ମଣ କି ଶ୍ରୀରାମ ତେଜ୍ୟା କଲା
ଶ୍ରୀରାମକୁ ବନେ ଛାଡ଼ି ଅଯୋଧ୍ୟାକୁ ଗଲା !
ଭାଇ ଭାରିଯାକୁ ନ ଦେଖି ଚାପଧାରୀ
ଅବତାର ତେଜିଣ କି ବୈକୁଣ୍ଠେ ବିଜେ କରି ।

ଏମନ୍ତ ବିଚାରମାନ କରୁଛନ୍ତି ସତୀ
ବୃକ୍ଷପରେ ଥାଇ ସବୁ ଶୁଣୁଛି ମାରୁତି ।
ମୋତେ ଯେବେ ତେଜ୍ୟା କଲେ ଦାଶରଥି
ନର୍ଲ୍ଲଜ ଜୀବନ କିମ୍ପା ମୋ ଦେହେ ରହିଛି ।
ପୁଣି ମନେ ବିଚାରନ୍ତି ଜନକ ଦୁହିତା
ମୁନିମାନଙ୍କ କଥା ତ ହେଉଛି ଏବେ ମିଥ୍ୟା ।
ମୋହର ଜନ୍ମକାଳେ ଋଷିମାନେ ଆସି
ପିତାଙ୍କୁ କହନ୍ତି ମୋର ଶୁଣ ହେ ରାଜଋଷି ।
କମଳା ସଦୃଶେ ତୋର ଏ ଜ୍ୟେଷ୍ଠ ଦୁହିତା
କନିଷ୍ଠ ସୁତା ଅଟେ ପାର୍ବତୀ ଅଂଶେ ଜାତ ।
ବଇକୁଣ୍ଠ ବାସୀ ଅଟନ୍ତି ନାରାୟଣ
ଚାରି ରାବଣଙ୍କ ବଂଶ କରିବେ ନିଧନ ।
ଶିବଧନୁ ଭାଙ୍ଗିଣ ସୀତାକୁ ବିଭା ହେବେ
ଆଗେ ପର୍ଶୁରାମଙ୍କୁ ବାଟରେ ଜିଣିବେ ।
ଯାଉଁଳି ଅବତାର ଅଟନ୍ତି ପର୍ଶୁରାମ
ରାମଙ୍କୁ ଦେଖିଲେ ସେ ତପରେ ନିମଗ୍ନ ।
ସେ ମୁନି କହିବାରୁ ସନ୍ଧି କଥାମାନ
ସକଳ ଶୁଣିଣ ମୁଁ ଜାଣିଲି ମନେଣ ।
ରାବଣ ବଂଶ କେବଳ ନ ଦେଖେ ମାରିବାର
କେଉଁକାଳେ ଆସିଣ ମାରିବେ ରଘୁବୀର ।
ଦିନତ ଶେଷ ହେଲା ପ୍ରବଳ ଦେଖିଲି
ତିନିପକ୍ଷ ଦୁଇଦିନ ଅନ୍ତର ବିଚାରିଲି ।
ଏତେ କହି ତୁନି ହୋଇଲେ ଜାନକୀ
ରାମନାମ ଗୋଟି ମନରେ ଚିନ୍ତନ୍ତି ।
ରଘୁବଂଶର ରାମ ଅଟନ୍ତି ମୋର ପତି
ବୀରଶୂର ପଣତ ଜଣା ନ ଗଲା କିଛି ।
ଏସନକ ବିଚାରି ଊର୍ଦ୍ଧ୍ୱକୁ ଦୃଷ୍ଟି ଦେଲି
ତେଣୁ ସେ ହନୁମନ୍ତ ମନରେ ବିଚାରିଲି ।
ଏହି ନିଶ୍ଚେ ଜାନକୀ ଶ୍ରୀରାମଙ୍କ ବାମା
ଆନ କେହି ପଟାନ୍ତର ନାହିଁ ତ ଉପମା ।
ଏହିଟି ପରମ ଲକ୍ଷ୍ମୀ ଜନକ ଦୁହିତା
ଶ୍ରୀରାମଙ୍କ ବିଚ୍ଛେଦରେ ଏ କରୁଛନ୍ତି ଚିନ୍ତା ।
ବଡ଼ ଦୁଃଖରେ ଦିନ ବଞ୍ଚେ କମଳିନୀ
ବିଧାତା ଥୋଇଲା ଅସୁର ଘରେ ଆଣି ।
ଶ୍ରୀରାମ ମୋହରେ କହିଲେ ଯେତେ କଥା
ତହୁଁ ଶତେଗୁଣେ ସ୍ୱାମୀ ଅଟନ୍ତି ସମର୍ଥା ।
ଧନ୍ୟରେ ଜାନକୀ ଶରୀର ଧନ୍ୟ ତୋର ନେତ୍ର
ଧନ୍ୟ ତୁମ୍ଭ ନାୟିକା ଧନ୍ୟ ତୁମ୍ଭ ଗାତ୍ର ।
ଧନ୍ୟ ତୋର ଶ୍ରବଣ ଧନ୍ୟ ତୋ ଦନ୍ତପନ୍ତି
ଧନ୍ୟ ତୋର ଯଉବନ ଧନ୍ୟ ନଖ ପନ୍ତି ।
ଧନ୍ୟ ତୋର ମଝାଗୋ ଡମ୍ବରୁ ପ୍ରାୟ କଟି
ଧନ୍ୟ ତୋ ଚରଣ ଧନ୍ୟ ତୋ ଅଙ୍ଗୁଷ୍ଠି ।
ଧନ୍ୟ ତୁମ୍ଭ ପିଅର ଜନକ ରାଜ ଋଷି
ଧନ୍ୟ ସେ ମିଥିଲା ସେ ସ୍ଥାନେ ପ୍ରବେଶି ।
ଧନ୍ୟ ଯେଉଁ ଜନନୀ ପାଳିଲା କୋଳରେ
ଧନ୍ୟ ତୁମ୍ଭେ ବଢ଼ିଲ ଯେବଣ ପୁରରେ ।
ଧନ୍ୟ ଅଟେ ଶ୍ରୀରାମ ଧନ୍ୟ ଦଶରଥ
ଧନ୍ୟ ତୁମ୍ଭେ କଉଶଲ୍ୟା ରାମଙ୍କର ମାତ ।
ଧନ୍ୟ ହେ ଅଯୋଧ୍ୟାରେ ଯେତେ ନରନାରୀ
ଶ୍ରୀରାମ ଜାନକୀ ଦେଖିଲେ ନେତ୍ର ଢାଳି ।
ଧନ୍ୟ ହେ ବିଧାତା ଶ୍ରୀରାମଙ୍କୁ ଜାତ କଲୁ
ସିନ୍ଧୁର ଦୁହିତାଙ୍କୁ ରାମଙ୍କୁ ସମର୍ପିଲୁ ।
ଧନ୍ୟ ହେ ସୁଗ୍ରୀବର ଧନ୍ୟ ହେ କିଷ୍କିନ୍ଧା
ଧନ୍ୟ କିଷ୍କିନ୍ଧା ନରନାରୀ ଦେଖିଲେ ହେବ ସିଦ୍ଧ ।
ଧନ୍ୟ ମୋର ଜୀବନ ଧନ୍ୟ ମୋର ପୁଣ୍ୟ
ଧନ୍ୟ ମୋର ପିତା କେଶରୀ ଅଟେ ପୁଣ ।
ଧନ୍ୟ ତ୍ରିଲୋଚନ ଯୋଗରେ ବୀର୍ଯ୍ୟ ଟଳି
ଧନ୍ୟ ହେ ପବନ ପିତା ମାତା ଗର୍ଭଧାରୀ ।
ଧନ୍ୟ ଗୋ ଜନନୀ ନାମ ପ୍ରବଞ୍ଜନୀ
ଗର୍ଭରେ ଧଇଲୁ ବାରବର୍ଷ ମୋତେ ପୁଣି ।
ଧନ୍ୟ ବିଧାତା ମୋର କପାଳେ ଲେଖିଥିଲୁ
ଧନ୍ୟରେ କର୍ମ ମୋହର ଶ୍ରୀରାମ ଭେଟ ହେଲୁ ।
ଭେଟ ହେବା ଯୋଗରୁ ଜାନକୀ ଦେଖିଲି
ଧନ୍ୟରେ ମୃତ ପୁର ଶ୍ରୀରାମ ମୋର ସ୍ୱାମୀ ।
ଦେଖିଲେ ପାପାଯାଏ ଧର୍ମରେ ସୁଖ ପୁଣି
କାହିଁ ତପ କଲୁ ଧନ୍ୟରେ ଲଙ୍କମଣି ।
ବୈକୁଣ୍ଠକୁ ଯିବାକୁ ଜାନକୀ ଆଣିଲୁ
ପୂର୍ବରୁ ଏ କଥାମାନ ଜାଣିଥିଲୁ ।
ସୁଖରେ ବିଳସିବୁ ଅକ୍ଷୟ ସ୍ୱର୍ଗବାସ
ରଘୁନାଥ ବାଣରେ ହୋଇବୁ ତୁ ନାଶ ।
ଏମନ୍ତ ବିଚାରି ହନୁ ମନରେ ଭାଳେ ପୁଣି
କି ରୂପେ ଜାନକୀ ସଙ୍ଗେ କଥା ହେବି ଜାଣି ।
ରାକ୍ଷସୁଣୀମାନେ ଯେ ଆସିବେ ଏହିକ୍ଷଣି
ସେ ଆସିଲେ କଥା ନୋହିବ ମୋର ପୁଣି ।
ଏମନ୍ତ ବିଚାର ମନରେ ହନୁ କଲା
ଶ୍ରୀରାମ ନାମକୁ ସୁମରଣା କଲା ।
ଜାନକୀକି ପାଇ ହନୁ ପାଇଲେ କାରଣ
ବଳରାମ ଦାସ ସେବେ ସୀତାଙ୍କ ଚରଣ ।
ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀ ପୁଣ
ଈଶ୍ୱରଙ୍କୁ ଚାହିଁ କହନ୍ତି ବଚନ

ସେଠାରୁ କିସ ହେଲା କହ ହେ ପିନାକୀ
ବୃକ୍ଷପରେ ହନୁମନ୍ତ ତଳରେ ଜାନକୀ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଶିଶୁପା ବୃକ୍ଷପରେ ଅଛଇ ମାରୁତି ।
ଜାନକୀ ଅଗ୍ନି ରୂପ ଧରି ଅଛି ତଳ
ଅଗ୍ନିର ପ୍ରତାପ ଯେ ଅଟଇ ପ୍ରବଳ ।
ଏହି ସମୟରେ ହନୁମନ୍ତ ବିଚାରଇ
ଏକା ଛନ୍ତି ଜାନକୀ କହିବି ବୁଝାଇ ।
ସନ୍ଦେଶ ପାଇଲେ ମୁଁ ବେଗେ ଏଥୁଁ ଯିବି
ଦେଖିଣ ବିଳମ୍ବ କଲେ ସ୍ୱାମୀରେ ଦ୍ରୋହୀ ହେବି ।
ଏମନ୍ତ ବିଚାରି ସେ ଭ୍ରମର ମୂରତି
ଅତି ହିଁ ସାମାନ୍ୟ ହୋଇଲା ମାରୁତି ।
ଡାଳେ ବସି ମାରୁତି ପତ୍ରରେ ଲୁଚା ଦେଲା
ମନରେ କଥା ହେବି ସ୍ମରଣା କଲା ।
ବୋଇଲା ପୂର୍ବରେ ତ ଦେଖିଲା ମୋର ନାହିଁ
ଶାପ ଦେବାକୁ ପୁଣି ଚିତ୍ତରେ ଡରଇ ।
ମାୟା ପ୍ରାୟ ମୋର କଥାକୁ ମଣିବ ସ୍ୱତୀ
ଦୈତ୍ୟଙ୍କର କଥାରେ ହୋଇଛି ବିରକ୍ତି ।
ଏତେ ଭାଳି ମନରେ ଲାଗିଲା ତାକୁ ବ୍ୟଥା
ଯାହା କଲେ କରୁ ଯାହା ତାର ଇଚ୍ଛା ।
ମୋର ନ କହିଲେ ଯେ ନ ଜାଣିବ ସ୍ୱତୀ
କେମନ୍ତ ପ୍ରତେ ଯିବ ଜନକ ଦୁହିତୀ ।
ଆଡ଼ ବାଡ଼କୁ କହିଲା ପରାଏ କହିବି
ସମସ୍ୟା ପାଇଲେ ମୁଁ ଗଛରୁ ଓହ୍ଲାଇବି ।
ଏତେ ବିଚାରି ହନୁ ଚାରିଦିଗକୁ ଚାହିଁ
ବୃକ୍ଷର ଉପରେ ନିର୍ଭୟେ ବସେ ସେହି ।
ଶିଶୁପା କଢ଼ି ଗୁଡ଼ିଏ ତୋଳିଲା ମାରୁତି
ଝର ଝର କରିଣ ପକାଏ ତଡ଼ତି ।
ପୁଣି ପତ୍ର ଗୁଡ଼ିଏ ତୋଳିଲା ବହନ
ଫିଙ୍ଗି ଦ୍ୟନ୍ତେ ନଦୀରେ ପଡ଼ିଲା ଯାଇଣ ।
ଦୁଇ ତିନି ପତର ଜାନକୀ ପରେ ପଡ଼ି
ଦେଖିଣ ସୀତୟା ମନରେ ବିଚାରି ।
ଆଶ୍ଚର୍ଯ୍ୟ କଥା ଏ ଯେ ଅତି ବିପରୀତ
କପଟେ ଆସିଅଛି କି ବିଶ୍ରବାର ସୁତ ।
ଏ କଥାମାନ ମୋତେ ଲାଗୁଛି ସନ୍ଦେହ ତ
ବାହୁଡ଼ି ନଇଲା କି ଇନ୍ଦ୍ରଜିତ ତାତ ।
ଅନେକ ମତେ ମୋତେ ବଚନ ପଚାରଇ
ବୃକ୍ଷ ଉପରେ ବସି ପତର ପକାଇ ।
ଏ ମୋହର ବଚନ ପାଇବା ନିମିତ୍ତ
ମାୟା ରୂପରେ ବସି ଅଛଇଁ ଦଇତ ।

ନିକାଞ୍ଚନ ଦେଖି ଏ ଯେ ବୃକ୍ଷପରେ ବସି
ତେଣୁ ବା ମାୟାରେ ଆସେ ବିଶ୍ରବାର ବଂଶି ।
ଏକା ମୋତେ ଦେଖିଣ ମାୟା କି କରଇ
ମୋ ବଚନ ଶୁଣିବାକୁ ବୃକ୍ଷରେ ଅଛି ରହି ।
ବିଚାରଇ ବଦନ ଯେ ଦେଖିବ ମୋହର
ତେଣୁ କରି ପତ୍ର ଯେ ପକାଏ ଉପର ।
ତା'ଠାରେ ବଡ଼ କୋପ ମନରେ ମୋହର
ବିଡ଼ମ୍ବନ ଯେଣୁ କହେ ସେ ଦୈତ୍ୟବୀର ।
ପୁରୁଷ ହତ୍ୟା ଦୋଷ ମୋତେ ଲାଗବାର ପାଇଁ
ତେଣୁ ମୁଁ ତାହାକୁ ଯେ ଭସ୍ମ ନ କରଇ ।
ତେଣୁ ମୁଁ ତାର କଥା ହୃଦରେ ଅଛି ସହି
ନିୟମ କଥାକୁ ତାର ପ୍ରତିପାଳେ ମୁହିଁ ।
ପ୍ରମାଣ କଥା ମୋର ସମ୍ପୂର୍ଣ୍ଣ ହୋଇଲେ
ତିନିପକ୍ଷ ଦୁଇଦିନ ଏଠାରୁ ପୁଣ ଗଲେ ।
ତେବେ ତାକୁ ମୁଁ ଯେ କରିବି ଭସ୍ମରାଶି
କେତେ ପ୍ରବଳ ହୁଅଇ ବିଶ୍ରବାର ବଂଶି ।
ଏହି ସେ ଦାନବ ଅଟେ ଲଙ୍କରାୟ
ଉପାୟରେ ମୋତେ ଦେଖାଏ ନାନାଭୟ ।
ଏମନ୍ତ ବିଚାର ଯେ କରେ ଶଶିମୁଖୀ
ନ ପୁଣ ରାତ୍ର ସ୍ୱପନେ ଆସି ଭେଟଇ କି ।
ଆଜ ରଜନୀରେ ମୁଁ ଦେଖିଲି ସ୍ୱପନ
ଏ ଲଙ୍କାକୁ ଅଇଲେ ଶ୍ରୀରାମ ଦୂତଗଣ ।
ମୋର ସଙ୍ଗେ କଥା ହୋଇ ସଙ୍କେତ ଘେନିଗଲା
ଶ୍ରୀରାମଙ୍କୁ କହିବ ବୋଲି ମୋ ଆଗେ କହିଗଲା ।
କେଉଁ ମହାତ୍ମା ବସିଛ ବୃକ୍ଷପର
ମୋହର ମୁଣ୍ଡପରେ ପକାଅ ପତର ।
ବୋଇଲେ ମୋର ଆଗେ କହ ତୁହି ଗୀର
ତୋ ସ୍ୱରୂପ ଦେଖିବା ଆସ ମୋ ଆଗର ।
ନୋହିଲେ ଶାପଦେବି ହେବୁ ଭସ୍ମ ରାଶି
ଏମନ୍ତ ବଚନ କହିଲେ ଶୁଭ୍ରକେଶୀ ।
ଶୁଣି କରି ମାରୁତି ମନରେ ବିଚାରିଲା
ନ ପୁଣ ଶାପ ମୋତେ ଦିଅଇ କମଳା ।
ଏମନ୍ତ କହି ହନୁବାଣୀ ଯେ ଫୁକାରି
କ୍ରୋଧନୁହ ଜନନୀ ଶ୍ରୀରାମ ଉପକାରୀ ।
ତୁମ୍ଭଙ୍କୁ ଖୋଜିବାକୁ ମୁଁ ଅଇଲି ଲଙ୍କାପୁର
ଦୂତପଣେ ମୋତେ ପେଶିଲେ ରଘୁବୀର ।
ତାହାଙ୍କର ହୁକୁମରେ ସିନ୍ଧୁ ଡେଇଁ ଆସି
ଲଙ୍କାଗଡ଼ ସବୁ ପୁର ଖୋଜିଲି ବିଶେଷି ।
ନ ପାଇବାରୁ ଅଶୋକ ବନକୁ ଅଇଲି
ଅଶୋକବନେ ଆସି ତୁମ୍ଭଙ୍କୁ ଦେଖିଲି ।

ଅସୁରୁଣୀ ଥିବାରୁ ମୁଁ ନ କହିଲି କିଛି
ତୁମ୍ଭେ ମହାସତୀ ନଦୀକି ଅଇଲଟି ।
ତେଣୁ ଏହି ବୃକ୍ଷ ଉପରେ ବସିଅଛି
ଏକାନ୍ତ ଦେଖି ତୁମ୍ଭଙ୍କୁ ମନରେ ଭାଳୁଛି ।
ମୁଁ ଭାବିଲି ସେ କଥା କହିବି ଜନନୀକି
ସଙ୍କେତ ପାଇବାକୁ ପତର ପକାଇଛି ।
ଶୁଣିକରି ଜାନକୀ ହରଷ ହୋଇଲେ
ମୋହର ଛାମୁକୁ ଆସ ବୋଲିଣ ବୋଇଲେ ।
ସତୀଙ୍କର ବଚନରେ ନିର୍ଭୟ ହୋଇଲା
ବୃକ୍ଷପରୁ କପି ମଣି ଓହ୍ଲାଇ ଅଇଲା ।
ଜାନକୀ ଚରଣ ତଳେ କଲା ନମସ୍କାର
ଚରଣ ରେଣୁ ନେଇ ଲଗାଇଲା ଶିର ।
ଜାନକୀ ବୋଇଲେ ଏ କେବଣ ଚରିତ
କେଉଁଠାରୁ ଅଇଲୁ ହନୁ କହ ମୋ ଅଗ୍ରତ ।
କି ଅବା ରାବଣ ତୁ ଯେ ମାୟାରୂପ ହୋଇ
କପଟେ ଆସିଛୁ ଅବା ବଚନ କୁହାଇ ।
ଶୁଣି କରି ହନୁମନ୍ତ ଯୋଡ଼ି ବେନି କର
ନୁହଇ ଲଙ୍କେଶ୍ୱର ମୁଁ ଅଟଇ ବାନର ।
ଖଡ଼ଗ ନରପତି କୁମାରୀର ସୁତ
ପ୍ରଭଞ୍ଜନୀ ନାମ ତାର ତା'ଠାରୁ ସମ୍ଭୂତ ।
ତିନିଗୋଟି ବାପ ମୋର ଏକଇ ଜନନୀ
ହେତୁ କରି ଶୁଣ ମୋହର କାହାଣୀ ।
ଈଶ୍ୱରଙ୍କ ବୀର୍ଯ୍ୟକୁ ପବନ ଆଣି ତ
ଜନନୀ ସଙ୍ଗେ ଯାଇ ପବନ ଗତାଗତ ।
ତାଙ୍କ ବୀର୍ଯ୍ୟରୁ ମୁଁ ଯେ ହୋଇଛି ସମ୍ଭୂତ
ତେଣୁ ପବନ ସୁତ ମୋତେ ବୋଲନ୍ତି ତ ।
ଈଶ୍ୱର ବୀର୍ଯ୍ୟରୁ ମାରୁତି ମୋର ନାମ
ଜାଣିଣ ଈଶ୍ୱର ଯେ କହିଲେ ଅନୁପମ ।
କେଶରୀ କପି ମୋର ଜନନୀ ଗୁରସ୍ତ
ତେଣୁ ମୋର ନାମ ହୋଇଲା ହନୁମନ୍ତ ।
ବାଳି ସୁଗ୍ରୀବର ଅଟନ୍ତି ମୋ ମଉଳା
କେଶରୀ କପିର ଯେଣୁ ଅଟନ୍ତି ସେ ଶଳା ।
ମଉଳା ବାଳିର ସୁଗ୍ରୀବର ସାନଭାଇ
ସୁଗ୍ରୀବର ଭାରିଜାକୁ ହରିଲା ବଡ଼ଭାଇ ।
ସେ ଯୋଗରୁ ବାଳିକି ମାଇଲା ରାମରାଣ
ସୁଗ୍ରୀବକୁ ରାଜ୍ୟ ଦେଲେ କରିଣ କାରଣ ।
ବାଳିର ଘରଣୀକୁ ସୁଗ୍ରୀ ତଳେ ରଖି
ସୁଗ୍ରୀବର ଆଗେ କହିଲେ ଶ୍ରୀରାମଟି ।
ଶ୍ରୀରାମଠାରୁ ଶୁଣି ସୁଗ୍ରୀବ ସୈନବଳ ଆଣି
ବାନର ଭାଲୁ ମେଦିନୀ ହୋଇଲେ ଛାଏଣି ।

ସେଠାରୁ ସୁଗ୍ରୀବର ଚାରିଦିଗକୁ ଦୂତପେଶି
ଆମ୍ଭେ ଆଠଜଣ ମାଗୋ ଦକ୍ଷିଣକୁ ଆସି ।
ଖୋଜି ନ ପାଇବାରୁ ବିନ୍ଧ୍ୟଗିରି ଗଲୁଁ
ଲଙ୍କାଗଡ଼େ ଅଛି ବୋଲି ବାରତା ପାଇଲୁ ।
ସମୁଦ୍ର ଡେଇଁଣ ଅଇଲି ମୁଁ ଜାଣ
କୂଳରେ ଅଛନ୍ତି ଯେ ଆହୁରି ସାତଜଣ ।
ମୁହିଁ ଆସି ମାଗୋ ତୁମ୍ଭଙ୍କୁ ଭେଟ ପାଇ
ଜାଣିଲି ମୋର କର୍ମ ସଳଖ ଅଟଇ ।
ଧନ୍ୟ ମୋର ମାତା ଧନ୍ୟ ମୋର ପିତା
ଏ ପାପ ନେତ୍ର ଦେଖିଲା ଜନକ ଦୁହିତା ।
ଶୁଣି କରି ଜାନକୀ ପରମ ତୋଷ ହେଲେ
କେଉଁଠାରେ ଶ୍ରୀରାମ ବୋଲି ପଚାରିଲେ ।
ହନୁମନ୍ତ ବୋଇଲେ ଶୁଣ ଗୋ ଜନନୀ
କେତେ ରାମଙ୍କୁ ତୁମ୍ଭେ ଜାଣିଅଛ ପୁଣି ।
ସେ କଥାମାନ ତୁମ୍ଭେ କର ଗୋ ପ୍ରକାଶ
ସେକଥା ଶୁଣି ମୋ ମନ ହୋଇବ ସନ୍ତୋଷ ।
ଜାନକୀ ବୋଇଲେ ମୁଁ ଜାଣଇ ଯେତେ ରାମ
ଶୁଣ ହେ ମାରୁତି ରଖି ପାରିବକି ମନ ।
ସାତପୁର ଯେ ନବଖଣ୍ଡ ମେଦିନୀର
ସକଳ ସୃଷ୍ଟିର ସେହି ମୂଳଧାର ।
ସପତ ସାଗର ଚଉଦ ବ୍ରହ୍ମାଣ୍ଡରେ
ସକଳ ଆତ୍ମାରେ ସେହି ବାସ କରେ ।
ସେଥି ଉତ୍ତାରୁ ପୁଣ ଯମଦଗ୍ନି ସୁତ
ସପତ ପୁର ସାଧିଲେ ସେହି ସେ ରାମଗୋତ୍ର ।
ସେ ରାମ ଉତ୍ତାରୁ ଅଯୋଧ୍ୟା ନାମେ ପୁର
ସୂର୍ଯ୍ୟବଂଶେ ଅବତାର ଶ୍ରୀରାମ ନାମେ ବୀର ।
ଦଶରଥ ନନ୍ଦନ ଅଟନ୍ତି ସେ ପୁଣ
ଶିବଧନୁ ଭାଙ୍ଗି ସୀତାଙ୍କୁ ବିଭାଜନ ।
ପର୍ଶୁରାମଙ୍କୁ ଜିଣି କ୍ଷତ୍ରି ବୀବବର
ରାମଙ୍କୁ ଦଶରଥ ରାଜ୍ୟ ଦେବାକୁ ବାହାର ।
ରାମଙ୍କୁ ପିତା ରାଜା କରି ନ ପାରିଲେ
ଘରଣୀର ମାୟାରେ ରାଜା ମୋହ ଗଲେ ।
ସେଠାରୁ ପିତାଙ୍କୁ ହୋଇଲେ ଅଦୃଶ୍ୟ ତ
କୌଶଲ୍ୟାଙ୍କ କୁମର ବୋଇଲା ଶ୍ରୀରାମତ ।
ଭାଇ ଭାରିଯା ଘେନି ସେଠାରୁ ରାମ ଗଲେ
ଅରଣ୍ୟରେ ବନବାସ କରିଣ ରହିଲେ ।
ଜଟା ବାନ୍ଧିବାରୁ ଯେ ତପସ୍ୱୀ ରାମ ହୋଇ
ତପସ୍ୱୀ ରାମ ଭାର୍ଯ୍ୟାକୁ ରାବଣ ଚୋରାଇ ।
ସେ ତପସ୍ୱୀ ଶ୍ରୀରାମ ଘରଣୀ ଅଟେ ମୁହିଁ
କେଉଁ ରାମଙ୍କୁ ଜାଣୁ କହ ହେ ହନୁ ତୁହି ।

ଶୁଣୀଣ ମାରୁତି ଓଳଗି ହୋଇଲା
ତପସ୍ୱୀ ରାମଦୂତ ମୁଁ ବୋଲିଣ କହିଲା ।
ଯେଉଁ ରାମ ଘରଣୀକୁ ରାବଣ କଲା ଚୋରି
ସେହି ରାମର ଦାସ ମୁଁ ମୋ ପିତା କେଶରୀ ।
ଯେଉଁ ରାମ ଶିବଙ୍କର ଭାଙ୍ଗିଲେ କୋଦଣ୍ଡ
ସେହି ରାମଦୂତ ମୁଁ ଅଟଇ ପରଚଣ୍ଡ ।
ଯେଉଁ ରାମ ଦଶରଥ ନନ୍ଦନ ବୋଲାଇ
ସେହି ରାମଙ୍କର ପାଦରେ ମୁଁ ଖଟଇ ।
ଯେଉଁ ରାମଙ୍କୁ କୈକେୟୀ ବନକୁ ପେଷିଦେଲେ
ସେହି ରାମ ଏବେ ମୋତେ ପ୍ରସନ୍ନ ହୋଇଲେ ।
ଯେଉଁ ରାମ ବାଳିକୁ ହତ କଲେ ପୁଣି
ସେ ରାମ ଖୋଜିବାକୁ ମୋତେ ପେଷିଲେ ଜାଣି ।
ଯେଉଁ ଶ୍ରୀରାମ ଅଟନ୍ତି ରାବଣର ବୈରୀ
ସେହି ଶ୍ରୀରାମଦୂତ ମୁଁ ଆସିଲି ସିନ୍ଧୁ ପାରି ।
ଶୁଣି କରି ଜାନକୀ ହରଷ ମନ ହେଲେ
ଏ ହନୁର ଜ୍ଞାନ ଅଛି ବୋଲି ବିଚାରିଲେ ।
ହନୁ ବୋଇଲା ଅପ୍ରାଧ କ୍ଷମା କର ମାଏ
ଅସୁର ଭେଳିକି କି ଲାଗିଛି ତୁମ୍ଭ ଦେହେ ।
ଜାନକୀ ବୋଇଲେ ଶ୍ରୀରାମ ଉପର ବଂଶକଥା
ଜାଣିଛୁ କି ମାରୁତି ସେଥିରେ ସେ ପୋଥା ।
ଶୁଣି କରି ମାରୁତି ପରମ ତୋଷ ହେଲା
ମୋଠାରୁ ଶୁଣ ବୋଲି ବୋଲିଣ ବୋଇଲା ।
ଅଯୋଧ୍ୟା ନଗରେ ଦଶରଥ ରାୟେ
ଅଜବାର ନୃପତିର ଅଟନ୍ତି ତନୟେ ।
ଅପୁତ୍ରିକ ହୋଇଣ ଦଶରଥ ରାଜ
ନବସପ୍ତ ବର୍ଷଯାଏଁ ନୋହିଲା ତନୁଜ ।
ତେତେକାଳ ଯାଏଁ ରାଜାର ନୋହିଲା ସନ୍ତତି
ଶାନ୍ତି ନାମରେ ହୋଇଲା ଏକଇ ଦୁହିତୀ ।
ବିଭାଣ୍ଡକ ନନ୍ଦନ ଅଟନ୍ତି ଋଷ୍ୟଶୃଙ୍ଗ
ତାହାଙ୍କୁ ବିଭା କଲେ ସେ ମୁନିଙ୍କି ଶୀଘ୍ର ।
ଅପୁତ୍ରିକ ଦେଖିଣ ସେ ଋଷି ଦୟା କଲେ
ଯାଗ କରିବାରୁ ଚାରିପୁତ୍ର ଯେ ହୋଇଲେ ।
ଶ୍ରୀରାମ ଲକ୍ଷ୍ମଣ ଭରତ ଶତୃଘନ
ତିନିମାତାଠାରୁ ଚାରିପୁତ୍ର ହେଲେ ଜନ୍ମ ।
କର୍ମବଳେ ରାଜା ଚାରିପୁତ୍ରଙ୍କୁ ପାଇଲେ
ଜ୍ୟେଷ୍ଠ ଶ୍ରୀରାମ ଯେ ଜଗତେ ବିଖ୍ୟାତ ହେଲେ ।
ତେଣୁ ଦଶରଥ ତାଙ୍କୁ ରାଜ୍ୟ ଦେବା କଲେ
ଭରତ ଜନନୀ କୈକେୟୀ ନିରୋଧିଲେ ।
ରାଜାଙ୍କୁ ମଣାଇ କହିଲେ ରଜନୀରେ
ଚଉଦ ବର୍ଷ ରାମ ଯିବ ବନ ଘୋରେ ।
ଦଶରଥ ବୋଇଲେ କିମ୍ପାଇଁ ବନ ଯିବ
କୈକେୟୀ ବୋଇଲେ ଗଲେ ଦେବକାର୍ଯ୍ୟ ହେବ ।
ଦଶରଥ ବୋଇଲେ କେମନ୍ତେ ଜଣାଗଲା
କୈକେୟୀ ବୋଇଲେ ଋଷି କହିଛନ୍ତି ଭଲା ।
ଯେତେବେଳେ ବାପଘରେ ଥିଲି ମୁଁ ଅବିବାହୀ
ଯାଗଶ୍ୟାଳରୁ ଋଷି ଗଲେ ମୋତେ କହି ।
ବୋଇଲେ ଦଶରଥ ରାଜାଙ୍କୁ ବିଭା ହେବୁ
ବୃଦ୍ଧକାଳେ ରାଜାର ଚାରିପୁତ୍ର ଦେଖିବୁ ।
ତୋହର ସପତଣୀ କୌଶଲ୍ୟା ନାମେ ନାରୀ
ଆଗେ ତାର ପୁତ୍ର ହେବ ଶ୍ରୀରାମ ତାରି ।
ସେ ପୁତ୍ର ଅଟନ୍ତି ଯେ ସ୍ୱୟଂ ପଦ୍ମନାଭ
ସେ ପୁତ୍ରକୁ ଯେବେ ରାଜା ସ୍ୱଦୟା କରିବ ।
ସେତେବେଳେ ବାଦ କରି ବନକୁ ପେଶିବୁ
ତେବେ ତୁ ପଶ୍ଚାନ୍ତରେ ଶ୍ରୁତି ଯେ ଶୁଣିବୁ ।
ଶୁଣିକରି ରାଜନ ଉତ୍ତର ନ ଦେଲେ
ତେଣୁ ରଘୁବୀର ବନକୁ ଅଇଲେ ।
ନ ଦେଖି ଦଶରଥ ବାରଦିନେ ମଲେ
ନ୍ୟୂନ ହୋଇଣ ଭରତ ଶ୍ରୀରାମେ କହିଲେ ।
କେବେ ହେଁ ଶ୍ରୀରାମ ନଗଲେ ପୁଣ ଫେରି
ଭରତ ରାଜା ହେଲେ ଅଯୋଧ୍ୟା ନାମେ ପୁରୀ ।
ଲୀଳାବତୀ ଜନନୀ ଯେ ରାଜ୍ୟ ସମ୍ଭାଳିଲା
ଏଣେ ଶ୍ରୀରାମଙ୍କୁ ବିପତ୍ତି ପଡ଼ିଲା ।
ପଞ୍ଚବଟୀ ବନରୁ ଘରଣୀ ଗଲା ଚୋରି
ଖୋଜିଣ ନ ପାଇଲେ ଉପବନ ଗିରି ।
ତେଣୁ ସେ ଋଷ୍ୟଶୃଙ୍ଗ ପର୍ବତେ ମିଳିଲେ
ପ୍ରଥମରେ ଭେଟ ହେଲି ମୁଁ ତାଙ୍କ ପାଶରେ ।
ଦ୍ୱିତୀୟେ ସୁଗ୍ରୀବର ଭେଟ ଯାଇ ହେଲା
ମଇତ୍ର ବେନିଜନ ସେଠାରେ ହେଲେ ଭଲା ।
ମଇତ୍ରଛଳେ ରାମ ବାଳିକି ହତ କଲେ
ରାଜା କରି ଦେବାରୁ ସେ ସୈନ୍ୟ ଅଣାଇଲେ ।
ଥାଟ ସୈନ୍ୟ ଘେନି ରାମ ମାଲ୍ୟବନ୍ତେ ରହି
ଚାରିଦିଗକୁ ଦୂତ ବରଗିଦେଲେ ସେହି ।
ଦକ୍ଷିଣକୁ ଆମ୍ଭେ ଅଇଲୁ ଆଠ ଜଣ
କହିଲେ ନ ସରଇ ଆମ୍ଭର କଷ୍ଟମାନ ।
ଆଶ୍ୱିନ ଶୁକଳ ପକ୍ଷ ଦଶମୀ ଦିନ ପୁଣି
ଚାରିଦିଗକୁ ଦୂତ ବରଗେ ରଘୁମଣି ।
ଛ'ମାସ ହେଲା ବଣ ଅରଣ୍ୟ ଖୋଜିଲୁଁ
ମାୟା ବିମ୍ବର ଭିତରରେ ଯାଇଣ ପଶିଲୁଁ ।
ଝରାବତୀ ନାମେ ସ୍ତିରୀଏ ଦେଖିଲୁଁ
ତାହାଠାରୁ ଶୁଣିଣ ନିଶ୍ଚିନ୍ତ ହୋଇଲୁ ।

ସେ କହିଲା ମୋହର ଭଉଣୀ ବେଦମତୀ
ସେହି ତ ଅଟନ୍ତି ଶ୍ରୀରାମ ଯୁବତୀ ।
ରାବଣକୁ ମାରିବାକୁ ଯାଇଛି ଲଙ୍କାପୁର
ସିନ୍ଧୁ ଡେଇଁ ତୁମ୍ଭେମାନେ ଯାଅ ସେହି ପୁର ।
ଏତେ କହି ଆମ୍ଭର ଭେଳିକି ଛଡ଼ାଇଲା
ମର୍ତ୍ତ୍ୟପୁରକୁ ବିମ୍ବର ବାଟ କହିଦେଲା ।
ତେଣୁ ଆମ୍ଭେ ସମୁଦ୍ର କୂଳରେ ପ୍ରବେଶ
ଚିନ୍ତାରେ ସମସ୍ତେ ଶଯ୍ୟା କଲୁ କୁଶ ।
ସେ ପର୍ବତ ଉପରୁ ଗରୁଡ଼ର ସୁତ
ସମ୍ବାଦ କହିଦେଲେ ସକଳ ବୃତ୍ତାନ୍ତ ।
ତେଣୁ ସିନ୍ଧୁ ଡେଇଁ ଅଇଲି ଲଙ୍କାପୁର
ଅପ୍ରତେ ନ କର ତୁମ୍ଭେ ଜନନୀ ମୋହର ।
ଜାନକୀ ବୋଇଲେ କେଉଁ ଲେଖା କଲୁ
ଜନନୀ ବୋଲି କରି କେମନ୍ତେ କହିଲୁ ।
ହନୁ ବୋଲେ ସୁଗ୍ରୀ ଅଟେ ମୋ ମଉଳା
ଶ୍ରୀରାମ ତାଙ୍କସଙ୍ଗେ ମଇତ୍ର ହେଲେ ଭଲା ।
ତେଣୁ ତୁମ୍ଭେ ଧର୍ମରେ ଜନନୀ ହେଲ ମୋର
ସେ କଥାରେ କିଛି ନାହିଁ ଭାବିବାର ।
ଯେତେ ଗୁଣ କହିଥିଲେ ଶ୍ରୀରାମ ଯେ ମୋତେ
ତୁମ୍ଭର ମୁଖ ଦେଖି ଗଲି ମୁଁ ପରତେ ।
ରାତ୍ରରେ ଗୁପତରେ ମଣ୍ଡପରେ ଥିଲି
ରାବଣ କହିବାର ସକଳ ଶୁଣିଲି ।
ସାରୀ କ୍ରୋଧ ହୋଇଲା ତ୍ରିଜଟାକୁ ଜାଣ
ସେ ପକ୍ଷୀକୁ ସେତେବେଳେ କହିଲ ତୁମ୍ଭେ ପୁଣ ।
ତୁମ୍ଭର କଥାକୁ ସେ ପକ୍ଷୀ ନ ଶୁଣିଲା
ତେଣୁ ସେ ପକ୍ଷୀଠାରେ ମୋର କ୍ରୋଧ ହେଲା ।
ଭ୍ରମର ରୂପ ଧରି ମୁଁ ପଞ୍ଜୁରୀରେ ପଶି
ବେକମୋଡ଼ି ସାରୀର ଜୀବନ ନେଲିଟି ।
ତେଣୁ କରି ତୁମ୍ଭଙ୍କୁ ପଚାରୁଅଛି ମୁହିଁ
ସତ କରି କହିବ ମାୟାକୁ ନ ବହି ।
ଜନକ ଋଷିର ତୁମ୍ଭେ ଅଟ କି କୁମାରୀ
ଶ୍ରୀରାମଙ୍କ ରାଣୀ ଯେ କହ ସତ୍ୟ କରି ।
ପୂର୍ବରେ ମୋର ତୁମ୍ଭଙ୍କୁ ଦେଖିଲା ତ ନାହିଁ
ପରତେ କଲି ତୁମ୍ଭର କଥା ଶୁଣି ମୁହିଁ ।
ଦେଶ ଘୋଷରୁ ଶୁଣିଲି ଅଶୋକ ବନେ ଅଛ
ବିଭୀଷଣ ଦୁହିତା କହିଅଛି ସ୍ୱଚ୍ଛ ।
ରାବଣ କହିଲା ବେଳୁ ମୋ ମନ ପ୍ରତେ ଗଲା
ମାୟାକଥା ମାନ ତୁମ୍ଭଠାରେ ନ ରହିଲା ।
ଶୁଣିଣ ଜାନକୀ ଆଖି କଲେ ଥନ ଥନ
ନୟନୁ ଅଶ୍ରୁଜଳ ବହଇ ଘନ ଘନ ।
ମନରେ ବିଚାରିଲେ ଜନକ ଦୁହିତା
ମାୟାର କଥାଇ ମୋତେ କହେ ଦଶମଥା ।
ଶୁଣିଲା କଥାମାନ କହଇ ଲେଉଟି
ଦଣ୍ଡେକ ମାତ୍ର ମୁହିଁ ତୁଉନି ହୁଏଟି ।
ଆଉ କିସ କହିବ ଯା ବଚନ ଶୁଣିବା
ଏମନ୍ତ ବିଚାରି ମନେ ଜନକ ଜେମା ।
ନୟନୁଁ ଅଶ୍ରୁଜଳ ବହେ ଖରତର
କ୍ରୋଧରେ ଜାନକୀ ଶରୀର ଜର୍ଜର ।
କରଯୋଡ଼ି କହେ ପୁଣ ପବନର ସୁତ
କିମ୍ପା ନ କହ ମାତା ମନ୍ଦନ ହେଲେ ତ ।
କିମ୍ପାଇଁ କାନ୍ଦୁଛ ଶରତଚନ୍ଦ୍ର ମୁଖୀ
ମୋତେ ମାୟାବୀ ବୋଲି ମନେ ଭାବୁଛ କି ।
ଅଶୋକବନ ଯେ ଅଟଇ ଗୋପ୍ୟସ୍ଥାନ
ସବୁକଥା ଶୁଣି କରି ହୋଇଲ ମଉନ ।
ନୁହ କି ରାମ ନାରୀ କୁହ ମୋ ଆଗର
ତୁମ୍ଭ ଶୋକ ଦେଖି ଆକୁଳ ଚିତ୍ତ ମୋର ।
ସତ କରି କହ ତୁମ୍ଭେ କାହାର ଯୁବତୀ
କିମ୍ପାଇଁ ଏତେ କଷ୍ଟ ଦେଲେ ବେଦପତି ।
ବିଶ୍ରବାର କୁମାର ତୁମ୍ଭଙ୍କୁ ଆଣିଲା
ତୁମ୍ଭଙ୍କୁ ଦଶାନନ ଦୟା କି ନ କଲା ।
କିଅବା ରାବଣକୁ ନୋହିଲା ଭବୃଷି
ତେଣୁ କରି କୋପାନଳ ବିଶ୍ରବାର ଶିଶି ।
ତୁମ୍ଭର ଶରୀର ଦିଶଇ ଅସୁନ୍ଦର
ଅସମ୍ଭାଳ କେଶବାସ ଶରୀର ତୁମ୍ଭର ।
ବଧୂ କର ଡମ୍ଭ କି ହରିଣୀ ନୟନୀ
ମହାଲକ୍ଷ୍ମୀ ପ୍ରାୟତ ଦିଶ ଠାକୁରାଣୀ ।
ସଦାଶିବଙ୍କର ବାମା ଯେ ଅଟଇ ଗଉରୀ
ତୁମ୍ଭ ସଙ୍ଗକୁ ସେ ନୋହିବେ ସମସରି ।
ଇନ୍ଦ୍ରଙ୍କ ସଚୀ ଯେ ନୋହିବେ ସମସରି
ଅପସରୀମାନେ ଦିଶିବେ ଦାସୀପରି ।
ଇନ୍ଦୁଙ୍କର ରୋହିଣୀ ଆଦିତ୍ୟଙ୍କର ଛାୟା
ଏମାନେ ସମ ନୁହନ୍ତି ତୁମ୍ଭଙ୍କୁ ରାମପ୍ରିୟା ।
ଆନ କି ଭାଜନ ଏ ଦୁଃଖ ସହିବାର
କିମ୍ପାଇଁ ବିମୁଖ ହେଉଛ ମନର ।
ତିନିପୁରେ ତୁମ୍ଭଙ୍କୁ କେ ନୁହେ ସମସରି
ତୁମ୍ଭ ରୂପ ଦେଖିଲେ ଗଞ୍ଜିଣ ହୋଇ ମରି ।
ଏତେ କହି ହନୁ ଯେ ହେଲା ପ୍ରଣମିତ
ନୁହ କି ଶ୍ରୀରାମ ନାରୀ ମୋ ଆଗେ କୁହତ ।
ଶୁଣିକରି ବଇଦେହୀ ହେଠ ମାଥ ହୋଇ
ଶୁଣ ତୁରେ ହନୁମନ୍ତ କହୁଅଛି ମୁହିଁ ।

ଜନକ ଋଷି ଝିଅ ମୋର ନାମ ସୀତା
ଦଶରଥଙ୍କ କୁଳବଧୂ ଶ୍ରୀରାମଙ୍କ ବନିତା ।
ପିତାଙ୍କ ବୋଲରେ ସ୍ୱାମୀ ବନବାସ କଲେ
ପଞ୍ଚବଟୀ ବନରେ ଶ୍ରୀରାମ ପ୍ରବେଶିଲେ ।
ମାୟା ମୃଗ ଦେଖି ରାମ ମାରିବାକୁ ଗଲେ
ମୋର ପାଶେ ଲକ୍ଷ୍ମଣଙ୍କୁ ଜଗାଇଣ ଭଲେ ।
ଭୟ ଶବଦ ଶୁଣି ଲକ୍ଷ୍ମଣ ବୀର ଗଲା
ଏକା ଦେଖି ରାବଣ ମୋତେ ଯେ ଆଣିଲା ।
ତପସ୍ୱୀ ରୂପ ଧରି ମୋର ପାଶେ ଗଲା
ଅନେକ ମାୟାକଥା ମୋତେ ଯେ କହିଲା ।
କହୁ କହୁ ଦେବୀ ଯେ କରନ୍ତି ରୋଦନ
ତେର ମାସ ହେଲାକ ଦେଖିନି ବଦନ ।
ଆପଣା ଦୋଷେ ଦୁଃଖ ସହିଣ ଏଥି ଅଛି
ବ୍ୟାଧର ହସ୍ତରେ ଯେହ୍ନେ ପଡ଼ିଥାଏ ମୃଗୀ ।
ଆର ରଜନୀରେ ଯେ ରାବଣ ଆସିଥିଲା
ଦୁଇମାସକୁ ମୋତେ କଷ୍ଟ ଦେଇଗଲା ।
ବୋଇଲା ଶ୍ରୀରାମନ୍ତୁ ଦେଖାଇବୁ ଆଣି
ନୋହିଲେ ତୁହି ମୋର ହୋଇବୁ ଘରଣୀ ।
ତ୍ରିଜଟା ନ ଥିଲେ ସେ ଯାଆନ୍ତା ମାରି କରି
ସେତକ ରକ୍ଷା କଲା ବିଭୀଷଣ କୁମାରୀ ।
ମଲା ପ୍ରାଣୀ ପ୍ରାୟ ଅଛି ମୁଁ ଦେହ ରଖି
ତୁ ମୋତେ ଜିଆଇଲୁ ଅମୃତ ଜଳ ସିଞ୍ଚି ।
କେଉଁ ଦେଶରୁ ତୁ ଅଇଲୁ କପିବର
ଅପୂର୍ବ ମୂରତି ତୋର ଦେଖିଲି ନେତ୍ରର ।
କର୍ଣ୍ଣରେ କୁଣ୍ଡଳ ତୋର ଶିରରେ ମୁକୁଟ
ପଞ୍ଚରତ୍ନ ମାଳା ତୋର ହୃଦରେ ଶୋଭିତ ।
ଏକଥା ଗୋଟି ଦେବ ମାନବେ ଅଗୋଚର
ତେଣୁ ମୁଁ ମଣଇଁ ତୁ ଯେ ମାୟାର ଶରୀର ।
ଅସୁରମାନେ ଯେ ଅନେକ ରୂପ ହୋନ୍ତି
ନାନା ବେଶ ଧରି ସେ ଛଦ୍ମରେ ଆସନ୍ତି ।
ଏବେ ରାବଣ ଯେ ମୋର ପାଶୁ ଗଲା
ବେନି ଚରଣ ବେନିହସ୍ତ ଦେଖାଇଲା ।
ତପସ୍ୱୀ ରୂପ ଗୋଟି ହୋଇଲା ସତ୍ୱର
ଖଣ୍ଡା ଲୋଟା ଘେନି ପ୍ରବେଶ ମୋ ଆଗର ।
ଦେଖି ମୁଁ ସେ ରୂପକୁ ହରଷ ହୋଇଲି
ଶ୍ରୀରାମ ଆସିଲେ ଭିକ୍ଷା ଦେବେ ମୁଁ କହିଲି ।
ମୋ ବଚନ ନ ଶୁଣିଣ ବୋଇଲା ରାକ୍ଷସ
ମୁହିଁ ତ ରାବଣେଶ୍ୱର ନେବି ମୋର ଦେଶ ।
ଏତେ କହି ମୋତେ ଦେଖାଇଲା ଦଶମୁଣ୍ଡ
କିରିଟୀ କୁଣ୍ଡଳ ବିରାଜେ ଝଟ ଝଟ ।

ବିଂଶ ଭୁଜ ଯେ ବେନି ଚରଣ ତାହାର
ଦେଖିଣ ଆଶ୍ଚର୍ଯ୍ୟ ମୁଁ ହେଲି ହନୁବୀର ।
ମନେ ବିଚାରିଲି ସ୍ୱାମୀ ବିଅର ମୋର ନାହିଁ
ନିଶ୍ଚୟ ପ୍ରମାଦ କରିବ ମୋତେ ଏହି ।
ତେଣୁ ମୁଁ ଅଗ୍ନିରୂପ ଶରୀରୁ କଲି ଜାତ
ଛୁଇଁ ନ ପାରିଲା ଦୈତ୍ୟ ଦେଖି ପ୍ରଜ୍ୱଳିତ ।
ଛୁଇଁ ନ ପାରି ମୋତେ ଉପାୟ ସେ କଲା
ମୋର ପୁରେ ନେବି ତୋତେ ବହୁତ କହିଲା ।
ମୁଁ ବୋଇଲି ତୋର ପୁରେ ଗଲେରେ ପ୍ରମାଦ
ତୋର ବଂଶ ମାରିବାକୁ ଶ୍ରୀରାମ ସମ୍ମତ ।
ଦେବତାଙ୍କ କଷ୍ଟ ଯେଣୁ ଦେଲୁ ତୁ ଅପାର
ମର୍ତ୍ତ୍ୟପୁରେ ତେଣୁ ଜାତ ହେଲେ ଚକ୍ରଧର ।
ଅସୁର ମାରି ପୃଥ୍ୱୀ ଉଶ୍ୱାସ କରିବେ
ତେବେ ଦେବତାଏ ସ୍ୱର୍ଗରେ ରହିବେ ।
ଅସୁର ବୋଇଲା ଶ୍ରୀରାମ ଯେବେ ଚକ୍ରଧର
ମୋତେ ମାରି ମୋର ବଂଶ ମାରନ୍ତୁ ସକଳ ।
ଭାଇବନ୍ଧୁ କୁଟୁମ୍ବ ସୈନ୍ୟବଳ ଯେତେ
ରାମହସ୍ତେ ମଲେ ସର୍ବେ ଯିବେ ସ୍ୱର୍ଗ ପଥେ ।
ନୋହିଲେ ଶ୍ରୀରାମ ଯେବେ ନୁହନ୍ତି ନାରାୟଣ
ତେବେ ମୁଁ ନେଇ ଭୋଗ କରିବି ଯେ ଜାଣ ।
ବୋଇଲି ଚଉଦ ବର୍ଷ ଦୁଇଦିନେ ଯିବୁ ନାଶ
ଏଥିରୁ ବଳିଲେ ମୁଁ ତୋର ହୋଇବି ମୁହାଁସ ।
ଶୁଣି କରି ନିୟମ କଲା ଦୈତ୍ୟରାଣ
ଜିଇବାର ଆଶା ମୋର ତେଜ୍ୟା କଲି ଜାଣ ।
ଏତେ ବୋଲି ବିଜେ କର୍ଣ୍ଣକଟାରୀ କାଢ଼ିଲା
ରଥରେ ନ ବସିଲେ ମାରିବି ବୋଇଲା ।
ତେଣୁ ବୈଶ୍ୟାନରଙ୍କୁ ପଚାରିଲି ମୁହିଁ
ରାବଣ ମୋତେ ଲଙ୍କାକୁ ନେବାକୁ ଆସିଛଇଁ ।
ବୈଶ୍ୟାନର ବୋଇଲେ ତୁ ଲଙ୍କାଗଡ଼ ଯାଅ
ଚାରି ରାବଣ ମରିବାର ଏ ଉପାୟ ।
ମୁଁ ବୋଇଲି ଗଲେ ତ ହୋଇବ ଦୂଷଣ
ଅସୁରପୁରେ କେମନ୍ତେ ରହିବି ଯାଇଣ ।
ଅଗ୍ନି ବୋଇଲେ ତୁମ୍ଭେ ଦୁଃଖ ନ ସହିଲେ
ଅସୁର ନ ମରିବେ ଶ୍ରୀରାମ ହସ୍ତରେ ।
ଅସୁର ମଲେ ଦେବେ ହୋଇବେ କାରଣ
ଲଙ୍କାକୁ ଗଲି ମୁଁ ଅଗ୍ନିଙ୍କୁ ପଚାରିଣ ।
ମୋହର ତେଜ ମୂର୍ତ୍ତି ରାବଣ ଯେ ଦେଖି
ତେଣୁ ସେ ଅଶୋକ ବନରେ ମୋତେ ରଖି ।
ଏ ବନେ ରହିବାକୁ ବିଚାର ମୁଁ କଲି
ଆହାର ଜଳ ମୁଁ କେବେ ହେଁ ନ କଲି ।

ଶଉଚ ସ୍ଥାନ ମୁଁ ଅଗ୍ନିରେ କଲି ଜାଣ
ତେଣୁ ଡରିଲା ମୋତେ ଏ ଦୈତ୍ୟ ରାବଣ ।
ରାବଣ ଆସି ମୋତେ କହଇ ବିଡ଼ମ୍ବନ
ମୁଁ ତାକୁ କୋପ କଲେ ପଳାଏ ସେ ପୁଣ ।
ତେଣୁ କିରୀଟୀ କୁଣ୍ଡଳ ତୋର ଦେଖି
ମୋ ମନେ ଅପ୍ରତେ ହେଉଛି ମାରୁତି ।
ପୂର୍ବରେ ତୋତେ ମୋର ଦେଖିଲୁ ତ ନାହିଁ
କେମନ୍ତେ ପ୍ରତେ ଯିବି କହ ବାବୁ ତୁହି ।
ଆଗେ ଅସୁର ବାରତା ଛନ୍ଦ ମୁହିଁ ଜାଣି
ସେଥିସକାଶେ ମୋର ପରତେ ନୁହେଁ ପୁଣି ।
ତୁ ବୋଇଲୁ କିମ୍ପାଇଁ କରୁଛ ରୋଦନ
ଶ୍ରୀରାମଙ୍କୁ ନ ଦେଖିବାରୁ ବିକଳ ମୋର ମନ ।
ହନୁମନ୍ତ ବୋଇଲା ମୁଁ ଶ୍ରୀରାମଙ୍କ ଦୂତ
ନୋହିଲେ ସମୁଦ୍ର ଡେଇଁ ଆସିଲି କେମନ୍ତ ।
ସୁଗ୍ରୀବର ଭଣଜା ଅଟଇ ମୁଁ ଜାଣ
ବିଶ୍ୱାସ କଥା ମୋତେ କହନ୍ତି ରାମରାଣ ।
କିଷ୍କିନ୍ଧ୍ୟା ନାମେଣ ଯେ ବାନର ରାଜ୍ୟ ବୋଲି
ସେଥିରେ ଖଡଗ ବାନର ଦଣ୍ଡଧାରୀ ।
ତାଙ୍କର ଦୁହିତା ଯେ ମୋହର ଜନନୀ
ବାଳି ସୁଗ୍ରୀବର ଖଡ଼ଗ ପୁତ୍ର ଜାଣି ।
ଇନ୍ଦ୍ର ଆଦିତ୍ୟ ବଂଶରେ ଜାତ ହେଲେ ଯେଣୁ
ରୂପ ଗୁଣେ ସୁନ୍ଦର ଧାର୍ମିକ ପଣ ତେଣୁ ।
ଖଡ଼ଗ ନୃପତି ରାଜ୍ୟ ତାର ତେଜି
ଜ୍ୟେଷ୍ଠ କନିଷ୍ଠକୁ ରାଜ୍ୟ ଦେଲା ବୁଝି ।
ଜ୍ୟେଷ୍ଠ ପୁତ୍ର ଗୋଟିତ ରାଜ୍ୟରେ ରାଜା ହେଲା
କନିଷ୍ଠକୁ ଯୁବରାଜ ପଦେ ଶାଢ଼ୀ ଦେଲା ।
ବେନିପୁତ୍ର ଶାନ୍ତି କରି ସ୍ୱର୍ଗକୁ ଚାଲିଗଲା
ସେଠାରୁ ବାଳି ରାଜା ରାଜ୍ୟ ସାଧ୍ୟ କଲା ।
ଏମନ୍ତେ ଅନେକ କାଳ ତହିଁ ବହିଗଲା
ପାରିଧି କରିବାକୁ ରାଜାର ମନ ହେଲା ।
କେତେଦିନ ପରେ ରାଜା ପାରିଧି କରିଗଲେ
ସଙ୍ଗରେ ସୈନ୍ୟ ବଳ ଅନେକ ସେ ନେଲେ ।
ଦୁନ୍ଦୁଭି ନାମରେ ଦଇତ ଆସିଣ
କିଷ୍କିନ୍ଧ୍ୟା କଟକ ଉଜାଡ଼ କଲା ଜାଣ ।
ଯାଇ କରି ବାଳିବୀର ଯୁଝିଲା ତା ସଙ୍ଗେ
ଦନୁଜର ପ୍ରାଣ ସେ ଘେନିଲା ରଣରଙ୍ଗେ ।
ଜାଣିକରି ଅଇଲା ଦୁନ୍ଦୁଭିର ସାନଭାଇ
ନଗ୍ରପୁର ପାଟଣା ଭାଙ୍ଗିଲାକ ସେହି ।
ବାଳିକି ଦେଖିଣ ସେ ଭୟରେ ପଳାଇଲା
ବିମ୍ୱରେ ପଶିଣ ସେ ପାତାଳ ପୁରେ ଗଲା ।
ସେ ଦୈତ୍ୟ ସଙ୍ଗରେ ପଶିଲା ବାଳି ବୀର
ପାତାଳରେ ବରଷେ କଲାକ ସମର ।
ଯେଉଁଦିନ ଦୈତ୍ୟ ସେ ପୁରେ ହେଲା ହତ
ରଡ଼ିଏ ଛାଡ଼ିବାରୁ କମ୍ପିଲା ଜଗତ ।
ବିମ୍ୱର ଦ୍ୱାରେ ପୁଣ ରୁଧିର ବାହାର
ସୁଗ୍ରୀବର ବିଚାରିଲା ମଲା ବାଳିବୀର ।
ତେଣୁ ସେ ବିମ୍ୱର ଦ୍ୱାରକୁ ଘୋଡ଼ାଇ
କିଷ୍କିନ୍ଧା ପୁରକୁ ସୁଗ୍ରୀବର ଯାଇ ।
ପାତ୍ରମନ୍ତ୍ରୀଙ୍କ ଡାକି ଅଭିଷେକ ହେଲା
ଘରଣୀ ରୋମାତାର କୋଳରେ ବସି ଭଲା ।
ଏହି ସମୟରେ ମିଳିଲା ବାଳି ବୀର
ସୁଗ୍ରୀବକୁ ଧରିଣ କଲାକ ପ୍ରହାର ।
ଭୟରେ ସୁଗ୍ରିବର ଡରି ପଳାଇଲା
ସୁଗ୍ରୀବ ଘରଣୀକୁ ନେଇଣ ବାଳି ରମିଲା ।
ଋଷ୍ୟମୂକ ପର୍ବତରେ ସୁଗ୍ରୀ ଯାଇ ଲୁଚି
ସେ ପର୍ବତକୁ ପୁଣି ବାଳି ନ କଲା ଗତି ।
ଆଗେ ବାଳିକି ଋଷି ଶାପ ଦେଇଥିଲେ
ଏଠାକୁ ଅଇଲେ ମରିବୁ ବୋଇଲେ ।
ସାନ କାଳରୁ ମୋର ସୁଗ୍ରୀବ ସଙ୍ଗେ ପ୍ରୀତି
ତେଣୁ ମୁଁ ନ ଗଲି ବାଳି ରାଜାର କତି ।
ଏମନ୍ତେ ବେନି ସହସ୍ର ବର୍ଷ ବହିଗଲା
ଶ୍ରୀରାମ ଲକ୍ଷ୍ମଣଙ୍କର ଭେଟ ଯେ ହୋଇଲା ।
ବାଳିର ଚାର ବୋଲି ମନରେ ଭୟ କଲୁ
ଜାଣିବା ନିମନ୍ତେ ସମୟେ ବିଚାରିଲୁଁ ।
ସୁଗ୍ରୀବର ସଙ୍ଗରେ ସମସ୍ତେ ଅଛନ୍ତି
ନଳନୀଳ ଜମ୍ୱେବ ତାରାକ୍ଷ ସୁଷେଣଟି ।
ସମସ୍ତେ କହିବାରୁ ମୁହିଁ ଚଳିଗଲି
ଶ୍ରୀରାମ ଲକ୍ଷ୍ମଣଙ୍କୁ ଯାଇଣ ଭେଟିଲି ।
ମୋଠାରୁ ଶୁଣି ଶରଧା କଲେ ଦଶରଥ ପୁଅ
ମୋହର ସଙ୍ଗରେ ରାମ ହେଲେ ପ୍ରିୟ ।
ପର୍ବତ ଶିଖରେ ସୁଗ୍ରୀକି ଭେଟିଲେ
କପିରାଜା ସଙ୍ଗରେ ମଇତ୍ର ହୋଇଲେ ।
ଯେଉଁଦିନ ରାବଣ ତୁମ୍ଭଙ୍କୁ ଆଣିଲା ରଥରେ
ଆକାଶରେ ଯାନ ବାହେ ଖରତରେ ।
ଆମ୍ଭେ ଆଠଜଣ ଯେ ପର୍ବତରେ ଥିଲୁଁ
ତୁମ୍ଭର ରୋଦନ ଶୁଣି ଅନାଇଲୁଁ ।
ଉପରାଣ ଶାଢ଼ୀ ଯେ ଦେହର ଅଳଙ୍କାର
ବାନ୍ଧିକରି ଫିଙ୍ଗିଦେଲେ ପର୍ବତ ଉପର ।
ଯେ ବସ୍ତୁ ଅଳଙ୍କାରକୁ ସୁଗ୍ରୀବ ଥୋଇଲା
ଶ୍ରୀରାମଙ୍କୁ ଦେଖିବାରୁ ଛାମୁରେ ଆଣିଦେଲା ।

ତେଣୁ କରି ଶ୍ରୀରାମ ସଙ୍ଗରେ ପ୍ରୀତି କରି
ମଇତ୍ରର ଛଳରେ ବାଳିକି ନିବାରି ।
କିଷ୍କିନ୍ଧ୍ୟା କଟକ ସୁଗ୍ରୀବକୁ ଭୋଗ ଦେଇ
ସୈନ୍ୟବଳ ସାଜି ମାଲ୍ୟବନ୍ତେ ଛନ୍ତି ରହି ।
ତେଣୁ ସେ ଚାରିଦିଗକୁ ବରଗିଲେ ଦୂତ
ଅଙ୍ଗଦ ସଙ୍ଗରେ ଆମ୍ଭେ ଆସିଛୁ ଜଣ ସାତ ।
ବନଗିରି କନ୍ଦର ଖୋଜିଲୁଁ ବହୁତ
ସମ୍ପାତିଠାରୁ ଆମ୍ଭେ ପାଇଲୁ ବାରତ ।
ଆମ୍ଭେ ସମସ୍ତେ ବସି ଭାବିଲୁଁ ସେଠାରେ ତ
କେମନ୍ତ ପ୍ରକାରେ ସିନ୍ଧୁ ଡେଇଁବା ତ ।
ପୁଣି ହିଁ ବିଚାର କଲୁଁ ଆମ୍ଭେ ଆଠ ଜଣ
ଜମ୍ୱେବ ମୋତେ ବୋଇଲେ ଶୁଣରେ ହନୁମାନ ।
ଆମ୍ଭେ ସାତଜଣ ସିନ୍ଧୁ କୂଳେ ଥିବୁଁ
ତୁ ଯାଇ ଲଙ୍କାଗଡ଼େ ସୀତାଙ୍କୁ ଖୋଜିବୁ ।
ତାଙ୍କ ପ୍ରସାଦରେ ମୁଁ ଅଇଲି ସିନ୍ଧୁ ଡେଇଁ
ସନ୍ଦେଶ ପାଇବାପାଇଁ ଲଙ୍କାରେ ଅଛି ରହି ।
ତୁମ୍ଭଙ୍କୁ ନ ଦେଖିଣ ବାହୁଡ଼ି ଯେବେ ଯାନ୍ତି
ସେମାନଙ୍କ ଆଗରେ କି ବୋଲି କହନ୍ତି ।
ସୀତା ନାହିଁ ବୋଲି କହିଲେ ମରନ୍ତେ
କିମ୍ବା ଦଣ୍ଡେ ସେମାନେ ଶରୀର ଧରନ୍ତେ ।
ଏବେ ତୁମେତ ମାତ ଗୋ କର ନାହିଁ ଶୋକ
ହେଲେ ଜିଣିଲ ତୁମ୍ଭେ ସଂସାରେ ତ୍ରୈଲୋକ୍ୟ ।
ତୁମ୍ଭର ସ୍ୱାମୀ ଯେବେ ଗୋ ଅଟନ୍ତି ରଘୁନାଥ
ଏ ଲଙ୍କାଗଡ଼େ ଅବଶ୍ୟ ବିଜେ କରିବେତ ।
ରାବଣର ବଂଶ ମାରି ତୁମ୍ଭଙ୍କୁ ଘେନି ଯିବେ
ଏ ଲଙ୍କାଗଡ଼କୁ ନିଶ୍ଚେ ବିଧ୍ୱଂସିବେ ।
ହନୁମନ୍ତଠାରୁ କଥା ଶୁଣି ଦେବୀ ସୀତା
ମନରେ ବିଚାରିଲେ ଜନକ ଦୁହିତା ।
ଏ ଅବା ରାବଣ ଅଟେ ଇନ୍ଦ୍ରଜିତ ପିତା
ମାୟାରୂପ ଧରିଣ କହୁଛି ବାରତା ।
ଦୈତ୍ୟମାନେ ଅଟନ୍ତି କପଟୀ ମାୟାରୂପୀ
କପଟେ ରାବଣ ବା ହୋଇଅଛି କପି ।
ମାୟା ନିର୍ମାୟା ଏହାର ଜାଣିବି କେମନ୍ତେ
ପ୍ରତେଯିବି ୟା କଥାକୁ କେବଣ ହିଁ ମତେ ।
ଏମନ୍ତ ବିଚାରି ବୋଲନ୍ତି ଜାନକୀ
ମୁକୁଟ କୁଣ୍ଡଳ ତତେ କିଏ ଦେଲାଟିକି ।
ସେକଥା ମୋର ଆଗେ କର ତୁ ପ୍ରକାଶ
ତେବେ ମନ ମୋର ହୋଇବ ସନ୍ତୋଷ ।
କରଯୋଡ଼ି ମାରୁତି କହଇ ବଚନ
ପ୍ରଭଞ୍ଜନୀ ନନ୍ଦନ ମୁଁ ଅଟେ ହନୁମାନ ।

ମୋହର ଜନନୀ ଶୁଦ୍ଧ ସ୍ନାନ କଲାବେଳେ
ପବନ ଦେବତା ଭେଟିଲେ ତେତେବେଳେ ।
ଜନନୀ ବୋଧ ଦେଇ ଅଙ୍ଗ ସଙ୍ଗ କଲା
ବୀର୍ଯ୍ୟ ଦେଇ ପବନ ଦେବତା ଚଳିଗଲା ।
ତେଣୁ ଗର୍ଭବାସ ହୋଇଲେ ମୋ ଜନନୀ
ବାରବର୍ଷ ପର୍ଯ୍ୟନ୍ତ ଗର୍ଭରେ ରହି ପୁଣି ।
କେତେଦିନ ଉତ୍ତାରୁ ଜନନୀ ଡାକ ଦେଲା
ପେଟରେ କିଏ ଅଛ ବାହାର ହୁଅ ଭଲା ।
ଗର୍ଭରେ ଥାଇ ମୁଁ ଯେ କହିଲି ବଚନ
ମାତୃ ହରଣ ଦୋଷ ଲାଗିବ ମୋତେ ଜାଣ ।
ସେଥିର ସକାଶେ ମୁଁ ଉରିଗର୍ଭେ ଅଛି ପୁଣି
ପବନକୁ ସୁମରଣା କର ଗୋ ଜନନୀ ।
ସେ ଇଶ୍ୱର ପୁରକୁ ଏବେ ଯିବ ପରା
ବଜ୍ର କାଛଟା ଦେଲେ ଜନ୍ମ ହେବି ତ୍ୱରା ।
ବଜ୍ରକାଛଟା ଯେବେ ଗର୍ଭକୁ କ୍ଷେପିବୁ
ତେବେ ତୁହି ମୋର ରୂପକୁ ଦେଖିବୁ ।
ଶୁଣି କରି ଜନନୀ ପବନକୁ ସୁମରିଲା
ମୋ ଗର୍ଭ ଖଲାସ କର ବୋଲିଣ ବୋଇଲା ।
ସକଳ କଥା ତାଙ୍କୁ କହିଲା ବୁଝାଇ
ତେଣୁ ସେ ପବନ ଈଶ୍ୱର ପାଶେ ଯାଇ ।
ବଜ୍ର କାଛଟା ମୋର ଜନନୀ ହସ୍ତେ ଦେଲେ
ତକ୍ଷଣେ ଜନନୀ ଗର୍ଭକୁ କ୍ଷେପିଲେ ।
ସେ କାଛଟାକୁ ଯହୁଁ କୌପନୀ କଲି ମୁହିଁ
ମୋହର କର୍ଣ୍ଣକୁ ରାମଶବଦ ଶୁଭଇ ।
ତେଣୁ ସେ ମୋର ମନ ସନ୍ତୋଷ ହୋଇଲା
ରବି ଉଦୟରେ ଜନ୍ମ ହେଲି ଭଲା ।
ଜନନୀକି ମାଗିଲି ଖାଇବାର ପାଇଁ
କଶ୍ୟପର ନନ୍ଦନକୁ ଦେଲା ସେ ଦେଖାଇ ।
ତେଣୁ ବିକ୍ରମିଣ ଶୂନ୍ୟ ମାର୍ଗେ ଗଲି
ସୂର୍ଯ୍ୟଦେବତାଙ୍କୁ ଲାଙ୍ଗୁଡ଼େ ବାନ୍ଧିଲି ।
ସେଠାରୁ ଇନ୍ଦ୍ର ଆସି ବଜ୍ର ମୋତେ ମାରି
ସେହି ରଥରେ ବସି ପ୍ରାଣ ହରାଇଲି ।
ଜାଣି କରି ପବନ ସର୍ବ ନିରୋଧିଲା
ତେଣୁ ସେ ଦେବବର ସେ ସ୍ଥାନେ ମିଳିଲା ।
ଅମୃତ ଖୁଆଇ ମୋତେ ବଞ୍ଚାଇଲେ
ଅମର ଦୁଃଖ ହର ବୋଲି ସେ ବୋଇଲେ ।
ମୁକୁଟ କିରୀଟୀ ମୋର ଶିରରେ ବାନ୍ଧିଦେଲେ
ଅମୃତ କୁଣ୍ଡଳ ମୋତେ ସେ ସମର୍ପିଲେ ।
ବିଧାତା ବୋଇଲେ ତୁ ଶୁଣରେ ମାରୁତି
ରାମାୟଣ ଯୁଦ୍ଧେ ତୁହି ହୋଇବୁ ଶ୍ରେଷ୍ଠଟି ।

ବାସୁଦେବଙ୍କୁ ଦେଖିବୁ ଦେବକାର୍ଯ୍ୟ କରି
ଏତେ କହି ବେଦବର ସେଠାରୁ ଗଲେ ଫେରି ।
ବେଦବର ଯିବାରୁ ସକଳ ଦେବେ ଗଲେ
ସେଠାରୁ ଜନନୀ ପୁରେ ଅଇଲି ମୁଁ ଭଲେ ।
ଦେଖିଣ ଜନନୀ ମୋର ହରଷ ହୋଇଲା
ପୁତ୍ର ମୋର ଜଗହିତା ବୋଲିଣ ବୋଇଲା ।
ସେଠାରୁ ମଉଳା ଘରେ ରହିଲି ମୁଁ ଜାଣ
ଶୁଭ ଯୋଗରେ ଭେଟ ହେଲେ ଦଶରଥଙ୍କ ନନ୍ଦନ ।
ଏମନ୍ତ କହିବାରୁ ଜାନକୀ ତୋଷ ହେଲେ
ମୁକୁଟ କୁଣ୍ଡଳ ଦେଲେ ବିଚାରିଲେ ।
ଶୁଣିଣ ଉମା ଶିବଙ୍କୁ ବୋଲନ୍ତି ବଚନ
ଜାନକୀ ପୁଚ୍ଛିବାରୁ କହେ ହନୁମାନ ।
ସେଠାରୁ କିସ ହେଲା କହ ତ୍ରିଲୋଚନ
ଈଶ୍ୱର ବୋଇଲେ ଶୁଣ ଦେଇ ମନ ।
ଏ ବଚନ ଶୁଣିଣ ବୋଇଲେ ଦେବୀ ସ୍ୱତୀ
କିସ ଶଙ୍କୁନ ଦେଇଛନ୍ତି ଦାଶରଥି ।
ତୁ ଯେବେ ଶ୍ରୀରାମର ଏଡ଼େକ ବିଶ୍ୱାସ
କି କହିଛନ୍ତି କୁହ ଗୁପତ ସନ୍ଦେଶ ।
ଶୁଣି କରି ହନୁମନ୍ତ ମନରେ ତୃପତି
ଅଣ୍ଟାରୁ ମୁଦି କାଢ଼ି ଦେଲାକ ଝଟତି ।
ଦେଖିଣ ଜାନକୀ କରରେ ତାହା ଧରି
ଭ୍ରାନ୍ତି ଛାଡ଼ିଣ ତୃପ୍ତି ଜନକ କୁମାରୀ ।
ଶ୍ରୀରାମ ନାମ ଅଛି ଅକ୍ଷର ତିନିଗୋଟି
ମୁଦି ଦେଖି ଜାନକୀ ପଞ୍ଚ ପ୍ରାଣ ଫୁଟି ।
ମୁଦିକି ହସ୍ତେ ଧରି କହନ୍ତି ବିମ୍ୱୋଷ୍ଠି
ତୁହି ମୁଦି ଥାଉ ଯେ ଶ୍ରୀରାମଙ୍କ ଅଙ୍ଗୁଷ୍ଠି ।
ତୁହି ପଞ୍ଚରତ୍ନମାନଙ୍କରେ ଧନ୍ୟ
ଅଯୋଧ୍ୟାରୁ ଶ୍ରୀରାମ ଅଇଲେ ଘେନିଣ ।
ସମସ୍ତ ଆଭରଣ କାଢ଼ି ପକାଇଲେ
ନିକାଞ୍ଚନ ବୋଲି ତୋତେ ସଙ୍ଗରେ ଆଣିଲେ ।
ଋଷିକୁଲ୍ୟା ତଟରେ ପୂଜିଲେ ଯେଉଁ ଲିଙ୍ଗ
ହୀରାର ନାୟକ ଯେ ରହିଲା ଲିଙ୍ଗ ଅଙ୍ଗ ।
ନିଳାର ମାଣିକ୍ୟ କୃବିନ୍ଦର ଜାତି
ଏହି ମୁଦି ଗୋଟି ଅଷ୍ଟରତ୍ନ କାନ୍ତି ।
ଶ୍ରୀରାମ ଅଙ୍ଗୁଷ୍ଠିକି ଭଲ ପାଏ ଶୋଭା
କି ଅବା ଅଗ୍ନି ସୂର୍ଯ୍ୟ ଚନ୍ଦ୍ର ଜିଣିପ୍ରଭା ।
ଗନ୍ଧ ଚତୁଃସମ ଲେପନ୍ତି ରାମ ମୋତେ
ଏତେ ଅନୁଗ୍ରହରେ ନ ତେଜନ୍ତି ତୋତେ ।
ତୁ ମୋର ଅଷ୍ଟାଙ୍ଗ ଶରୀରେ ବୁଲିଯାଉ
ସୁଖ ପାଇ ଶ୍ରୀରାମ ଅଙ୍ଗୁଷ୍ଠିରେ ଥାଉ ।

ହାସ୍ୟ ରସରେ ମୋତେ କୋଳ କଲାବେଳେ
କରତାଳି ମାରନ୍ତି ସ୍ୱାମୀ ମୋ ହୃଦରେ ।
ମାୟାମୃଗ ଦେଖିଣ ଶ୍ରୀରାମ ମାରିବାକୁ ଗଲେ
ମାୟା ରାବଣ ଶୁଣି କରି ଲକ୍ଷ୍ମଣ ଧାଇଁଲେ ।
ଶ୍ରୀରାମ ଲକ୍ଷ୍ମଣ ଯିବାରୁ ରାବଣ ଆସି ଗୁପ୍ତେ
ପାପିଷ୍ଠ ଅସୁର କଷ୍ଟ ଦେଲା ମୋତେ ।
ମୁହିଁ ଏବେ ଦେଖ ଅସୁର ଗୃହେ ବନ୍ଦି
ତୁ କିମ୍ପା ମୋ ସ୍ୱାମୀକୁ ଛାଡ଼ିଲୁ ହେ ମୁଦି ।
ଏକା ହୋଇ ରହିଲେ ମୋହର ପ୍ରାଣନାଥ
ଅଲଗା ଦିଶୁଥିବ ମୋ ସ୍ୱାମୀଙ୍କର ହାତ ।
ତେର ମାସ ହୋଇଲା ହୋଇଲୁଁ ଭିନ୍ନା ଭିନ୍ନ
କାହାର ସଙ୍ଗରେ ସ୍ୱାମୀ ହରୁଥିବେ ଦିନ ।
ରାତ୍ରଦିବସ ତୋତେ ନ ଛାଡ଼ନ୍ତି ସ୍ୱାମୀ ମୋର
ମୁରୁଛି ନ ପାରି ତୋତେ ଆଣିଲେ ସଙ୍ଗର ।
ଏବେ ବିଚାରୁଛନ୍ତି ଦୈତ୍ୟକୁ ମୋତେ ଦେଇ
ନ ଦେଖି ଶୋକ ଜଳେ ବୁଡ଼ୁଅଛି ମୁହିଁ ।
ଏମନ୍ତ ଚରିତ୍ର କହନ୍ତି ବଇଦେହୀ
ନୟନରୁ ଅଶ୍ରୁଜଳ ଯାଉଅଛି ବହି ।
ହନୁମନ୍ତ ବୋଇଲେ ତୁମ୍ଭେ କିମ୍ପା ଶୋକ କର
ପୁଣ୍ୟ ସ୍ତ୍ରୀ ହୋଇଣ ଯେ କଥା ନ ବିଚାର ।
ତୁ ଯେବେ ଜନନୀ ଗୋ ନ ପାଇବୁ କଷ୍ଟ
କେମନ୍ତେ ମରିବ ରାବଣ ପାପିଷ୍ଠ ।
ଦେବଙ୍କୁ ସାଧ୍ୟକଲା ଅଙ୍ଗ ଭୁଜବଳେ
ତ୍ରିଦଶ ଦେବତାଙ୍କୁ ଖଟାଏ ପାଦତଳେ ।
ଚଉଦ ଭୁବନରେ ଯେତେ ସ୍ତିରୀମାନ
ଲଙ୍କା ଗଡ଼ରେ ଠୁଳ କଲା ଦଶାନନ ।
ସମସ୍ତ ସମ୍ପଦ ହରାଇବା ପାଇଁ
ତୋତେ ଯେ ରାବଣ ଆଣିଲା ଚୋରାଇ ।
ମୋହର ବୋଲକର ନ କାନ୍ଦ ଚାନ୍ଦମୁହିଁ
ଏତେ ବୋଲି ହନୁ ଯେ ପ୍ରବୋଧ କରଇ ।
ତୋହର ଦୁଃଖକୁ ଦୂର କରିବାର ପାଇଁ
ବାରତା ଘେନିଣ ମୁଁ ଯିବି ବେଗ ହୋଇ ।
ଦିଅନ୍ତୁ ସନ୍ଦେଶ ଗୋ ଯିବି ବେଗ ହୋଇ
ହୃଦ ମଧ୍ୟେ ବିଚାର କରନ୍ତି ବଇଦେହୀ ।
ଦଇତ ନିଲକ୍ଷଣ ମୋ ସ୍ୱାମୀଙ୍କୁ ମାରି
ଏ ମୁଦିକି ଆଣିଛି ଅବା ଏହି ଦଶଗିରୀ ।
ଏହାକୁ କେମନ୍ତେ ମୁଁ ଯିବଇଁ ପରତେ
କପି ହୋଇ ସମୁଦ୍ର ଏ ତରିଲା କେମନ୍ତେ ।
ନାନା ମୂର୍ତ୍ତିମନ୍ତ ଏ ଅସୁର ହୁଅନ୍ତି
ବାନର ରୂପ ଧରି ଆସିଛି ମୋର କତି ।

ମର୍କଟମାନେ ସିନା ଭ୍ରମନ୍ତି ଡାଳରେ
ଫଳମୂଳ ଖାଆନ୍ତି ନିଗମ ବନରେ ।
ମୁକୁଟ କୁଣ୍ଡଳ ଦେବେ ଦେଲେ ବୋଲି କହି
ଆସିଲା ପୂର୍ବରେ ତ ଦେଖିଲା ମୋର ନାହିଁ ।
କେମନ୍ତେ ହନୁ ତୋତେ ପ୍ରତେ ଯିବ ପୁଣି
କେବଳ ସନ୍ତକ ମୁଦ୍ରିକା ମିଳେ ଜାଣି ।
ପ୍ରୀତି ଉପୁଜାଇ ଯେ କହୁ କଥାମାନ
ସ୍ୱରୂପ ସିଦ୍ଧାନ୍ତ ଏହି ନୁହେଁ ତୋଷ ଜାଣ ।
ଗୁପତ ସନ୍ଦେଶ କହିଲେ ପ୍ରତେ ଯାଇ
ନୋହିଲେ କ୍ରୋଧରେ ମୋର ଭସ୍ମ ହେବୁ ତୁହି ।
ଶୁଣିଣ ହନୁମନ୍ତ ଯୋଡ଼ି ବେନିକର
ଧର୍ମରେ ତୁହି ଗୋ ଜନନୀ ଅଟୁ ମୋର ।
କହିଲେ ସେକଥା ନ ହେବୁ ବିରକ୍ତି
ତେବେ ପ୍ରକାଶ କରିବି ଗୁପତ କଥାଟି ।
ଶୁଣିକରି ଜାନକୀ ହରଷ ହୋଇଲେ
ଆଗେ ଯେଉଁକଥା ତୋତେ ଶ୍ରୀରାମ କହିଲେ ।
ସେକଥା କହିଲେ ହନୁ ନାହିଁ ମୋ ଶୋଚନା
ଶୁଣି କରି ହନୁମନ୍ତ ହରଷେ କହେ କି ନା ।
ଯେବଣ ଦିନେ ତୁମ୍ଭେ ଜଳକ୍ରୀଡ଼ା କଲ
ଲକ୍ଷ୍ମଣେ ବସା ଜଗାଇ ଦୁଇଜଣ ଗଲ ।
ମନ୍ଦାକିନୀ ଜଳରେ ସ୍ନାନ କଲ ଯାଇ
ଗେରୁ ଘୋରିଣ ଶ୍ରୀରାମ କପାଳେ ଚିତା ଦେଇ ।
ତେଣୁ ହରଷରେ ଉଠିଲ ବିମ୍ବୋଷ୍ଠୀ
ଶ୍ରୀରାମଙ୍କୁ କୋଳ କଲ ଆନନ୍ଦ ମନେଟି ।
ତେଣୁ ଶ୍ରୀରାମ କପୋଳରେ ଲାଗେ ଗେରୁଚିତା
ହସିଲ ବେନିଜନ ହୋଇଣ ଜଗଜିତା ।
ଏକଥା ପ୍ରମାଣ କି ଅଟଇ ଗୋ ସତୀ
ଏ କଥାମାନ ତ ଅସୁର ନ ଜାଣନ୍ତି ।
ତୁମ୍ଭ ତିନିଜଣ ବ୍ୟତିତ ଆନକେ ନ ଜାଣଇ
ଏକଥା ମିଛ ଯେବେ କହିବ ବୁଝାଇ ।
ଜାନକୀ ବୋଇଲେ ଏକଥା ଅଟେ ସତ
ଆଉ କେଉଁକଥା ତୋତେ କହିଲେ ଗୁପତ ।
ହନୁମନ୍ତ ବୋଇଲା ଶୁଣ ଗୋ ଜନନୀ
ତହୁଁ ନାଗେଶ୍ୱର ବନକୁ ଗଲ ପୁଣି ।
ହରଷରେ ଫୁଲମାଳା ସେଠାରେ ଗୁନ୍ଥିଲ
ଶ୍ରୀରାମ ତୋର ଗଳାରେ ମଣ୍ଡିଲେ ସେହି ଫୁଲ ।
ଏକଥା ମିଥ୍ୟା ହେଲେ କହ ମୋ ଆଗର
ତୋର ପିତା ରାଣଟି ନ କର ଅନ୍ତର ।
ଶୁଣିଣ ଜାନକୀ ବୋଇଲେ ହସିଣ
ଏକଥା ସତ୍ୟ ଅଟଇ ପବନ ନନ୍ଦନ ।

ଏଥି ଉତ୍ତାରୁ ଆଉ କିସ ଯେ ଗୁପତ
ହନୁମନ୍ତ ବୋଇଲା ପୁଣ ଆଗୋ ମାତ ।
ସେଠାରୁ ବେନି ଜନ ଅଇଲ ପଥରେ
କପି ପଲ ଦେଖିଲ ଆସିଲା ବାଟରେ ।
ଡରରେ ଶ୍ରୀରାମଙ୍କୁ କୋଳ କଲ ଯାଇ
ଏକଥା ମିଥ୍ୟା ଯେବେ କହ ତୁ ବୁଝାଇ ।
ଜାନକୀ ବୋଇଲେ ଏକଥା ଅଟେ ସତ
ଆଉ କେଉଁ କଥା ଜାଣିଛୁ ଗୁପତ ।
ହନୁମନ୍ତ ବୋଇଲେ ଶୁଣ ଗୋ ଜନନୀ
ଆହୁରି କଥାଏ କହିଛନ୍ତି ରଘୁମଣି ।
ଚିତ୍ରକୂଟ ପର୍ବତରେ ଶୁଖାଇଥିଲ ମାଂସ
ବିପତ୍ତି ଘଟିଲା ତୋତେ ସେ ଦିବସ ।
କାକ ପକ୍ଷୀ ଆସିଣ ମାଏଁସ ଝାମ୍ପି ନେଲା
ତୁମ୍ଭର ସ୍ତନରେ ତାର ନଖଘାତ ହେଲା ।
ତେଣୁ ରାବ ଦେଲୁ ପୀଡ଼ାରେ ଜନନୀ
ମୋହଗଲୁ ତୁ ଯେ ଅଚେତା ହୋଇ ପୁଣି ।
ଆସିଣ ଶ୍ରୀରାମ ତୋତେ ଚେତା କଲେ
ନିର୍ଣ୍ଣୟ କଥା ଶୁଣି କାକକୁ ଦଣ୍ଡ ଦେଲେ ।
ଏକଥା ମିଥ୍ୟା ଯେବେ ଅଟଇ ପ୍ରମାଣ
ସତ କରି କହ ମୋତେ ଜନନୀର ରାଣ ।
ଜାନକୀ ବୋଇଲେ ଏକଥା ଅଟେ ସତ୍ୟ
ଆନ କେଉଁ କଥାରେ ଅଛଇ ଗୁପତ ।
ହନୁମନ୍ତ ବୋଇଲେ ଶୁଣ ଗୋ ଧର୍ମ ମାତ
ଏକଦିନେ ମୃଗୟାକୁ ଗଲେ ରଘୁନାଥ ।
ନାଗେଶ୍ୱର ବନରେ ପଶିଲେ ରାମ ଯାଇ
ସେ ବନରେ ମୃଗକୁ ମାଇଲେ ରଘୁସାଇଁ ।
ନଗେଶ୍ୱର ରଜ ଯେ ଶ୍ରୀରାମ ଅଙ୍ଗେ ପଡ଼ି
ଅଭ୍ର ବୋଲି ହେଲା ପ୍ରାୟ ଦିଶିଲା ନିବାଡ଼ି ।
ମୃଗ ଘେନି ଶ୍ରୀରାମ ହୋଇଲେ ପ୍ରବେଶ
ଦ୍ୱାରେ ମୃଗ ପକାଇଲେ ଦଶରଥ ଶିଷ୍ୟ ।
ତୃଷାରେ କର୍ଦ୍ଦମ ହୋଇଛି ତାଙ୍କ ଗାତ୍ର
ରାମଙ୍କୁ ଦେଖି ତୋର ଉଠିଲା ସାହସତ ।
ତେଣୁ ସେ ଦ୍ୱାରେ ବସି ଜଳ ତୋତେ ମାଗି
ସୁବର୍ଣ୍ଣ ଝରୀରେ ନୀର ଆଣି ଦେଲ ବେଗି ।
ବେନି ଝରି ଜଳ ପିଇଲେ ରଘୁନାଥ
ପୁଣି ଜଳ ମାଗିବାରୁ କହିଲୁ ଦୃଷ୍ଟାନ୍ତ ।
ବୋଇଲ ଆଜଦିନ କା ସଙ୍ଗେ ଆସିଲ
କେଉଁ ସ୍ତିରୀକୁ ତୁମ୍ଭେ ବନରେ ଭୋଗ କଲ ।
ପୁରୁଷଙ୍କ ବଚନ ଅଟେ ପାଣିଗାର
କେତେବେଳେ ପୁରୁଷ ନୁହନ୍ତି କାହାର ।

ଶୁଣି କରି ରାମ ଯେ କହନ୍ତି ବଚନ
ପୁରୁଷ ଜାତି ଅଟନ୍ତି ଭ୍ରମର ସମାନ ।
ହାଟ ବାଟ ଦାଣ୍ଡରେ ବିହରନ୍ତି ଯାଇ
ନାନା ରୂପ ଦେଖିଣ ମୋହିତ ହୋନ୍ତି ସେହି ।
ସ୍ତିରୀମାନଙ୍କ ବଚନ ପଥରର ଗାର
ଅସମ୍ଭାଳ ବୋଲେ ସେ ଯେ ହୁଅନ୍ତି ସମ୍ଭାଳ ।
ତେବେ ସିନା ଜଣାଯାଏ ପୁରୁଷାର୍ଥ ପଣ
ଆଗେ ତ ଜଣାଯାଇ ପାଣିର ସମାନ ।
ସେ କଥାମାନ ପୁଣି ରାମଙ୍କୁ ପଚାରିଲ
କାହାସଙ୍ଗେ ରତି ଲୀଳା କରିଛ ବୋଇଲ ।
ଶ୍ରୀରାମ ବୋଇଲେ ସେ ଯେ ପୁରୁଷଗାର ହୋନ୍ତି
ନିର୍ଭକଲା ଗାରକିମ୍ପା ପୋଛିଲେ ଲିଭନ୍ତି ।
ଜାନକୀ ବୋଇଲେ ସେ କଥା ମୋତେ କହ
କାହାସଙ୍ଗରେ ମୁହିଁ କରିଲି ସେନେହ ।
ଶ୍ରୀରାମ ବୋଇଲେ ତୁ ଛାଡ଼ିଲୁ ସର୍ବଆଶା
ପତିର ସଙ୍ଗରେ ଲଗାଉ ପ୍ରେମଦଶା ।
ତେଣୁ ସେ ଅସମ୍ଭାଳ ନୋହିଲୁ ସମ୍ଭାଳ
ପଥର ଗାର ତୋର ପାଣିକି କଅଁଳ ।
ରାମବାଣୀ ଶୁଣି ନିରସ ହୋଇଲ
ଶ୍ରୀରାମଙ୍କୁ ତୁମ୍ଭେ କିଛି ହିଁ ନ କହିଲ ।
ଏକଥା ମାନକି ମିଛ କହ ଗୋ ମାତ ତୁହି
ସେ କଥା ଶୁଣି ଜାନକୀ ହରଷମନ ହୋଇ ।
ବିଚାରେ ଶ୍ରୀରାମର ନିଶ୍ଚୟ ଅଟେ ଦୂତ
ଶ୍ରୀରାମ ଏହାକୁ କହନ୍ତି ବିଶ୍ୱାସ ତ ।
ସଙ୍କେତ ମାନ ଜାଣି ପଚାରେ ଜାନକୀ
ରାମ ଲକ୍ଷ୍ମଣଙ୍କର ସମସ୍ତ କୁଶଳଟି ।
କି କହିଛନ୍ତି ରାମ କହ ହନୁମନ୍ତ
ହନୁମାନ କହଇ ଶୁଣ ଧର୍ମ ମାତ ।
ଅଇଲାବେଳେ ଶ୍ରୀରାମ କହିଲେ ସିଦ୍ଧାନ୍ତ
ସୀତାଙ୍କୁ ମୋର ଦୁଃଖ କହିବୁ ହନୁମନ୍ତ ।
ବୋଇଲେ ଜାନକୀଙ୍କୁ ଦେଖିଲା ତୋର ନାହିଁ
ଗୁପ୍ତକଥା କହିଲେ ସିନା ପ୍ରତେ ଯିବ ସେହି ।
ପୁଣି ମହାସ୍ୱତୀ ବୋଇଲେ ବଚନ
ଏକଥା ମାନ ସତ ଅଟେ ହନୁମାନ ।
ମୋହର ମନରୁ ସର୍ବ ଚିନ୍ତା ତୁଟି
ଆଦିତ୍ୟ ଉଠିବାରୁ ତିମିର ଗଲା ତୁଟି ।
ପରମ ସନ୍ତୋଷ ହେଲେ ମହାସତୀ
ସକଳ ଚରିତ୍ର କହିଲେ ମାରୁତି ।
ମନରେ ସନ୍ତୋଷ ହୋଇଲା ମୋର ବାବୁ
କାକର ଚରିତ୍ର ଯେ ନ କହିଲୁ ସବୁ ।
ହନୁମନ୍ତ ବୋଇଲା ଶୁଣସି ଗୋ ମାଏ
ମନରେ ଅନ୍ତରକି ଧରିଲା ତୋର କାୟେ ।
ଜାନକୀ ବୋଇଲେ ଯେ ରହିଲା କଥା ସନ୍ଧି
କେବଣ ଗୋତ୍ରେ ଜାତ ଯେ ପକ୍ଷୀ ଜୀବଟି ।
ଶୁଣିଣ ମାରୁତି କହେ କରଯୋଡ଼ି
ଶୁଣ ତୁ ଜନନୀ ଗୋ ହେତୁ ମନେ କରି ।
ଚିତ୍ରସେନ ଗନ୍ଧର୍ବ ବାସବ ତନୟୀ
ଦିନେ ରଥ ଚଢ଼ିଣ ଗମନ କରେ ସେହି ।
ଆକାଶ ମାର୍ଗରେ ସେ ରଥ ଯାଉଥିଲା
ନୟନେ ଦେଖି ମନ ମୂର୍ଚ୍ଛି ନ ପାରିଲା ।
କାକରୂପ ଧରିଣ ଯେ ତୋହର ପାଶେ ଆସି
ମାଉଁସ ଦେଖିଣ ଯେ ଝାମ୍ପିଲା ସେ ପକ୍ଷୀ ।
ମନ୍ଦାର ବୃକ୍ଷ ଦେଖି ସେ ରାବଇ ଘନ ଘନ
ମଦନ ଶରରେ ଯେ ହୁଏ ହତଜ୍ଞାନ ।
ମୃଗନାଭି କସ୍ତୁରୀ ମାଂସ ଶୁଖାଇଥିଲ ତୁମ୍ଭେ
ଅଞ୍ଚଳ ଖସିଲା ପବନର ଦମ୍ଭେ ।
ତୁମ୍ଭ ଯଉବନ ଦେଖି ସେ ପକ୍ଷୀ ଲୋଭ କଲା
ମାଂସକୁ ଝାମ୍ପିଲା ପ୍ରାୟ ତୋତେ ସେ ଝାମ୍ପିଲା ।
ଲୋଭରେ ତୋର ସ୍ତନେ ବସିଲା ଯାଇ ପୁଣି
ଠାକୁରାଣୀ ବୋଲିଣ ନ ଚିହ୍ନେ ତୋତେ ଜାଣି ।
ମୁହଁକୁ ଚାହିଁ ତୋର ପଳାଇବା ବେଳେ
ନଖ ବାଜି ସ୍ତନ ତୋର ଘାତ ଯେ ସେଠାରେ ।
କାତରେ ମୋହ ଯାଇ ପଡ଼ିଲା ସୁନ୍ଦରୀ
ରୁଧିରେ ଜର୍ଜର ଶରୀର ତୁମ୍ଭରି ।
ତ୍ରାହି ରାମ ବୋଲିଣ ସୁମରିଲା ପ୍ରାୟେ
ତୁମ୍ଭ ବିକଳ ଦେଖି ଧାଇଁଲେ ରାମରାୟେ ।
କୋଳ କରିଣ ତୋତେ ଧଇଲେ ଗୋ ସ୍ୱତୀ
ଅଞ୍ଚଳ ଧରିକରି ରୁଧିର ପୋଛନ୍ତି ।
ରାମ ବୋଇଲେ ତୋତେ କେ କଲା ଏ ଘାତ
ବିକଳରେ କହିଲୁ ଶ୍ରୀରାମ ଅଗ୍ରତ ।
ରାମ ଆଗେ କହିଲୁ ଜାତ ଦେଲା ମାରି
ମୋର ସ୍ତନ ତାହାର ନଖରେ ବିଦାରି ।
ତୋହର ବଚନେ ରାମ ଧଇଲେ କୋଦଣ୍ଡ
କାକର ଉପରକୁ ନାରାଚ୍ ପ୍ରଚଣ୍ଡ ।
ବିକଳରେ କାକ ଯେ ପଳାଏ ଗଗନ
ଶରଣ ପଶିଲା ସେ ଆଦିତ୍ୟ ଠାରେଣ ।
ଆଦିତ୍ୟ ବୋଇଲେ ତୁ କାହାର ବଇରୀ
କାକ ବୋଇଲା ମୋତେ ରାମଚନ୍ଦ୍ର ମାରି ।
ସମ୍ଭାଳି ନ ପାରି ଯେ ଶ୍ରୀରାମ ବଇରୀ
ପଳାଇ କାକ ଗୋଟି ପଶିଲା ଚନ୍ଦ୍ରପୁରୀ ।

ଚନ୍ଦ୍ରଦେବ ବୋଇଲେ ମୁଁ ନ ପାରେ ସମ୍ଭାଳି
ପଳାଅରେ କାକ ପୁରକୁ ମୋହରି ।
ସେଠାରୁ କାକ ପକ୍ଷୀ ପଳାଇ ବହନ
ବେଦବର ପାଖରେ ପଶିଲା ଶରଣ ।
ପିତା ବୋଇଲେ ତୁ କାହାର ବଇରୀ
କାକ ବୋଇଲା ମୋତେ ରାମଚନ୍ଦ୍ର ମାରି ।
ଚତୁର୍ମୁଖ ବୋଇଲେ ତୋତେ ନ ରଖିବେ କେହି
ଆମ୍ଭର ବୋଲରେ ଯାଅ ବେଗ ହୋଇ ।
ଶରଣ ପଶଯାଇ ଶ୍ରୀରାମ ଚରଣ
ଦୟାଳୁ ପୁରୁଷ ସେ ରଖିବେ ତୋତେ ପୁଣ ।
ବୈକୁଣ୍ଠର ନାଥ ସେ ଜନ୍ମ ଦେବ ଛଳେ
ଚାରି ରାବଣ ମରିବେ ତାଙ୍କର ହସ୍ତରେ ।
ତାଙ୍କଠାରେ ଅପ୍ରାଧ ଅର୍ଜିଲୁ ଯେ ପୁଣ
ତୋତେ ରଖିବେ ନାହିଁ ମପତ ବ୍ରହ୍ମାଣ୍ଡେଣ ।
ଶୁଣିଣ ଚିତ୍ରସେନ ଗନ୍ଧର୍ବ ଚଳିଗଲା
ଶ୍ରୀରାମ ଚରଣରେ ଶରଣ ପଶିଲା ।
ପ୍ରସନ୍ନେ ମହାସ୍ୱତୀକୁ କହିଲୁ ଶ୍ରୀରାମଙ୍କୁ
ଦୋଷ କଲା ଶରଣ ପଶିଲା ରଖ ତାକୁ ।
ଏକଥା ଯେବେ ମୋର ଅଟେ ଅବେ ଭାର
ସବୁ କଥା ତୋର ସେ ମାୟାର ପ୍ରକାର ।
କାକର ନଖ ଚିହ୍ନ ସ୍ତନରେ ତୋର ଥିବ
ସେ କଥା ମୋର ଗୋ ଜାଣ ତୁ ସୁଲଭ ।
ଜାନକୀ ବୋଇଲେ ତୁ ଶ୍ରୀରାମ ବିଶ୍ୱାସ
ଆଉ କେଉଁକଥା ଜାଣିବି କର ତା ପ୍ରକାଶ ।
କହ କହ ହନୁ ଶ୍ରୀରାମଚନ୍ଦ୍ର ବାଣୀ
ଶୁଣି ହନୁମନ୍ତ ଯେ ବଚନ ବଖାଣି ।
ଆବର କଥାଏ ତୁମ୍ଭେ ଶୁଣ ଏକଚିତ୍ତେ
ଅଯୋଧ୍ୟାରେ ଥିଲ ମାଗୋ ଶ୍ରୀରାମ ସଙ୍ଗତେ ।
ଏକ ଦିନେ ଶ୍ରୀରାମ କୁରଙ୍ଗୀ ମାରିଗଲେ
ଅସୁରକୁ ଦେଖିଣ ତା ସଙ୍ଗେ ଯୁଦ୍ଧ କଲେ ।
ଅସୁରଙ୍କୁ ମାରିଣ ଅଇଲେ ଦେବରାଜ
ପାଦ ପଖାଳିଣ ତୋ ସଙ୍ଗେ କଲେ ସଙ୍ଗ ।
ସେଦିନ ରତିରସେ ହାରିଲୁ ମାତ ତୁହି
ନିସତ ହେବାରୁ ମଉନ ତୁ ଯେ ହୋଇ ।
ଉଠିଣ ଚରଣ ମଞ୍ଚାଳିଲୁ ଯାଇ
ହାସ୍ୟରସ କୌତୁକେ ନିଶି ଯେ ପୁହାଇ ।
ଏକଥା ଗୁପତ ଗୋ କହିଛନ୍ତି ମାତ
କହ କହ ହନୁ ତୋର ମାତାର ଶପଥ ।
ହନୁମନ୍ତ ବୋଇଲେ ମାତ ଶ୍ରୀରାମଛନ୍ତି କହି
ସେ କଥା ତୋର ଆଗେ କହଇ ମହାମାୟି ।

ତୁମ୍ଭ ବିଭାକାଳେ ଆଚାର ଯେମନ୍ତ
ସ୍ୱୟମ୍ବର କାଳର ଜନକ ତପୋବନ୍ତ ।
ଲକ୍ଷେକ ନରେନ୍ଦ୍ର ଆଣିଲେ ରଷିବରି
ଶିବ କୋଦଣ୍ଡ ଥୋଇଲେ ପର୍ବତ ସଜ କରି ।
ଚାରିବର୍ଣ୍ଣ ଚଣ୍ଡାଳ ଯେ ରାବଣ ସହିତ
ଯେ ଧରିବ ଜାନକୀ ମୁଁ ଦେବି ଦୃଢ଼ବ୍ରତ ।
ଏହି ସମୟରେ ଯେ ଅଇଲେ ରଘୁନାଥ
ଶିବଙ୍କର କୋଦଣ୍ଡ ଧଇଲେ ବାମହସ୍ତ ।
ଆପ୍ରାଣ କରିଣ କୋଦଣ୍ଡ ଉଠାଇଲେ
ଇକ୍ଷୁଦଣ୍ଡ ପ୍ରମାଣେ ଭାଙ୍ଗି ପକାଇଲେ ।
ଦେଖିଣ ସାଧବୀ ଗୋ ପ୍ରସନ୍ନେ ମାଳା ଦେଇ
ଅଯୋଧ୍ୟାକୁ ଅଇଲେ ତୁମ୍ଭଙ୍କୁ ବିଭାହୋଇ ।
ବାଟରେ ଭେଟିଲେ ରେଣୁକାର ସୁତ
ତାହାଙ୍କର ଗର୍ବକୁ ଭାଙ୍ଗିଲେ ରଘୁନାଥ ।
ଅଯୋଧ୍ୟାରେ ପ୍ରବେଶ ହେଲେ ଦାଶରଥି
ତୁମ୍ଭଙ୍କୁ ଘେନି ଶ୍ରୀରାମ ଏକାନ୍ତେ ପହୁଡ଼ନ୍ତି ।
ମଧୁଶଯ୍ୟା କଥା ଏବେ ଶୁଣିଣ ଗୋ ମାତ
ଅନ୍ତର ଧଇଲକି ତୁମ୍ଭର ଯେ ଚିତ୍ତ ।
ଜାନକୀ ବୋଇଲେ ବାବୁ ଏକଥା ପ୍ରମାଣ
ଏକଥାରେ ଅନ୍ତର ନାହିଁ ମୋର ମନ ।
ତୁ ବାବୁ ହନୁମନ୍ତରେ ଶ୍ରୀରାମ ବିଶ୍ୱାସ
ଗୁପତ ତୋତେ କହିଛନ୍ତି ରଘୁଶିଷ୍ୟ ।
ମୋଠାରେ ଶ୍ରଦ୍ଧା ତାଙ୍କର ଥାଏଟିକି ସତ୍ୟ
ସମୁଦ୍ର ପାରି ହୋଇ ଆସିବେ କେମନ୍ତ ।
କେତେ ସୈନ୍ୟ ତାଙ୍କର ଅଛନ୍ତି ଯେ ପୁଣ
ସମୁଦ୍ର ତରିବାକୁ ଉପାୟ କେବଣ ।
ଚାରି ରାବଣକୁ ପାରିବେଟି ମାରି
ଅଜୟ ବୀର ଯେ ଅଟେ ଦଶଶିରୀ ।
ହନୁମନ୍ତ ବୋଇଲେ ଶୁଣ ଗୋ ଜନନୀ
ବାନର ଭାଲୁବଳ ଅପ୍ରମିତ ପୁଣି ।
ଏତେ ଲୋକ ବୋଲିଣ କଳଣା ନ ଯାଇ
ନବ ସାଗର ବଳ ଜମ୍ବୁ ଦ୍ୱୀପରେ ଛାଇ ।
ବାନର ଭାଲୁ ରାଜା ଅଟନ୍ତି ପୁଣ ଲକ୍ଷେ
ସୈନ୍ୟ ଯୁଥପତି କଳି ନୁହେ ସେଥେ ।
ଲକ୍ଷେ ଯୁଣ ପର୍ଯ୍ୟନ୍ତ ଲାଗିଛନ୍ତି ଥାଟ
ସିନ୍ଧୁପାରି ହୋଇ ମାରିବେ ସେ ଦୈତ୍ୟ ।
ଶ୍ରୀରାମର ମନ ଯଦି ନ ଥାନ୍ତା ତୁମ୍ଭ କତି
ଚାରିଦିଗକୁ ଦୂତ କିମ୍ପା ପେଶନ୍ତେ ରଘୁପତି ।
ଆକାଶ ଜଳକୁ ଯେହ୍ନେ ଚାତକର ଆଶ
ସେହିରୂପେ ଶ୍ରୀରାମର ତୋଠାରେ ମୁହାଁସ ।

ଏକା କାଣ୍ଡକରେ ଯାର ମଲା ବାଳି ବୀର
ସେ ବାଳି ରାବଣକୁ କାଖରେ ଯାକେ ତାର ।
ଦଶକନ୍ଧକୁ ବିନାଶି ତୋତେ ଘେନିଯିବେ
ତୁମ୍ଭେ ମହାସତୀ ଗୋ ଦୟା କର ଏବେ ।
ରାବଣ ଯେ ତୋତେ ଲୁଚାଇ ଅଛି ଥୋଇ
ତାର ମନ କଥାଟାକୁ ଜାଗ୍ରତ କରାଇ ।
ତୁ ଗୋ ମହାସତୀ ପିଠିରେ ମୋର ବସ
ଆଜି ଦିନକେ ନେବି ଶ୍ରୀରାମଙ୍କ ପାଶ ।
ମାୟା ବୁଦ୍ଧିମାନେ ଯାଉ ତାର ନାଶ
କେଡ଼େ ବୁଦ୍ଧିମନ୍ତ ଅଟେ ବିଶ୍ରବାର ଶିଷ୍ୟ ।
ଶ୍ରୀରାମ ସନ୍ନିଧିରେ ସମର୍ପିବି ନେଇ
ଲଜ୍ୟାପାଇ ମରୁ ସେ ମନ୍ଦୋଦରୀ ସାଇଁ ।
ନୋହିଲେ ଛଳରେ ଯେବେ ଯୁଦ୍ଧ କରିଯିବ
ଶ୍ରୀରାମ ହସ୍ତରେ ନିଶ୍ଚେ ମରଣ ପାଇବ ।
ଜାନକୀ ବୋଇଲେ ମାରୁତି ବାଣୀ ଶୁଣି
ଯେବଣ କଥା ତୁ କହିଲୁ କପିମଣି ।
ମୁହିଁ ଏଠାରୁ ଗଲେ ରାବଣ ନ ମରିବ
ଦେବଙ୍କର କଷ୍ଟ କେବେ ହେଁ ନ ସରିବ ।
ସ୍ୱାମୀଙ୍କର ପ୍ରତିଜ୍ଞା ବିଅର୍ଥ ହୋଇବ
ମୋହର କହିବା କଥା ସଫଳ ନୋହିବ ।
ତିନିପୁରେ ବୋଲିବେ ଶ୍ରୀରାମ ନୁହେଁ ହରି
ଶ୍ରୀରାମ ଅବତାର ବୃଥା ଯିବ ସରି ।
ସମସ୍ତେ ଜାଣିଛନ୍ତି ରାବଣ ଅଟେ ଚୋର
ଏବେ ବୋଲିବେ ଶ୍ରୀରାମ ସେହି ପରକାର ।
ଜଗତକୁ ଏ କଥା ନୁହଇ ସାର ପୁଣ
ଯେବଣ କଥା ତୁରେ କହିଲୁ ହନୁମାନ ।
ଦାରାବଇରୀ ଚୋରକୁ ପ୍ରାଣରେ ଯେବେ ମାରି
ତେବେ ସେ କୀରତି ଦଶଦିଗରେ ଯେ ଫେରି ।
ଆବର କଥା ତୁରେ ଶୁଣ ହନୁମାନ
ବିଶେଷେ ମାରୁତିରେ ଦିଶୁଅଛୁ ସାନ ।
ଜଣକୁ ଜଣେ ତୁରେ କେମନ୍ତେ ବହିନେବୁ
ଶତେ ଯୋଜନ ସିନ୍ଧୁ କେମନ୍ତେ ତରିବୁ ।
ତୋହର ସାହସ ବାକୁରେ ମୋତେ ଯେ ନରୁଚି
ଶିଶୁ ମର୍କଟ ତୁ ଯେ ଅଟୁ ପଶୁଜାତି ।
ଶୁଣିଣ ହନୁମାନ କହଇ ବଚନ
ସାନ ବୋଲିଣ ମୋତେ କହିଲ ଯାହା ପୁଣ ।
ଗରୁଡ଼ ସାନ ଶ୍ରୀହରିଙ୍କୁ ବହେ ପୁଣି
ବୃଷଭ ତ ସାନ ଶିବଙ୍କୁ ବହଇ ଜାଣି ।
ହଂସ ପକ୍ଷୀ ସାନ ବେଦବରଙ୍କୁ ବହଇ
ମୟୁର ସାନ କାର୍ତ୍ତିକେଶ୍ୱରଙ୍କୁ ବହଇ ।
ଇନ୍ଦ୍ରଙ୍କୁ ବହଇ ଐରାବତ ସାନ
ଇନ୍ଦୁରତ ସାନ ବହେ ସେ ଗଜାନନ ।
ସିଂହ ଅଟେ ସାନ ପାର୍ବତୀ ବାହାନ
ହସ୍ତି ଅଟେ ସାନ କମଳା ଆସନ ।
ମଗର ଅଟେ ସାନ ସାବିତ୍ରୀଙ୍କୁ ବହି
ସାନ ବୋଲିଣ କିମ୍ପା ଭାଳୁ ମହାମାୟୀ ।
ମୁହିଁ ତ ଅଟେ ସାନ ମୋ ରୂପ ଏବେ ଦେଖ
ଲଙ୍କାକୁ ଉପାଡ଼ି ନେବାକୁ ମୋର ସକ୍ଷ ।
ଜାନକୀ ବୋଇଲେ ତୋର ଦେଖାଅ ପ୍ରବଳ
କେତେ ବଳବାନ ପ୍ରକାଶ ଅଟେ ତୋର ।
ଶୁଣିଣ ହନୁମାନ କାୟାକୁ ବିସ୍ତାରିଲା
ସତୁରି ଯୋଜନ ଉପରେ ବଢ଼ିଗଲା ।
ସତୁରି ଯୋଜନ ହୋଇଲା ମୋଟ ଜାଣ
ଲଙ୍କାପୁର ଲୁଚିଗଲା ଜାନକୀ ଦେଖନ୍ତେଣ ।
ନଦୀକୂଳେ ତ୍ରିଜଟା ଦେଲାକ ଅନାଇଁ
ବିଚାରେ ଶ୍ରୀରାମକି ଅଇଲେ ଲଙ୍କା ଭୂଇଁ ।
ତ୍ରିଜଟା ଜାନକୀଙ୍କୁ ଦିଶିଲା ରୂପ ଜାଣ
ଆଉ କାହାକୁ ଦୃଶ୍ୟ ନୋହିଲାକ ପୁଣ ।
ପାର୍ବତୀ ବୋଇଲେ କହ ତ୍ରିଲୋଚନ
ଅସୁରୀମାନେ ଥିଲେ ଜାନକୀ ସଙ୍ଗତେଣ ।
ସେମାନଙ୍କୁ ଦୃଶ୍ୟ କିମ୍ପା ନୋହିଲା ମାରୁତି
ଈଶ୍ୱର ବୋଇଲେ ଦେବେ ମାୟାରଞ୍ଜି ।
ପାର୍ବତୀ ବୋଇଲେ ସେଠାରେ କେହିନାହିଁ
ଈଶ୍ୱର ବୋଇଲେ ପବନ ଅଗ୍ନି ରହି ।
ଜାନକୀଙ୍କି ଜଗି ଅଛନ୍ତି ସଙ୍ଗତେଣ
ସେଠାରେ ମାୟା କଲେ ଦୁଇ ଦେବ ଜାଣ ।
ଭାବିଲେ ମାରୁତି କଥା ପ୍ରଘଟ ହୋଇବ
ରାବଣ ଦେଖିଲେ ପୁଣ ଭୟ ମନ ହେବ ।
ସୀତାଙ୍କୁ ଫେରାଇ ଦେବ ଭୟରେ ରାବଣ
ଦେବଙ୍କର ଶତ୍ରୁ ଅକ୍ଷୟ ହେବ ଜାଣ ।
ଏମନ୍ତ ବିଚାରି ମାୟାକୁ ସେ କଲେ
ପବନର ଫାନ୍ଦେ ସବୁଙ୍କୁ ରୁନ୍ଧିଲେ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ହର କହିଲେ ଜାନକୀ ଦେଖି ବିଚାରିଲା ।
ପ୍ରସନ୍ନ ହୋଇଣ ହନୁମନ୍ତକୁ କହେ ସତୀ
ନ ଜାଣି ଶ୍ରୀରାମ କି ପଠାଇଲେ ଏଥି ।
ପବନ ନନ୍ଦନ ହନୁ ଏଡ଼େକ ସମର୍ଥ
ଶ୍ରୀହରି ବାହନ ପ୍ରାୟ ତୋହର ରୂପ ତ ।
ମୋତେ ବହିନେବାକୁ ପ୍ରାକର୍ମ ଏବେ କଲୁ
ଶତେ ଯୁଣ ସିନ୍ଧୁ ତରିବୁ କହିଲୁ ।

ମୋତେ ନେଲା ବେଳରେ ଜାଣିବେ ଅସୁରୀ
ରାବଣ ଆଗରେ କହିବେ ବେଗେ କରି ।
ଶୁଣି କରି ରାବଣ ଦୈତ୍ୟଙ୍କୁ ପେଶି ଦେବ
ମହା ସିନ୍ଧୁ ଜଳରେ ଗୋଳ ଯେ ହୋଇବ ।
ଦୈତ୍ୟଙ୍କ ସଙ୍ଗରେ କରନ୍ତେ ତୁ ରଣ
ଖସି ପଡ଼ିବି ବାବୁ ସମୁଦ୍ର ମଧ୍ୟେଣ ।
ମୁହିଁ ମଲେ ଯାଇ କହିବୁ କିସ ପୁଣ
ରଘୁନାଥଙ୍କ ଟାଣ ସରିବ ବଡ଼ପଣ ।
ଆହୁରି କଥା ଏକ କହଇ ମୁଁ ତୋତେ
ମୋତେ ଅନ୍ୟ ପୁରୁଷ ନ ଛୁଏଁ କଦାଚିତେ ।
ମାରୁତି ବୋଇଲା ଆଣିଲା ରାବଣ
ନ ଛୁଇଁଲା ଅଇଲ କେମନ୍ତେ ଏ ସ୍ଥାନ ।
ଜାନକୀ ବୋଇଲେ ହୋଇଲୁ କିରେ ବାଇ
ରାବଣ ଛାର କି ମୋତେ ପାରେ ଛୁଇଁ ।
ଦାବାନଳ ଅଗ୍ନି ଯେ ଅଟଇ ମୋର ରୂପ
ଅଗ୍ନିରେ ସ୍ୱାହାନ ମୁଁ କରଇ ନିଷ୍ପାପ ।
ତାହାକୁ ମାରିବା ପାଇଁ ଅଟେ ମୁଁ ଅଗ୍ନିଦେହୀ
ଦେବଙ୍କର ନିମନ୍ତେ ଗଞ୍ଜଣା ଭୋଗଇ ।
ଅଗ୍ନିରୂପ ନ ହେଲେ ଦେବଙ୍କର ଶାନ୍ତି ନୁହେଁ
ଶ୍ରୀରାମଙ୍କ ଅଙ୍ଗ ସଙ୍ଗେ ଶୀତଳ ରୂପ ହୁଏ ।
ଶୁଣି କରି ମାରୁତି ପରମ ତୋଷ ହେଲା
ପ୍ରକାଶ ରୂପ ଗୋଟି ଗୁପତ ପୁଣି କଲା ।
ଶିଶୁ ମର୍କଟ ରୂପ ଧରେ ହନୁମନ୍ତ
ସେତେବେଳେ ଅସୁରୀ ଦେଖିଲେ ମର୍କଟ ତ ।
ତ୍ରିଜଟା ଅସୁରୀମାନେ ଆସି କହି
ହନୁର ସଙ୍ଗେ କିସ ଭାଳଇ ବଇଦେହୀ ।
ତ୍ରିଜଟା ବୋଇଲେ ତୁମ୍ଭେ ନ ଯାଅ ତାର ପାଶ
ମର୍କଟ ଜୀବ ସିନା ନୁହଇ ମନୁଷ୍ୟ ।
ମନୁଷ୍ୟ ସଙ୍ଗରେ କପି କି କଥା ହୁଅଇ
ଆହାର ନିମନ୍ତେ ଆସିଅଛି ସେହି ।
ଶୁଣିଣ ଅସୁରୀମାନେ ରହିଲେ ନିବର୍ତ୍ତି
ହନୁ ସଙ୍ଗେ କଥା ହୁଏ ଜନକ ଦୁହିତୀ ।
ଶୁଣରେ ହନୁମନ୍ତ ମୋହର ବଚନ
ପାପକୁ ଡରି ଯେ ଶାପ ନ ଦେଲି ଜାଣ ।
ପୁରୁଷ ହତ୍ୟା କଲେ ସ୍ତିରୀ ଯାନ୍ତି ନାଶ
ସେଥିସକାଶେ ନାଶ ନ କଲି ଦଶାଈଶ ।
ତୁ ହୋ ହନୁମନ୍ତ ନ ପାରୁ ମୋତେ ନେଇ
ମୁହିଁ ଗଲେ ଦୈତ୍ୟ ନ ମରିବେ କେହି ।
ଆବର କଥାଏ କହରେ ହନୁମନ୍ତ
ସିନ୍ଧୁ ଡେଇଁ କେମନ୍ତେ ଆସିବେ ରଘୁନାଥ ।
ଅନେକ ଅଛ ତୁମ୍ଭେ ଭାଲୁ ଯେ ବାନର
କେବଣ ଉପାୟରେ ତରିବ ସାଗର ।
ଶୁଣି କରି ହନୁମନ୍ତ କରଯୋଡ଼ି କହି
ତ୍ରୈଲୋକ୍ୟରେ କପିକୁ ସମସରି ନାହିଁ ।
ମେରୁ ସମାନରେ ମୁଁ କାୟା ବଢ଼ାଇବି
ସକଳ ସୈନ୍ୟବଳ ଲଙ୍କାକୁ ଆଣିବି ।
ରାମ ଲକ୍ଷ୍ମଣ ବେନି ଆସିବେ ଯେ ଏଥି
ଏକଥାମାନ ମିଛ କହିଲେ ସୀତା ସତୀ ।
ଚତୁରିଯୁଣ ବଢ଼ି ପାରଇ ତୋ କାୟା
ଗରୁଡ଼ ଅଧିକ ତ ନୁହଇ ଯେ ତାହା ।
ବିନତାର ସୁତ ଯେ ଅଟେ ଖଗେଶ୍ୱର
କୌଣସି ଦିନେ ସିନ୍ଧୁରେ ନୁହେ ତାର ବଳ ।
ହନୁ ବୋଇଲା ଯେବେ ଏ କଥାଟି ମିଥ୍ୟା
ପର୍ବତେ ସିନ୍ଧୁକୁ ପୋତିବୁଁ ଗୋ ମାତା ।
ଜାନକୀ ବୋଇଲେ ଏ କଥା ହିଁ ମୂଳ
ପର୍ବତେ ପୋତି ପାର ସମୁଦ୍ର ମହାଜଳ ।
ଏତେ କହି ମୈଥିଳୀ ସନ୍ତୋଷ ହୋଇଲେ
ରାବଣ ନାଶଯିବ ମନରେ ବିଚାରିଲେ ।
ଯେମନ୍ତେ ପାରିବ ବାବୁ ଆସରେ ପାର ହୋଇ
ବେନି ମାସକୁ ରାବଣ କଣ୍ଟ ଅଛି ଦେଇ ।
ରାମ ନ ଆସିଲେ କଣ୍ଠେ ମାରିବି ମୁହିଁ ଦୈତ୍ୟ
ନ ଯିବି ରାମ ପାଶେ ବୈକୁଣ୍ଠ ଯିବି ମୁଁ ତ ।
ଶୁଣିଣ ହନୁମନ୍ତ ଯୋଡ଼ି ବେନି କର
ଦିଅ ମା ସଙ୍କେତ ମୋତେ ବିଳମ୍ବ ନ କର ।
ଯେଉଁ କଥା କହିଲେ ଶ୍ରୀରାମ ପ୍ରତେ ଯିବେ
ଦେଖିଲେ ଶୁଣିଲେ ମୋତେ ସନ୍ତୋଷ ହୋଇବେ ।
ସେ କଥା କହି ସଙ୍କେତ ଦିଅ କମଳିନୀ
ଜନକ ନନ୍ଦିନୀ ହର୍ଷ ହେଲେ ଶୁଣି ।
ସନ୍ତୋଷେ ମସ୍ତକୁ କାଢ଼ିଲେ ମଥାମଣି
ହନୁମନ୍ତ ହସ୍ତରେ ସମର୍ପିରାମ ରାଣୀ ।
କହିଲେ ମୋ ଶ୍ୱଶୁର ଦେଖିବାର ବେଳେ
ଏ ରତ୍ନଗୋଟିକ ଲଗାଇଲେ ମୋ କପୋଳେ ।
ଏ ମଣି ଗୋଟିକ ଶ୍ରୀରାମଙ୍କ ହସ୍ତେ ଦେବୁ
ଯେମନ୍ତେ ବେଗେ ଆସିବେ ତେମନ୍ତେ କହିବୁ ।
ଶ୍ରୀରାମଙ୍କ ମୁଦ୍ରିକାକୁ ସତୀ ଲଗାଇଲେ
ଆପଣାର ଅଙ୍ଗୁଷ୍ଠିରେ ନେଇଣ ରଖିଲେ ।
ହନୁମନ୍ତ କରେ ମଥାମଣି ସମର୍ପିଲେ
ମାରୁତି ବଜ୍ର କାଛାରେ ବାନ୍ଧିଣ ରଖିଲେ ।
ଶୁଣି ଜାନକୀଙ୍କୁ କହିଲା ହନୁମନ୍ତ
ଗୁପତ କଥା କହ ମୋହର ଅଗ୍ରତ ।

ସୀତୟା ବୋଇଲେ ଶୁଣରେ ମାରୁତି
ବିଭା ଦିନର କଥା କହିବି ଗୁପତଟି ।
କୁଳ ଦୀପ ଛୁଇଁ ରାମ ନିୟମ ଯେ କଲେ
ତୋର ବିନୁଁ ଅନ୍ୟ ନାରୀ ନ ଲଭିବି ଭଲେ ।
ତୋର ବିନୁଁ ଅନ୍ୟ ନାରୀକୁ ବିଭା ନ ହେବି ପୁଣ
ଏ ନିୟମ ମୋର ଯେ ଅଟଇ ପ୍ରମାଣ ।
ତାଙ୍କଠାରୁ ଶୁଣି ମୁଁ ଛୁଇଁଲି କୁଳଦୀପ
ତୁମ୍ଭର ଆଗରେ ମୁଁ କହୁଅଛି ସତ୍ୟ ।
ତୁମ୍ଭ ବିନେ ଅନ୍ୟ ପୁରୁଷ ନ ଛୁଅଁଇ
ଏହି କଥାକୁ ମୋର ପ୍ରଦୀପ ସାକ୍ଷୀ ହୋଇ ।
ବଳତ୍କାର ଦେଖିଲେ ମୁଁ ପଶିବି ଅଗ୍ନିରେ
ପ୍ରମାଣ କଲି ମୁଁ ଯେ ଏକଥା ଆନ ନ କରେ ।
ଏକଥା ଗୁପତ ନ ଜାଣେ କେହି ପୁଣ
କହିଲେ ସମ୍ପତେ ଯିବେ ରାମ ରାଣ ।
ଆହୁରି କଥାଏ ଶୁଣରେ ହନୁମାନ
ମଧୁଶଯ୍ୟା କାଳ କଥା କହିଲି ଏ ଜାଣ ।
କିଛିଦିନେ ନବଯୌବନ ମୋର ଯିବ
ସେତେବେଳେ ଶରଧା ମୋଠାରୁ ସରିବ ।
ସେତେବେଳେ ଶ୍ରୀରାମ ନ ମୂଛିବେ ମୋତେ
ଏହି କଥାମାନ ଯେ ଜଣାଅ ଅଗ୍ରତେ ।
ଶୁଣି କରି ଶ୍ରୀରାମ ହସିଣ କହିଲେ
ସବୁଦିନେ ସ୍ୱରୂପ ଥାଉ ଯେ ବୋଇଲେ ।
ନବଯୁବା ରୂପ ତୋର ମୋତେ ମୋହୁଥିବ
ମୋର ଯୁବା ରୂପ ଯେ ନିଉନ ନୋହିବ ।
ଏହି କଥା ଗୁପତ କହିବୁ ମାରୁତି
ତେବେ ପ୍ରତେ ଯିବେଟି ରଘୁକୁଳ ପତି ।
ଗୁପତ ବେନି କଥା ଶୁଣିଲା ମାରୁତି
ରାମ ପାଶକୁ ଯିବାକୁ ଉଛନ୍ନ କଲା ମତି ।
ଦଇନୀ କରିଣ ସେ ମାଗଇ ମେଲାଣି
ବୋଇଲା ଆଜ୍ଞା ଦିଅ ଯିବି ରାମରାଣୀ ।
ଜାନକୀ ବୋଇଲେ ହନୁ ଯାଅ ବେଗ ହୋଇ
ବାର୍ତ୍ତା କହି ସ୍ୱାମୀଙ୍କୁ ଘେନି ଆସ ଯାଇ ।
ଶୁଣିଣ ହନୁମନ୍ତ ସୀତାଙ୍କୁ ଓଳଗିଲା
ଭୋ ମାତ ଯାଉଛି ମୁଁ ବୋଲିଣ ବୋଇଲା ।
ଜାନକୀ ବୋଇଲେ ତୋତେ ହେଉ ସୁକଲ୍ୟାଣ
ବେନି ମାସ ଭିତରେ ଲଙ୍କାକୁ ଆସ ପୁଣ ।
ନୋହିଲେ ରାବଣ ମୋତେ ପ୍ରବଳ କରିବ
ଲଙ୍କା ଭସ୍ମେ ଯିବ ତ ତୁମ୍ଭେ କି କରିବ ।
ହନୁ ବୋଇଲା ମାଗୋ କିଛି ହିଁ ନ ଭାଳ
ନିକଟ ହୋଇଲା ଆସି ତୁମ୍ଭର ପୁଣ୍ୟବଳ ।
ଅନ୍ଧାର ଯାଇ ଉଦେ ହୋଇଲା ତପତି
ଅଳ୍ପ ଦିନେ ତୁମ୍ଭର ତୁଟିବ ଦୁର୍ଗତି ।
ଏଠାରୁ ଗଲେ ମୁହିଁ ଦିନ ଗଣୁଥିବ
ମାସକରେ ବିଜୟ କରିବେ ରାଘବ ।
ପକ୍ଷକରେ ଏଠାରୁ ବିଭୀଷଣ ଯିବ
ଶ୍ରୀରାମ ଚରଣେ ଶରଣ ପଶିବ ।
ଲଙ୍କାଗଡ଼ରେ ରାଜା ହୋଇବ ବିଭୀଷଣ
ତାର ମୁଣ୍ଡେ ଶାଢ଼ୀ ବାନ୍ଧିବେ ରାମରାଣ ।
ସୁବଳ ଗିରିରେ ଆସି ବାନ୍ଧିବେ ରାମଠଣା
ରାବଣ ବଂଶ ମାରିବେ କରିବେ ଗଛହଣା ।
ଦୈତ୍ୟବଳ ମାରି ତୋତେ ଘେନିଯିବେ ଜାଣ
ବାନର ଭାଲୁ ଲଙ୍କା ବିଧ୍ୱଂସିବେ ପୁଣ ।
ଜାନକୀ ବୋଇଲେ ତୋହର ସମାନ
କେତେ କପି ଅଛନ୍ତି କହ ତା ପରିମାଣ ।
କରଯୋଡ଼ି କହଇ ପବନ କୁମର
ଅଠର ପଦ୍ମ ଯେ ଲାଙ୍ଗୁଡ଼ା କପିବୀର ।
ଦଧିମୁଖା ବାନର ଷୋହଳ ସାଗର
ସିଂହ ଲାଞ୍ଜା ଅଛନ୍ତି ସତର ସାଗର ।
କାଳୀମୁଖା ଅଛନ୍ତି ବାଇଶି ସାଗର
ବାର ସାଗର ମର୍କତ ମୁଖା ଯେ ବାନର ।
ବସନ୍ତ ମୁଖୀ ବାନର ଚବିଶି ସାଗର
କଳାମୁଖା କପି ଛନ୍ତି ତେଇଶି ସାଗର ।
ରକ୍ତମୁଖା ବାନର ତେର ସାଗର ହୋଇ
ତିରିଶି ସାଗର ଯେ ଅଛନ୍ତି ଭାଲୁ ତହିଁ ।
ଏକଥାକୁ ମାତ ଗୋ ତୁମ୍ଭେ ହେତୁ କର
ଯୁଝିବାକୁ ଅଛନ୍ତି ନଉ ଯେ ସାଗର ।
ଲକ୍ଷଯୁଣ ଜମ୍ବୁଦୀପ ହୋଇଛନ୍ତି ଛାଇ
ମୋହର ସମାନେ ଲକ୍ଷ ପଚିଶ ବଡ଼ ଥାଇ ।
ଦକ୍ଷିଣ ସିନ୍ଧୁ ତଟରୁ ମେରୁକ୍ରୋଟ ଯାଏଁ
ଗିରି କନ୍ଦର ସବୁ ବାନର ଭାଲୁ ମଏ ।
ଏକ ଏକ ବାନରଙ୍କର କୋଟି ସିଂହବଳ
ସବୁଠାରୁ ସାନ ମୁଁ ଅଟଇ ଦୁର୍ବଳ ।
ପରକୁ ନିନ୍ଦା ମୁଁ ଯେ କରିବି କେମନ୍ତେ
ଆପଣାର ବଡ଼ାଇକି କହିଚି ତୋ ଅଗ୍ରତେ ।
ତୁମ୍ଭେ କିମ୍ପା ଜନନୀ ଗୋ ହେଉଛ ବିମନ
ମାସକ କଷ୍ଟରେ ମୁଁ ଆଣିବି ରଘୁନାନ ।
ଏତେ ବୋଲି ହନୁ ଯେ ନମସ୍କାର କଲା
କଥାଏ କହିବି ମାତ ଚରଣେ ଓଳଗିଲା ।
ହନୁମନ୍ତ ବୋଇଲା ଶୁଣ ଗୋ ଜନନୀ
ଗଲା ରାତ୍ରେ ରାବଣକୁ କହିଲ ଯାହା ପୁଣି ।

ସେକଥା ଆଜଦିନ ହୋଇବଟି କି ଜାଣ
ନୋହିଲେ ତ ତୋର କଥ ମିଛ ହେବ ପୁଣ ।
ଜାନକୀ ବୋଇଲେ ମୁଁ କ୍ରୋଧରେ ଦେଲି କହି
ସେକଥା ଅବଶ୍ୟ ଦେବ କରିବେ ତହିଁ ।
ହନୁମନ୍ତ ବୋଇଲା ଆଜ କରିବି ମୁଁ ଗୋଳ
କେତେ ବଳ ଅଛି କଳିବି ତାହାର ।
ଅସୁର ଛଳ ମୁଁ ଯେ କଳି ଏଥୁଁ ଯିବି
ଶ୍ରୀରାମଙ୍କ ଆଗରେ ବାରତା କହିବି ।
ଏତେ ବୋଲି ମାରୁତି ବଚନ କହିଲା
ଗଲାବେଳେ ମେଲାଣି ହୋଇବି ବୋଇଲା ।
ଶତେ ଯୁଣ ସିନ୍ଧୁ ତରି ଅଇଲି ମୁଁ ଏଥୁ
ତୁମ୍ଭଙ୍କ ଦେଖିଣ ହୋଇଲି ପୁରୁଷାର୍ଥୀ ।
ଦୈତ୍ୟଙ୍କର ସଙ୍ଗରେ ପ୍ରୀତି ମୋର ନାହିଁ
ଶତ୍ରୁଙ୍କୁ ଡରି କିମ୍ପା ଯିବି ତୁନି ହୋଇ ।
ଯୁଦ୍ଧ ସିନା ମୂଳ ଏହାଙ୍କର ତୁଲେ
ଥୋକାଏ ଅସୁର ମୁଁ ମାରିବି ଭୁଜବଳେ ।
ଆଜଠାରୁ ଆରମ୍ଭ ହେଉ ଦ୍ୱନ୍ଦ୍ୱ ଉତ୍ପାତ
ଥୋକାଏ ମାରିବି ଦୁଷ୍ଟ ମହାଦୈତ୍ୟ ।
ଶ୍ରୀରାମ ଘରଣୀକି ଏ ଆଣିଲା ଚୋରାଇ
ଏ ନଗ୍ର ପୋଡ଼ିବି ମୁଁ ଥୋକାଏ ମାରିଦେଇ ।
ନିର୍ଭୟ ହୋଇଣ ଅଛନ୍ତି ଅସୁର
ଆଜିଠାରୁ ଉଚ୍ଚାଟ ହୁଅନ୍ତୁ ନିଶାଚର ।
ଏମନ୍ତ ବଚନେ କହିଲା ମାରୁତି
ଜାନକୀଙ୍କ ଚରଣ ତଳେ ଯାଇ ଲୋଟି ।
ବୈଦେହୀ କହିଲେ ତୁ କହିଲୁ ଯେଉଁ କଥା
ଏକାରେ ତୁ ଯୁଦ୍ଧକୁ ହେବୁ କି ସାମରଥା ।
ଆଶ୍ରା ବିଶ୍ରାମ ଶାଖା ତୋର କେହି ନାହିଁ
କେମନ୍ତ ଯୁଦ୍ଧ କରିବୁ ଏ ସ୍ଥାନରେ ରହି ।
ହନୁମନ୍ତ ବୋଇଲା ମୋତେ ଅଛନ୍ତି ସାହା ଜାଣ
ଶ୍ରୀରାମ ଲକ୍ଷ୍ମଣ ସୀତା ସାହା ତିନିଜଣ ।
ଶୁଣିଣ ଜାନକୀ ପରମ ତୋଷ ହେଲେ
ପାରିବୁ ଯେବେ ବାବୁରେ ରଣ କର ଭଲେ ।
ହନୁ ବୋଲେ ମାତ ମୋତେ କ୍ଷୁଧା ଯେ କରଇ
ତୁମ୍ଭର ଆଜ୍ଞାରେ ମୁଁ ଯାନ୍ତି ଫଳ ଖାଇ ।
ଜାନକୀ ବୋଇଲେ ଦେଖ ଆଗରେ ମଧୁବନ
ଫଳମୂଳ ସେ ବନରୁ କର ତୁ ଭୋଜନ ।
ବୃକ୍ଷ ନ ଭାଙ୍ଗିବୁ କରିବୁ ଫଳ ଗ୍ରାସ
ଅତି ଯତ୍ନେ ପାଳି ଅଛି ବିଶ୍ରବାର ଶିଷ୍ୟ ।
ମୁହିଁ ତେରମାସ ହେଲା ନ କରେ ଭୋଜନ
ସବୁ ତ ତୋତେ ଦିଶଇ ପବନ ନନ୍ଦନ ।

ଲଙ୍କାରେ ଦଶାନନ ପାଳିଛି ଯତନ
ପବନର ପ୍ରଭା ଯେ ନ ଲାଗେ ସେହି ବନ ।
ଦଧିବାମନ ସୁମରି ଯାଅରେ ହନୁମନ୍ତ
ଗଲାବେଳେ କହି ଯିବୁ ରଖିଥାଅ ଚିତ୍ତ ।
ଶୁଣି କରି ପାବନୀ ମଥାରେ ହସ୍ତ ଦେଲା
ଏ ମଧୁବନ ଆଜି ଭାଙ୍ଗିବି ଭାବିଲା ।
ସୀତାଙ୍କୁ ଓଳଗି ହନୁ ବେଗେ ଚଳିଗଲା
ଅଶୋକବନ ତୋଟାରେ ପ୍ରବେଶ ହୋଇଲା ।
ଫଳିଲା ଫୁଟିଲା ବୃକ୍ଷମାନ ଉପାଡ଼ଇ
କେବଳ ବୃକ୍ଷଫଳ ତୁଣ୍ଡରେ ଭରଇ ।
ମାଡ଼ ମାଡ଼ ଶବଦ ଶୁଭଇ ଘୋର ଧ୍ୱନି
ଅଣଚାଶ ପବନ କି ବହଇ ମେଦିନୀ ।
ଜାମ୍ବୁ ଜମ୍ଭିଲ ଯେ ଟଭା କଦଳୀ ନଟୀକାଳ
ଟଭାଲେମ୍ବୁ ନାରଙ୍ଗ କମଳା ପକ୍ୱ ଫଳ ।
ଦାରାକ୍ଷ କଇଁଥ ଆମ୍ବ କେନ୍ଦୁ କରମଙ୍ଗା
ଯେଉଁଠ ତାଳ ଖଜୁରୀ ଉଆଉ ଅଲଗା ।
ଛାରଖାର କରିଣ ଭାଙ୍ଗଇ ବୃକ୍ଷମାନ
କ୍ରୋଧରେ ଉପାଡ଼ଇ ପବନ ନନ୍ଦନ ।
କେବଳ ତରୁମାନେ ପାଦ ଲାଗି ଭାଗି
କାହାକୁ ଉପାଡ଼ିଣ ଶୂନ୍ୟରେ ଦିଏ ଫିଙ୍ଗି ।
କେବଣ ବୃକ୍ଷ ଉପରେ ଆରେକ ବୃକ୍ଷପିଟି
ସେ ବୃକ୍ଷର ଦାଉରେ ଆରେକ ବୃକ୍ଷଲୋଟି ।
କେବଳ ବୃକ୍ଷ ଗୋଟି ଉପାଡ଼ି ପିଟଇଟି
କେବଣ ବୃକ୍ଷମାନେ ତଳରେ ଧୂଳି ହୋନ୍ତି ।
ସ୍ୱାଦ ଫଳମାନ ଯେବଣ ତରୁବର
ଉପାଡ଼ିଣ ସେ ଫଳକୁ ଝଡ଼ଇ ତୁଣ୍ଡର ।
ପଦ୍ମବନରେ ଯେହ୍ନେ ମତ୍ତନାଗ ପଶି
ପବନ ଯେହ୍ନେ ଭାଙ୍ଗଇ ରମ୍ଭାବନଟିକି ।
ଅଶୋକ ବନକୁ ଯେ ଭାଙ୍ଗଇ ହନୁମାନ
ଶୁଖିଲା ତରୁ ଯେହ୍ନେ ହୁଅଇ ଦହନ ।
ତେସନେ ଅଶୋକ ବନ କଲା ଛାରଖାର
ଜାନକୀ ବିଶ୍ରାମ ସ୍ଥାନ ଛାଡ଼ିଲା କେବଳ ।
ତହୁଁ କେତେଦୂରେ ଦିଶେ ମଧୁବନ ତୋଟା
ତହିଁରେ ମିଳିଲା ଯାଇ ପବନର ବେଟା ।
ଉପ୍ରୋଧ ଛାଡ଼ିଣ ବନ କଲା ଚୂର
ଫଳିଲା ପାଚିଲା ବୃକ୍ଷ ଝାଡ଼ଇ ତୁଣ୍ଡର ।
ମଡ଼ ମଡ଼ ଶବଦ ଶୁଭଇ ଘନ ଘନ
ତୋଟା ବିନାଶ କରେ ପବନ ନନ୍ଦନ ।
ବୃକ୍ଷ ବିନାଶି ହନୁ ହୋଇଲା ବାହାର
ଦେଖିଲା ବିଚିତ୍ର ପୁର ତୋଟାର ଭିତର ।

ସୁବର୍ଣ୍ଣର ଦ୍ରୋଣାଖମ୍ଭ ବେନିପାଶେ ପୋତି
ସେଥି ଯାଇ ବସିଲା ପବନ ସନ୍ତତି ।
ଗେଲ କରି ଯାଇ ଦ୍ରୋଣାଖମ୍ଭ ପରେ ଉଠି
ଆକ୍ଷି ମରଦିଣ ଚାହାଁଇ ମିଟି ମିଟି ।
ପାଦରେ ଓଲାଟି ଯେହ୍ନେ ହୁଅନ୍ତି ବାଦୁଡ଼ି
ସେହି ପ୍ରକାରେ ହନୁ ଦ୍ରୋଣାପରେ ଖେଳି ।
ସେଠାରୁ ଉଠି ବୀର କ୍ଷେପଇ ଗଗନ
କୁସୁମତରୁ ବନ ଭାଙ୍ଗଇ ହନୁମାନ ।
ଏକ ବୃକ୍ଷ ଉପରେ ଆରେକ ବୃକ୍ଷପିଟି
ମଡ଼ ମଡ଼ ଶବଦେ ତୋଟାଳିଆମାନେ ଉଠି ।
ବାରଯୂଣ ଆୟତନ ତୋଟାର ପ୍ରମାଣ
ବିଶ୍ୱମୂର୍ତ୍ତି ହୋଇଣ ଭାଙ୍ଗଇ ହନୁମାନ ।
ଶବଦ ଶୁଣିଣ ତୋଟାଳିଆମାନେ ଉଠି
ଯେ ଯାହା ଅସ୍ତ୍ର ଶସ୍ତ୍ର କରେ ଧଇଲେଟି ।
କୋଡ଼ି କୋଦାଳ ଚକ୍ର ଶାବେଳୀ କରବାଳ
ତୋଳିଣ ନିଶାଚର ହୋଇଲେ ମତୁଆଳ ।
ଦେଖିଲେ ମଧୁବନ ହୋଇଛି ନିପାତ
ଚଉଦ ସହସ୍ର ଦୈତ୍ୟ ହୋଇଲେ ଯେ ଭୀତ ।
ବୃକ୍ଷମାନଙ୍କୁ ଚାହିଁଣ ବୋଲନ୍ତି ତୋଟାଳେ
ଅନାଥ ହେଲେ ତରୁ କିମ୍ପା ଏତେକାଳେ ।
ପୁଣି ଚାହିଁ ଦେଖିଲେ ଅଶୋକ ବନ ହତ
କେବଣ ପାପିଷ୍ଠ ଯେ କଲା ଏଡ଼େ କୃତ୍ୟ ।
ପବନ ଦେବତା ତପନ ନ ପଶଇ
କେ ଏହା ଭାଙ୍ଗିଲା ଯେ ନ ଦେଖିଲେ କେହି ।
ବୃକ୍ଷଙ୍କୁ ପାଳି ଆମ୍ଭେ ବରତନ ପାଇ
ଏବେ ନିଶ୍ଚେ ଜୀବନ ନେବ ବିଂଶବାହୁ ।
ସମସ୍ତ ଏକମେଳ ହୋଇଣ ଭାବନ୍ତି
କି ବୋଲି ବୋଲିବା ଯେ ରାବଣ ଲଙ୍କପତି ।
କେ ବୋଲଇ ଏତେକାଳେ ହେଲା ବିପରୀତ
ବୃଥାରେ ବୃକ୍ଷମାନେ ହୋଇଲେ ଏବେ ହତ ।
ଯେବଣ ବନ ଅଟେ ନନ୍ଦନବନ ସମ
ଅନ୍ୟ ପଟାନ୍ତର କି ଦେବା ଉପାମ ।
ଚଉଦ ଭୁବନରେ ଯେତେ ସାର ଦ୍ରବ୍ୟ
ଶ୍ରଦ୍ଧା କରି ଏଥିରେ ରୋପିଲା ଦଶଗ୍ରୀବ ।
କେବଣ ମହାତମା ଭାଙ୍ଗିଲା ଏଥି ପଶି
ଏତେ ବୋଲି ତୋଟାଳିଆ ତୋଟାରେ ଯାଇ ପଶି ।
ଆମ୍ବ ପଣସ ସଙ୍ଗରେ କଦଳୀ ନଡ଼ିକାଳ
ଅନାଥ ହୋଇଣ ତରୁ ଲୋଟନ୍ତି ମାଳ ମାଳ ।
ଭଲ ଭଲ ତରୁମାନେ ଲୋଟିଛନ୍ତି ତଳେ
ସେ ବୃକ୍ଷମାନେ ପଡ଼ି ଲୋଟନ୍ତି ଭୂତଳେ ।

ନାଗେଶ୍ୱର ଅର୍ଜ୍ଜଳା ପୁନାଗ ମାଳତୀ
ଏମାନେ ଭାଙ୍ଗି ପଡ଼ିଅଛନ୍ତି ଧରିତ୍ରୀ ।
ସେବତୀ ମରୁଆ ଯେ କଞ୍ଚଣ କଇଁଥ
ଛୁରୀଅନା କେତକୀ ଦୟଣା ସମ୍ଭୁତ ।
ଜାଇ ଜୁଇ ମଲ୍ଲୀ ଉତ୍ପଳ କନିଅର
କରବୀର ଅନୁପମ ବନ୍ଧୂକ କନ୍ଦମୂଳ ।
ପାଟଳୀ ମନ୍ଦାର ଯେ ଶିମୁଳି ନାନାଗନ୍ଧ
ଏମନ୍ତ ପ୍ରକାରେ ଫୁଲମାନଙ୍କ ଆମୋଦ ।
ଇନ୍ଦ୍ରର ଭୁବନରୁ ବ୍ରହ୍ମା ପୁରୁଆଣି
ଅନେକ ଯତନରେ ରୂପିଲା ବିଂଶପାଣି ।
ବୃକ୍ଷଙ୍କର ମୂଳରେ ସୁବର୍ଣ୍ଣର ବେଦୀ
ତହିଁରେ କର୍ପୂର ଯେ ଖତ କରି ମେଦି ।
କନିୟର ପାଣି ଯେ ପକାଉଥାଏ ନିତି
ଆଠଦିନରେ ଥରେ ଦେଖଇ ଲଙ୍କପତି ।
ଶୁଣିଲେ କି ବୋଲିବେ ଲଙ୍କାପୁର ରାୟେ
କେବଣ ଚରିତ୍ର ଏ ଜଣାତ ନ ଯାଏ ।
ପବନ ନ ବହେ ଯେ ଅକାରଣେ ଭାଙ୍ଗି
ଶୁଣିଣ ହନୁମନ୍ତ ଉଠେ ଗଜଗାଜି ।
ଘଡ଼ ଘଡ଼ି ପ୍ରାୟେକ ଶୁଭିଲା ଶବଦ
ଶୁଣି କରି ତୋଟାଳିଆ ହୋଇଲେ ସ୍ତବଦ ।
ଦେଖିଲେ ଦ୍ରୋଣାଖମ୍ଭ ଉପରେ ଏକ କପି
ଦିତି ଆଦିତ୍ୟ ଜିଣି ଦିଶଇ ତାର ଜ୍ୟୋତି ।
ମୁକୁଟ କୁଣ୍ଡଳ ଯେ ହୃଦରେ ଦିବ୍ୟହାର
ରତ୍ନମଣି ବିରାଜଇ କପିର ହୃଦର ।
ଆଖି ମିଟିମିଟି କରି କରେ ସେ ଚାହାଣୀ
ଖୁଁ ଖୁଁ ଖାସଇ ଯେ ଧୀର ଧୀର ପୁଣି ।
ଦେଖିଣ ତାହାଙ୍କୁ ବୋଲନ୍ତି ତୋଟାଳିଆ
ଏହି ତ ଭାଙ୍ଗିଛି ବନ ତରୁ ରିପୁ ପ୍ରିୟା ।
ଜାଣିଣ ଏକ ରୁଣ୍ଡ ହୋଇଲେ ସକଳ
ଚଉଦ ସସ୍ର ବାଉରୀ ତୋଟା ରଖୁଆଳ ।
ଚଉଦ ସହସ୍ର ଘର ସେ ତୋଟାରେ ଜାଣ
ବେନି ତୋଟା ରକ୍ଷା କରନ୍ତି ସେ ପୁଣ ।
ମାରୁତିକି ଦେଖିଣ ସମସ୍ତେ ଶସ୍ତ୍ରଧରି
କୋଦାଳ କୁରାଢ଼ୀ କୋଡ଼ି ଶାବଳ ସେ ଧରି ।
କେହୁ ଘେନି ଅଛି ବିକ୍ରମ କରବାଳ
କେହୁ କୁନ୍ତ ଚକ୍ର ଘେନିଣ କରେ ଗୋଳ ।
ଶାବେଳୀ ଯୁଆଡ଼ କମାଣ ତୀକ୍ଷଣ ଶର
ମାରୁତି ଉପରକୁ ବିନ୍ଧିଲେ ନିଶାଚର ।
ଦେଖିଣ ହନୁମନ୍ତ ଲାଞ୍ଜ ବଢ଼ାଇଲା
ଚଉଦ ସସ୍ରଙ୍କୁ ବାନ୍ଧି ପକାଇଲା ।

ବିକ୍ରମ ମୂର୍ତ୍ତି ଧରିଣ ବୁଲାଇ କଚାଡ଼ିଲା
ବୃକ୍ଷରେ ପିଟିବାରୁ ସମସ୍ତେ ମଲେ ଭଲା ।
ମରିଣ ତୋଟାଳିଆ ଗଡ଼ିଲେ ଭୂମିରେ
ବିକ୍ରମ ମୂର୍ତ୍ତି ଧରି ମାରୁତି ଗମେ ଖରେ ।
ଥୋକାଏ ମରିଣ ପଡ଼ିଲେ ଭୂତଳେ
ଥୋକେ ଖସି ପଳାଇଲେ ଜୀବନ ବିକଳେ ।
ଯେଉଁମାନେ ଜୀବନ ଘେନି ପଳାଇଲେ
ରାଜାର ଛାମୁରେ ଶୀଘ୍ର ଯାଇ ଜଣାଇଲେ ।
ପାର୍ବତୀଙ୍କ ଆଗରେ କହନ୍ତି ସଦାଶିବ;
ଶୁଣି କରି ପାର୍ବତୀ ବୋଲନ୍ତି ଭୋ ଦେବ ।
ମାରୁତି ଜାନକୀଙ୍କ ସଙ୍ଗେ କଥା ହେଲା
ଗୁପତ କଥା କହି ରାମଙ୍କ ମୁଦି ଦେଲା ।
ମଥାମଣି ଦେଲେ ସୀତୟା ଗୁପ୍ତ କହି
ସେଠାରୁ ହନୁମନ୍ତ ବନକୁ ଯେ ଯାଇ ।
ତହୁଁ ଅସୁରୀଙ୍କ ସଙ୍ଗେ ସୀତାଙ୍କର କଥା
କଅଣ ହୋଇଲା ତାହା କହ ପଞ୍ଚମଥା ।
ଈଶ୍ୱର ବୋଇଲେ ଶୁଣ ଆଗୋ ଭଗବତୀ
ହନୁମନ୍ତ ସୀତାଙ୍କର ସରିଲା ଭାରତୀ ।
ହନୁମନ୍ତ ଗଲା ଯେ ଜାନକୀ ତହିଁ ରହି
ମନ ହରଷ କରି ଚଳିଲେ ବଇଦେହୀ ।
ଗନ୍ଧକା ନଦୀରେ ପଶି ସ୍ନାନ ସେହୁ କଲେ
ସ୍ନାନ ସାରି ଜାନକୀ ଆନନ୍ଦେ ଆସିଲେ ।
କୂଳରେ ଉଭା ହୁଅନ୍ତେ ଅଇଲେ ଅସୁରୀ
ଆଗରେ ପଛରେ ରହିଲେ ଆବୋରି ।
ମଧ୍ୟରେ ବିଜେ କଲେ ଜନକ ଦୁହିତୀ
ପନବ ଅଗ୍ନିତ୍ରାସ ଅତି ବଳବନ୍ତି ।
ଅଗ୍ନିତ୍ରାସ ବାଜିବାରୁ ଅସୁରୀମାନେ ଫେରି
ଭୟମନରେ ସୀତାଙ୍କ ପଛ ଅନୁସରି ।
ଲୀଳାଗତି କରି ଯଥା ଚଳେ ମତ୍ତହସ୍ତୀ
ତେସନେ ବଇଦେହୀ ଗମନ କରନ୍ତି ।
ବାଟରେ ରସନ୍ତେ ଯେ ଦେଖିଲେ ସମସ୍ତ
ଭୋରାଣୀ ଅଶୋକବନ ହୋଇଅଛି ହତ ।
ଦେଖିଣ ଅସୁରୀମାନେ କଥାବାର୍ତ୍ତା ହେଲେ
ପବନ ନାହିଁ କେମନ୍ତେ ଭାଙ୍ଗିଲା ଭାବିଲେ ।
ସେଠାରୁ ମଧୁବନ ଭିତରେ ପଶିଲେ
ମଡ଼ା କୁଢ଼ କୁଢ଼ ପଡ଼ିଅଛନ୍ତି ଦେଖିଲେ ।
ବିକଳେ ତୋଟାଳିଆ ଘରଣୀ ରଡ଼ିଦ୍ୟନ୍ତି
ଦେଖିଣ ଅସୁରୀଗଣେ ମନେ ବିଚାରନ୍ତି ।
କାହାର ହସ୍ତ ଚରଣ କାହା ଖଞ୍ଜା ଭାଙ୍ଗି
କାହାର ଶିର ଛିଡ଼ି କାହାର ଅଣ୍ଟା ଭାଙ୍ଗି ।
ଦେଖିଣ ରକ୍ଷାସୁଣୀ ସେଠାରୁ ଚଳିଗଲେ
ବୈଡୁର୍ଯ୍ୟ ମଣ୍ଡପରେ ପ୍ରବେଶ ହୋଇଲେ ।
ଓଦାବସ୍ତ୍ର ପାଲଟି ଯେ ଯା ଶାଢ଼ୀ ପିନ୍ଧିଲେ
ଶଉଚବନ୍ତି ହୋଇ ଅସୁରୀ ରହିଲେ ।
ଜାନକୀ ଅମଳାଣ ଶାଢ଼ୀ ପିନ୍ଧି ବସି
ଅଗ୍ନିର ପ୍ରବଳ ଯେ ଶରୀରେ ପ୍ରକାଶି ।
ତ୍ରିଜଟା ଶାଢ଼ୀ ପିନ୍ଧି ଶୌଚବନ୍ତୀ ହେଲେ
ସୀତାଙ୍କ ପାଦତଳେ ଓଳଗ ମେଲାଇଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ତ୍ରିଜଟା ପାଶେ ଆସି ସମସ୍ତ ଅସୁରୀ ।
ଶୁଣ ଗୋ ତ୍ରିଜଟା ବିଭୀଷଣର ସୁତା
ଏଗାର ବର୍ଷ ଚାରିମାସର ଅଟୁ ରାଜସୁତା ।
ଆଗତ ନିଗତ କଥା ଜାଣୁ ତୁ ପ୍ରମାଣ
ଅଶୋକବନ ମଧୁବନ ଭାଙ୍ଗିଲା କି କାରଣ ।
ତୋଟାଳିଆମାନେ କି ରୂପେ ହେଲେ ନାଶ
ପବନ ନାହିଁ ତ କେ କଲା ଭବିଷ୍ୟ ।
ରାଜାର ଉପରକୁ ଶତ୍ରୁ ନ ଆସିଲେ ତ
ଅସୁରମାନରେ ଏଥି ଆଜି ହେଲା ଉତପାତ ।
ମରି ପଡ଼ିଅଛନ୍ତି ଯେ ତୋଟାଳିଆ ଗଣ
ଭୟ ଲାଗୁଛି ଆମ୍ଭଙ୍କୁ ଏ ଦୃଶ୍ୟ ଦେଖିଣ ।
ତ୍ରିଜଟା କହଇ ସୀତାଙ୍କ ମୁଖ ଚାହିଁ
ଆଜିର ସ୍ୱପନେ ଗୋ ଘଟିଲା ମହାମାୟୀ ।
ଜାନକୀ ବୋଇଲେ ତୁ ପ୍ରକାଶ ନ କର
ଜଣାଯିବ ପଛେ ଏଥିରେ କଥା ସାର ।
ତ୍ରିଜଟା ବୋଇଲା ଶୁଣ ତୁମ୍ଭେ ସର୍ବ
କାଲି ରାତ୍ର ଯେତେବେଳେ ଅଇଲା ଦଶଗ୍ରୀବ ।
ସତୀଙ୍କ ବିଡ଼ମ୍ବଣ କହନ୍ତେ କ୍ରୋଧ ହେଲେ
ଆଜିଠାରୁ ତୋ ପୁରଧ୍ୱଂସ ହେଉ ବୋଇଲେ ।
ଲଙ୍କା ପୋଡ଼ିଯାଉ ମରୁ ତୋର ପୁତ୍ର
ହୀନ ସୈନ୍ୟ ତୋଟାଳିଆ ହୁଅନ୍ତୁ ସେ ହତ ।
ଏମନ୍ତ କହିବାରୁ ଉତ୍ପାତ ଆଜ ହେଲା
ମଧୁବନ ଅଶୋକ ବନ ଯେ ଭାଙ୍ଗିଲା ।
କିମ୍ଭୁତ କଥା ଏ ମଲେ ତୋଟାଳିଆ
ବିଧାତା ବାମକଥା ଗୋଚର ନୁହେଁ ତାହା ।
ଦଶାନନର ବୈଦ୍ୟ ଯମ ଅଟେ ଜାଣ
ସେ ଯମ ହରୁଛି ଆସି ତୋଟାଳିଆ ପ୍ରାଣ ।
ଶୁଣିଣ ଅସୁରୀମାନେ ବୋଧ ହୋଇଯାଇ
ଯେ ଯାହାର ଆହାର ଭୋଜନ କଲେ ତହିଁ ।
ଭୁଞ୍ଜିଣ ସମସ୍ତେ ସନ୍ତୋଷ ହୋଇଲେ
ଆଞ୍ଚୋମନ କରିଣ ସୁଖରେ ବସିଲେ ।

ଏଥୁ ଅନନ୍ତରେ ଭଗବତୀ ଶୁଣ
ତ୍ରିଜଟା ବୋଇଲେ ରାକ୍ଷସୀଗଣ ଶୁଣ ।
ତୁମ୍ଭମାନଙ୍କର ଏବେ ସରିଲା ଭୋଜନ
ସାରୀକି ଭୋଜନ ଦିଅଲୋ ବହନ ।
ଗୋରସ ଗୋଳାଇ ଦିଅ ଗୋ ଆହାର
ନିଶବଦ କମ୍ପେ ଯେ ପକ୍ଷୀ ବୀରବର ।
ତ୍ରିଜଟା ବନରେ ଅସୁରୀଏ ଗଲେ
ସୁବର୍ଣ୍ଣ ପିଞ୍ଜରାରେ ଶାରୀକି ଦେଖିଲେ ।
ଶିର ଛିଡ଼ିଣ ଯେ ପଡ଼ିଛି ଶାରୀପକ୍ଷୀ
ହାହାହୋଇ ଅସୁରୀ ହୋଇଲେକ ଦୁଃଖୀ ।
ଶୁଣ ଗୋ ତ୍ରିଜଟା ଏ ସୁବର୍ଣ୍ଣ ପିଞ୍ଜରାରେ
ଶାରୀ ସଙ୍କଟେ ପଡ଼ିଲା କେବଣ ପ୍ରକାରେ ।
ସର୍ପ ଦଂଶିବାକୁ ତ ବାଟ ନାହିଁ ଏଥି
ଶୁଣିଲେ ଆମ୍ଭଙ୍କୁ କି ବୋଲିବ ଲଙ୍କପତି ।
ବିଶ୍ୱାସ କରିଣ ସେ ଏଠାରେ ଛାଡ଼ିଥିଲା
କେବଣ ଉତ୍ପାତ ଏ ସଙ୍କଟ ପଡ଼ିଲା ।
ତ୍ରିଜଟା ବୋଇଲା ପକ୍ଷୀକି ଜାଳିଦିଅ
ଏତେ କହି ଚାହିଁଲା ସୀତାଙ୍କର ମୁହଁ ।
ତ୍ରିଜଟା ହସଇ ବଦନେ ବାସ ଦେଇ
ଜାନକୀ ବୋଇଲେ ହସୁଛି କିମ୍ପାଇଁ ।
ଅବିଶ୍ୱାସୀ ଲୋକକୁ ଧର୍ମ ନାଶ କରେ
କେତେ ଜଞ୍ଜାଳକରନ୍ତା ଥିଲେ ସେ ସେଠାରେ ।
ପ୍ରତ୍ୟକ୍ଷ ଫଳିଲା ହେଲା ତା ମରଣ
ଏସନକ କଥା ହେଲେ ବେନିଜନ ।
ଅସୁରୀଙ୍କି ଚାହିଁଣ ତ୍ରିଜଟା କହଇ
ରାଜାଙ୍କର ଛାମୁରେ ପକ୍ଷୀକି ଦିଅ ନେଇ ।
ତହିଁର ବିଚାର କରନ୍ତୁ ବିଂଶପାଣି
ଏଥୁ ଅନନ୍ତରେ ଏକଇ ରାକ୍ଷସୁଣୀ ।
ସୀତାଙ୍କୁ ଚାହିଁଣ କ୍ରୋଧରେ କହଇ
ଆମ୍ଭର ବଚନ ଶୁଣ ଗୋ ବଇଦେହୀ ।
ତୋର ଯୋଗେ ଏଠାରେ ପ୍ରମାଦ ପଡ଼ିଲା
ଯେଉଁ କପି ତୋର ସଙ୍ଗେ କଥା ହେଉଥିଲା ।
ସେହି ତ ମଧୁବନ ତୋଟାକୁ ନାଶ କଲା
ନାନା ବୃକ୍ଷମାନଙ୍କୁ ଭଙ୍ଗିଣ ପଦା କଲା ।
ଯହିଁରେ ବସନ୍ତ ସର୍ବଦା ବହଇ
ଅନେକ ଯତନ କରେ ଲଙ୍କସାଇଁ ।
ଅପୂର୍ବ ତରୁବର ତୋଟାରେ ଲଗାଏ
ଏଥିରେ ବହୁଧନ ଖର୍ଚ୍ଚ କରେ ରାଏ ।
ଧନ ଭଣ୍ଡାର ପ୍ରାୟେ ଦେଇଥାଏ ଦୃଷ୍ଟି
ପୁତ୍ର ଇନ୍ଦ୍ରଜିତଠାରେ ଯେତିକି ଶ୍ରଦ୍ଧାଟି ।
ତାଠାରୁ ବଳି ଶ୍ରଦ୍ଧା କରଇ ରାଜନ
ପୁତ୍ରରୁ ଅଧିକ ଅଟଇ ଏ ବନ ।
ଅନେକ ତୋଟାଳିଆ ସୁଖରେ ରହିଥାନ୍ତି
ତୋର ଯୋଗେ ଜାନକୀ ଉତପାତ ଏଥି ।
ତୋତେ କିମ୍ପା ଏଥିରେ ରଖିଛି ଲଙ୍କେଶ୍ୱର
କି କଥା କହୁଥିଲୁ ବାନର ଆଗର ।
ସେ ବାନର କିସ କହିଲା ସରାଗେ
ପ୍ରହରେ ପର୍ଯ୍ୟନ୍ତ ବିଚାର ତା ସଙ୍ଗେ ।
ତୋହର ଆଗରେ ସେ କିସ କହିଲା
ତୋର ପାଶୁଁ ଯାଇଣ ତୋଟା ନାଶ କଲା ।
ଆମ୍ଭଙ୍କୁ ନିଶ୍ଚୟ ଘଟିବ ଦୁର୍ଗତି
ରାବଣ ଆଗେ କହିଲେ ତୋତେ ଦେବଶାସ୍ତି ।
ଅସୁରୀ ବଚନେ ତ୍ରିଜଟା ବୋଲନ୍ତି
ଅମ୍ଭେ ତ ଦେଖିନାହୁଁ ଏସନେକ ରୀତି ।
କପି ସଙ୍ଗେ କେତେବେଳେ ଭାଳୁଥିଲେ ସ୍ୱତୀ
ଭରଷି କହୁଛ କେମ୍ନେ ଦୁର୍ଜନ ଭାରତୀ ।
ପରମ ସାଧବୀ ସେ ଶ୍ରୀରାମ ଘରଣୀ
ଦୁଃଖର ବେଳେ କିମ୍ପା କହୁଛ କଟୁବାଣୀ ।
କହ କେଉଁ ଦୋଷେ କହୁଛ ଏପରି
ପ୍ରତ୍ୟକ୍ଷେ ଦେଖିଲୁ ଆମ୍ଭେ କହିଲେ ଅସୁରୀ ।
କପି ସଙ୍ଗେ ଭାଳିଲା ପ୍ରହରେ ପର୍ଯ୍ୟନ୍ତ
ତ୍ରିଜଟା ବୋଇଲେ ତାହା ଧରମ ଜାଣେ ତ ।
ସେ କପି କେମନ୍ତେ ଆମ୍ଭେ ତ ଦେଖି ନାହୁଁ
ଜାନକୀ ବୋଇଲେ ସେ ବାନର ଅଟେ କେହୁ ।
ତାହାକୁ ମୋହର ଦେଖିଲା ତ ନାହିଁ
ଶ୍ରୀରାମ ଲକ୍ଷ୍ମଣ ବିନୁଁ ଆନ ନାହିଁ କେହି ।
ଇଷ୍ଟବନ୍ଧୁ ବାନର ପାଇବି ମୁଁ କାହିଁ
ତୁମ୍ଭ ଦେଶେ ତୁମ୍ଭର ବାନରେ ଛନ୍ତି ରହି ।
ମୋତେ ଅକାରଣେ ଦେଉଅଛ ଦୋଷ
ପୋଡ଼ିଯାଉ ତୁମ୍ଭ ଲଙ୍କା ହୋଇ ଯାଉ ଭସ୍ମ ।
ମୁହିଁ ବନ୍ଦିରେ ଅଛି ମୋତେ ଦୋଷ ଦେଉ
ଚାଣ୍ଡାଳ ରାବଣ ତୋର ମୁଣ୍ଡ ଖାଉ ।
ହୀନ ଲୋକ ହାତରେ ପରାଭବ ପାଉ
ପରର ଯୁବତୀକି ଚୋରୀ କଲା ସେହୁ ।
ଦଇତ୍ୟ ଦୁରାତ୍ମାଙ୍କର ପାପକୁ ନାହିଁ ଭୟ
ତୁମ୍ଭେ ଲୋ ରାକ୍ଷସୁଣୀ ଅଟ ସେହି ପ୍ରାୟ ।
ମୋତେ ଏମନ୍ତ ବଚନ ବୋଲୁଛ ଭରସି
ମୁହିଁ ଦେଶାନ୍ତରୀ ଲୋ ଅଟେ ନି ସାହସୀ ।
ତୁମ୍ଭେମାନେ ଦୋଷ ଦେଉଛ ଲୋ ମୋତେ
ଶତେଯୁଣ ସିନ୍ଧୁ ଡେଇଁ କେ ଆସିବ ଏଥେ ।

ଏଡ଼େ ଅଜୟ ଗଡ଼ରେ ପଶିବ କେମନ୍ତେ
ଏକଥାକୁ କିପରି କହୁଛ ସମ୍ପ୍ରତେ ।
ଶୁଣିକରି ରାକ୍ଷାସୁଣୀ ହେଲେ କୋପଭର
ଏ କଥାମାନ ନ କହ ଆମ୍ଭର ଆଗର ।
ପ୍ରହରେ ପରିଯନ୍ତେ ଭାଳିଲୁ ତାଙ୍କ ସଙ୍ଗେ
ଆଜି ଜଣାଯିବ ଲୋ କହ ରାବଣ ଆଗେ ।
କ୍ରୋଧେ ଅସୁରୀ ତହୁଁ କହିଲେ ଏମନ୍ତ
ଶୁଣିକରି ଜାନକୀ କ୍ରୋଧରେ ପ୍ରଜ୍ୱଳିତ ।
ଆଜହୁଁ ତୁମ୍ଭବଂଶ ଅସୁରେ ହୋନ୍ତୁ ହତ
ଆଜିର ମଧ୍ୟରେ ତୁମ୍ଭେ ଦେଖିବ ଏହା ତ ।
କ୍ରୋଧରେ କହନ୍ତି ଦେବୀ ବଇଦେହୀ
କହ ଲୋ ତୁମ୍ଭ ବାପ ରାବଣକୁ ଯାଇ ।
କି କରିବ ଦୈତ୍ୟଛାର ମୋତେ ସେ ଡରାଇ
ଏତେ କହି ଜାନକୀ କ୍ରୋଧଭର ହୋଇ ।
ଦେଖିଣ ତ୍ରିଜଟା ଯୋଡ଼ି ବେନି କର
ବୋଇଲେ ମାଗୋ ଏଥର କ୍ରୋଧ ଶାନ୍ତି କର ।
ତୁମ୍ଭେ କୋପ କଲେ କି ସଂସାର ଥୟ ହେବ
ଏ ଛାର ରାକ୍ଷସୁଣୀ ନ ଜାଣନ୍ତି ଭାବ ।
ଜାନକୀ ବୋଇଲେ ଏ ଜାତିର ଦଇତୁଣୀ
ଏହାଙ୍କ ଯୋଗୁ ଉତ୍ପାତ ହେବ ଆଜିପୁଣି ।
ଧର୍ମକୁ ବିଚାରି ମୁଁ ଅଛି ତୁନି ହୋଇ
ନୋହିଲେ ଏ ଲଙ୍କାରେ କି ରହନ୍ତେ ଦେହ ବହି ।
ମୁହିଁ ତ ହୁତାଶନ ତୁମ୍ଭେ ତ ଲୋ କାଠ
ତୁମ୍ଭଙ୍କୁ ଭସ୍ମ କଲେ ଏ ପୁରୁ ଯିବି ତ ।
ଏମନ୍ତ ବୋଲି ଦେବୀ କ୍ରୋଧେ ପ୍ରଜ୍ୱଳିତ
ଅସୁରୁଣୀଙ୍କି ଚାହିଁଲେ କରି ରକ୍ତ ନେତ୍ର ।
ଦେଖିଣ ଅସୁରୀ ପାଶରୁ ଦୂର ହେଲେ
ମହାଭୟ କରିଣ ବିକଳ ତ ହେଲେ ।
ବୀରବର ପକ୍ଷିକି ହସ୍ତରେ ଧରିଣ
କ୍ରୋଧରେ ଅସୁରୀ ଗଲେ ରାଜାଙ୍କ ପାଖେଣ ।
ତୋଟାଳିଆ ଆଗେ ଯାଇଥିଲେ ରାଜାପୁରେ
ପଛେ ମିଳିଲେ ଅସୁରୁଣୀ ରାଜାଙ୍କ ଛାମୁରେ ।
ଦଶଗ୍ରୀବ ଆସନ କରିଣ ଅଛି ବସି
ତୋଟାଳିଆମାନେ ତହିଁ ଠିଆ ହୋଇଛନ୍ତି ।
ଜଗତୀ ଉପରେ ବସିଛି ଲଙ୍କପତି
ପାତ୍ରମନ୍ତ୍ରୀ ଦେବତା ସମସ୍ତ ଅଛନ୍ତି ।
ସ୍ଫଟିକର ପାବଛ କାଚତାଳ ପରେ
ନିର୍ମଳ ରୂପାଚାଳ ଶୋଭା ଯେ ଉପରେ ।
ମାଣିକ୍ୟର ଓରା ଯେ କୃବିନ୍ଦର ଗୁଜ
ନୀଳ ଚିତ୍ର ପାତିଆ କାଣ୍ଡ ବଇଡୁର୍ଯ୍ୟ ।
ଗଣ୍ଡିଅନା ପାଟରେ ରଙ୍ଗପାଟ ନେଇ
ତେଜପତ୍ର ଛାଏଣୀ କଳଶ ଅଛି ରହି ।
ସୁବର୍ଣ୍ଣର କଳଶ ମେଢ଼ରେ ବିରାଜ
ଶୋଭାବନ ଦିଶଇ ସେ ଚନ୍ଦ୍ରରୁ ନିର୍ମଳ ।
ହେମମାଣିକ୍ୟରେ ଥୋପା ପୁଞ୍ଜି ପୁଞ୍ଜି
ନେତର ଚାନ୍ଦୁଆ ଯେ ଦର୍ପଣ ବିରାଜି ।
ରାଜାର ଚରଣେ ରତ୍ନ ଖଟାଉ ଶୋଭନ
କଟିରେ କିଙ୍କିଣୀ ବାହାରେ ବାହୁଟି ଜାଣ ।
ହୃଦରେ ପଦକ ଯେ ମୁକୁତା ଚାପସରି ।
ଶରୀରେ ଚନ୍ଦନ ବୋଳିଛି କସ୍ତୁରୀ ।
ପୁଷ୍ପଲାଗି ନାସିକା ଅମୋଦ କରଇ
ଶିର ଉପରେ ବୀର ଛତ୍ର ବିରାଜଇ ।
ମଣିମା ମଣିମା ବୋଲି ଭାଟ ଏକବାର
ସୁବର୍ଣ୍ଣ ବେତ କରେ ଧରିଛି ମନ୍ତ୍ରୀବର ।
ଆଗରେ ବୃହସ୍ପତି କହୁଛନ୍ତି ପାଞ୍ଜି
କର୍ଣ୍ଣରେ କୁଣ୍ଡଳ ଅରୁଣ ତେଜରାଜି ।
ବେଦ ବ୍ରହ୍ମା ସହିତରେ ସୁରନର ମୁନି
ପୁରାଣ ପଢ଼ନ୍ତି ପୋଥି କରେ ଘେନି ।
ଈଶ୍ୱର କହୁଅଛନ୍ତି ବ୍ରହ୍ମକାଳ ଜ୍ଞାନ
ନାରଦ ବୀଣା ଯନ୍ତ୍ର କରନ୍ତି ବାଦନ ।
ଯମଘଣ୍ଟ କାଳପାଶ ଅଜୟ ଅତିକାୟ
ଜରାସୁର ନନ୍ଦନ ଜଳନ୍ଧର ତନୟ ।
ଅକ୍ଷୟ ବିଘଣ୍ଟା ମାତଙ୍ଗ ମହାବୀର
ମୁଖା ବିମୁଖା ରଣସିଂହ ଯେ କାଳଚର ।
ବିଦ୍ୟୁମାଳି ଜରାସୁର ପ୍ରଘଣ୍ଟ ମହାନାଦ
ସିନ୍ଧୁ ଅପସିନ୍ଧୁ ଯେ ଶାର୍ଦ୍ଦୂଳ ସୋମଗଧ ।
କୁମ୍ଭ ନିକୁମ୍ଭ ମେଳେ ଅନେକ ପୁତ୍ରମାନେ
ପୁତ୍ରଙ୍କର ନାମ ଅଟେ ଭିନ୍ନେ ଭିନ୍ନେ ।
ଅଠରଗଣ୍ଡା ଛନ୍ତି ରାବଣ ନନ୍ଦନ
ସମସ୍ତ ଏକୁ ଏକ ବଳେ ନୁହନ୍ତି ହୀନ ।
ବାରଶତ ଜୁଆଇଁ ତେରଶତ ନାତି
ପଚାଶ କୋଟି ଛନ୍ତି ତାହାର ସେନାପତି ।
ରାଉତ ମାହୁନ୍ତ ରଥି ମହାରଥିଗଣ
ଏ ପ୍ରକାର ପଦାତି ଅସୁମାର ଜାଣ ।
ଅଶ୍ୱ ହସ୍ତୀ ତାଙ୍କର ସଙ୍ଗେ ଛନ୍ତି ଜାଣ
ସାରେଣୀ ଗଧ ଶ୍ୱାନ ଗୃଧ୍ରପକ୍ଷୀଗଣ ।
ଏଥିରୁ ବେନି ସାଗର ପୋଷିଛି ଲଙ୍କରାଯେ
ଭାଇ ବନ୍ଧୁ କୁଟୁମ୍ବ ବେନି ସାଗର ହୁଏ ।
ହଟାରୀ ବଜାରୀ ବେପାରୀ ବଣିଜରୁ
ପାଞ୍ଚସାଗର ଅଛନ୍ତି ତହିଁ ହନ୍ତକାରୁ ।

ଗାଈ ମହିଷୀ ଦଶସାଗର ପ୍ରମାଣ
ଏଥିରୁ ନଉ ସାଗର ଗଣନ୍ତିରେ ଜାଣ ।
ଏ ଉତ୍ତାରୁ କ୍ରୋଧରୁ କିଙ୍କରଗଣ ପୁଣି
ବାଦ୍ୟକାରମାନଙ୍କୁ କେ ପାରିବ ଗଣି ।
ବ୍ରହ୍ମାରୁଦ୍ର ସହିତେ ଅଛନ୍ତି ଦେବଗଣ
କାଖେ ହସ୍ତ ଦେଇ କାର୍ପୂଣ୍ୟ କରନ୍ତି ପୁଣ ।
ସ୍ୱର୍ଗର ବିଦ୍ୟାଧରୀ କରୁଛନ୍ତି ନୃତ୍ୟ
ତେତିଶ କୋଟି ଦେବତା ଅଛନ୍ତି ସମସ୍ତ ।
ପ୍ରସିଦ୍ଧ ଆସନ ଯେ କରିଛି ଲଙ୍କପତି
ଗନ୍ଧର୍ବେ ଦୁନ୍ଦୁଭି ଧରିଣ ବଜାନ୍ତି ।
ରମ୍ଭା ଉର୍ବଶୀ ମେନକା କରୁଛନ୍ତି ନୃତ୍ୟ
ନୃତ୍ୟକୁ ଅବଧାନ କରିଛି ବିଂଶନେତ୍ର ।
ଗନ୍ଧର୍ବ ବିଦ୍ୟାଧର କିନ୍ନର ଯେ ଗଣ
ଦେବଙ୍କ ସଭାପ୍ରାୟ ଅଛନ୍ତି ଆଗେଣ ।
ବ୍ରହ୍ମାଙ୍କୁ ଚାହିଁଣ ବୋଲେ ଲଙ୍କନାଥ
ଭୋ ତାତ ସର୍ବ ଲୋକ କଥାକୁ ଜାଣ ତ ।
ମୁହିଁ ତୋତେ କଥାଏ ପଚାରୁଛି ପୁଣ
ତାଣ୍ଡବ ନୃତ୍ୟବୋଲି ସେ ନୃତ୍ୟ କେବଣ ।
ଦିଅନ୍ତୁ ଆଜ୍ଞା ଦେବ ନାଚନ୍ତୁ ଅପସରୀ
ଶୁଣି କରି ହରଷେ କହନ୍ତି କୁଶଧାରୀ ।
ତାଣ୍ଡବ ନୃତ୍ୟ କରିବାକୁ ଶ୍ରୀହରି ଭାର୍ଜନ
ଏକମାସ ସେ ରସ ଜାଣନ୍ତି ତ୍ରିଲୋଚନ ।
ଆନ କେ ତାଣ୍ଡବ ନୃତ୍ୟ କରି ନ ପାରଇ
ଶୁଣି ଦୈତ୍ୟ ବୋଲେ ଶିବଙ୍କ ମୁଖ ଚାହିଁ ।
ଭୋଦେବ ତ୍ରିପୁର ମନ୍ଥନ ପଞ୍ଚମୁଖ
କର ତୁ ନୃତ୍ୟ ସ୍ୱାମୀ ଦେଖିବା ଆମ୍ଭେ ସୁଖ ।
ହର କହନ୍ତି ସେ ଅପୂର୍ବ ନୃତ୍ୟରଙ୍ଗ
ତାଳ ଧରିବାକୁ ଏଥି କାହାନ୍ତି ଶ୍ରୀରଙ୍ଗ ।
ବିଧାତା ମର୍ଦ୍ଦଳ ଯେ ବଂଶୀ ଇନ୍ଦ୍ରବାଇ
ପ୍ରଭଞ୍ଜନ ଫୁଙ୍କା ଯନ୍ତ୍ର କାହାଳୀ ବଜାଇ ।
ନାରଦ ବୀଣା ବାଇବେ ବରୁଣ ବଇଁଶୀ
କୃଷ୍ଣତାଳ ଧରିବେ ନୃତ୍ୟରଙ୍ଗେ ପଶି ।
ତେବେ ସେ ନୃତ୍ୟରଙ୍ଗ ଦେଖିବୁ ଲଙ୍କସାଇଁ
ନୋହିଲେ ସେ ତାଳମାନ କେଭେ ନ ଉଠଇ ।
ରାବଣ କହିଲା ଏକା ବିଷ୍ଣୁ ନାହିଁ ଏଥେ
ମଦ୍ଦଳ ଧରିବାକୁ ଅଛନ୍ତି ଚତୁର୍ମାର୍ଥେ ।
ଯମଧର୍ମ ଜଳରାଜ ଅନଳ ପବନ
ନାରଦ ସହିତରେ ଅଛନ୍ତି ତ୍ରିଲୋଚନ ।
ବିଷ୍ଣୁ ପାଲଟରେ ମୁଁ ଧରଇ କିନା ତାଳ
ଏତେ କହି ଉଠିଲା ବିଶ୍ରବାର ବାଳ ।

ତ୍ରିଲୋଚନ ବୋଇଲେ ଦୋହଲିବ ମହୀ
ବେନିପୁର କମ୍ପିବ ଚରଣ ଘାତ ପାଇ ।
ଅନାୟାସରେ ବିପଦ ହେବ ଦଶମୁଖ
ରାବଣ ବୋଇଲା ତାହା ବୁଝିବ ମୁଁ ଠିକ୍ ।
ଏତେ କହି ଉଠିଲା ବିଶ୍ରବାର ବାଳ
ଗର୍ବ କରି କରରେ ଧରିଲା ସେ ତାଳ ।
ବୀଣା ଯନ୍ତ୍ର ଧରିଣ ନାରଦ ବଜାଇଲେ
ପବନ ଦେବତା ଫୁଙ୍କା ଯନ୍ତ୍ରକୁ ବୋଇଲେ ।
କଂସାଳ ଧରିଣ ବଜାନ୍ତି ବଜ୍ରପାଣି
ବରୁଣ ଦେବତା ଯେ କଲେ ବଂଶୀଧ୍ୱନି ।
ମର୍ଦ୍ଦଳ ଧରି ବଜାଇଲେ ହଂସାସନ
ସୁରଦେବ ସ୍ୱରମୁନି ବିଜେ ସର୍ବଜନ ।
ଦେଖିଣ ବିଭୀଷଣ ମନରେ ବିଚାରି
କିମ୍ପାଇଁ ବିପରୀତ କରୁଛି ଦଣ୍ଡଧାରୀ ।
ଅରିଷ୍ଟକୁ ମଣୁଛି ସମ୍ପଦ ପରାଏ
ପାପପୁନ୍ୟ କଥାକୁ ନ ଭାବେ ହୃଦୟେ ।
କାଲିଠାରୁ ଶ୍ରୀରାମ ଦୂତ ଗଡ଼େ ପଶି
ଆଜି ଅନର୍ଥରେ ଦୈତ୍ୟକୁ ଦେବଧ୍ୱଂସି ।
ଏହିକ୍ଷଣି ରାଜାକୁ ଲାଗିବ ବଡ଼ ଚିନ୍ତା
ଆଗରୁ ବ୍ରହ୍ମା ଶିବ କହିଲେ ଏ କଥା ।
ଏମନ୍ତ ବିଚାରି ବିଭୀଷଣ ତୁନି
ଆଉ ଘଡ଼ିକରେ ଜଣାଯିବ ପୁଣି ।
ଦେଖିବା ଆଜି ରାଜାର ସମରଥ ପଣ
ଏପରି ଭାବନା କରେ ବିଭୀଷଣ ।
ଏହି ସମୟରେ ବ୍ରହ୍ମା ବାଇଲେ ମର୍ଦ୍ଦଳ
ପୃଥିବୀ କମ୍ପିଲା ଯେ ହେଲା ଟଳମଳ ।
ଦେଖିଲା ତ୍ରିଲୋଚନ ପଶିଲେ ନୃତ୍ୟ ଯାଇ
ପାହୁଡ଼ ଘାଗୁଡ଼ି ତାଙ୍କ ଚରଣେ ଶୋଭଇ ।
ମର୍ଦ୍ଦଳେ ହାତ ଦେଇ ଓଁକାର କଲେ ଯତି
ଅନ୍ତରାଳ ହୋଇଣ କମ୍ପିଲା ବସୁମତୀ ।
ମୁଖ ମାଡ଼ି ହୋଇ ଯେ ପଡ଼ିଲା ରାବଣ
ଧାଇଁଯାଇ ତାକୁ ଧରିଲେ ବିଭୀଷଣ ।
ରାବଣ ବୋଇଲେ ଦେବେ ବନ୍ଦକର ନୃତ୍ୟ
ମୋତେ ଭ୍ରମ ଲାଗିଲା ପୁଣି ଅଦ୍ଭୂତ ।
ଭାର୍ଜନ ନୁହେଁ ମୁଁ ସଦାଶିବଙ୍କ ନୃତ୍ୟକୁ
କୁରାଳ ଚକ୍ରପରି ବୁଲଇ ମୋର ବୁକୁ ।
କାଲିଠାରୁ ମଣୋହି ନିଦ୍ରାସୁଖ ନାହିଁ
ଆମ୍ବିଳ ରସକୁ ଶ୍ରଦ୍ଧା କଲି ମୁହିଁ ।
ଆନଦିନେ ପଛେ କରିବା ନୃତ୍ୟରଙ୍ଗ
ଆଜି ଚଞ୍ଚଳ ତୁମ୍ଭେ ନିଦ୍ରାକୁ କର ଭଙ୍ଗ ।

ଶୁଣିଣ ମନେ ମନେ ହସିଲେ ଦେବକାଶୀ
ବେଦବର ମର୍ଦ୍ଦଳ ଥୋଇଦେଇ ବସି ।
ବରୁଣ ବାସବ ବେନି ହେଲେ ହସାହସି
ରାବଣ ବୋଇଲେ ଶୁଣ ସୂର୍ଯ୍ୟବଂଶୀ ।
ଯମ ପବନ ପୁଣ ନାରଦ କୁବେର
ଅଷ୍ଟବସୁ ଦେବତା କିନ୍ନର ବିଦ୍ୟାଧର ।
ସପତବାର ତିଥିଯୋଗ ଯେ କରଣ
ଚାରିମେଘ ସହିତେ ଏକାଦଶ ରୁଦ୍ରଗଣ ।
ଅଣଚାଶ ପବନ ପଞ୍ଚ ହୁତାଶନ
ସନକାଦି ଋଷି ତୁଲେ ବ୍ରହ୍ମଋଷିମାନ ।
ଅପସରୀ କିନ୍ନରୀ ଯକ୍ଷ ବିଦ୍ୟାଧରୀ
ନାନା ପରିରମ୍ଭରେ ନୃତ୍ୟରଙ୍ଗ କରି ।
ଗହ ଗହ ଶବଦ ପ୍ରଳୟ ସିନ୍ଧୁ ଜାଣି
ବିରସ ହୋଇଣ ବସି ବିଂଶପାଣି ।
ପଟୁଆର ଗହଳେ ପଶି ତ ବାଟ ନାହିଁ
ଦୂରରେ ତୋଟାଳିଆ ରୋଦନ କରେ ଯାଇ ।
ପାଞ୍ଚସାତ ଅସୁରୁଣୀ ଭିତରକୁ ଗଲେ
ରାଜାର ଛାମୁରେ କାନ୍ଦିଣ କହିଲେ ।
ଭୋ ଦେବ ଲଙ୍କପତି ତ୍ରିଦଶ ଠାକୁର
ଆଜି ରାତ୍ରେ ମଲା ତୋର ପକ୍ଷୀ ବୀରବର ।
ପଞ୍ଜରୀ ଭିତରକୁ ପବନ ପଶିବା ବାଟ ନାହିଁ
ଅଦଭୂତେ ମଲା ପକ୍ଷୀ ତୋର ତହିଁ ।
ଶୁଣିଣ ଲଙ୍କେଶ୍ୱର ସଭାରୁ ଓହ୍ଲାଇଲା
ନିଶବଦ କରିର ପକ୍ଷୀକି ଦେଖିଲା ।
ମରିବାର ଦେଖିଣ କାନ୍ଦେ ଲଙ୍କେଶ୍ୱର
କେଉଁ ଦୋଷେ ମୋତେ ତୁ ତେଜିଲୁ ବୀରବର ।
କିମ୍ପାଇଁ ଅକାରଣେ ମରଣ ତୋତେ ହେଲା
ବିଧାତା ଆଣି ଏ କଷଣ ମୋତେ ଦେଲା ।
କେ ତୋତେ ନାଶ କଲା ପଞ୍ଜୁରୀ ଭିତରେ
ଏ କଥା ନ ଶୁଣିଲି କାହାରି ମୁଖରେ ।
ଯମରାଜା ଅଟଇ ମୋହର କିଙ୍କର
ଆଣିଲେ ପଞ୍ଜରୀ କହେ ଲଙ୍କେଶ୍ୱର ।
କେବଣ ଉତ୍ପାତ ହେଲା ଏହା ତ ନ ଜାଣି
ମାଛିକି ସର୍ଜନାହିଁ ଗଢ଼ିଛି ବିନ୍ଧାଣି ।
କେମନ୍ତେ କିଏ ପଶିଣ କଲା ଶିରଃଛେଦ
ବିକଳ ହୋଇଣ ରାବଣ ହୁଏ କ୍ରୋଧ ।
ଅନେକ ବାହୁନି କାନ୍ଦେ ବିଂଶପାଣି
ସନ୍ତାପରେ ଦେଇଥିଲେ ମାଧବ ଋଷିମଣି ।
ଯେବଣ ଦିନରେ ମୁଁ ଦିଗବିଜେ କଲି
ମନ୍ଦର ପର୍ବତରେ ଋଷିଙ୍କି ଦେଖିଲି ।
ସେ ମୋତେ ପ୍ରସନ୍ନେ ଆଣି ଦେଲେ ସାରୀ
ଏହାଯୋଗୁଁ ଭୋଗ ମୋର ସପ୍ତଦଶପୁରୀ ।
ଏଥର କଷଣ ମୋତେ ପଡ଼ିବ ନିଶ୍ଚୟେ
ପୁଣ୍ୟବନ୍ତ ପକ୍ଷୀ ମୋର ମରଣ ଯେ ପାଏ ।
ଶୁକ ସାରଣ ମନ୍ତ୍ର ବୋଇଲେ ବୁଝାଇ
ପକ୍ଷୀର ମରଣକୁ ରାଜା କାନ୍ଦୁଛ କିମ୍ପାଇଁ ।
ଜଗତେ ବିଦିତ ଯେ ଅଟ ଲଙ୍କେଶ୍ୱର
ପକ୍ଷୀ ଛାର ମରଣକୁ ଶୋକ କିମ୍ପା କର ।
ଦଶକନ୍ଧ ବୋଲଇ ଏ ପକ୍ଷୀ ଗୁଣ ଯେତେ
ବିଶେଷ ପରିମାଣି କହିବି ମୁଁ କେତେ ।
ପିଣ୍ଡକୁ ଜୀବ ଯେହ୍ନେ ଅଟଇ କାରଣ
ସେହିରୂପେ ବୀରବର ପକ୍ଷୀକି ପୋଷେ ଜାଣ ।
ବିଧାତା ଆଣି ମୋତେ ଦେଲା ଏ କଷଣ
ତେଣୁ ସେ ପକ୍ଷୀବର ମଲା ଏବେ ଜାଣ ।
ପୁତ୍ରର ଶୋକ ପ୍ରାୟେ ମଣଇ ଦଶଈଶ
ଆଜିଠାରୁ ଜାଣ ମନ୍ତ୍ରୀ ବିପଦ ପ୍ରବେଶ ।
ମନ୍ତ୍ରୀମାନେ ବୋଇଲେ ଶୁଣ ହେ ରାଜନ
ସର୍ବଶୁଭେ ଅଛନ୍ତି ପୁତ୍ର ନାତିଗଣ ।
ଛପନଗଣ୍ଡା ଯୁଗ କରିବ ତୁମ୍ଭେ ଭୋଗ
କିମ୍ପାଇଁ ମନରେ ଧରୁଛ ବିରାଗ ।
ଆଜକୁ ଚଉଦଗଣ୍ଡା ତୋର ଭୋଗ ହେଲା
ପ୍ରଥମ ଶରୀର ଯେ ତୁମ୍ଭର ମରିଲା ।
ଦ୍ୱିତୀୟା ସମୟ ଯେ ହେଲା ପରବେଶ
ଏକାଳରେ ଚିନ୍ତା ନ କର ହେ ଦଶଈଶ ।
ଶୁଣିଣ ଲଙ୍କପତି ତୃପତି ହୋଇଲା
ପଞ୍ଜରୀକି ଥୋଇଦେଇ ସାରୀକି ମୂର୍ଚ୍ଛିଲା ।
ଏହି ସମୟରେ ଜଣାଏ ତୋଟାଳିଆ
ଭୋଦେବ ଲଙ୍କେଶ୍ୱର କଥା ହେଲା ନୂଆ ।
କାହୁଁ କପିଏ ଅଇଲା ମଧୁବନ
ଫଳିଲା ଫୁଟିଲା ବୃକ୍ଷମାନ କଲା ଚୂର୍ଣ୍ଣ ।
ତରୁ ଲତାମାନ ସବୁ ଉପାଡ଼ିଲା
ଚଉଦ ସହସ୍ର ତୋଟାଳିଆଙ୍କୁ ମାଇଲା ।
ସବୁ ପ୍ରହରୀ ଯହୁଁ ହେଲେ ତହିଁ ହତ
ବାରତା କହିବା ପାଇଁ ଅଇଲୁଁ ତ୍ୱରିତ ।
ରାବଣ ବୋଇଲା ଶୁଣ ହେ ମଉଳା
କେମନ୍ତ ଲୋକ ଏ କହୁଛି ଅନର୍ଗଳା ।
ବାନର କେଉଁପରି ଆସିଲା ଏ ପୁର
ସଭାରେ ମିଛ କହୁଅଛି ଏ ବିଚାର ।
ସପ୍ତଦ୍ୱାର ଡେଇଁ ଯାକୁ ଛାଡ଼ିଦିଅ ନେଇ
ଅସୁରୀର ବୋଇଲେ ଦେବ ସମ୍ଭାଳ ଲଙ୍କସାଇଁ ।

କହିଲାର ଲୋକକୁ କିମ୍ପାଇଁ କର କୋପ
ଆମ୍ଭେମାନେ ଦେଖିଅଛୁଁ କଥା ଯେ ସ୍ୱରୂପ ।
ମଧୁବନ ଦେଇ ଆମ୍ଭେ ଅଇଲୁଁ ଗୋସାଇଁ
ଭାଙ୍ଗିଣ ଛାରଖାର ତରୁଲତା ହୋଇ ।
ଏତେକାଳେ ମଧୁବନେ ପଡ଼ିଲା ବିପତ୍ତି
ଅବଧାନ ହୋଇଣ ଶୁଣ ଲଙ୍କପତି ।
ଅଶୋକବନ ଯେ ମଧୁବନ ତୋଟା
ଏ ଦୁଇଟାକୁ ଭାଙ୍ଗିଲା କପି ଏକ ଗୋଟା ।
ଜାନକୀ ସଙ୍ଗେ କପି କି କି ଭାଳୁଥିଲା
ସୁନ୍ଦର ବନକୁ ହେଲେଣ ଭାଙ୍ଗିଲା ।
ବୈଦେହୀ ରହିବା ସ୍ଥାନକୁ ଛାଡ଼ି ଏକା
ସମସ୍ତ ତରୁ ଭାଙ୍ଗିଲା ସେହି କପି ଏକା ।
ଜାମ୍ବୁ କମିଳ ଯେ କଦଳୀ ନଡ଼ିଆଳ
ରଣଭଣେ ପଡ଼ିଅଛି ବୃକ୍ଷଙ୍କର ମୂଳ ।
ଶୁଣିଣ ସ୍ତବଧ ହେଲେ ସଭାଜନ
ନୃତ୍ୟ ରଖ ଦୋଲିଣ ବୋଇଲା ଦଶାନନ ।
ଶୁଣିଣ ରାବରେଶ୍ୱର ହୋଇ ସ୍ତମ୍ଭୀଭୂତ
କହିଲା ମୋର ଆଗେ କହଲୋ ସିଦ୍ଧାନ୍ତ ।
ଶୁଣିଣ ଅପ୍ସରୀ ଆଗରେ ଉଭା ହେଲା
ନିର୍ଭୟ ହୋଇ ସକଳ କଥା ପ୍ରକାଶିଲା ।
ସଭା ନିଶବଦ ହୋଇଲା ଯେ ଜାଣ
କରଯୋଡ଼ି ରାକ୍ଷସୁଣୀ ରାଜାଙ୍କୁ କହେ ପୁଣ ।
ଶୁଣ ଭୋଦେବ ରାଜନ ପ୍ରତାପୀ ଲଙ୍କେଶ୍ୱର
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ କୀରତି ତୋହର ।
ଛାମୁରେ ଖଟନ୍ତି ତୋର ସୁର ଯେ ଅସୁର
ରାଜା ତୁ ରାଜେଶ୍ୱର ଅଟୁ ବୀରବର ।
ସ୍ୱର୍ଗର ସମାନେ ତୋର ଲଙ୍କାପୁର ଗୋଟି
ତୋତେ ଦେଖିଲେ ଦଶଦିଗପାଳେ ହଟି ।
ଯମଦଣ୍ଡ ନ ଲାଗେ ତୋର ଲଙ୍କାପୁରୀ
ଏତେ କାଳେ ଅରିଷ୍ଟି ଘଟିଲା ଆସି କରି ।
ନିର୍ଭୟେ ପଶି ମଧୁବନକୁ ଭାଙ୍ଗିଲା
ଅଶୋକ ବିପିନ ସହିତେ ନାଶ କଲା ।
ଫଳନ୍ତା ଫୁଟନ୍ତା ଯେ କିଛି ନ ରଖିଲା
କାହୁଁ ଏ କପିଗୋଟା ଏଠାକୁ ଅଇଲା ।
କିଅବା କାଳ ସେ ଯେ ତୁମ୍ଭଙ୍କୁ ଅଇଲା
ବନକୁ ଭାଙ୍ଗିଣ ସେ ଛାରଖାର କଲା ।
ତୋଟାର ଦ୍ରୋଣାଖମ୍ଭ ପରେ ବସି ରହେ
ସୀତାର ସଙ୍ଗରେ ସେ କଥାବାର୍ତ୍ତା ହୁଏ ।
**ରାମର ନାରୀ** ତାକୁ କିସ ଯେ କହିଲା
**ତେଣୁ** ସେ ଜଣାଯାଏ ଏ କୃତ୍ୟ ଘଟିଲା ।

ଏତେକାଳେ ତୋ ପୁରେ ଉତ୍ପାତ ହୋଇଲା
ସୀତା ସ୍ଥାନ ଛାଡ଼ି ସବୁ ବୃକ୍ଷ ନାଶ କଲା ।
ଚଉଦ ସହସ୍ର ତୋଟାଳିଆ ଗଲେ ନାଶ
ତାଙ୍କର ନାରୀ ପୁତ୍ର ରୋଦନ୍ତି ବିଶେଷ ।
ସଭିଙ୍କି ନାଶ କଲା ଏକଇ ବାନର
ନିଉନ ହୋଇ ତାର ସାହାସ ଅପାର ।
ପାଞ୍ଚଶତ ତହିଁରୁ ଉବୁରିଣ ଥିଲେ
ଗୋଡ଼ାଇ ତାହାଙ୍କୁ ମାଇଲା ସେ ହେଳେ ।
ଥୋକାଏ ସିଂହଦ୍ୱାରେ ରୋଦନ କରନ୍ତି
ଏଥକୁ ଅବଧାନ ହୁଅ ଲଙ୍କପତି ।
ଶୁଣିଣ ଲଙ୍କପତି ହୋଇଲା ବିସ୍ମୟ
ବ୍ରହ୍ମାଙ୍କୁ ଚାହିଁଣ ବୋଇଲାକ ରାୟ ।
ଭୋପିତା ଏକଥା କେବଣ ପ୍ରକାର
କେଉଁ ଦେଶରୁ ସେ ଆସିଲା ବାନର ।
ବେଦବର ବୋଇଲେ ଶୁଣ ଲଙ୍କେଶ୍ୱର
ଶ୍ରୀରାମର ଘରଣୀକୁ ଆଣିଲୁ ତୋର ପୁର ।
ସେ ଅବା ବାନରକୁ ପେଶିଅଛନ୍ତି ଏଥି
ତାହାକୁ ଅନାଇଲେ ଜାଣିବା କଥା ତଥ୍ୟ ।
ଶୁଣିଣ ଲଙ୍କେଶ୍ୱର ହୋଇଲାକ ରୁଷ୍ଟ
ଛାର ନିଲକ୍ଷଣ ବାନର ପାପିଷ୍ଠ ।
ମଧୁବନ ଭାଙ୍ଗିଣ ମାଇଲା ରକ୍ଷୀଙ୍କୁ
ପଉରଷ ମିଳିବ ଧରି ଆଣିଲେ ତାକୁ ।
ଏମନ୍ତ ଭାବନା କରଇ ଲଙ୍କପତି
ବ୍ରହ୍ମା ବୋଇଲେ ତୋତେ ଘଟିଲା ବିପତ୍ତି ।
ଯେତେବେଳେ ରାମନାରୀ ଲଙ୍କାକୁ ଅଇଲା
କ୍ରୋଧରେ ଜାନକୀ ତୋତେ ଶାପ ଦେଲା ।
ବୋଇଲା ଚଉଦ ମାସ ଦୁଇ ଦିନେ ମର
ବାରମାସେ ପକ୍ଷେ ଏବେ ହୋଇଲା ନିକର ।
ତିନି ପକ୍ଷ ଦୁଇଦିନ ଅଛି ଆଉ ଜାଣ
ଏଥି ମଧ୍ୟରେ ଲଙ୍କାକୁ ଆସିବେ ରାମରାଣ ।
ଦୈତ୍ୟବଳ ନାଶିଣ ତୋତେ ସେ ମାରିବେ
ଆପଣାର ଦୋଷରୁ ମରିବୁ ତୁ ଏବେ ।
ଆଣିବା ବେଳେ ତୁ ଯେ ଆପେ ସତ୍ୟ କଲୁ
ସୈନ୍ୟବଳ ପୁତ୍ର ନାତି ଦେବୁ ଯେ ବୋଇଲୁ ।
ସେକଥା ତେରମାସେ କି ତୋର ପାସୋର ଗଲା
ଅଗ୍ନିଚୂଡ଼ ରାମନାରୀ ଆସିଲାଦିନୁ ପରା ।
ତେରମାସ ହେଲା ସେ ନ କରେ ଭୋଜନ
ଚିକ୍କଣ ନ ଘେନଇଁ ନ ବାନ୍ଧେ କେଶ ପୁଣ ।
ଏକଳୟ କରିଛି ମାରିବ ଦୈତ୍ୟଙ୍କୁ
ଧାରଣା ଧରିଅଛି ସ୍ୱାମୀ ଆସିବାକୁ ।

ରାବଣ ବୋଇଲା ରାମ ନରରୂପୀ ହୋଇ
ବାନରଙ୍କ ସଙ୍ଗେ କିମ୍ପା ଭାବ ସେ କରଇ ।
ବେଦବର ବୋଇଲେ ମୁଁ ତାହା ନ ଜାଣଇ
ନାରଦଙ୍କୁ ପଚାର ସେ ଭ୍ରମଣ କରଇ ।
ଶୁଣିଣ ରାବଣ ପୁଚ୍ଛେ ନାରଦଙ୍କୁ
କେଣେ ଗଲେ ରାମ କହ ସେ ସମ୍ବାଦକୁ ।
ନାରଦ ବୋଇଲେ ସେ ଘରଣୀ କି ନ ପାଇ
କିଷ୍କିନ୍ଧ୍ୟା ରାଜ୍ୟରେ ପ୍ରବେଶ ହେଲେ ଯାଇ ।
ବାଳିକି ମାରି ସୁଗ୍ରୀବଙ୍କୁ ରାଜା କଲେ
ଜମ୍ବୁ ଦଧିବାନର ଭାଲୁ ଅଣାଇଲେ ।
ଚାରି ଦିଗକୁ ଦୂତ ପେଷିଲେ ସୁଗ୍ରୀବର
ଦକ୍ଷିଣକୁ ଅଇଲେ ଅଙ୍ଗଦାଦି ଅଷ୍ଟବୀର ।
ସକଳ ଦିଗ ଖୋଜି ନ ପାଇଲେ ସୀତା
ତିନିଦିଗୁଁ ଦୂତ ଆସି କହିଲେ ବାରତା ।
ଦକ୍ଷିଣ ଦିଗ ଦୂତ ଫେରିଣ ନ ଗଲେ
ଗରୁଡ଼ ସୁତଠାରୁ ସେ ବାରତା ପାଇଲେ ।
ସମ୍ପାତି ଭାଇ ଜଟାୟୁକୁ ତୁ ବଧ କଲୁ
ସେ ବାରତା ପାଇଲା ଦୂତଙ୍କୁ ଦେଖିବାରୁ ।
ବାଳି ସୁତ କିବା ଆସେ କି ଲଙ୍କା ପୁର
ସେକଥା ନ ଜାଣେ ମୁଁ କେମନ୍ତ ପ୍ରକାର ।
ରାବଣ ବୋଇଲା ମଲାଣି ଯେବେ ବାଳୀ
ଅଙ୍ଗଦକୁ ଦେଖିଲେ ମୁଁ ପକାଇବି ମାରି ।
କେ ଆସିଛି ତାକୁ ପକାଇବି ମାରି
ଏମନ୍ତ ବୋଲି କୋପେ କମ୍ପେ ଦଶଶିରୀ ।
କିଙ୍କରଗଣଙ୍କୁ ବୋଇଲା ସେ ଚାହିଁ
ବାନର ଗୋଟାକୁ ଧରିଆଣ ଯାଇ ।
ମଧୁବନ ତୋଟାକୁ ଭାଙ୍ଗିଲା ମୋହରି
ଓପ୍ରୋଧ ନ କରି ତାକୁ ବାନ୍ଧିଆଣ ଧରି ।
ଏତେ ବୋଲି ଆଜ୍ଞା ଦେଲା ଲଙ୍କପତି
ଜୀବନ୍ତ ବାନରକୁ ଧରିଆଣ ଏଥି ।
ପ୍ରାଣରେ ନ ମାରିବ ଆଣିବ ତାକୁ ଧରି
ପଚାରିବା କିମ୍ପା ତୋଟା ଭାଙ୍ଗିଲା ମୋହରି ।
ଏହିପରି ଆଜ୍ଞା ଦେଲାକ ରାବଣ
ବୁଝିବା ତାଠାରୁ ସମସ୍ତ କାରଣ ।
କେବଣ ଦେଶରୁ ଅଇଲା ବାନର
ପଚାରି ଜାଣିବା କୁଳ ଗୋତ୍ର ତାର ।
ଯେବେ ସେ ଲଙ୍କାରେ ଆଗୁ ଥିଲା ରହି
ପଚାରିବା ମଧୁବନ ଭାଙ୍ଗିଲା କିମ୍ପାଇଁ ।
ପଚାରି ବିଚାରି ଯେ ମାରିବା ତାହାକୁ
କେବଣ ଦେଶରୁ ସେ ଆସିଲା ଏଥକୁ ।

ଏମନ୍ତ ଆଜ୍ଞା ଯହୁଁ ଦେଲା ଦଶକନ୍ଧ
ଧାଇଁଲେ କିଙ୍କରଗଣ ଘେନିଣ ଆୟୁଧ ।
ବେକରେ କମାଣ କୋଦଣ୍ଡ ତୀକ୍ଷ୍ଣ ଶର
ଏକକୁ ଆରେକ ଧାଇଁଲେ ଆଗୁସାର ।
କିଙ୍କରଗଣ ପଠାଇ ଦେଇ ଦଶାନନ
ଅପସରୀଙ୍କ ନୃତ୍ୟକୁ କଲା ଅବଧାନ ।
ଲାଗିଲାକ ନୃତ୍ୟ ହୋଇଲା କୁତୂହଳ
ନୃତ୍ୟରଙ୍ଗରେ ରାଜାର ହୋଇଲା ମତିଭୋଳ ।
ଆଜ୍ଞା ପାଇଣ କିଙ୍କରଗଣ ଚଳିଗଲେ
ମଧୁବନ ତୋଟାର ସନିଧ୍ୟେ ମିଳିଲେ ।
କିଙ୍କରଗଣ ଭେଦି ନିଶ୍ଚିନ୍ତ ରାବଣ
ଏଥୁ ଅନନ୍ତରେ ଯାହା ହେଲା ଶୁଣ ।
କିଙ୍କରଙ୍କୁ ଦେଖିଣ ହନୁ ମନେ ଭାଳି
ରାବଣ ପେଷିଲା ଜାଣି କ୍ରୋଧର ପ୍ରଜ୍ୱଳି ।
ଏହାକୁ ଆଜ ଯେ ପକାଇବି ମାରି
ଯେମନ୍ତେ କୋପ ମୋତେ କରଇ ଦଶଶିରୀ ।
ଯେତେ ପେଶୁଥିବ ସେତେ ଦେଉଥିବି ମାରି
ଅଜୟ ଲଙ୍କାଗଡ଼ ସମ୍ପଦ ଯିବି ସାରି ।
ଏମନ୍ତ ବିଚାରନ୍ତେ କିଙ୍କରଗଣ ମିଳି
ଦେଖିଣ ହନୁମନ୍ତ ଚାହାଁଇ ବକ୍ର କରି ।
ଦ୍ରୋଣା ଖମ୍ବ ଉପରେ ମୁହଁ ମାଡ଼ିଣ ଶୋଇ
ରବି କିରଣ ତାପ ଶରୀରେ ବାଜଇ ।
ଶବଦ ଶୁଣିଣ ମରଦିଲା ନିଶ
ଅସୁରଙ୍କୁ ଚାହିଁଣ ସେ ହେଲା ହସ ହସ ।
ଦୂରରୁ ପଚାରଇ ତୁମ୍ଭର ରାଜା କାହିଁ
ଆମ୍ଭେ ଆସିବାର କି ଜଣା ତାକୁ ନାହିଁ ।
ଏଡ଼େ ସମ୍ପଦକୁ ମଣି ଅଛି ଗରୁ
ତୁମ୍ଭେ ଯିବ ଯମପୁର ଆଜ କେ ରକ୍ଷା କରୁ ।
କିଙ୍କର ବୋଇଲେରେ ନିଲକ୍ଷଣା କପି
ପୁଣ୍ୟପୁରେ ତୁରେ ମିଳିଲୁ କାହିଁକି ।
ମଧୁବନ ତୋଟା କିମ୍ପାଇଁ ଭାଙ୍ଗିଲୁ
ଆପଣାର ଇଚ୍ଛାରେ ତୁ ମରଣ ଲୋଡ଼ିଲୁ ।
କିଏ ତୋତେ ବାତୁଳରେ ଏ ବୁଦ୍ଧି ବଳାଇଲା
କାଳ ଦେବତା ତୋତେରେ କଢ଼ାଇ ଆଣିଲା ।
ତିନିପୁର ବିଜୟୀ ଅଟେ ଲଙ୍କସାଇଁ
ତାହାର ପୁରେ ତୁରେ ପଶିଲୁ ଝସାଇ ।
କିମ୍ପା ତୁ କପି ଚଣ୍ଡାଳ ହୀନ ବୁଦ୍ଧି କଲୁ
ଆପଣାର ଇଚ୍ଛାରେ ବିଷ ତୁ ଭକ୍ଷିଲୁ ।
ପର୍ବତ ଫୋପାଡ଼ିଣ ପାତିଲୁ ତୁରେ ମୁଣ୍ଡ
ତପ୍ତଲୁହା ଖାଇବାକୁ ମେଲାଇଲୁ ତୁଣ୍ଡ ।

ଜଳନ୍ତା ଅନଳରେ ପଶିଲୁ ସାହସରେ
ସମୁଦ୍ର ଡେଇଁଣ ଆସିଲୁ କି ପ୍ରକାରେ ।
କାଳସର୍ପ ମୁଖରେ ଭରିଲୁ ଆଣି ହସ୍ତ
ମଧୁବନ ଭାଙ୍ଗିଲୁ ଭୀତି ନ କଲୁ ତୁ ତ ।
ତୋର ଯେବେ ଦୈତ୍ୟ ଅଟନ୍ତି ବଇରୀ
ତାଙ୍କ ସଙ୍ଗରେ କିମ୍ପା ନ କଲୁ ତୁ କଳି ।
ଲତା ବୃକ୍ଷମାନଙ୍କରେ ପର ଉପକାରୀ
ଛପନ କୋଟି ଜୀବ ଫଳ ପୁଷ୍ପ ଭୋଗ କରି ।
ହନୁମନ୍ତ ବୋଇଲା ନିର୍ଲ୍ଲଜ ଦୈତ୍ୟ ତୁମ୍ଭେ
ଆପଣାର ବଡ଼ାଇ କହୁଛ କେତେ ବାଗେ ।
ଯେ ଯାହାର ବଇରୀ ଅଟଇ ସିଦ୍ଧାନ୍ତ
ଲତା ବୃକ୍ଷ ଘରଦ୍ୱାର ବୈରୀ ସମସ୍ତତ ।
ରାଜା ଦୋଷ କଲେ ପ୍ରଜା ନାଶ ଯାନ୍ତି
ପ୍ରଜା ଦୋଷ କଲେ ମାରଇ ନୃପତି ।
ରାଜା ଦୋଷ କଲେ ସକଳ ଯାଏ ନାଶ
କିସ କହୁଅଛରେ ଏଥିରେ ନାହିଁ ଦୋଷ ।
ରାଜା ସିନା ସକଳ ସମ୍ପଦ ଥୋଇଥିଲା
ମଲାବେଳେ ସମ୍ପାଦିଲା ଦ୍ରବ୍ୟକି ସଙ୍ଗେ ନେଲା ।
ଶ୍ରୀରାମ ଘରଣୀଙ୍କି ଚୋରାଇ ଆଣିଲା
ଜଗତ ଜନଙ୍କ ମୁଖେ ଲଜ୍ୟା ତ ପାଇଲା ।
ତ୍ରୈଲୋକ୍ୟର ଜନନୀଙ୍କୁ କରିଅଛି ବନ୍ଦି
କେଉଁ କଥାରେ ତୁମ୍ଭର ରହିଛିରେ ସିଦ୍ଧି ।
ଏ ଲଙ୍କାଗଡ଼ ତୁମ୍ଭର ହେବ ଛାରଖାର
ସକଳ ଦୁଷ୍ଟ ଦୈତ୍ୟ ମରିବ ମୋ ହସ୍ତର ।
ଶ୍ରୀରାମ ଲକ୍ଷ୍ମଣ ବାନର ଭାଲୁଗଣ
ରାବଣର ବଂଶକୁ ମାରିବେ ନିଶ୍ଚେ ଜାଣ ।
ଯେତେ ଦୈତ୍ୟ ତୁମ୍ଭେରେ ଆସିଅଛ ଏଥେ
ଏହିକ୍ଷଣି ସମସ୍ତେ ମରିବ ମୋର ହାତେ ।
ଶୁଣିଣ କିଙ୍କରଗଣ ବଇରାଗ ପାଇ
ଯେ ଯାହା ଆୟୁଧ ଧରି ମାରିଲେ ତୁହାଇ ।
ଛେଲ ଚକ୍ର କୁନ୍ତ ଭାଲ ଭୂଷଣ୍ଡି ଧରି
ଗୁରୁଜ ଲାଙ୍ଗିଆ ମାରନ୍ତି ଲକ୍ଷ୍ୟ କରି ।
ଖଣ୍ଡା ଶାବେଳୀ ଯେ ପିଟନ୍ତି ମୁଦୁଗର
ଜଳଧାର ପ୍ରାୟ ଯେ ବିନ୍ଧନ୍ତି ତୀକ୍ଷ୍ଣଶର ।
ବେନି ଗୋଡ଼ ଲମ୍ବାଇ ହନୁ ବସିଥିଲା
ଯୁଦ୍ଧ ଦେଖିଣ ପେଟ ମାଡ଼ିଣ ଶୋଇଲା ।
ନିଦ୍ରାଗଲା ପ୍ରାୟେ ସେ ବୁଜିଲା ବେନି ଆଖି
କିଙ୍କରଗଣ ଆଶ୍ଚର୍ଯ୍ୟ ହେଲେ ତାହା ଦେଖି ।
କେ ବୋଲେ ବାନର ଭୟ ପାଇ ମଲା
ସୈନ୍ୟବଳ ଦେଖିଣ ତାଟକା ହୋଇଲା ।
କେ ବୋଲେ ପଳାଇ ଯିବରେ ଏହିକ୍ଷଣି
କେ ବୋଲେ କପି ଗଲେ ମାରିବ ବିଂଶପାଣି ।
କେ ବୋଲେ ପଳାଇବାକୁ କଲାଣି ସେ ବୁଦ୍ଧି
କେ ବୋଲେ ଏହାକୁରେ ଧରିବା ନିରୋଧି ।
ଏତେ ବୋଲି ଧାଇଁଲେ ସକଳ ଅସୁର
ହନୁକୁ ଧରିବାକୁ ହେଲେ ଆଗୁ ସାର ।
ଚଉଦ ସହସ୍ର ବଳ ହେଲେ ଏକମେଳ
ଶବଦରେ ତୋଟା ପୂରି ଶୁଭିଲା ଗହଳ ।
ଶତେ ପୁର କରିଣ ହନୁକୁ ସେ ବେଢ଼ି
ବେନି ସହସ୍ର ଲୋକ ଆସିଲେ ଦଉଡ଼ି ।
ବାନ୍ଧିବେ ବୋଲି ହନୁକୁ ଉପରକୁ ଉଠି
ଏକକୁ ଆରେକ ବୋଇଲେ ଧରିବଟି ।
ଯହୁଁ ସନ୍ନିକଟକୁ ଗଲେ ସେ ଅସୁରେ
ଆଖି ମରଦିଣ ଚାହିଁଲା ହନୁ ଧୀରେ ।
ତଳରେ ଯେତେ ଅସୁର ଥିଲେ ଉଭା ହୋଇ
ଦେଖି ହନୁମନ୍ତ ଦ୍ରୋଣା ଖମ୍ବରୁ ଓହ୍ଲାଇ ।
ଏକର ଉପରକୁ ଆରେକ କଚାଡ଼ିଲା
ପଳାଇ ଯିବାକୁ ସେ ସନ୍ଧି ନ ରଖିଲା ।
ସେଠାରୁ ହନୁମନ୍ତ ମାଇଲା ବିକୋଟି
ଲୋଡ଼ା ବିଧା ଖୁନ୍ଦା ଯେ ମାଇଲା କପିପତି ।
କାହାକୁ ମାଇଲା ବିଚିତ୍ର ଗତି କରି
କାହାକୁ ମାଇଲା କେଶ ଝିଙ୍କି କରି ।
ଲାଞ୍ଜରେ ଗୁଡ଼ାଇ ସେ ସଭିଙ୍କି ବାନ୍ଧିଲା
ବୃକ୍ଷର ଉପରେ ନେଇଣ କଚାଡ଼ିଲା ।
କାହାକୁ ଡେଇଁଯାଇ ମୁଣ୍ଡରେ ଗୋଡ଼ ଦେଇ
କାହା ଓଷ୍ଠ ଧରି ଦାନ୍ତରେ କାମୁଡ଼ଇ ।
କାହାର ଉପରେ ସେ ମାରେ ଭୁଜଦଣ୍ଡ
କାହାକୁ ପାଦରେ ମରଦେ କପିଷଣ୍ଡ ।
ଶୃଗାଳ ଯୁଥେ ଯଥା ବିହରଇ ସିଂହ
ତେସନ ପ୍ରକାରେ ରଣ କରେ ବାତ ପୁଅ ।
ଚାପଡ଼ା ମାରିବାରୁ କାହାର ମୁଣ୍ଡ ଛିଡ଼ି
କାହାକୁ ଟେକିଣ ମାରଇ କଚାଡ଼ି ।
କାହାକୁ ବିଧାଏ କାହାକୁ ଗୋଇଠାଏ
ପାଦଘାତେ କାହାକୁ ମର୍ଦ୍ଦିଲା ଧୂଳି ପ୍ରାୟେ ।
ରୁଧିରେ ଜର୍ଜର ପବନ ନନ୍ଦନ
ସତର ସହସ୍ର କିଙ୍କର କଲା ସେ ମର୍ଦ୍ଦନ ।
ତୋଟାପରେ ମଡ଼ା ସେ ପଡ଼ିଲେ ଅପ୍ରମିତ
ନଦୀର ଆକାରେ ବହିଲା ରକତ ।
କିଙ୍କର ଗଣଙ୍କୁ ସେ କରିଣ ନିପାତ
ବାହୁଡ଼ି ବସିଲା ଦ୍ରୋଣା ଖମ୍ବରେ ତ୍ୱରିତ ।

ଦେଖିବାକୁ ଆସିଲେ ଯେତେକ ଅସୁର
ମାରୁତିକି ଭୟ କରି ପଳାଇଲେ ଖର ।
ଆସ୍ଥାନରେ ବିଜେ କରିଛି ଲଙ୍କପତି
ଅପସରୀଙ୍କ ନୃତ୍ୟରେ ଭୋଳ ତାରମତି ।
ଏମନ୍ତ ସମୟରେ ଜଣାଇଲେ ଅସୁର
ଶୁଣ ଦେବ ପ୍ରତାପି ରାଜରାଜେଶ୍ୱର ।
ମଧୁବନ ଭାଙ୍ଗିଲା ହେ ବଣ ବାନର
ତୋଟାଳିଆମାନଙ୍କୁ କଲା ସେ ସଂହାର ।
କିଙ୍କରଗଣଙ୍କୁ ପେଶିଲୁ ଦଣ୍ଡଧାରୀ
ତୋହର ଆଜ୍ଞାରେ ସେ ଗଲେ ବେଗ କରି ।
ସତର ସହସ୍ର କିଙ୍କରଗଣ ଗଲେ
ବାନର ହସ୍ତରେ ସମସ୍ତେ ମରିଲେ ।
ପାଞ୍ଚ ସାତଜଣ ଅଇଲୁ ଉବୁରି
ସମସ୍ତଙ୍କୁ ବାନର ପକାଇଲା ମାରି ।
ଶୁଣିଣ ବିଷାଦ ହୋଇଲା ମାରୁତି
କି ବୁଦ୍ଧି କରିବି ବିଚାରଇ ମତି ।
ନନ୍ଦିର ଶାପ ମୋତେ ଫଳିଲା ଯେ ଆସି
ନୋହିଲେ ବାନର କି ସିନ୍ଧୁ ଡେଇଁ ପଶି ।
ନିକଟ ହେଲା ମୋର ମରଣ କାଳ
ଜାନକୀର କୋପ ମୁଁ ଯିବି ସ୍ୱର୍ଗ ଆଳ ।
ଏତେ ଭାବି ମନକୁ କଲା ସେ ନିରସ
ବୋଇଲା ମୋର ପ୍ରଭୁ ଦଶରଥ ଶିଷ୍ୟ ।
ଦୁଇଭାଇ ଆମ୍ଭେ ଯେ ମରିବୁ ରାମହସ୍ତ
ଅସୁର ଜନମରୁ ହୋଇବୁଁ ମୁକତ ।
କୋଟି ଯୁଗ ଯାହାକୁ ନିମିଷ ପରାୟ
ଦୋଷ କରିବାରୁ ଜାତ ହେଲୁଁ ଅସୁର ଦେହ ।
କ୍ରୋଧ ନୋହିଲେ ଦେବତାମାନେ ଜାଣି ପୁଣ
ସଂଶୟ ଫିଟିଲେ ନ ମରିବେ ଦୈତ୍ୟଗଣ ।
ଏମନ୍ତ ବିଚାର ମନରେ କଲା ଦୈତ୍ୟ
ଗୁପତ ରଖିଲା କଥା ନ କଲା ପ୍ରକାଶିତ ।
କିକରଙ୍କ ନାଶ ଶୁଣି କ୍ରୋଧେ ବିଂଶପାଣି
ପ୍ରଜ୍ୱଳିତ ହୋଇଣ ଆଜ୍ଞା ଦେଲା ପୁଣି ।
ବାନର ଛାର ହୋଇ ଏଡ଼େ ଦର୍ପ ତାର
ଧରିଆଣ ତାର ମାଂସ କରିବି ଆହାର ।
ଏତେ ବୋଲି ରାବଣ ଚଉଦିଗେ ଚାହିଁ
କାହାକୁ ପେଶିବି ବୋଲି ମନରେ ବିଚାରଇ ।
ବଳରାମ ଦାସ ଯେ ମନେ ବିଚାରିଲା
ଲଙ୍କାରେ ସୀତା ଚରଣେ ଶରଣ ପଶିଲା ।
ପାର୍ବତୀ ପଚାରିଲେ କହ ପଞ୍ଚାନନ
ସେଠାରୁ କିସ କଲା ବୀର ହନୁମାନ ।

ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ମାରୁତି କିଙ୍କରଗଣଙ୍କୁ ନାଶ କରି ।
ଦ୍ରୋଣା ଖମ୍ଭ ଉପରେ ଶୋଇଲା ଯେ ଯାଇ
ବଳକା କିଙ୍କରଗଣ ରାଜା ଆଗେ କହି ।
ଶୁଣି କରି ରାବଣ ତାଟଙ୍କା ହୋଇଲା
ଚଉଦସସ୍ର ତୋଟାଳିଆ ଆଗ ସେ ମାଇଲା ।
ସତର ସହସ୍ର ମୋର କିଙ୍କର ଗଲେ ନାଶ
ଏକାଳେ ବାନର ତାଙ୍କୁ କରିଦେଲା ଧ୍ୱଂସ ।
ଭାଙ୍ଗିଲା ମଧୁବନ ଅଶୋକ ବିପିନ
ଆଉ କାହୁଁ ପାଇବି ମୁଁ ବସନ୍ତ ପବନ ।
ଶାଳକଗଣଙ୍କୁ ଦେଖି ପଠାଇବି ମୁହିଁ
ଦୁଇଗୋଟି ସେନାପତି ତାଙ୍କର ସଙ୍ଗେ ଦେଇ ।
ବତିଶ ସହସ୍ର ଶଳା ଥିଲେ ପଟୁଆରେ
ତାହାଙ୍କୁ ଆଜ୍ଞା ଦେଲା ରାଇଣ ସତ୍ୱରେ ।
ତୁମ୍ଭେମାନେ ଯାଇଣ କପିଙ୍କି ଘେନି ଆସ
ନୋହିଲେ ତୁମ୍ଭଙ୍କୁ ନରଖିବି ଲଙ୍କାଦେଶ ।
ବାନର ଶତ୍ରୁ ମୋର ଭାଙ୍ଗିଲା ମଧୁବନ
ଆବର ମାଇଲା ସେ ଅନେକ ସଇନ ।
ତୁମ୍ଭେମାନେ ଯାଇଣ ତାକୁ ଧରିଆଣ
ଏସନକ ଅଦେଶ ଦେଲା ଲଙ୍କରାଣ ।
ଶୁଣିଣ ଶାଳକଗଣ ତତକ୍ଷଣେ ଗଲେ
ଛେଲ କୁନ୍ତ ଚକ୍ର ନାରାଚ ସଙ୍ଗେ ନେଲେ ।
ପରୀଘ ମୁଦ୍ଗର ଅନେକ ସାବେଳୀ
ସୈନ୍ୟ ଗଲାବେଳେ ଯେ ହଲିଲା ମହିଆଳୀ ।
ନଗ୍ରର ନରନାରୀ ବୋଲନ୍ତି ଗୋଡ଼ାଇ
ଆଗ ହୋଇ ତୁମ୍ଭେ କେବେ ହେଁ ଯିବ ନାହିଁ ।
ମାୟା ବାନର ସେ ପ୍ରତ୍ୟେକ୍ଷେ ଅଟେ ଯମ
ଅନେକ କୂଟରେ ସେ କରଇ ସଂଗ୍ରାମ ।
କଠୋର ମାରୁଣୀ ମାରଇ ଯେ ସେହି
ସଂଗ୍ରାମ ଭୂମିକିରେ ପଶିଣ ଯିବ ନାହିଁ ।
ଉପାୟ କରିଣ ବାବୁ ତାକୁ ଧର
ବିକ୍ରମ ଦ୍ୱନ୍ଦ୍ୱ କରଇ ସେ ଭରସି ନ ପାର ।
ଶୁଣିଣ ହସିଲେ ଶାଳକଗଣ ପୁଣ
ବାନର ପଶୁ ଜନ୍ତୁ ମାରିବୁ ତକ୍ଷଣ ।
ଏଥକୁ ଆସିଲାଦିନୁ ତା ମୃତ୍ୟୁ ନିୟତ
ତୁମ୍ଭେମାନେ କହୁଛ ନ ଜାଣିଣ ତତ୍ତ୍ୱ ।
କିଙ୍କରଗଣେ ନ ଜାଣି ହେଳା ଯୁଦ୍ଧ କଲେ
ନ ଜାଣିବା ପଣରେ ଜୀବନ ହରାଇଲେ ।
ଏହିକ୍ଷଣି ଯାଇଣ ଆଣିବୁ ତାକୁ ଧରି
ବନ୍ଦୁ ଜୀବଧରି ଯେହ୍ନେ ଶବର ବନ୍ଦୀ କରି ।

ଏମନ୍ତ ବଚନ କହିଲେ ସେମାନେ
ଗୋଡ଼ାଇବା ଦଇତ୍ତ୍ୟ ଫେରିଲେ ତତକ୍ଷଣେ ।
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ
ମଧୁବନରେ ଯାଇଣ ପ୍ରବେଶ ହୁଅନ୍ତି ।
ତ୍ରୋଣାଖମ୍ଭ ଉପରେ ହନୁ ଅଛି ଶୋଇ
ଡର ଭୟ ତାହାର କାହାକୁ ହିଁ ନାହିଁ ।
ରାବଣ ଶାଳକଗଣ ନିକଟକୁ ଗଲେ
ଆରେ ଆରେ ଜପି ବୋଲିଣ ଡାକିଲେ ।
ଶତେଧୂର କରିଣ ବେଢ଼ିଲେ ତ୍ରୋଣାଖମ୍ଭ
ଆଗ ବଢ଼ି ରଣ କରିଲେ ଆରମ୍ଭ ।
[illegible]ରେ ମୁଷ୍ଟି ଦେଲେ ଚିହ୍ନିଲେ [illegible]
[illegible] ଗୋଡ଼ି ମାରେ ହନୁ ମୁଦ୍‌ଗର ।
[illegible]
[illegible] ।
[illegible] ସମସ୍ତେ ନାଶ ଗଲେ
ଜାଣିକରି ରାବଣ ପେଶିଲା ଯାଙ୍କୁ ଭଲେ ।
ଏମାନେ ଅଇଲେ ଏବେ ଯାଇବେକି ପ୍ରାଣ
ମାରିଣ ଅସୁରଙ୍କ ଜର ରଣଭଣ ।
ଏମନ୍ତ ବିଚାରିଣ ତଳକୁ ଡେଇଁପଡ଼ି
ଦେଖି ତଳେ ମାରୁତିକି ଶାଳକଗଣ ବେଢ଼ି ।
ହୁଙ୍କାରୀ ହନୁମନ୍ତ ବୃକ୍ଷେକ ଉପାଡ଼ିଲା
ଅସୁରଙ୍କ ଉପରେ ନେଇଣ ପିଟିଲା ।
ପିଟଇ ମାରୁତି ବୃକ୍ଷକୁ ବୁଲାଇଣ
ଅସୁରଗଣ ସବୁ ଲୋଟିଲେ ଭୂମିରେଣ ।
ଭୟରେ ଶାଳକଗଣ ପଳାଇ ମନ କଲେ
ପଳାଇଣ ଖଣ୍ଡେ ଦୂର ପାଲଟି ଚାହିଁଲେ ।
ବେନିବୃକ୍ଷ ଘେନି ହନୁ ଗଗନେ ବିକ୍ରମଇ
ବିଜୁଳିର ତେଜ ପ୍ରାୟେ ମାରୁତି ଦିଶଇ ।
ଗଗନୁ ଖସି କେଶ ଧରିଣ ଫିଙ୍ଗି ଦେଇ
କୁଦା ମାରି କାହାର ବୁକୁ ଯେ ଭାଙ୍ଗଇ ।
ପାଦରେ ମରଦିଣ କାହାକୁ କଲା ଚୁର
ଏକ ପରେ ଆରକକୁ ପିଟିଲା ହନୁବୀର ।
ଉଚ୍ଚେ ଡାକ ଦିଅଇ ଅସୁରେ ଆଜ ମଲ
ଶ୍ରୀରାମଚନ୍ଦ୍ରଙ୍କର ଦୋରେହା ହୋଇଲ ।
ଏବେ ରଘୁନାଥ ଯେ ଲଙ୍କାକୁ ଆସିବେ
ରାବଣର ସଗୋତ୍ର ସହିତେ ନାଶ ଯିବେ ।
ସୁଷେଣ ନଳନୀଳ ବହୁତ ସଂହାରିବେ
ଜମ୍ବେବ ତାରାକ୍ଷ ଯେ ଅନର୍ଥ କରିବେ ।
ଗବୟ ଗବାକ୍ଷ ଯେ ଦଧିମୁଖ ବୀର
କାଳିମୁଖ କାଳିଞ୍ଜନ ମୋହର ପିଅର ।

ଧୂମାକ୍ଷ କାକାକ୍ଷ ସର ସେତୁବନ୍ଧ
କଞ୍ଚଣ ତାରାକ୍ଷ ଯେ ମହୀନ୍ଦ୍ର କୁମୁଦ ।
ଏମାନେ ଅଇଲେ କି ରହିବ ଲଙ୍କାପୁରୀ
ଋକ୍ଷ କପିବଳ ଯେ କରିବେ ହୁରି ଛୁରି ।
ଷାଠିଏ ସାଗର ଯେ ଆସିବେ ବାନର
ତିରିଶ ସାଗର ଆସିବେ ଭାଲୁବୀର ।
ବେନିଲକ୍ଷ ନୃପତି ଲଙ୍କାରେ ରୁଣ୍ଡ ହେବେ
ମଲ୍ଲ ମହାମଲ୍ଲ ସେନାପତି ଯେ ଆସିବେ ।
ଶ୍ରୀରାମ ଲକ୍ଷଣ ହାଣିବେ ତୁମ ଶିର
ଆଜ ମୁଁ ଯୋଗାଏ ତୁମଙ୍କୁ ନିକି ମାରି ।
ଏତେ ବୋଲି ବୀର ଗର୍ଜି ଛାଡ଼ିଲା
ଅସୁରଙ୍କ ଶିରରେ [illegible] ପଡ଼ିଲା ।
[illegible]
ଦଇତେ ବିଚାରିଲେ ଏକଥା କେମନ୍ତ ।
ରାଜାଙ୍କର ଆଗରେ ଏହା ଜଣାଇବା ଯାଇ
ଏମନ୍ତ ଭାବି ଦୂତ ଦେଲେ ପଠିଆଇ ।
ରାବଣର ଆଗରେ ଜଣାଇଲା ଚାର
ମଧୁବନ ଭାଙ୍ଗିଲା ଯେବଣ ବାନର ।
ତାହାକୁ ଧରିବାକୁ ପେଶିଲେ ଆମ୍ଭଙ୍କୁ
ତାଠାରୁ ଶୁଣିଲୁ ଅପୂର୍ବ ଚରିତକୁ ।
ସଂଗ୍ରାମ କରୁଛି ଭୟ ଭ୍ରାନ୍ତି ଛାଡ଼ି
ମହା ମହା ତରୁମାନ ହେଳେଣ ଉପାଡ଼ି ।
ପକ୍ଷୀ ପ୍ରାୟ ହୋଇ ସେ ଗଗନେ ଉଡ଼ଇ
କାହାକୁ ମନରେ ଶଙ୍କା ତାର ନାହିଁ ।
ବୋଲଇ ଶ୍ରୀରାମ ଲଙ୍କାକୁ ଆସିବେ
ରାବଣର ସ୍ୱଗୋତ୍ର ସହିତେ ମାରିବେ ।
ସୁଗ୍ରୀବର ରାଜା ହେ ଆସିବେ ଏଥେ ପୁଣ
ସେ ଆସିଲେ ଏ ପୁର କରିବେ ରଣଭଣ ।
ଅଙ୍ଗଦ ସୁଷେଣ ଜମ୍ବେବ ନଳ ନୀଳ
ଏମାନେ ହତ ଯେ କରିବେ ସୈନ୍ୟବଳ ।
ଲକ୍ଷ ବାନର ଯେ ଆସିବେ ସଇନୀ
ସବୁରି ହସ୍ତେ ଥିବ ଶାଳଶିଳ ଘେନି ।
ଏସନକ ବୋଲିଣ କରଇ ରଣଗୋଳ
ଭୋଦେବ ସେ ବାନର ଅଟଇ ଅନର୍ଗଳ ।
ଶୁଣିଣ ରାବଣେଶ୍ୱର ବ୍ରହ୍ମାଙ୍କ ମୁଖକୁ ଚାହିଁ
ଭୋଦେବ ପିତାମହ ଜାଣିଥାଅ ତୁହି ।
ସୀତାର ଉପାୟ ଅଟେ ସବୁକୃତ୍ୟ
ଏତେ ବୀର ମୋର କଲା ସେ ନିପାତ ।
ମାଙ୍କଡ଼ ଗୋଟାଏ କାହୁଁ ଅଛି ଆଣି
ହାନି ଅପଚୟ ଯେ ତୁମ୍ଭେ ଥାଅ ଜାଣି ।

ବେଦବର ଶୁଣିଣ କହନ୍ତି ବଚନ
ଲଙ୍କାପୁରେ ସୀତା ଯେ ହୋଇଛନ୍ତି ବନ୍ଦି ଜାଣ ।
କେମନ୍ତେ କହୁଛ ବିଶର୍ବାର ଶିଷ୍ୟ
ସ୍ତିରୀଲୋକଙ୍କୁ କିମ୍ପା ଦେଉଅଛ ଦୋଷ ।
ଶ୍ରୀରାମ ଲକ୍ଷ୍ମଣ ଯେ ଦଶରଥ ସୁତ
ତାଙ୍କ ସଙ୍ଗରେ ଯୁଦ୍ଧ ନ କଲ ଦଶମାଥ ।
ଶ୍ରୀରାମ [illegible]
ଅଧର୍ମ [illegible] ।
ଜାନକୀ [illegible]
[illegible] ପ୍ରମାଣ ।
ତିନିମାସ ପୂରିବ ନ ହେବ କାଳ ଜାଣ
[illegible] ଜାଣ ।
[illegible]
[illegible] ଅଟନ୍ତି ଜନକ କୁମାରୀ ।
[illegible] ତୋତେ ଯେ କହୁଅଛି ମୁହିଁ
ସୀତାଙ୍କୁ ଆଣିଲେ ମରିବୁ [illegible] ।
ସତଜଆମାନ [illegible]
ଶ୍ରୀରାମଙ୍କ ସଙ୍ଗରେ ବିମନ ହୋଇଲୁ ।
ଜାନକୀ ଆସିଲା ଦିନୁ ସେ ଅନାଡି
ଚାରିଦିଗେ ଖୋଜିବାକୁ ଦୂତ ବୁଲୁଛନ୍ତି ।
ଦୂତ ପଠିଆଇ ଥିଲେ ଏ ତୋର ଲଙ୍କାକୁ
ଡକାଇ ଆଣିଲେ ଜାଣିବା ତଥ୍ୟକୁ ।
ଶୁଣିଣ ରାବଣ କ୍ରୋଧଭର ହୋଇ
ବୋଇଲା ରାମକୁ ମୋର ଡର କାହିଁପାଇଁ ।
ମୋ ସଙ୍ଗେ ଯୁଦ୍ଧ କରି ଘରଣୀ ତାର ନେଉ
ମୋର ଜୀବଥିଲେ ସୀତା ନ ଦିଏ ଆଉ ।
ଏତେ କହି ରାଇଲା ପ୍ରଶସ୍ତ ସେନାପତି
ଜମ୍ବୁମାଳିକି ସେ ହକାରିଲା କତି ।
ତୁମ୍ଭେ ଦୁଇଜଣ ଯିବ ଏହିକ୍ଷଣ
ବାନରକୁ ବାନ୍ଧିଣ ମୋର ଆଗକୁ ଆଣ ।
ପ୍ରାଣରେ ନ ମାରି କପିଙ୍କୁ ଘେନି ଆସ
ଏସନକ ଆଜ୍ଞା ଦେଲା ଦଶଈଶ ।
ଶୁଣିଣ ଜମ୍ବୁମାଳି ପ୍ରଶସ୍ତ ବୀରବେନି
ସଜହୋଇ ବାହାରିଲେ ଅନୁକୂଳ ଘେନି ।
ଆପଣେ ବେନିରଥ ଚଢ଼ି ବେନି ରଥୀ
ଏହି ସମୟରେ ଚାର ଜଣାବନ୍ତି ।
ଶୁଣ ଦେବ ରାବଣ ପ୍ରତାପି ଲଙ୍କେଶ୍ୱର
ବତିଶ ସହସ୍ର ଶାଳକ ମଲେ ତୋର ।
ତୁହି ସିନା ଆମ୍ଭରାଜା ତୋତେ ଜଣାଇଲୁ
ଦଶ ପାଞ୍ଚଜଣ ବଳିଣ ଆସିଲୁଁ ।

ଶୁଣିଣ ରାବଣ ମନରେ କ୍ରୋଧ କଲା
ନିର୍ବେଦ ହୋଇଣ କଥା ନ କହିଲା ।
ରବି ଅସ୍ତ ହୋଇଲା ଘୋଟିଲା ତିମିରୀ
ଦେବଆଳେ ଶଙ୍ଖଧ୍ୱନି ନେବେ ଗଲେ ମୁନିପୁରୀ ।
ତ୍ରିଲୋଚନ ଚଳିଲେ ଜପିଳାସପୁର
ଯଶୋବନ୍ତୀପୁରକୁ ଗଲେ ଦେବବର ।
ସବୁ ଦେବତା ନିଜପୁରକୁ ଚଳିଗଲେ
ଭିତରେ ଅବକାଶ ଦଶଗ୍ରୀବ ହେଲେ ।
[illegible] ଜମ୍ବୁମାଳି [illegible]
ଦଶସହସ୍ର ପଦାତି ଦଶସସ୍ର ହସ୍ତୀପୂର୍ଣ
ମ [illegible] ସୈନ୍ୟ ଯେ ସଙ୍ଗରେ ଅପ୍ରମିତ
ଆଳୟ [illegible] ପାଟହନ୍ତ ।
[illegible]
[illegible] ।
[illegible]
[illegible] ।
[illegible] ରଜନୀ ପ୍ରାହାଇଲେ
ପୂର୍ବଦିଗେ ଦିନମଣି ଉଦୟ ହୋଇଲେ ।
ଦିବସ ହେବାରୁ ସକଳ ଦୈତ୍ୟବଳ
ଦ୍ରୋଣାଖମ୍ବ ଉପରେ ଦେଖିଲେ ବାୟୁବାଳ ।
ଖମ୍ବର ଉପରେ ଅଛନ୍ତି ବୀର ବସି
ବାହା ମରଦିଣ ହୁଅଇ ଘଷାଘସି ।
ହାଇ ଘନ ଘନ ମାରଇ ମାରୁତି
ମିଟି ମିଟି କରିଣ ଚାହିଁଇ ଚଉକତି ।
ଏସନକ ସମୟରେ ସେନାପତି ଗଲେ
ବରଷା ଜଳ ପ୍ରାୟ ନାରାଚ ଛାଡ଼ିଲେ ।
ଫିରିଫିଣି ଖଣ୍ଡା ଧରିଣ ଝମକାନ୍ତି
କେକାଣି ପଟାନ୍ତର ବିଜୁଳିର କ୍ୱୋତି ।
ପାଟ ଛତ୍ର ଯେହ୍ନେ ଉହାଡ଼ଇ ମେଘ
ଛାଗପଲ ଦେଖି ଯେହ୍ନେ ପଳାଶଇ ବ୍ୟାଘ୍ର ।
ମତ୍ତବ୍ୟାଘ୍ର ଯେହ୍ନେ ପଦ୍ମ ବନରେ ଖେଳଇ
ଗାଈଗୋଠରେ ଯେହ୍ନେ ବୃଷଭ ପଳାଶଇ ।
ମାରୁତି ବିଚାରେ ଏ ଅଟନ୍ତି ବେନିରଥୀ
ମୋର ତୁଲେ ଯୁଦ୍ଧ କରିବାକୁ ଆସିଛନ୍ତି ।
କୋପରେ ରାବଣ ଏହାଙ୍କୁ ପେଷିଲା
ଦ୍ୱିତୀୟ ଦିନ ଯୁଦ୍ଧେ ଏ ମରିବେ ଭଲା ।
ସେବାକଲା ଲୋକଙ୍କୁ ସେ ଛଟକେ ନାଶଇ
ଆପେ ନ ଆସି କିମ୍ପା ପରକୁ ପେଶଇ ।
ଏ ଦୁଇ ସେନାପତି ଅଇଲେ ପରିଘାଇ
ରାବଣ ପେଶିଅଛି ଧରିନେବା ପାଇଁ ।

ଏମନ୍ତ ବିଚାର କରନ୍ତି କୂଟପଣ
ଏହା ଭାଳି ଉଠିଲା ପବନ ନନ୍ଦନ ।
ବିନ୍ଧିବାର କାଣ୍ଡକୁ ଧରିଲା ବେଗେ ଯାଇ
କାଉଁରିଆ କାଠି ପରି ଖଣ୍ଡ ଖଣ୍ଡ କରଇ ।
କାହାରି ହସ୍ତରୁ ଶସ୍ତ୍ର ଛଡ଼ାଇ ଆଣି
ସେହି ଶସ୍ତ୍ର ଧରିଣ ଛେଦଇ କପିମଣି ।
ହସ୍ତୀଙ୍କ ଉପରକୁ ଚଢ଼ିଣ ଧାଡିକର
ଥୋରହସ୍ତ ଧରିଣ ମାରଇ ହନୁବୀର ।
ହସ୍ତୀର ଉପରେ ହସ୍ତୀକି କଚାଡ଼ଇ
ବେନି ସହସ୍ର ହସ୍ତୀ ନାଶ କଲା ତହିଁ ।
ଅଶ୍ୱଙ୍କର ଉପରେ ଅଶ୍ୱଙ୍କୁ ନେଇ ମାରି
ସିପାହୀଙ୍କି ମାରି ଅଶ୍ୱକୁ ଦେଲା ଦଳି ।
ତୀକ୍ଷ୍ଣ ଖଡ଼ଗ ଧର କାହାକ ସେ ହାଣି
କାହାକୁ ଗୋଇଠା ଯେ ବିଧା ମାରେ ପୁଣି ।
ମାହୁନ୍ତଙ୍କ ବାଳକୁ ଧରିଣ ଫିଙ୍ଗିଦେଇ
କାହାକୁ ଧରି ବେନିଭୁଜ ଉପାଡ଼ଇ ।
ରଣଗୋଳ କରିଣ ମାରଇ ହନୁମାନ
ଶୁଖିଲା କାଠକୁ ଅଗ୍ନି ଯେହ୍ନେ କରଇ ଦହନ ।
ଦେଖିଣ ଜମ୍ବୁମାଳି ପ୍ରଶସ୍ତ ବେନିବୀର
ହନୁର ନିକଟକୁ ଟେକିଲେ ରହୁ ବର ।
ବର୍ଷିଲେ ନାରାଚ ବରଷାକାଳ ପ୍ରାୟ
ଧାଇଁଣ ହନୁମନ୍ତ ପାଲଟିଲା କାୟ ।
ଜମ୍ବୁମାଳି ରଥରେ ବସିଲାକ ଯାଇ
ହୁଙ୍କାର ଶବଦ ହନୁ ସେଠାରେ କରଇ ।
ସାରଥିର ବାଳ ଧରି ପକାଇଲା ତଳେ
ପଡ଼ିଣ ସାରଥି ମଲା ସେ ଧରଣୀରେ ।
ସେଠାରୁ ହନୁମନ୍ତ ହୁଁକାର ଧ୍ୱନି କରି
ପ୍ରଶସ୍ତର ସାରଥୀ ଉପରେ ଯାଇ ପଡ଼ି ।
ଦୁଇରଥୀଙ୍କର ସାରଥି ଯହୁଁ ମଲେ
କୋପରେ ବେନିବୀର ଅନେକ ଶସ୍ତ୍ର କଲେ ।
ରଥରୁ ହନୁମନ୍ତ ଘୋଡ଼ାକୁ ଫେଡ଼ିଦେଲା
ଦ୍ରୋଣାଖମ୍ବ ଉପରେ ଯାଇଣ ବସିଲା ।
କିମ୍ଭୁତ ରୂପରେ ସେ ପଡ଼ିଲାକ ମାଡ଼ି
ପ୍ରଶସ୍ତ ପଳାଇଲା ରହୁ ବର ଛାଡ଼ି ।
ଦଣ୍ଡେ ରହିଥିଲେ ହରାଇ ଥାନ୍ତାପ୍ରାଣ
ତରକି ପଳାଇଲା ସୁମାଳି ନନ୍ଦନ ।
ହନୁମନ୍ତ ଦେହ ଲାଗି ରହୁ ବର ଭାଜି
ପ୍ରଶସ୍ତ ପଳାଇଲା ରହୁ ବର ଛାଡ଼ି ।
ଦଣ୍ଡେ ରହିଥିଲେ ହରାଇ ଥାନ୍ତା ପ୍ରାଣ
ତରକି ପଳାଇଲା ସୁମାଳି ନନ୍ଦନ ।
ହନୁମନ୍ତ ଦେହ ଲାଗି ରହୁ ବର ଭାଜି
ପ୍ରଶସ୍ତ ପଳାଇଲା ହନୁଉଠେ ଗଳଗାଜି ।
ସାମାନ୍ୟ ରୂପ ଧରି ସେଠାରୁ ଉଡ଼ିଗଲା
ଜମ୍ବୁମାଳି ରଥ ଉପରେ ବସିଲା ।
ମୁକୁଟକୁ ଧରିଣ ଝିଙ୍କିଲା ଦୁଇବାଳ
ରହୁବର ଉପରୁ ପଡ଼ିଲା ଦୈତ୍ୟବୀର ।
କ୍ରୋଧରେ ଜମ୍ବୁମାଳି ପରିଘ ଧଇଲା
ମାରୁତି ଉପରେ ନେଇଣ ପିଟିଲା ।
ହନୁମନ୍ତ ପରିଘ ଛଡ଼ାଇ ତାର କରୁ
ସେହି ପରିଘ ଘେନିଣ ପିଟିଲା ହନ୍ତକାରୁ ।
ପରିଘ ପିଟନ୍ତେ ବାଜି ହେଲା ଚୂନା
ଦେଖିଣ ଜମ୍ବୁମାଳି ହନୁକୁ ଧରେ କିନା ।
ବାହୁଯୁଦ୍ଧ ବେନି କଲେ ଯେ ସେଠାରେ
ମୁଣ୍ଡକୁ ମୁଣ୍ଡ ମାରନ୍ତି ଅତି କ୍ରୋଧ ଭରେ ।
ଜମ୍ବୁମାଳିର ମୁଣ୍ଡ ଫାଟିଗଲା ପ୍ରାଣ
ଭୟରେ ପଳାଇଲା ସେ ସୁମାଳି ନନ୍ଦନ ।
ରଣଭଗ୍ନ ହୋଇ ତହୁଁ ପଳାଇଲା
ଲଙ୍କପତି ଛାମୁରେ ବାର୍ତ୍ତା ଜଣାଇଲା ।
ପ୍ରଶସ୍ତ ପଳାଇବାର ମାରୁତି ଦେଖିଣ
ଦଶ ସହସ୍ରବଳ ଲାଙ୍ଗେ ବାନ୍ଧିଲା ସେ ଜାଣ ।
କ୍ରୋଧରେ ପିଟିଲା ପବନ ନନ୍ଦନ
ପାର୍ଥିବ ଦେହ ଛାଡ଼ି ଗଲେ ଯମସ୍ଥାନ ।
ଦଶ ପାଞ୍ଚ ସେଠାରୁ ପଳାଇଣ ଗଲେ
ମଧୁବନ ତୋଟାରେ ଗୋଟିଏ ନ ରହିଲେ ।
ଦେଖିଣ ହନୁମନ୍ତ ଦ୍ରୋଣାଖମ୍ବେ ଉଠି
ବେନିଗୋଡ଼ ଲମ୍ୱାଇ ବସିଲା ଯେ ସେଠି ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଶତେଯୁଣ ଲଙ୍କାରେ ପଡ଼ିଲା ହାଲହୋଳି ।
ଦଇତ ଦଇତୁଣୀ କଲେ ଯେ ରୋଦନ
କେ ବୋଲଇ ପୁତୁରା ମଲା ମୋର ପୁଣ ।
କେ ବୋଲଇ ଗୁରସ୍ତ ଦିଅର ନାଶଗଲେ
କେ ବୋଲଇ ଭାଇ ଖୁଡୁତା ମୋର ମଲେ ।
କେ ବୋଲଇ ମୋରର ଶ୍ୱଶୁର ନଣନ୍ଦେଇ ମଲେ
ଶାଶୁ ନଣନ୍ଦ ମୋହର ବିଧବା ହୋଇଲେ ।
ଏମନ୍ତେ ରୋଦନ କରନ୍ତି ଦୁଇତୁଣୀ
ଲଙ୍କାଗଡ଼େ ହାଲହୋଳି ପଡ଼ିଲାକ ପୁଣି ।
ପାର୍ବତୀ ପୁଚ୍ଛାକଲେ କହ ପ୍ରାଣନାଥ
ରାବଣ ଆଗରେ ଯାଇ କହିଲା ପ୍ରଶସ୍ତ ।
ଶୁଣିଣ ଦଶଗ୍ରୀବ କଲା କି ବିଚାର
ସେ କଥା ମୋର ଆଗେ କହ ହେ ଈଶ୍ୱର ।

ଶଙ୍କର ବୋଇଲେ ଶୁଣ ଗୋ ଭଗବତୀ
ରାବଣ ଆଗେ କହଇ ପ୍ରଶସ୍ତ ସେନାପତି ।
ଶୁଣ ହେ ରାଜନ ଲଙ୍କାର ଅଧିପତି
ସ୍ୱର୍ଗମର୍ତ୍ତ୍ୟ ପାତାଳରେ ଅଟୁ ଚକ୍ରବର୍ତ୍ତୀ ।
ଯେବଣ ବାନର ଭାଙ୍ଗିଲା ମଧୁବନ
ଆବର ମାଇଲା ତୋଟାଳିଆଗଣ ।
ରଣଭଣ କରିଣ ମାଇଲାକ ସୈନ୍ୟ
ଶୁଖିଲା କାଷ୍ଠକୁ ଯେହ୍ନେ ଦହଇ ଦହନ ।
ମୋହର ରହ୍ମ ବରେ ପଡ଼ିଲା ସେ ମାଡ଼ି
ଡରେ ପଳାଇ ଅଇଲି ରହ୍ମ ବର ଛାଡ଼ି ।
ତାର ଦେହେ ବାଜି ରଥ ହୋଇଗଲା ଚୂର
ପକ୍ଷୀ ପ୍ରାୟ ହୋଇ ସେ ଉଡ଼ିଲା ଗଗନର ।
ପରୀଘ ଘେନି ମାଇଲା ଜମ୍ବୁମାଳି ବୀର
ହନୁର ସଙ୍ଗେ କଲା ଅନେକ ସମର ।
କର୍ମର ଅବଳରେ ଜୀବନ ହାରିଲା
ପାର୍ଥିବ ଦେହ ଛାଡ଼ି ସଞ୍ଜିବନୀ ଗଲା ।
ଯେତେକ ସୈନ୍ୟବଳ ପଠାଇଣ ଥିଲେ
ତାହାର ହସ୍ତରେ ସମସ୍ତେ ପ୍ରାଣ ଦେଲେ ।
ଶୁଣିକରି ରାବଣ ହୋଇଲା ଚକିତ
ଆଜ୍ଞା ଦେଇ ରାବଣ ରୁହାଇଲା ନୃତ୍ୟ ।
ଅପସରୀମାନେ ଯେ ନୃତ୍ୟ କରୁଥିଲେ
ଦଶାନନ ଆଜ୍ଞାରେ ନୃତ୍ୟ ବନ୍ଦ କଲେ ।
ରାବଣ ଛାମୁରେ ଥିଲେ ପାଞ୍ଚ ସେନାପତି
ତାହାଙ୍କୁ ଡକାଇଲେ ପୌଲସ୍ତିର ନାତି ।
ପ୍ରକାଶ ନ ଶକର୍ଣ୍ଣ ବିରୁପାକ୍ଷ ନାମ
ଶାର୍ଦ୍ଦୁଳ ଗଉରାକ୍ଷ ଅଟେ ପାଞ୍ଚଜଣ ।
ତାଙ୍କୁ ଆଜ୍ଞା ଦେଲେ ଆଣ କପିଙ୍କୁ ଧରି
ଜୀବନ୍ତା ଆଣିବଟି ପ୍ରାଣରେ ନ ମାରି ।
ଉପ୍ରୋଧ ଛାଡ଼ିଣ ନିରାଷରେ ଯୁଝିବ
ଜମ୍ବୁମାଳି ମଲାରେ ସାମାନ୍ୟ ନ ମଣିବ ।
ସେ କପିକୁ ଦେଖିଲେ ମୁଁ କରିବି ଆହାର
ଆଜ୍ଞାପାଇଣ ସଜ ହେଲେ ପାଞ୍ଚବୀର ।
ତେଜବନ୍ତ ନାଗ ସେ ଚଢ଼ି ବାହାରିଲେ
ବତିଶ ସହସ୍ର ସୈନ୍ୟ ତାଙ୍କ ସଙ୍ଗେ ଗଲେ ।
ବେନିଶତ ହସ୍ତୀ ଅଶ୍ୱ ସହସ୍ରେତ
ଗଗନ ନାଦ କରି ବାହାର ହେଲେ ପଥ ।
ସଜ ହୋଇ ବାହାରିଲେ ପାଞ୍ଚ ବୀରବର
ଢୋଲ ଦମା ଟମକ ବାଜଇ ଆଗର ।
ବାଟରେ ନାରୀମାନେ କହନ୍ତି ଆଙ୍ଗୁଳି
ମାୟାବୀ ବାନର ତାକୁ ଧରିବ ଛନ୍ଦ କରି ।

କହୁ କହୁ ସୈନ୍ୟ ଯେ ମଧୁବନେ ଯାଇ
ଦେଖିଲେ ହନୁତ୍ରୋଣା ଖମ୍ବରେ ଅଛି ଶୋଇ ।
ତାକୁ ପଛ କରିର ସେନାଏ ଆଗୁଁ ଗଲେ
ଆରେ ଆରେ କପି ବୋଲି ଉଚ୍ଚରେ ଡାକ ଦେଲେ ।
ସୈନ୍ୟ ଘେନି ପାଞ୍ଚବୀର ହନୁକୁ ଘେରିଲେ
ମଧୁବନ ତୋଟାରେ ସଇନୀ ଛାଇ ହେଲେ ।
ମାର ମାର ଶବଦ ଶୁଭେ ଚଉପାଶ
ତୁନି ହୋଇ ଶୋଇଛି ଶ୍ରୀରାମଙ୍କ ଦାସ ।
ମନରେ ବିଚାରଇ ଅସୁର ଅଜ୍ଞାନ
ଏହିକ୍ଷଣି ସର୍ବେ ମରିବେ ଏହି ସ୍ଥାନ ।
ମରଣକୁ ନ ଡରି ହୁଅନ୍ତି ଆଗୁଁସାର
ସାମାନ୍ୟ ଭରସା କି ବୋଲିବା ତାହାଙ୍କର ।
ଦେଖିଣ ହନୁମନ୍ତ ଖମ୍ବରୁ ଡେଇଁ ପଡ଼ି
ଥୋକାଏ ସୈନ୍ୟ ସେ ମାରିଲା କଚାଡ଼ି ।
କାହାକୁ ଗୋଇଠାଏ କାହାକୁ ମାରେ ବିଧା
କାଣ୍ଡ ଖଣ୍ଡା ନାହିଁ ତାର ଦୁଇ ହାତ ସୋଧା ।
କାହାକୁ ଚାପୁଡ଼େ ମାରନ୍ତେ ମୁଣ୍ଡ ଛିଡ଼ି
କାହାକୁ ଧୂଳି କଲା ପାଦରେ ରଗଡ଼ି ।
ଏକର ଉପରେ ଆରେକ ନେଇ ପିଟି
ଅନେକ ଅସୁର ମାଇଲା ମାରୁତିଟି ।
ହସ୍ତୀଙ୍କ ଉପରେ ହସ୍ତୀଙ୍କି କଚାଡ଼ିଲା
ବେନିଶତ ହସ୍ତୀ କ୍ଷଣକେ ନାଶ କଲା ।
ହସ୍ତୀନାଶ ହେବାରୁ ଅଶ୍ୱଙ୍କୁ କଲା ନାଶ
ତକ୍ଷଣେ ମାଇଲା ସହସ୍ରେକ ଅଶ୍ୱ ।
ଦେଖି ପାଞ୍ଚ ସେନାପତି ଆଗରେ ମିଳିଲେ
ବରଛା ଶାବେଳୀ ଯେ ଯୁଆଡ଼େ ମାଇଲେ ।
ମୂଷଳ ପରୀଘ ଯେ ଗୁରୁଜ ଧରି ପିଟି
କରବାଳ ମାରନ୍ତେ ସୂତାଏ ନ କାଟି ।
ମଧ୍ୟରେ ହନୁମନ୍ତ ଭୋଖିଲା ଯେ ବ୍ୟାଘ୍ର
ପାଞ୍ଚ ସେନାପତି ଅଛନ୍ତି ତାର ଆଗ ।
ଦାସକର୍ଣ୍ଣ ଉପରେ ହନୁ ବୃକ୍ଷ ନେଇ ପିଟି
ବାଜିଣ ଅସୁର ଭୂମି ପରେ ଲୋଟି ।
ଦେଖିଣ ବିରୁପାକ୍ଷ ଧାଇଁ ଗଲା ଖରେ
କୁନ୍ତେକ ମାରିଲା ସେ ହନୁର ଉପରେ ।
ନ ଭେଦିଲାକୁ ଅଇଲା ଲେଉଟି
ହନୁମନ୍ତ କୁନ୍ତକୁ ଧଇଲା ଲେଉଟି ।
ସେହି କୁନ୍ତକୁ ଧରି ବିରୁପାକ୍ଷକୁ ମାରି
ଅସୁର ପଡ଼ିଲା ରକତ ବାନ୍ତି କରି ।
ଶାର୍ଦ୍ଦୁଳ ପରେ ନେଇ ଶବକୁ କଚାଡ଼ି
ସେ ଘାତେ ସେନାପତି ଭୂମିପରେ ପଡ଼ି ।

ସେ ପଡ଼ନ୍ତେ ପାରୁକ୍ଷକୁ ମାରେ ହନୁବୀର
ଏକା ଚାପୁଡ଼ାକେ ଶିର ଛଡ଼ିଗଲା ତାର ।
ତାହାର ମୁଣ୍ଡ ଧରି ସାରାସଙ୍କୁ ମାରି
ପାଞ୍ଚ ସେନାପତି ପଡ଼ିଲେ ପ୍ରାଣ ହାରି ।
ସିଂହ ରଡ଼ି ଦେଇଣ ହନୁ ଧୀର ଗଲା
ଡେଇଁଣ ତ୍ରୋଣା ଖମ୍ବ ଉପରେ ଉଠିଲା ।
ମଧୁବନ ତୋଟାରେ ରକତ ନଦୀ ବହି
କବନ୍ଧ ନାଚିଲେ ଯେ ଆନନ୍ଦ ମତିହୋଇ ।
ଅସୁରୁଣୀ ବୋଇଲେ ହୋଇଲା ପ୍ରମାଦ
ଆଉ ରକ୍ଷା ନାହିଁ ସରିଲା ସମ୍ପଦ ।
ଏକା କପି ଗୋଟିଏ ଏତେ ବଳ ମାରି
ଲଙ୍କାଗଡ଼ରେ ଏବେ ପଡ଼ିଲା ହାଲହୋଳି ।
ତ୍ରିଜଟା ବୋଇଲା କେବଣ ଚରିତ
ସେ କଥା ମୋର ଆଗେ କହିଲେ ତ୍ୱରିତ ।
ଅସୁରୁଣୀ ବୋଇଲେ ଆଜକୁ ଦୁଇଦିନ
ଯେଉଁ ବାନର ଆଗରେ ଜାନକୀ ଥାଲେ ପୁଣ ।
ସେ ବାନର ମଧୁବନ ତୋଟାକୁ ଭାଙ୍ଗିଲା
ଚଉଦ ସହସ୍ର ତୋଟାଳିଆଙ୍କୁ ନାଶ କଲା ।
ରାଜା ଜାଣିବାରୁ କିଙ୍କରଗଣ ପେଶି
ସତର ସସ୍ର କିଙ୍କର ବାନର ବିନାଶି ।
ତହୁଁ ସେ ରାବଣ ଶାଳକଗଣ ପେଶି
ତାହାଙ୍କୁ ବାନର ପକାଇଲା ନାଶି ।
ଜାଣିଣ ଦଶଗ୍ରୀବ ମନରେ କ୍ରୋଧ ହେଲା
ଜମ୍ବୁମାଳି ପ୍ରଶସ୍ତକୁ ବେଗେ ପେଶି ଦେଲା ।
ଦେଖିଣ ବାନର ଜମ୍ବୁମାଳିକି ମାରି
ବତିଶ ସସ୍ର ସୈନ୍ୟ ସବୁଙ୍କୁ ଦେଲା ବଳି ।
ପ୍ରଶସ୍ତ ପଳାଇଣ ଦଶଗ୍ରୀବକୁ କହି
ପାଞ୍ଚ ସେନାପତି ଯେ ଅଇଲେ ତୁହାଇ ।
ବାନର ହସ୍ତରେ ସେହୁ ନାଶ ଗଲେ
ସୈନ୍ୟବଳ ସହିତେ ସମସ୍ତେ ମରିଲେ ।
ତେଣୁ ସେ ରକତ ନଦୀ ଏ ବାଟରେ ବହି
ଶୁଣିଣ ତ୍ରିଜଟା ଯେ ଅସୁରୀଙ୍କି କହି ।
ଏକା ବାନର କି ଲୋକରେ ଏତେ ଧାପ
ଜଣାଗଲା ରାବଣର ଘଟିଲା ବିତ୍‌ପାତ ।
ଜାନକୀ ଶ୍ୟାପ ତତକାଳରେ ଫଳିଲା
ଯେଣୁ ରାବଣ ବିଡ଼ମ୍ବଣ ଯେ କହିଲା ।
ଜାନକୀ ବିଚାରିଲେ ଏ ନିଶ୍ଚୟ ରାମଦୂତ
ଲଙ୍କା ଆସିବେ ଏବେ କଲାକି ବିଘାତ ।
ଜଣାଗଲା ନିଶ୍ଚୟ ଆସିବେ ଶ୍ରୀରାମ
ଏମନ୍ତ ବିଚାରି ସ୍ୱତୀ ଆନନ୍ଦ କଲ ମନ ।

ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ପାଞ୍ଚ ସେନାପତିଙ୍କୁ ହନୁ ତ ମାଇଲା ।
ଈଶ୍ୱର ବୋଇଲେ ବାକି ଯେ ବଳଥିଲେ
ପଳାଇ ରାବଣର ଆଗରେ କହିଲେ ।
ଶୁଣ ଦେବ ଲଙ୍କପତି ମନ୍ଦୋଦରୀକାନ୍ତ
ବାନର ଆଣିବାକୁ ପେଶିଥିଲ ଯାତ ।
ପାଞ୍ଚ ସେନାପତି ତୋର ସଂଗ୍ରାମକୁ ଗଲେ
ରଥ ଗଜ ଅଶ୍ୱ ସମେସ୍ତ ତେଣେ ମଲେ ।
ମାୟା ବାନର ସେ ଯେ ନୁହଇ ଆୟତ
ତେଜରେ ପ୍ରଜ୍ୱଳିତ ବଳ ଅକଳିତ ।
ଶୁଣିଣ ବିଂଶମୌଳି ପାଇଲା ମନେ ବ୍ୟଥା
କିମ୍ପାଇଁ ମର୍କଟ ମୋତେ ଦେଲା ଅବସ୍ଥା ।
ଯେଉଁଠାରୁ ଅଇଲା ସେ କାହାର କୁମାର
ଉପଦ୍ରବ କଲା ଅନେକ ରାଜ୍ୟେ ମୋର ।
ଏମନ୍ତ ବିଚାରି ରାଜା ପୁତ୍ରକୁ ଚାହିଁ କହେ
ଯାଅରେ ଅକ୍ଷୟ କୁମାରକୁ ଆଜ୍ଞା ଦିଏ ।
ଏବିଯାଇଣି କପିକୁ ଆଣରେ ବେଗ ଧରି
ଜୀବନ୍ତା ଆଣିବୁରେ ପ୍ରାଣରେ ନ ମାରି ।
ଶୁଣିଣ କୁମର ଯେ ହୋଇଲା ବାହାର
ସାରଥି ଆଣିଲା ସଜାଇ ରଥ ବର ।
ବତିଶ ସହସ୍ର ସୈନ୍ୟ ସହସ୍ରେକ ହସ୍ତୀ
ତିନି ସହସ୍ର ରଥୀ ସହସ୍ର ଅଶ୍ୱତି ।
ବିବିଧ ଛନ୍ଦରେ ବାଜଇ ବୀର ବାଜା
ଶବ୍ଦଘାତେ କମ୍ପଇ ବନଗିରି ବସୁଧା ।
ବଳବନ୍ତ ଅସୁର ଅତି ଅନର୍ଗଳ
ଅନେକ ମାୟା ଜାଣଇ ରାବଣର ବାଳ ।
ଚିହ୍ନ ଚିରାଳ ଯେ ଉଡ଼େ ବୀରକେତ
ଉଲଗ୍ନ ପାଟଛତ୍ର ଆଲମ୍ବ ବହୁତ ।
ଅପୂର୍ବ ରଥରେ ବିଜୟ ସେ କଲା
ଦ୍ୟୁତି କାମଦେବ ପ୍ରାୟେକ ଦିଶିଲା ।
ଶିରରେ ମୁକୁଟ ତାର କର୍ଣ୍ଣରେ କୁଣ୍ଡଳ
ଯେମନ୍ତ ଶୋଭା ଦିଶେ ଚନ୍ଦ୍ରର ମଣ୍ଡଳ ।
କଣ୍ଠରେ ହାର ଶୋଭେ ବିବିଧ ରଙ୍ଗେଣ
ବାହାରେ ବାହୁଟି ଶିଙ୍କୁଳି କଙ୍କଣ ।
କଟିରେ ମେଖଳା ଶୋଭେ ସଙ୍ଗତେ ତୀକ୍ଷ୍ଣ ଛୁରୀ
ବିଦ ମୁଦି ବଳୟ ଶୋଭା ପାଏ ତାହାରି ।
ଅଙ୍ଗୁଳିରେ ମୁଦ୍ରିକା ଦିଶଇ ଶୋଭାବନ
ଶରୀରେ ଆଭରଣ ରଙ୍ଗ ପାଟ ଜାଣ ।
ନବରତ୍ନ ଆଭରଣ ଦର୍ପଣ ପ୍ରାୟେ ଜ୍ୟୋତି
କରରେ କମାଣ ଧରିଣ ଉଗ୍ର ମୂର୍ତ୍ତି ।

ଚାଲ ଚାଲ ବୋଲିଣ ସୈନ୍ୟଙ୍କୁ ଆଜ୍ଞା ଦେଇ
ହୟ ଗଜପଦାତି ଆଗରେ ଚଳାଇଲା ।
ମଧ୍ୟରେ ଅକ୍ଷୟ କୁମର ବିଜେ କରି
ଅସନ୍ତ ମିବାରୁ ଭାବନ୍ତି ଅସୁରୀ ।
ପାଞ୍ଚ ସେନାପତି ହୋଇଲେ ବିନାଶ
ଏବେ କାଳ ଛନ୍ଦ ଯେ ବନ୍ଦିଲା ଲଙ୍କେଶ ।
କେଉଁ ନାରୀ ହୋଇଲା ବାଉଳ କିମ୍ପା ମନ
ସୀତାଙ୍କୁ ଚୋରାଇଣ ଆଣିଲା ଦଶ ଜନ ।
ରାଜା ନ ବୁଝିଲେ ଯେ ପରଦାରା ନାଶ ଯାକ
ଉଚିତରେ ଦଣ୍ଡ ଯେ ବିଧାତା ତାକୁ ଦେଲ ।
ଅଧର୍ମ ଅନୁକ୍ଷଣେ କରଇ ଲଙ୍କପତି
ପାତ୍ର ମନ୍ତ୍ରୀଙ୍କର ବୋଲ ନ ମାନେ ଗର୍ବମତି ।
ଶ୍ରୀରାମ ଅଟନ୍ତି ଦଶରଥ ସୁତ
ରଘୁନାଥ ନାମ ଅଟଇ ବିଦିତ ।
ପୂର୍ବରୁ ସେ କଥା କର୍ଣ୍ଣରେ ଅଛୁ ଶୁଣି
ସୀତାଙ୍କୁ ହରିଲେ ମରିବ ବିଂଶପାଣି ।
ସେ କଥା ହୃଦରୁ ପାସୋର ଏବେ ଗଲା
ସୀତାଙ୍କୁ ଚୋରି କରି ଲଙ୍କାକୁ ଆଣିଲା ।
ଦେଖିଲା ଜାନକୀ ତ ଅଟଇ ଅଗ୍ନି ପୁଣ
ସ୍ନାନ କରଇ ନାରୀ ଅଗ୍ନିରେ ପଶିଣ ।
ତେର ମାସ ହେଲା ସେ ଆହାର ନ କରଇ
ଜଳ ଭକ୍ଷିଣ ସେ ବଞ୍ଚିଛି ବଇଦେହୀ ।
ତାହାକୁ ହରିବ ବୋଲି ମନରେ ବିଚାରି
ଅନଳକୁ କେମନ୍ତ ଛୁଇଁବ ଦଣ୍ଡଧାରୀ ।
ଜାଣୁ ଜାଣୁ ବିଷ ଖାଇ ଲୋଡ଼ିଲା ବିଂଶପାଣି
ଏବେ ରାମ ହସ୍ତରେ ମରିଲା ପ୍ରାୟ ଜାଣି ।
ଯେତେଦିନ ଯାଏଁ ସୀତା ଏ ଲଙ୍କାରେ ଥିବ
କଳି ଦ୍ୱନ୍ଦ୍ୱ ଏଥିରେ ବହୁତ ଉପୁଜିବ ।
ବାନର ଭରସା କି ଏଡ଼େ କର୍ମ କରି
ଜମ୍ବୁ ମାଳି ପ୍ରାୟ ବୀରଙ୍କୁ ସଂହାରି ।
ସେ କଥାକୁ ବିଚାର ନ କରେ ଲଙ୍କସାଇଁ
ଅକାରଣେ ସୈନ୍ୟବଳ ମରାଉଛି ନେଇ ।
ଏମନ୍ତ ବିଚାର କରନ୍ତି ଦୁଇତୁଣୀ
ଏବେ ଦେଖ ଏ କୁମର ଯାଉଛି ହନୁ ଆଣି ।
ବାନର ହସ୍ତରୁ ଯେବେ ଆସିବ ବରତି
ତେବେ ସିନା ଜାଣିବା ଅଟେ ବଡ଼ କ୍ଷତ୍ରୀ ।
ନୋହିଲେ ହନୁ ହସ୍ତେ ହେବ ପ୍ରାଣ ନଷ୍ଟ
ରାବଣକୁ ନିଷ୍ଟେ ଦେବତା ଦେଲେ କଷ୍ଟ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ମଧୁବନେ ଅକ୍ଷୟ କୁମର ମିଳିଲା ଝଟତି ।

ଚଉପାଶେ ଅଶ୍ୱହସ୍ତୀ ନେଇଣ ଘେରାଇଲା
ହସ୍ତୀ ଅଶ୍ୱବୁହ୍ୟ କଲା ପ୍ରାୟେ ହନୁକୁ ଲାଗିଲା ।
ସୈନ୍ୟଙ୍କୁ ବୋଇଲା ତ୍ରୋଣା ଖମ୍ବକୁ ଉଠ
ଗୁରୁଜ ଧରିନ ସେ ବାନରକୁ ପିଟ ।
ଶୁଣିଣ ସୈନ୍ୟବଳ ହେଲେ ଆଗୁସାର
ଏକକୁ ଆରେକ ଯେ ବୋଇଲା ମାର ମାର ।
ଚଉପାଶେ ଅଶ୍ୱ ହସ୍ତି ମିଳିଲେ ସକଳ
ଯେ ଯାହାର ଶସ୍ତ୍ର ଧରି ବିଚାରିଲେ ଗୋଳ ।
ଅକ୍ଷୟ ବୋଇଲା କପିରେ କେଣିକି ତୁ ଯିବୁ
ଏ ଲଙ୍କା ଗଡ଼ରେ ପ୍ରାଣକୁ ହରାଇବୁ ।
ସୈନ୍ୟଙ୍କୁ ଚାହିଁ କହେ ରାବଣର ବାଳ
ବାନରକୁ ଯେ ଛାଡ଼ିବ ମାରିବି ବଦଳ ।
ଏମନ୍ତ କହି କମାଣ ଧରିଲା ଅକ୍ଷୟ
ବିନ୍ଧିଲା ନାରାଚ ଝଙ୍କାଇ ହନୁକାୟ ।
ତ୍ରୋଣା ଖମ୍ବ ଉପରେ ବିଚାରେ ମାରୁତି
ଧନ୍ୟ ଏ ସୁନ୍ଦର ଦ୍ୱିତୀୟ କାମ ମୂର୍ତ୍ତି ।
ରାବଣର ମୁଖ ପ୍ରାୟେ ଦିଶଇ ମୁଖତ
ଧନ୍ୟରେ ସେନାପତି ରାଜକୁମାର ତ ।
ବହୁତ ସଂଗ୍ରାମ କରିବ ଆଜ ମିଳି
ପ୍ରତିଜ୍ଞା କରିଣ ଆସି ଅଛି ଚଳି ।
ଏହାର ସଙ୍ଗରେ କରିବି ମୁଁ ରଣ
ଏତେ ବିଚାରି ଖମ୍ବରୁ ଉଠିଲା ହନୁମାନ ।
ହୁଁକାର ନାଦ କରି ଶୂନ୍ୟରେ ବିକ୍ରମିଲା
ପକ୍ଷୀର ପ୍ରାୟ ହୋଇ ଶୂନ୍ୟରୁ ଖସିଲା ।
ଅକ୍ଷୟ ରହୁବରେ ବସିଲା ସେ ଯାଇ
ରହୁବରୁ ଡେଇଁ ପଡ଼ି ଭୂମିରେ ମିଳଇ ।
ଦୁଇ ହସ୍ତରେ ପୁଣି ଧରି ବେନି ହସ୍ତୀ
ପିଙ୍ଗିଦେଲା ମଲେ ହସ୍ତୀ ସହିତ ପଦାତି ।
ରଥର ଉପରେ ପୁଣ କଚାଡ଼େ ନେଇ ରଥ
ଅଶ୍ୱଙ୍କର ଉପରକୁ ଡେଇଁଲା ତ୍ୱରିତ ।
ଅଶ୍ୱଙ୍କ ଉପରେ କଚାଡ଼ି ମୟମତ
ପୁଣି ଗଜଗାଳି ଧାଇଁ ହନୁମନ୍ତ ।
କାହାକୁ ପିଙ୍ଗିଦେଇ କାହାକୁ ନାତେ ମାରି
ମୁଣ୍ଡ ବେକ ମୋଡ଼ି କାହାକୁ ଦିଏ ଚିରି ।
କାହାର ମୁଣ୍ଡରେ ନେଇ ମାରେ ଭୁଜ ଦଣ୍ଡ
କାହାକୁ ଧରିଣ କରେ ବେନି ଖଣ୍ଡ ।
କାହାକୁ ପାଦେ ମର୍ଦ୍ଦି କରି ଦିଅଇ ଧୂଳି
ଅନେକ ସଇନ ସେ ପକାଇଲା ଦଳି ।
ବତିଶ ସହସ୍ର ସୈନ୍ୟ କ୍ଷଣକେ ମାରିଲା
କାହାର ଅନ୍ତ ନେଇ ଗଳାରେ ହାର କଲା ।

କାହାର ରୁଧିରେ ସେ ହୁଏ ଲୋଟିଗୋଳି
କେବଣ ଅସୁରକୁ ପକାଇ ପାଦେ ଦଳି ।
ଦୁଇ ହସ୍ତେ ଦୁଇ ମଡ଼ା ସାର୍ଡଟି ସେ ଧରି
ଫିଙ୍ଗିନ୍ତେ ବାଜିଣ ଦୈତ୍ୟ ବଳ ମରି ।
ଶରୀର ବଢ଼ାନ୍ତେ ଆକାଶେ ଲାଗି ଶିର
ଲଙ୍କାଗଡ଼ ଭିତରେ ଦିଶଇ ମହାବୀର ।
ଫରହର ନିଶ୍ୱାସ ବହେ ଖରତର
ସିଂହରଡ଼ି ଦିଅଇ ବିକଟ ରୂପ ତାର ।
ଲାଙ୍ଗୁଳରେ ହସ୍ତୀଙ୍କୁ ବାନ୍ଧି ଗର୍ଜନ କରଇ
ଦୁଇ ପାଦେ ଅଶ୍ୱଙ୍କୁ ଛନ୍ଦିଣ ମାରଇ ।
ବିକ୍ରମ ଗତି ଜରି ମାରେ ଅନ୍ତରାଳ
ମାରୁଣୀ ଦେଖି କମ୍ପେ ଦଶଗ୍ରୀବ ବାଳ ।
ହନୁମନ୍ତଙ୍କୁ ଚାହିଁ ଅକ୍ଷୟ କହଇ
ଆରେ ଆରେ ବାନର ରହ ସ୍ଥିର ହୋଇ ।
ରାବଣର ତନୟ ଅଟଇରେ ମୁହିଁ
ମୋର ଆଗେ କେତେରେ ଗୁମାନ କରୁ ତୁହି ।
ମଧୁବନ ଭାଗିଲୁ କେବଣ ହିଁ ମତେ
ଆଜ ବନ୍ଧନ କରିଣ ଘେନି ଯିବି ତୋତେ ।
ଏମନ୍ତ ବଚନ କହେ ରାବଣ କୁମର
ମାରୁତି ବୋଇଲା ଶୁଣରେ ଦୈତ୍ୟବୀର ।
ପରଦିନ କେତେ ଦୈତ୍ୟଘରଣୀ ହେଲେ ରାଣ୍ଡ
ରାବଣ ସାନ କୁମର ହେଲୁ କେଡ଼େ ଗଣ୍ଡ ।
ମୃତ୍ୟୁ ଯାହାକୁ ହେଲା ତା ଘରଣୀ ରାଣ୍ଡ ହେଲା
ଯମ ଦେବତା ପାଞ୍ଜି ଦେଖିଣ ପୋଛିଲା ।
ସେ କଥା ପାସୋର ହେଲା କିରେ ତୋର
ମରିବା ପାଇଁ ଅଇଲୁ ମୋହର ଛାମୁର ।
ଶକୁନ କଥାମାନ ନ ବୁଝିଲୁ ତୁହି
ନିୟତ ପୂରିଲା ବେଳେ ବିଧାତା ନ ରଖଇ ।
ଅଠରଗଣ୍ଡା ଭାଇରୁ ଆଗେ ତୁ ନାଶ ଯିବୁ
ତୁ ଛାର ଅଳ୍ପାୟୁଷ ମୋର କି କରିବୁ ।
ଶୁଣି ରାବଣ କୁମର କ୍ରୋଧେ ଉଠି
ହନୁମନ୍ତ ଉପରେ ପ୍ରହାର କଲା ଯଷ୍ଟି ।
ଦେଖିଣ ମାରୁତି ପଛକୁ ଘୁଞ୍ଚିଗଲା
ମୁରୁଜକୁ ଧରିଣ ତା ରଥରେ ବସିଲା ।
ରଥପରୁ ହନୁମନ୍ତ ତଳକୁ ଖସିଲା
ଅକ୍ଷୟର ରଥକୁ ଲେଉଟାଇ ଦେଲା ।
ରଥକୁ ଭାଙ୍ଗି ଦେଲା ଖଣ୍ଡ ଖଣ୍ଡ କରି
ଦେଖି କରି ଅସୁର ହନୁମନ୍ତକୁ ଧରି ।
ଦୁହେଁ ଧରା ଧରି ହୋଇଣ ଯୁଝନ୍ତି
କି ଅବା ଚଉଦନ୍ତ ଯେସନେ ମତ୍ତ ହସ୍ତୀ ।

ଅକ୍ଷୟ ହନୁମନ୍ତ ଦିଶନ୍ତି ତେସନ
ସେ ବ୍ରହ୍ମା ନାତି ଏତ ପବନ ନନ୍ଦନ ।
ଦେଖିଣ ହନୁମନ୍ତ ମାଇଲା ଗୋଇଠାଏ
ଦୁଇ ଚକ ଘେନିଣ ଶୀଘ୍ର ଗତିରେ ଧାଏଁ ।
ବୁଲାଇ ସଇନ୍ୟଙ୍କୁ ମାରଇ ରୋଷ କରି
ସୁଦର୍ଶନ ଚକ୍ର ଯେହ୍ନେ ପେଶନ୍ତି ଦଇତାରୀ ।
ଆତଯାତ କରନ୍ତେ ସଇନ୍ୟ ନାଶ ଗଲେ
କ୍ରୋଧରେ ହନୁମନ୍ତ ଫିଙ୍ଗିଲା ଚକ୍ରଦୂରେ ।
ଅକ୍ଷୟ କୁମର ଅଙ୍ଗରେ ଚକ୍ର ବାଜି
ବାଜନ୍ତେ ଦଇତ୍ୟ ହେଲା ଗଳଗାଜି ।
କ୍ରୋଧରେ ରାବଣ ସୁତ ହନୁକୁ ଧଇଲା
ଆଗରେ ଓଗାଳି ଦେଇଣ ଉଭା ହେଲା ।
ନିଶ୍ଚୟ ଆଜ ତୁରେ ହୋଇବୁ ନିଧନ
ଏତେ ବୋଲି ଦୈତ୍ୟ ଯେ କରଇ ଗରଜନ ।
ଗର୍ଜନ କରି ଦୈତ୍ୟ ମାରିଲାକ ମୁଷ୍ଟି
ହନୁ ଦେହେ ବାଜନ୍ତେ ଅଗ୍ନି ଜଳି ଉଠି ।
କ୍ଷଣେ ଘୁମାଇଲା ସେ ପବନ ନନ୍ଦନ
ପୁଣି ଆସି ଦେହେ ତାର ପଶିଲାକ ଜ୍ଞାନ ।
ଯାଇଣ ଅକ୍ଷୟକୁ ହନୁମନ୍ତ ଧରି
ବେନି ବାହୁକୁ ଧରିଣ ବାହୁ ଯୁଦ୍ଧ କରି ।
ମୁଣ୍ଡକୁ ମୁଣ୍ଡ ଯେ ହୁଅନ୍ତି ମରାମରି
ହିଆକୁ ହିଆ ଲଗାଇ ହୁଅନ୍ତି ପେଲାପେଲି ।
ଦୁଇ ସିଂହ ଯେହ୍ନେ ସଂଗ୍ରାମ କରନ୍ତି
ତେସନେ ପରାୟ ସେ ଦୁହେଁ ଦିଶନ୍ତି ।
ଦେଖଣାହାରି ଲୋକ ମଧ୍ୟସ୍ଥ ପରି ହୋଇ
ଫୁଫୁକାର କରିଣ ନିଶ୍ୱାସ ଛାଡ଼ଇ ।
ଶରୀରୁ ଶ୍ରମ ଝାଳ ବହେ ଘନ ଘନ
କେହି ନିର୍ବଳ ନୁହନ୍ତି ଦୁହେଁ ଯେ ସମାନ ।
ଦନ୍ତମାନ ରେକଟି ହୁଅନ୍ତି ମରାମରି
ନଖଦନ୍ତ ଘେନିଣ ଶରୀର ବିଦାରି ।
ଏକକୁ ଆରେକ ଟଙ୍କା ଟଙ୍କି ଧରାଧରି
ଛାଡ଼ିଣ ଅପସରି ରହେ ଠାଣି କରି ।
ବିଧାମାନ ଉଞ୍ଚାଇଣ ଅଛନ୍ତି ଅପସରି
ହାତରେ ହାତ ଦେଇ ହୁଅନ୍ତି ଘୋରାଘୋରି ।
ଉଚ୍ଚ ବାଚ ହୋଇଥିବାରୁ ହନୁମନ୍ତ ଗଲା
ରାବଣ କୁମରକୁ ନିବିଡ଼େ ଧଇଲା ।
ଟାଙ୍କିଣ ମୁଣ୍ଡମାଡ଼ି ପକାଇଲା ତଳ
ଅକ୍ଷୟ କୁମରର ଛିଡ଼ିଲା କାନ୍ଧୁ ଶିର ।
ପୁଣି ତାର କନ୍ଧରୁ ଶିରେକ ବାହାରିଲା
ପୂର୍ବପରି ଶିର କନ୍ଧରେ ଦିଶିଲା ।

ଦେଖିଣ ଚକିତ ହୋଇଲା ମାରୁତି
ପୂର୍ବରେ ବର ତାକୁ ଦେଲା ଛାୟାପତି ।
ଅକ୍ଷୟ ବୋଲେ କପିରେ ଅଟୁ ନିଲକ୍ଷଣ
ମୋତେ ମାରିବାକୁ ତୁହି କି ଭାର୍ଜନ ।
ଦିଗପାଳମାନଙ୍କୁ ମୁଁ ଆଣିଲି ଯେ ଧରି
ତୁ ଛାର ବାନର କି ପାରୁ ମୋତେ ମାରି ।
ଦେବଙ୍କୁ ଜିଣିଲି ସ୍ୱର୍ଗେ ପାତାଳେ ନାଗଲୋକ
ତୁ ଛାର ବାନରରେ ଅଟୁ ଯେ କେତେକ ।
ଶୁଣିକରି ହନୁମନ୍ତ ବୋଲଇ ବଚନ
ବାନର ବୋଲି ଯାହା ବୋଇଲୁ ଦୈତ୍ୟପୁଣ ।
ମୋର ଅଂଶ ବାନର ଅଟେ ବାଳିରାଜା
ସମୁଦ୍ରେ ତର୍ପଣ କରେ ତାର ମନ ଇଚ୍ଛା ।
ତୋର ବାପ ରାବଣ ଯାଇଣ ଧଇଲା
ଦେଖିଣ ବାଳିବୀର କାଖରେ ଜାକିଦେଲା ।
ତାର କୁମର ଅଙ୍ଗଦ ଯେ ବୀର
ପୁତ୍ରକୁ ଡାକି କହିଲା ବାଳି ବୀରବର ।
ଏ ଅସୁରକୁ ବାନ୍ଧି ରଖି ସିଂହଦ୍ୱାର
ଖାଇବାକୁ ଦେବୁ ଉଚ୍ଛିଷ୍ଟ ଦାସୀଙ୍କର ।
ଶୁଣି କରି ଅଙ୍ଗଦ ଚରଣେ କଡ଼ି ଦେଇ
ବରଷେ ପରିଯନ୍ତେ ବାନ୍ଧି ରଖିଲା ତହିଁ ।
ପ୍ରତିଦିନ ଉଚ୍ଛିଷ୍ଟ ଦାସୀଙ୍କର ଦେଇ
ବରଷକ ଉତାରେ ବୋଇଲା ମାର ନେଇ ।
ଶୁଣିଣ ଅଙ୍ଗଦ ତୋ ପିଅରକୁ ନେଲା
ଶୁଳିଆ ପଦାରେ ଉଭା କରାଇଲା ।
ଶୂଳ ଦେଖି ତୋର ପିତା ଶରଣ ପଶିଲା
ଅଙ୍ଗଦ ସେହିଠାରୁ ଫୋପାଡ଼ିଣ ଦେଲା ।
କିଷ୍କିନ୍ଧାରୁ ତୋର ପିତା ପଡ଼ିଲା ଆସି ଲଙ୍କା
ଏମନ୍ତ ହୀନ ଅଟେ ତୋହର ଯେ ବୋପା ।
ମୟ ଦୈତ୍ୟ ଦୁହିତା ଅଟେ ବଡ଼ ଶୋଭା
ତୋହର ପିତା ଯାହାକୁ ହୋଇଅଛି ବିଭା ।
ଆଗେ ମୟଦୈତ୍ୟ ବାଳିକି ଦେବା କଲା
ନାରଦ କହିବାରୁ ତୋର ପିତାକୁ ଦେଲା ।
ତେଣୁ ସେ ବାଳିରାଜା ମନରେ କ୍ରୋଧ ହୋଇ
ତୋର ଜନନୀକି ଘେନିଗଲା ସେହି ।
ଷଡ଼ମାସ ପରିଯନ୍ତେ ନଗରେ ରଖିଲା
ବାଳିକି ଡରି ରାବଣ କିଷ୍କିନ୍ଧା ନ ଗଲା ।
ବିଶ୍ରବା ବେଦବରଙ୍କୁ କଲାକ ଗୁହାରି
ତେଣୁ ସେ ବେଦବର ଆଣିଣ ଦେଲେ ନାରୀ ।
ଏମନ୍ତ ପ୍ରକାର ମାତା ପିତା ତୋର
ତୁ କାହୁଁ ଜାଣିବୁ ବଳ ବାନରଙ୍କର ।
ତୋର ପିତା ଯେଉଁ ବେଳେ ତପରେ ବସିଥିଲା
ତିନିଯୁଗ ତିନିଦିନ ଅଗ୍ନିରେ ହୋମ କଲା ।
ସେତେବେଳେ ବେଦବର ହୋଇଲେ ପ୍ରସନ୍ନ
ଛପନଗଣ୍ଡା ଯୁଗକୁ ଆୟୁଷ ଦେଲେ ପୁଣ ।
ବୋଇଲେ ରାମନାରୀ ସୀତାଙ୍କୁ ନ ଆଣିବୁ
ଆଣିଲେ ତୁହି ଯେ ନିଶ୍ଚୟ ମରିବୁ ।
ଏତେ କହି ଚତୁର୍ମୁଖ ଚିତ୍ରପଟ ଲେଖି
ଘୋସୋରିବ ବୋଲି ତୋ ପିତାକୁ ଦେଲେ ଟିକି ।
କାଳେଣ ତୋର ପିତା ସେକଥା ପାସୋରିଲା
ରାମ ନାରୀକୁ ଆଣିବାକୁ ଜମ୍ବୁ ଦୀପକୁ ଗଲା ।
ରାମ ନାରୀକି ଦେଖିଲା ତେଜରେ ଦାବାନଳ
ବୋଇଲା ତୋତେ ମୁହିଁ ନେବି ଲଙ୍କାପୁର ।
ରାମନାରୀ ବୋଇଲେ ତୋର କାଳ ପୁରିଲା ଏବେ
ଶ୍ରୀରାମ ମାରିବେ ତୋର ପୂର୍ବକଥା ଭାବେ ।
ଶୁଣିଣ ତୋର ପିତା ସନମତ କଲା
ସମସ୍ତେ ମୋର ନାଶ ଯାଆନ୍ତୁ ବୋଇଲା ।
ଜାନକୀ ବୋଇଲେ ମୁଁ ଗଲେ କେହି ନ ରହିବେ
ତୋର ସଙ୍ଗେ ପୁତ୍ର ନାତି ସମସ୍ତେ ମରିବେ ।
ଏତେ କହି ଜାନକୀ ଲଙ୍କାକୁ ଅଇଲା
ଶୁଣି କରି ଶ୍ରୀରାମ ମନରେ କ୍ରୋଧ ହେଲା ।
ମୋତେ ବୋଇଲେ ତୁ ଯାଅ ଲଙ୍କା ଗଡ଼କୁ
ଅସୁରଙ୍କୁ ମାରି ଚେତା କରିବୁ ତାହାଙ୍କୁ ।
ତାଙ୍କର ବୋଲରେ ମୁଁ ଅଇଲି ସିନ୍ଧୁ ଡେଇଁ
ଅନେକ ସୈନ୍ୟ ତୁମ୍ଭର ମାଇଲି ଦେଖ ତୁହି ।
ପାଞ୍ଚ ସେନାପତି ଏବେ ଜମ୍ବୋମାଳି ମଲା
ଶୁଣି କରି ତୋର ପିତା ତୋତେ ପେଶି ଦେଲା ।
ଧାଇଁ ଆସିଛୁଁ ତୁରେ ମୋ ହସ୍ତେ ମରିବୁ
ଇଷ୍ଟ ଦେବତାଙ୍କୁ ତୋର ସ୍ମରଣ କର ବାବୁ ।
ଅକ୍ଷୟ ବୋଇଲାରେ କହିଲୁ ଯେଉଁ କଥା
କପି ଛାର ଜୀବରେ ନୋହୁ ତୁ ସାମରଥା ।
ରାମ ତ ମାନବରେ କି କରିପାରିବ
ତୁହି ମଲେ ପରାରେ ଧୈର୍ଯ୍ୟପଣ ଯିବ ।
ଘରଣୀ ହେଲା ଚୋରୀ ତା ଦୂତକୁ ଦେଲେ ମାରି
ଚିନ୍ତାରେ ରାମ ଯତି ତେଣେ ଯିବ ମରି ।
ବାନର ପଶୁ ଜାତି ତୋର ଜ୍ଞାନ ନାହିଁ
ଦେବତାମାନେ ଆସି ସେବାକାରୀ ହୋଇ ।
ଦେବତାମାନେ ପୂର୍ବେ ତୋହରି ପରି କହି
ଧରି ଆଣିବାରୁ କିଙ୍କର ହେଲେ ସେହି ।
ଶୁଣିଣ ମାରୁତି ଦୈତ୍ୟର ବଚନ
ତମ୍ୱାଚକ୍ର ପ୍ରାୟେ ବୁଲାଏ ନୟନ ।

ଅକ୍ଷୟ ବୋଇଲା ତୁତେ କପି ବିଲକ୍ଷଣ
ମୋତେ ମାରିବାକୁ ନୋହୁ ତୁ ଭାଜନ ।
ତହୁଁ ହନୁମନ୍ତ ଅତି କ୍ରୋଧ ହୋଇ
ଅକ୍ଷୟ କୁମରକୁ ଧଇଲା ସେ ଯାଇ ।
ମୁଣ୍ଡକୁ ମୋଡ଼ି ତାର ପକାଇଲା ଧରଣୀ
କନ୍ଧରୁ ଶିରେକ ବାହାରିଲା ପୁଣି ।
ଦେଖି କରି ହନୁମନ୍ତ ଚକିତ ହୋଇଲା
ପୋତୁ ଏ ଦନୁଜ ବୋଲି ମନରେ ଚିନ୍ତା କଲା ।
କେମନ୍ତେ ମରିବ ଏହି ରାବଣ କୁମର
ବିସ୍ମୟ ହୋଇଣ ମନେ ଭାବିଲେ ହନୁବୀର ।
ଏଥୁ ଅନନ୍ତରେ ଭଗବତୀ ଶୁଣ
ମାରୁତିର କର୍ଣ୍ଣରେ କହିଲା ପବନ ।
ଅସୁରକୁ ଆଦିତ୍ୟ ପୂର୍ବରେ ଦେଲେ ବର
ମୁଣ୍ଡ ଛିଡ଼ିଲେ ନ ମରିବ ଅସୁର ।
ଯେବେରେ ହନୁମନ୍ତ ମାରିବା ଇଚ୍ଛା ତୋର
ପିଠି ଆଡୁ ଚିରିଣ ଦୁଇଫାଳ କର ।
ଗଗନ ବିହାରୀ ତାକୁ ଦେଇଛନ୍ତି ବର
ବିଜୟ କରିଛନ୍ତି ତାହାର ହୃଦର ।
ବର ଦେଲା ବେଳେ କହିଲେ ସେ ପୁଣ
ତୋହର ଶରୀରେ ମୁଁ ଥିବି ଅନୁକ୍ଷଣ ।
ପବନ ଦେବତା ଗଲେ ଏତେ କହି
ଶୁଣି କରି ମାରୁତି ଆନନ୍ଦ ମନ ହୋଇ ।
ଶ୍ରୀରାମ ସୁମରି ଧାଇଁଲା ମାରୁତି
ଅକ୍ଷୟ କୁମାରକୁ ଧଇଲା କୋପମୂର୍ତ୍ତି ।
ବାମକରେ ବାଳକୁ ଧଇଲା ତାହାର
ନୃସିଂହ ମୂରତି ହେଲା ପବନ କୁମାର ।
ଡାହାଣ କରରେ ବିଦାରିଲା ତାର ପିଠି
ଦୁଇଫାଳ କରିଣ ଚିରିଲା ଦୈତ୍ୟକୁଟି ।
ଦୁଇଫାଳ କରନ୍ତେ ହୃଦକୁ ତାର ଜାଣି
ଗଗନ ବିହାରୀ ଲିଙ୍ଗ ବାହାରେ ତକ୍ଷଣ ।
ଅକ୍ଷୟ ଉପରେ ଯେ ବସିଥିଲା ବୀର
ସେ ଲିଙ୍ଗକୁ ହନୁମନ୍ତ କଲାକ ବାହାର ।
ଆପଣାର ଗର୍ଭକୁ କ୍ଷେପିଲା ମାରୁତି
ବୋଇଲାଅସୁରରେ ଯାଉ କେଉଁ କତି ।
ପେଟରୁ ଅନ୍ତ ତାର ଛିଣ୍ଡାଇ ତ୍ୱରିତ
ପଇତା କରି ତାକୁ ପକାଇ ହନୁମନ୍ତ ।
ଦେଖି ଦେଖଣାହାରୀ ଏ ପଳାଇଲେ ଡରି
ବଳନ୍ତା ସୈନ୍ୟବଳ ଗଲେ ଅପସରି ।
ଶତେ ଯୁଣ ଲଙ୍କାଗଡ଼େ ପଡ଼ିଗଲା ହୁରି
ହନୁମନ୍ତ ଭଇରବ ମୂର୍ତ୍ତି ଅଛି ଧରି ।

ହିରଣ୍ୟ ବିଦାରଣ କାଳେ ଯେସନେ ମୁରାରି
ସେସନକ ରୂପ ହନୁ ଅଛି ଧରି ।
ଚାହିଁନ୍ତେ ମାରୁତି ଯାହାକୁ ନ ଦେଖିଲା
ତେଣୁ ସେ ଭୈରବ ମୂର୍ତ୍ତିକୁ ଶାନ୍ତ କଲା ।
ଦଇତର ମୁଣ୍ଡକୁ ହସ୍ତରେ ଧରିଥିଲା
ଫିଙ୍ଗିଦେଇ ମାରୁତି ସାମାନ୍ୟ ମୂର୍ତ୍ତି ହେଲା ।
ତୋରଣ ସ୍ତମ୍ଭ ଉପରେ ଯାଇଣ ବୀର ବସି
ବାହା ମଳଦିଣ ସେ ହୁଅଇ ଘୋଷାଘୋଷି ।
ନିଶ ମଚକିଣ ଆଉଁସେ ପୁଣ ଗାଲ
ଆଖି ମିଟି ମିଟି ଚାହେଁ ଧୀର ଧୀର ।
ଶୁଣି କରି ପାର୍ବତୀ କହନ୍ତି ବଚନ
ଜାନଗ କୁମାର ଅଟେ ପୁଣ ।
ପୂର୍ବେ ସେ କିସ ଦେଖି ଏ ଜନ୍ମ ହେଲା ଦୈତ୍ୟ
ତାହାକୁ କିମ୍ପା ସାନା ହେଲେ ବିଶ୍ୱନାଥ ।
ଈଶ୍ୱର ବୋଇଲେ ଶୁଣ ଶାକମ୍ଭରୀ
ପୂର୍ବେ ଅଛି ଯୋଗ ଯମ ପୁତ୍ର ସରି ।
ଛାୟା ମାୟା ବୋଲି ଅଟନ୍ତି ନେଣି କରି
ଆଦିତ୍ୟ ଦେବତାଙ୍କୁ ସେହି ଥିଲେ ବରି ।
ଛାୟାଙ୍କଠାରୁ ଶନି ଦେବ ଜନ୍ମ ହୋଇ
ଯମ ରୂପରେ ସଞ୍ଜିବନୀ ପୁରେ ରହି ।
ଛଳେ କୋଟି ଜୀବଙ୍କର ବୁଝନ୍ତି ନ୍ୟାୟଧର୍ମ
ତାହାଙ୍କୁ ଦର୍ଶିବାରୁ ବୋଲାଏ ସେ ଯମ ।
ମାୟା ସ୍ତ୍ରୀଠାରୁ ହେଲେ ଜନମ କୁନ୍ଦ ପୁଣ
କୁନ୍ଦଠାରୁ ଜନମ ମକରନ୍ଦ ଜାଣ ।
ନିଜ ପୁରେ ରହିଣ ଅନେକ ସୁଖ ପାଇ
ମତ୍ତଗର୍ବେ ପଣରେ ସେ କାହାକୁ ନ ଗଣଇଁ ।
ଏକ ଦିବେ କପିଳ ମୁନି ସେଥି ଗଲେ
ଧର୍ମ ନିରଞ୍ଜନଙ୍କୁ ଦରଶନ କଲେ ।
ଫେରିଗଲା ବେଳେ ଦେଖିଲା ତାକୁ କୁନ୍ଦ
ଋଷିଙ୍କି ବୋଇଲା ବିଦ୍ରୂପ ମନ୍ଦ ।
ମନ ପବନ ଦଣ୍ଡ ବାହାନରେ ଭ୍ରମଣି
ବିଭୂତି ବିଲେପନ ଅଙ୍ଗରେ ହୁଏ ପୁଣି ।
ଉତ୍ତମରୂପ କୋଟି ଦିଶଇ ମାନହୀନ
କେଉଁ ପୁରେ ତୁମ୍ଭଙ୍କୁ ଜନନୀ କଲା ଜନ୍ମ ।
ଅଗ୍ନିରେ କାହିଁପାଇଁ ନ ଦେଲା ତୋତେ ଜାଳି
ଏମନ୍ତ କୁମରକୁ ରଖିଲା କିମ୍ପା ବାଳୀ ।
ଶୁଣି କରି କପିଳ କ୍ରୋଧମନ ହେଲେ
ଦୈତ୍ୟ କୁଳରେ ଜନ୍ମ ହୁଅରେ ବୋଇଲେ ।
ମଦିରା ମାଂସ ତୁ କରିବୁ ଭୋଜନ
ରାବଣ କୁଳରେ ହୋଇବୁ ତୁ ଜନ୍ମ ।

ଶୁଣିଣ ମକରନ୍ଦ ବୋଇଲା ବଚନ
କେଉଁକାଳେ ମୋକ୍ଷ ହେବି କହ ମୁନି ରାଣ ।
ନ ଜାଣି ମୁଁ ଦୋଷ କଲି ଅପ୍ରାଧ କର କ୍ଷମା
କପିଳ ଋଷି ବୋଇଲେ ଶୁଣରେ ମହାତମା ।
ସାତଗଣ୍ଡା ଯୁଗରେ ହୋଇବୁ ମୁକତ
ଯେତେବେଳେ ତୋତେ ମାରିବ ରାମଦୂତ ।
ମକରନ୍ଦ ବୋଇଲା ଥିବି ମୁଁ ଲଙ୍କାରେ
ରାମଦୂତ କିମ୍ପା ଆସିବ ସେଠାରେ ।
କପିଳ ଋଷି ବୋଇଲେ ଲଙ୍କାର ରାବଣ
ଦେବତାମାନଙ୍କଠାରେ ଅର୍ଜିବ ମାନ ଧନ ।
ନେଣ୍ଣ ସେ ବାସୁଦେବ ଜନମ ହୋଇବେ
ଘରଣୀକି ନେଇ ସେ ବନରେ ବୁଲିବେ ।
ସୁନ୍ଦର ଦେଖି ରାବଣ ତାଙ୍କୁ ହରି ନେବ
ନ ପାଇ ଦୂତଙ୍କୁ ଶ୍ରୀରାମ ପେଷିବ ।
ଲଙ୍କାଗଡ଼କୁ ଯାଇ ବୀର ହନୁମନ୍ତ
ଜାନକୀଙ୍କି ଠାବ କରି ମାରିବ ତୋତେ ତ ।
ତେବେ ତୁ ଶାପରୁ ହୋଇବୁ ମୁକତ
ଏତେ କହି ଋଷି ଚଳିଲେ ତୁରିତ ।
ସେଠାରୁ ମକରନ୍ଦ ବେଗେ ଚଳିଗଲା
ରାବଣର ପୁତ୍ର ହୋଇ ଲଙ୍କାରେ ଜାତ ହେଲା ।
ଏବେ ତାକୁ ରାମଦୂତ ମାଇଲା ହନୁମାନ
ମୁକତ ହୋଇଣ ଗଲା ସ୍ୱର୍ଗ ସ୍ଥାନ ।
ପୁଷ୍ପକ ବିମାନ ସ୍ୱର୍ଗରୁ ଆସିଲା
ସେଥିବସି ମକରନ୍ଦ ସ୍ୱର୍ଗପୁର ଗଲା ।
ମାତା ପିତାଙ୍କୁ ଯାଇ କଲା ଦରଶନ
ଅସୁର ଜନ୍ମରୁ ସେ ମୁକ୍ତ ହେଲା ଜାଣ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଅକ୍ଷୟ ମୃତ୍ୟୁପାଇ ସ୍ୱର୍ଗପୁରେ ଗଲା ।
ଈଶ୍ୱର ବୋଇଲେ ଭଗବତୀ ଶୁଣ
ଲଙ୍କାରେ ହୁରି ହେଲା ଅକ୍ଷୟ ମରଣ ।
ଜାନକୀ ପାଖରେ ଯେଉଁ ଅସୁରୁଣୀ ଥିଲେ-
ନବର ବୁଲିବାକୁ ଲଙ୍କାକୁ ଆସିଥିଲେ ।
ସୀତାଙ୍କ ଛାମୁରେ ସେ ଅସୁରୀ କହନ୍ତି
ରାବଣ ନବରକୁ ଯାଇଥିଲୁଁ ଗୋ ସତୀ ।
ଶୁଣ ଗୋ ଜାନକୀ ତ୍ରିଜଟା ତୁମ୍ଭେ ଦୁଇ
ଯେଉଁ ବାନର ସୀତା ସଙ୍ଗେ କଥା କହି ।
ସେହି କପି ଅଶୋକବନ ଭାଙ୍ଗିଗଲା
ମଧୁବନ ତୋଟାକୁ ଭାଙ୍ଗିଣ ଧ୍ୱଂସ କଲା ।
ତୋଟାଳିଆ କିଙ୍କରଗଣଙ୍କୁ ମାଇଲା
ଶାଳକଗଣ ସହିତେ ଜମ୍ବୁମାଳି ମଲା ।
ପାଞ୍ଚ ସେନାପତିଙ୍କୁ କରିଲା ସେ ନାଶ
ଏବେ ସେ ଅକ୍ଷୟକୁ କରିଲା ବିନାଶ ।
ବଡ଼ ଯୁଦ୍ଧ କଲା ସେହି ବାନର ଯେ ବୀର
ତୋରଣ ଖମ୍ବେ ବସି ସେ କରଇ ହୁଁଙ୍କାର ।
ତ୍ରିଜଟା ଶୁଣିକରି ନିର୍ବେଦ ହୋଇଲା
ଗୁପତ କଥା ଏବେ ପ୍ରଘଟ ହୋଇଲା ।
ଜାଣିଲେ ଜାନକୀ ତ୍ରିଜଟା ଦୁଇଜଣ
ନିଶ୍ଚୟେ ରାମଦୂତ ଅଟଇ ପ୍ରମାଣ ।
ଏ ଲଙ୍କାଗଡ଼କୁ ବାନର ଦଳିବ
ବହୁତ ଉପଦ୍ରବ ଘଟାଇବ ନିବ ।
ରାବଣ ସଗୋତ୍ରେ ମାରିବେ ରାମ ଆସି
ଶ୍ରୀରାମଙ୍କର କୋପ ରାବଣଠାରେ ଅଛି ।
ଶୁଣି ଜାନକୀ ବୋଇଲେ ବଚନ
ଶ୍ରୀରାମଙ୍କର ରାବଣ ବାରା ବୈରୀ ଜାଣ ।
ବଇରୀକି ନ ମାଇଲେ କେମନ୍ତେ ମନ ସ୍ଥିର
ମରିବ ବୋଲି ରାବଣ କହିଲା ମୋ ଆଗର ।
ଏମନ୍ତ କହି ସୀତା ଆନନ୍ଦ ମନରେ
ତ୍ରିଜଟା ନମିଲା ଯେ ଜାନକୀ ଚରଣରେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାବଣ ଛାମୁରେ ଯାଇ ଡଗର କହନ୍ତି ।
ଶୁଣ ଦେବ ରାଜନ ଲଙ୍କାପୁର ସାଇଁ
ଅକ୍ଷୟ କୁମାର ରଣେ ପଡ଼ିଲା ଗୋସାଇଁ ।
ବାନର ସଙ୍ଗରେ ସେ ଅନେକ ଯୁଦ୍ଧ କଲା
କର୍ମର ଦୁର୍ବଳରେ ଜିଣି ନ ପାରିଲା ।
ନୁହଇ ବାନର ସେ ମାୟା ରୂପ ଧାରୀ
କେଉଁଣ ଦେବତା ସେ ମର୍ତ୍ତ୍ୟେ ଅବତରି ।
ଅନେକ ସଇନ୍ୟଦଳ ସେହୁ ନାଶ କଲା
ରୁଧିର ନଦୀ ସେ କ୍ଷଣକେ ବୁହାଇଲା ।
ଦୁଇଦିନ ଷଡ଼ଥର ସମର ସେ କଲା
ଲକ୍ଷେ ଚଉତ୍ରିଂଶ ବାଳ ସେ ମାଇଲା ।
ବେନି ସହସ୍ର ହସ୍ତୀ ବର ସହସ୍ର ଅଶ୍ୱ
ଏତେ ବଳ ବାନର ଏକାଳେ କଲା ନାଶ ।
ଶୁଣିଣ ରାବଣ ଶୁଖିଗଲା ମୁଖ
ବୋଇଲା ଏତେ କାଳେ ହୋଇଲା ପୁତ୍ର ଶୋକ ।
କ୍ଷଣକେ ତବଦ ହୋଇଣ ତୁନି ହେଲା
ଅଶ୍ରୁଜଳ ନେତ୍ରୁ ପୋଛେ ବିଶ୍ରବାର ବଳା ।
ବେଦବରଙ୍କୁ ଚାହିଁଣ ବୋଲଇ ରାବଣ
ଭୋ ପିତାମହ ମୋର ଜୀବନ ଅକାରଣ ।
ଛପନ ଗଣ୍ଡା ଯୁଗକୁ ଆୟୁଷ ମୋତେ ଦେଲୁ
ସୁଖେ ତୁ ଭୋଗ ଭୁଞ୍ଜ ବୋଲିଣ ବୋଇଲୁ ।

କ୍ଷତ୍ରିକୂଳରେ ତୋତେ ସମସରି ନାହି
କେଉଁଣ ଲୋକଙ୍କୁ ଅବା ଜିଣିନାହିଁ ମୁହିଁ ।
ଅକଣ୍ଟକ ରାଜ୍ୟ ଯେ ଅଜୟଗଡ଼ ଲଙ୍କା
ଏତେକାଳେ ଆସିଣ ଲାଗିଲା ମୋତେ ଶଙ୍କା ।
ଅକଳିତ ସୈନ୍ୟବଳ ପଦ୍ମବନ ଜାଣି
ଦଇବ ଏଡ଼େ କୃତ୍ୟ କଲା ମୋତେ ଆଣି ।
ବାନର ପଶୁ ଜାତି କେଡ଼େ ତା ସାହସ
ଜଳନ୍ତା ଅନଳକୁ ଡେଇଁବା କଲା ଆଶ ।
ଅକ୍ଷୟ କୁମାରକୁ ମୋର ନାଶ କଲା
ପାଞ୍ଚ ସେନାପତି ଜମ୍ବୋମାଳିକି ମାଇଲା ।
ତୋଟାଳିଆ କିଙ୍କର ମାଇଲା ବହୁତ
ମୋର ପୁଅ ମାମୁଁମାନେ ସର୍ବେ ହେଲେ ହତ ।
ରଥ ଗଜ ପଦାତି ବହୁତ ନାଶିଲା
ଏକା ବାନର ଗୋଟେ ସବୁ ଧ୍ୱଂସି ଦେଲା ।
କେଉଁଠାରୁ ଅଇଲା ସେ ଜାଣିବା କେମନ୍ତେ
କେହୁ ତାକୁ ଧରି ବାନ୍ଧି ଆଣିଦେବ ମୋତେ ।
ଏତେ କାଳେ ମୋତେ ମିଳିଲା ଉପହାସ
ମୋ ପୁତ୍ର ସୁନ୍ଦର କନ୍ଦର୍ପ ସଦୃଶ ।
ଯେ ମୋର ଶତ୍ରୁ ହୁଏ ତା ପୁରେ ପଡ଼େ ହୁରି
ପାରିବାର ପଣରେ ନୁହନ୍ତି କେହୁ ସରି ।
କ୍ଷୟ ନୋହିବ ବୋଲି ଅକ୍ଷୟ ନାମ ଦେଲି
ଏବେ ସେ କୁମରକୁ ଅଖଡ଼େ ହରାଇଲି ।
ବୀରଙ୍କର ମର୍ଦ୍ଦନ ରଞ୍ଜନ କ୍ଷତ୍ରୀ ମଲ୍ଲ
ଏ ଲଙ୍କାରେ ମୋର ପୁତ୍ର ଅଟେ ମହାମଲ୍ଲ ।
ସୁର ନର କିନ୍ନର ସବୁଙ୍କୁ ସାଧ୍ୟ କଲା
ଛାର ପଶୁ ବାନର ହସ୍ତେ ପ୍ରାଣ ଦେଲା ।
ଆହା ମୋର ପୁତ୍ରରେ କୁଳର ଶିରୋମଣି
ଅଇରୀ ବଳ କମ୍ପନ୍ତି ତୋର ନାମ ଶୁଣି ।
ଏବେ ମୋତେ ଛାଡ଼ିରେ ଗଲୁ ଏକା ହୋଇ
ତୋର ଗୁଣ ସୁମରି ଝୁରୁଅଛି ମୁହିଁ ।
ମୋର ଦୁଃଖ ଅକ୍ଷୟରେ ନ ଦେଖିଲୁ ତୁହି
ଛପନଗଣ୍ଡା ଯୁଗ ଭୋଗ ମୋର ସରିନହିଁ ।
ଏମନ୍ତ ରୋଦନ ରାବଣେଶ୍ୱର କରି
ତେଣେ ଅନ୍ତଃପୁରେ ପଡ଼ିଲା ବୋବାଳି ।
ବେଦବର ବୋଇଲେ ଶୁଣରେ ଦଶାନନ
ଜାଣୁ ଜାଣୁ ବିଷଦ୍ରବ୍ୟ କଲୁ ହେଜ ମନ ।
କର୍ମରେ ଲେଖାଅଛି ସୀତା ହରିଲେ ମରି
ସେ କଥାକୁ ତୁହି ଦେଲୁରେ ପାସୋରି ।
ତୋହର ମନେ ନ ରହିବ ବୋଲି ଚିତ୍ରପଟ କଲି
ପାଶୋର ଯିବ ବୋଲି ଚେତା କରାଇଲି ।

ତେବେ ସେ କଥାକୁ ତୁ ନ କଲୁ ଖାତର
ପଞ୍ଚବଟୀ ବନରୁ ହରିଲୁ ରାମାବର ।
ଦେଖିଲୁ ତୁ ଜନକ ଦୁହିତା ଅଗ୍ନିରୂପ
ଛୁଇଁବାକୁ ଯୋଗ୍ୟ ନୋହିଲୁ ତୁହି ତ ।
ପୂର୍ବକଥା କହନ୍ତେ ସତୀ ବୋଧ ହେଲା
ତୋତେ ମାରିବାକୁ ସେ ଲଙ୍କାକୁ ଆସିଲା ।
ସେହିଠାରେ ତୁହି କଲୁ ଯେ ପ୍ରମାଣ
ମୋହର ସଙ୍ଗରେ ମରିବେ ସର୍ବେ ପୁଣ ।
ନିୟମ କରାଇ ସତୀ ତୋ ପୁରେ ଅଇଲା
ଆହାର ନ କରି ସେ କଷ୍ଟରେ ରହିଲା ।
ଏଥିରେ ତେରମାସ ବହିଗଲା ପୁଣ
ଚାରିଦିଗେ ରାମଦୂତ ପଠାଇଲେ ଜାଣ ।
ଦକ୍ଷିଣ ଦିଗକୁ ଅଇଲେ ଆଠ ଦୂତ
ସମ୍ପାତିଠାରୁ ଶୁଣି ହେଲେ ସମ୍ଭୀଭୂତ ।
ତେଣେ ସିନ୍ଧୁ କୂଳରେ ରହିଲେ ସାତଜଣ
ଲଙ୍କାକୁ ଆସିଲା ଏକାକେ ହନୁମାନ ।
ଲଙ୍କାଗଡ଼େ ସମସ୍ତଙ୍କ ପୁର ଖୋଜିଗଲା
ତୋର ପୁର ଖୋଜି ଖୋଜି ଚିହ୍ନ ନ ପାଇଲା ।
ବନଲତା ଖୋଜିଗଲା ଅଶୋକ ବନରେ
ଜନକ ଦୁହିତାକୁ ଦେଖିଲା ସେଠାରେ ।
ଦେଖିଣ ହନୁମନ୍ତ ମନରେ କ୍ରୋଧ ହେଲା
ଯାଇଣ ମଧୁବନ ତୋଟାକୁ ଭାଙ୍ଗିଲା ।
ସୈନ୍ୟବଳ ମାରି ତୋ ପୁତ୍ରକୁ କଲା ନାଶ
ସେକଥାକୁ ବିଚାର କର ଦଶଈଶ ।
ଶ୍ରୀରାମ ଯେବେ ନାରାୟଣ ନୋହିଥାନ୍ତା
ଏକା ବାନର କେମନ୍ତେ ଲଙ୍କାକୁ ଧ୍ୱଂସନ୍ତା ।
ଶୁଣିକରି ରାବଣ ବୋଲଇ ବଚନ
ଡରାଉଛ ଯେତେ ମୋତେ ଚତୁର ବଦନ ।
ତୁମ୍ଭେ ଦେବତା ଏ ଡରାଇଲେ ଜାଣ
ଶ୍ରୀରାମକୁ ଡରିବକି ବିଶ୍ରବା ନନ୍ଦନ ।
ମାରିବି ରାମ ଲକ୍ଷ୍ମଣ ଯିବି ଅଯୋଧ୍ୟାକୁ
ଅଯୋଧ୍ୟାରେ ରାଜା କରିବି ଇନ୍ଦ୍ରଜିତକୁ ।
ଶୁଣି କରି ବେଦବର କିଛି ନ କହିଲେ
ମଉନରେ ବିଧାତା ସେଠାରେ ରହିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାବଣର ଅନ୍ତଃପୁରେ ପଡ଼ିଲା ହାଳ ହୋଳି ।
ଲଙ୍କାଗଡ଼େ ହାଳହୋଳି ପଡ଼ିଲାକ ପୁଣ
ନର ନାରୀ ବିଚାର କରନ୍ତି ସର୍ବେ ଜାଣ ।
କେ ବୋଲଇ ଶୁଣ ଗୋ ଅକ୍ଷୟ ବୀର ଗଲା
ବାନର ନ ଡରିଣ ତାହାକୁ ମାଇଲା ।

କେ ବୋଲଇ ଲଙ୍କାଗଡ଼ ଆଜ୍ଞ ଗଲା ନାଶ
କେ ବୋଲଇ ରାବଣ ଅର୍ଜିଛି ଏତେ ଦୋଷ ।
ଶ୍ରୀରାମର ଘରଣୀକୁ ଆଣିଲା ଚୋରାଇ
ସେହି ଦିନରୁ ଶିରୀ ଛାଡ଼ିଲା ଲଙ୍କସାଇଁ ।
କେ ବୋଲଇ ଆଜଯାଏଁ ଆମ୍ଭର ସୁଖ ଥିଲା
ରାମନାରୀ ଆସିଲା ଦିନୁ ବିପଦ ଘଟିଲା ।
ଏମନ୍ତ କୁହାକୁହି ହୁଅନ୍ତି ନଗ୍ରଜନ
ଅନ୍ତଃପୁର ଭିତରେ ଗହଳ ରୋଦନ ।
ଅକ୍ଷୟର ସହସ୍ରେ ନାରୀ ଯେ ଅଟନ୍ତି
ଗୁଣ ବାହୁନି ସେମାନେ ରୋଦନ କରନ୍ତି ।
ମାତାମାନେ ପୁତ୍ର ନାମ ଧରି ବିଳପନ୍ତି
ଆଉ ରାଣୀମାନେ ଯେ ଉଚ୍ଚେ ରାବଦ୍ୟନ୍ତି ।
ମନ୍ଦୋଦରୀ ଧରଣୀରେ ପଡ଼ିଣ ଗଡ଼ଇ
ମୁଣ୍ଡ କୋଡ଼ି ହୋଇଣ ପୁତ୍ରକୁ ଲୋଡ଼ଇ ।
ଅକ୍ଷୟ ରମଣୀମାନେ ଭୂମିରେ ଲୋଟନ୍ତି
କେଶ ବାସ ଅସମ୍ଭାଳ ଥୟ ନ ହୁଅନ୍ତି ।
ଅକ୍ଷୟର ବଡ଼ନାରୀ କଞ୍ଚନ ନାମେ ଶୋଭା
ମନରେ ବିଚାରିଲେ ଏ ସବୁ ମିଥ୍ୟା ପ୍ରଭା ।
ମନକୁ ମନ ବୁଝାଇ ଶାନ୍ତଶୀଳ ହେଲା
ସବୁ ସପତଣୀଙ୍କି କହିଣ ଶାନ୍ତ କଲା ।
ବୋଇଲା ରୋଦନରେ କିଛି ନାହିଁ କାର୍ଯ୍ୟ
ଶ୍ୱଶୁରଙ୍କ ଦୋଷରୁ ସବୁ ଯେ ଅଭାଗ୍ୟ ।
ଦେବଙ୍କୁ ଦଣ୍ଡିବାରୁ ଦେବକୁଟ ଏବେ
ସମସ୍ତେ ମରିବେଟି ଗୋଟିଏ ନ ବର୍ତ୍ତିବେ ।
ଦେବେ କହିବାରୁ ନାରାୟଣ ଜାତ
ଆମ୍ଭର କୁଳ ଗୋତ୍ର ନାଶିବେ ରଘୁନାଥ ।
ଲୋଭ କରି ଶ୍ୱଶୁର ସୀତାଙ୍କୁ ଆଣିଲେ
ଦେଖୁ ଦେଖୁ ସକଳ ସମ୍ପଦ ହରାଇଲେ ।
ଆମ୍ଭେମାନେ ରହିବାର ନୁହଇ ଉଚିତ
ରହିଲେ ଅନେକ କଥା ଦେଖିବା ନିଶ୍ଚିନ୍ତ ।
ସାଗରେ ଝାସ ଦେଲେ ସ୍ୱାମୀର ସଙ୍ଗେ ଯିବା
ଅମର ସ୍ୱର୍ଗପୁରେ ଯାଇଣ ବସିବା ।
ଶୁଣିଣ ସମସ୍ତେ ଶାନ୍ତମନ ହେଲେ
ଚିନ୍ତା ଛାଡ଼ିଣ ସେ ବେଶଭୂଷଣ ହୋଇଲେ ।
ଦାସୀମାନଙ୍କୁ ଘେନି ସୁବେଶ ହୋଇଲେ
ଅମଳାଣ ପିନ୍ଧିଣ ବାହାର ହୋଇଲେ ।
ଦାସୀଙ୍କି ଘେନିଣ ଚଳିଲେ ସକଳ
ଶାଶୁଙ୍କୁ ଓଳଗିଲେ ହୋଇ ସର୍ବେ ମେଳ ।
ଶାଶୁମାନଙ୍କ ଚରଣେ ଓଳଗି ହୋଇଲେ
ସ୍ୱାମୀଙ୍କ ସଙ୍ଗେ ଯାଉଛୁ ବୋଲିଣ ବୋଇଲେ ।

ମନ୍ଦୋଦରୀ ବୋଲେ ତୁମର ମଲା ମୋର
ବଧୂମାନେ ତୁମର ସଙ୍ଗରେ ବାହାର ।
ମୋତେ ଛାଡ଼ି କିମ୍ପା ଲୋ ଯିବ ତୁମ୍ଭେମାନେ
ଥାଅ ତୁମ୍ଭେ ନିଶ୍ଚିନ୍ତରେ ନ ଭାଳ ଗୋ ମନେ ।
ଶୁଣିଣ ବଧୂମାନେ କହନ୍ତି ବଚନ
ନାରଦ କହିଲା କଥାକି ନାହିଁ ତୁମ୍ଭ ମନ ।
ପୁତ୍ର ନାତି ଗୋଟିଏ ନ ରହିବେ କେହି
ନିଜର ଦିଅରକୁ ଭବୁଷୀ ହୁଅଯାଇ ।
ଯାନକକାଙ୍କ ସଙ୍ଗରେ ତୁମ୍ଭେ ପ୍ରୀତି କର
ସେହୁ ଯୁଗେ ଯୁଗେ ହୋଇବ ଅମର ।
ଶ୍ରୀରାମ ତାହାଙ୍କ ଶିରେ ବାନ୍ଧିବେ ହେ ପାଟ
ତୁମ୍ଭେ ଦୁହେଁ ଏ ରାଜ୍ୟରେ ହୋଇବ ମୁରାଟ ।
ଏତେ କହି ସମସ୍ତେ ବେଗେ ଚଳିଗଲେ
ଦିହୁଡ଼ି ଚନ୍ଦ୍ରାଦୀପ ଆଗରେ ହୁଳ ଜଳେ ।
ପଶ୍ଚିମଦ୍ୱାର ବାଟେ ହୋଇଲେ ବାହାର
ସମସ୍ତେ ମିଳିଲେ ସାହେର କୂଳର ।
ନମସ୍କାର କରିଣ ସମୁଦ୍ରେ ଝାସ ଦେଲେ
ଅସୁର ରୂପ ଛାଡ଼ି ଦିବ୍ୟରୂପ ହେଲେ ।
ସ୍ୱର୍ଗରୁ ବିମାନ ଅଇଲା ତଡ଼ତି
ସେଥିପରେ ବସିଣ ଗଲେ ସର୍ବସ୍ୱତୀ ।
ଅମର ସ୍ୱର୍ଗରେ ଯାଇଣ ମିଳିଲେ
ରବିର ନିଜ ପୁରେ ପ୍ରବେଶ ହୋଇଲେ ।
ଓଳଗ ମେଲାଇଣ କରିବେ ସମ୍ମାନ
ସ୍ୱାମୀର ସଙ୍ଗରେ ରହିଲେ ନିଜ ସ୍ଥାନ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଅକ୍ଷୟର କଥା ଏବେ ତ ସରିଲା ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ବଧୂମାନେ ଯିବାରୁ ଶାଶୁମାନେ ଶାନ୍ତି ।
ମନ୍ଦୋଦରୀ ଭାବିଲା ନାରଦ କଥା ସତ
ଅଇଲା ଦିନ ଜାନକୀ କହିଲେ ଏହିମତ ।
ଲଙ୍କାରେ କାଠ ଯେ ଅଟନ୍ତି ଦଇତ
ଦାବାନଳ ଅଗ୍ନି ଜନକ ଦୁହିତ ।
ଏକଥାକୁ ବିଚାରି ନିବର୍ତ୍ତିଲେ ରାଣୀ
ସେତେବେଳକୁ ଦଶଘଡ଼ି ଯେ ରଜନୀ ।
ସନ୍ଧ୍ୟାରେ ଦେବତାମାନେ ସ୍ୱର୍ଗପୁର ଗଲେ
ଯେ ଯାହାର ସ୍ଥାନେ ପ୍ରବେଶ ହୋଇଲେ ।
ଏମନ୍ତ ସମୟରେ ଇନ୍ଦ୍ର ବିଜେ କରି
ସକଳ ଦେବତାଏ ଏଠାରେ ହେଲେ ମେଳି ।
ଆଜକୁ ତିନିଦିନ ହେଲା ଆସିଲା ହନୁମନ୍ତ
ଲଙ୍କାରେ ଯୁଦ୍ଧ କଲା ପବନର ସୁତ ।

ଅନେକ ଅସୁର ସେ ମାଇଲା ଏକା ହୋଇ
ଆଜିଠାରୁ ରାବଣର ରାମକୁ ଚିନ୍ତା ହୋଇ ।
ଆଜିଠୁଁ ତିନିପକ୍ଷେ ମରିବ ଦଶଗ୍ରୀବ
ତେବେ ଦେବତାଙ୍କ ବିପତ୍ତି ତୁଟିବ ।
ଦୁଇପକ୍ଷେ ପୁତ୍ର ନାତି ସୈନ୍ୟବଳ ମରି
ଏମନ୍ତ ବିଚାର ଦେବେ ସଭା କରି ।
ସଭାସଙ୍ଗ ଦେବତାଏ ଗ୍ଲା ଯେଝାପୁରେ
ଶୁଣ ଗୋ ଭଗବତୀ ଏଥୁ ଅନନ୍ତରେ ।
ରାବଣ ଦୈତ୍ୟ ଜଗତି ପରେ ବସିଥିଲା
ରାତ୍ର ବେନିଘଡ଼ିରେ ପୁତ୍ରର ମରଣ ଶୁଣିଲା ।
ଅନେକ ରୋଦନ କଲା ଉଚ୍ଚସ୍ୱରେ
ବେଦବର ବୋଧ କରିଗଲେ ନିଜପୁରେ ।
ମନ୍ଦୋଦରୀପୁରରେ ହେଲେ ପରବେଶ
ମନରେ ବିଚାରିଲା ସାବିତ୍ରୀଙ୍କ ଈଶ ।
ହନୁମନ୍ତ ଆସିଣ ପ୍ରଥମେ ମାଡ଼ ଦେଲା
ଲଙ୍କାରେ ଅସୁରଙ୍କୁ ଉଚ୍ଚାଟ କରାଇଲା ।
ତାର ହସ୍ତେ ମଲା ରାବଣର ସାନପୁତ
ଚିନ୍ତା କରି ରୋଦନ କରେ ଲଙ୍କାନାଥ ।
ଲଙ୍କାରେ ଅସୁର ଅସୁରୀ ଅନ୍ତଃପୁରେ ରାଣୀ
ଏମାନେ ନିନ୍ଦା କଲେ ଦଶାନନକୁ ପୁଣି ।
ଧାତା ଭାବିଲେ ନିନ୍ଦା ପାଇଣ ରାବଣ
ସୀତା ସମର୍ପିଲେ ଅବା ପଶିବ ଶରଣ ।
ଶରଣ ପଶିଲେ ତ ଅମର ହୋଇବ
ଦେବଙ୍କର ଶଲତ କାଳେ ହେଁ ନ ଯିବ ।
ଅତ୍ୟନ୍ତ ପ୍ରବଳ ହୋଇବ ଅସୁର
ସଦର୍ପେ ଭୋଗ ସେ କରିବ ତିନିପୁର ।
ଏମନ୍ତ ବିଚାରି ଦେବ କୁଶହସ୍ତ
ପବନ ସୁମରଣା କଲେକ ତ୍ୱରିତ ।
ଜାଣିଣ ମାରୁତ ପ୍ରବେଶ ହୋଇଲେ
ଦେଖି କରି ବିଧାତା ତାହାଙ୍କୁ କହିଲେ ।
ବୋଇଲେ ଇନ୍ଦ୍ରର ପୁରକୁ ବେଗେ ଯାଅ
ମୋର କହିଲା ବୋଲି ତାର ଆଗେ କହ ।
ବୋଲିବୁ ଅସୁର ଦଳଣ ମୋହମଣି
ବିଧାତା କହିଛନ୍ତି ଦିଅ ତତକ୍ଷଣି ।
ଶୁଣିଣ ପବନ ବେଗେ ଚଳିଗଲା
ଇନ୍ଦ୍ରଙ୍କର ଛାମୁରେ ପ୍ରବେଶ ହୋଇଲା ।
ବୋଇଲେ ବେଦବର ପଠାଇଲେ ମୋତେ
ଅସୁର ଦଳଣ ମଣି ଦିଅ ବେଗେ ମୋତେ ।
ଶୁଣିଣ ସୁରପତି ଭଣ୍ଡାରକୁ ଗଲେ
ଅସୁର ମୋହମଣି ବେଗେ ଆଣି ଦେଲେ ।
ପବନମଣି ଘେନି ଧାତାପାଶେ ମିଳି
ବିଧାତା ବୋଇଲେ ଲଙ୍କାପୁରେ ଯାଅ ଚଳି ।
ଏ ମଣିକି ନେଇ ରାବଣକୁ ଦେବୁ
ପିତାମହ ଦେଇଛନ୍ତି ବୋଲିଣ ବୋଲିବୁ ।
ଶୁଣିଣ ପବନ ବେଗେ ଚଳିଗଲା
ରାବଣର ଛାମୁରେ ପ୍ରବେଶ ହୋଇଲା ।
ବୋଇଲା ଦଶଗ୍ରୀବ ନ କର କ୍ରନ୍ଦନ
ଧାତା ମୋତେ ପେଶିଛନ୍ତି ଶୁଣ ମୋ ବଚନ ।
ସବୁଦିନେ ନିଶ୍ଚିନ୍ତ ନୁହଇ ନିଶ୍ଚଳ
ଶରୀର ବହିଲେ ଚିନ୍ତା ଲାଗଇ ଅପାର ।
କ୍ଷତ୍ରୀର ପୁତ୍ର ସିନା ରଣ କରି ମଲା
ମୃତ୍ୟୁର ସକାଶେ ସେ ଜନମ ଲଭିଥିଲା ।
ରଣେ କରି ମଲା ସେ ଗଲା ସ୍ୱର୍ଗପୁର
ଯୁଗକୁ ଯେଉଁପୁର ମାସେକ ମାତର ।
ସେ କଥାକୁ ଛଳ ତୁ ନ କର ବେଦପତି
ଛାର ବାନରଙ୍କି ପାରିବ କାଲି ବର୍ତ୍ତି ।
ତୁହି ରୋଦିବାରୁ ବେଦବର ଚିନ୍ତି
ମୋତେ ଡାକି ତୋର ପାଶକୁ ପେଶିଛନ୍ତି ।
ଡନ୍ତ ସିଦ୍ଧାନ୍ତ ମଣି ଦେଲେ ମୋର ହସ୍ତ
ବୋଇଲେ ଦଶଗ୍ରୀବକୁ ଦିଅ ଯା ତ୍ୱରିତ ।
ତେବେ ତାର କ୍ରୋଧ ଶାନ୍ତ ହେବ ପୁଣ
କହିବୁ ଯୁଦ୍ଧ କରି ମଲେ ଯେ କାରଣ ।
ଏତେ କହି ପବନ ମଣିଟିକି ଦେଲା
ରାବଣ କର ପ୍ରସାରି ମଣିଟିକି ଧଇଲା ।
ମଣିକି ଦେଖନ୍ତେ ସବୁ ତୁଚ୍ଛ କଲା
ପୂର୍ବର ପ୍ରକାରେ ତା ମନ ହୋଇଲା ।
ଅପସରୀମାନଙ୍କୁ ବୋଇଲା ଲଙ୍କସାଇଁ
ଯେ ଯାହାର ପୁରକୁ ଚଳ ବେଗ ହୋଇ ।
ଶୁଣିଣ ଅପସରୀ ଗଲେ ଯେଝାପୁର
ସେଠାରୁ ବିଂଶପାଣି କଲାକ ବିଚାର ।
ଆଗରେ ଇନ୍ଦ୍ରଜିତକୁ ରାବଣ ଦେଲା ଚାହିଁ
ଆଜ୍ଞା ଦେଲା ତାହାଙ୍କୁ ମନ୍ଦୋଦରୀ ସାଇଁ ।
ତୁ ବାବୁ ଇନ୍ଦ୍ରଜିତ ଯାଅ ଏହିକ୍ଷଣି
ବାନର ଗୋଟାଏକୁ ବାନ୍ଧିକରି ଆଣି ।
ତାକୁ ଧରି ଆଣିଲେ ଆଜ ମୁଁ ମାରିବି
ଅକ୍ଷୟ ମଲା କଷ୍ଟ ମନରୁ ଭୁଲିବି ।
ବାନର ବାନ୍ଧିଆଣି ଦେବୁ ମୋ ଛାମୁର
ତେବେ ମୋର ମନ ଶାନ୍ତ ହେବରେ କୁମର ।
ଶୁଣିଣ ଇନ୍ଦ୍ରଜିତ ଶିରେ କରଦେଲା
କାଲି ପ୍ରଭାତୁ ବାନ୍ଧି ଆଣିବୁ ବୋଇଲା ।

ଧୂମ୍ରାକ୍ଷ ହସ୍ତ ଧରି ସେଠାରୁ ବାହାର
ଅନେକ ସୈନ୍ୟବଳ ସାଜିଲା ସତ୍ୱର ।
ଦଶ ସହସ୍ର ପଦାତି ଦୁଇ ସହସ୍ର ରଥ
ବେନି ସହସ୍ର ପଏକାର ସାଜିଲା ତଡ଼ତି ।
ବାରସହସ୍ର ଅଶ୍ୱ ସାରେଣି ବେନିସସ୍ତ୍ର
ତାରସଙ୍ଗେ ସେନାପତି ଏକ ସେ ସହସ୍ର ।
ସୁବର୍ଣ୍ଣର ରଥ ଯେ ବିଚିତ୍ର ଗଢ଼ଣ
ସେ ରଥର ନାମ ଦେବଦଳନ ଜାଣ ।
ବିଶ ବହନ ବିରାଜ ଉଡ଼େ ଘର ଘର
ଝଟକ ବିଜୁଳି ପ୍ରାୟେ ବିଶେ ଜ୍ୟୋତି ତାର ।
ଶ୍ୱେତ ଚାମର ସେ ଦର୍ପଣ ମାଣ୍ଡେ ପଂକ୍ତି
କୁସୁମ ମାଳମାନ ଶୋଭା ବିଶେ ଅତି ।
ସେ ରଥରେ ବିଜେ କଲା ଇନ୍ଦ୍ରଜିତ ଯାଇ
କନକର ଚିନାଳ ଧାନଛତ୍ର ସେ ଉଡ଼ଇ ।
ବାମକରେ କୋଦଣ୍ଡ ଦକ୍ଷିଣେ ତୀକ୍ଷ୍ଣଶର
ନିଶାରେ ହସ୍ତ ମାରି କୋପେ ଜର ଜର ।
ଆଗରେ ଚମକ ସେ ନିଶାଣ ନାଉ ତୂର
କମ କାହାଳୀ ଯେ ବାଜଇ ମଧୁସ୍ୱର ।
ଭାଟ ଗାଏବାର ଯେ ଆଗେ ନୃତ୍ୟକାରୀ
ନାରୀମାନେ ଦିଅନ୍ତି ମଙ୍ଗଳ ହୁଳହୁଳି ।
କୋଟିଏ ବୀର ବାଦ୍ୟ ବାଜଇ ଘନ ଘନ
ଚାଲ ଚାଲ ବୋଲିଣ ଶବଦରେ ପୂର୍ଣ୍ଣ ।
ଚଳିଲେକ ଥାଟ ପ୍ରଳୟ କାଳ ଜାଣି
ଦେଖିଣ କମ୍ପମାନ ହୋଇଲା ଧରଣୀ ।
ମୁଖ ରାବ ଶବଦରେ କୁରୁମ ଉଛୁଳି
ସ୍ୱର୍ଗରେ ଦେବତାଏ ମନରେ ଯେ ଭାଳି ।
ଇନ୍ଦ୍ରଜିତ ଆସନ୍ତେ ଇନ୍ଦ୍ର ବିଚାରଇ
ଏ ଇନ୍ଦ୍ରଜିତ ମଲେ ମୁଁ ତ୍ରାହି ପାଇବଇଁ ।
ଶଚୀ ଦେବୀ ଶୁଣିଣ କହିଲେ ଇନ୍ଦ୍ରଙ୍କୁ
କପି ହୋଇ ଧ୍ୱଂସିଲା ଅସୁର କୁଳକୁ ।
ଦେବତା ହୋଇଣ ଖଟ ତାର ପାଶ
ପରକୁ ଆଶ୍ରା କରିଅଛ ତ ତ୍ରିଦଶ ।
ପଶୁ ଜାତି ମର୍କଟ ଅଟେ କେଡ଼େ ଟାଣ
ହନୁର ସଙ୍ଗରେ ଲଙ୍କାରେ ବୀର ନାହିଁ ଜାଣ ।
ଭଲା ଯେ ହନୁମନ୍ତ ଯୋଗରେ ଜାତ ହେଲା
ଶ୍ରୀରାମ ବୋଲରେ ସିନ୍ଧୁକୁ ଡେଇଁଲା ।
ଜାନକୀଙ୍କୁ ଠାବ କରି ମାଇଲା ସେ ଦୈତ୍ୟ
ହନୁମନ୍ତକୁ ସମାନ ନୁହନ୍ତି ଦେବତାତ ।
ଶୁଣିଣ ବାସବ ଶଚୀଙ୍କି କହନ୍ତି
ପବନ ତନୟ ଅଟେ ଏ ମାରୁତି ।
ସଦାଶିବ ବୀର୍ଯ୍ୟରୁ ହୋଇଲା ସେ ଜାତ
ତେଣୁ ସେ ବଜ୍ର ଅଙ୍ଗ ହେଲା ହନୁମନ୍ତ ।
ଜନ୍ମ ହେବା କାଳରେ ସେ ଉପଦ୍ରବ କଲା
ତୋହର ଦେହଶୂରକୁ ଲାଞ୍ଜରେ ବାନ୍ଧିଲା ।
ଜାଣିଣ ମୁହିଁ ତାକୁ ମାରିଲି ବଜ୍ର ଶର
ଅଚେତା ହୋଇ ପଡ଼ିଲା ପବନ କୁମର ।
ବିଅର ପବନ ତୋର ମନେ କ୍ରୋଧ ହେଲା
ତିନିପୁର ନିରୋଧିଲା ଆଉ ନ ବହିଲା ।
ଦେବତାମାନେ ମିଳି ତାକୁ ଦେଲେ ବର
ତେଣୁ ସେ ଅକ୍ଷୟର ହେଲା ବୀରବର ।
ଦେବ ଅଂଶ ଅଟଇ ପବନର ବାଳ
ତାହାଙ୍କୁ ସମସରି ନୁହନ୍ତି ଦିଗପାଳ ।
ତେଣୁ ସେ ବଳବନ୍ତ ଅଟଇ ପ୍ରିୟା
ବସୁଦେବ ଭକତିରେ ହେଲା ଏବେ ତୋରା ।
ପାର୍ବତୀ ବୋଇଲେ ଆହେ ତ୍ରିଲୋଚନ
ପୁତ୍ର ଇନ୍ଦ୍ରଜିତକୁ ପେଶିଲା ରାବଣ ।
ସେଠାରୁ ହୋଇଲା କେଉଁ ସମାଚାର
ସେ କଥା ମୋର ଆଗେ କହ ପ୍ରାଣେଶ୍ୱର ।
ଈଶ୍ୱର ବୋଇଲେ ମେଘନାଦକୁ ପେଶି
ଜଗତ ଉପରକୁ ଗଲା ନଉକେଶ ଶିଷି ।
ବାହାରେ ଅବକାଶ ଜାଣଇ ସେ ହେଲା
ମର୍ଦ୍ଦନ ମାଜଣା ହୋଇ ସ୍ନାହାନ କରିଲା ।
ସନ୍ଧ୍ୟା ତର୍ପଣ ସୁମରି ନିତ୍ୟ କର୍ମ କରି
ଚାରିବେଦ ତୁଣ୍ଡରେ ଉଚ୍ଚାରେ ଦଶଶିରି ।
ବେଶି ଆଧ୍ୟାନ କରି ମଣୋହି ଯାଇ କଲା
ମଦିରା ମାଂସ ଖାଇ ସନ୍ତୋଷ ହୋଇଲା ।
ଆଞ୍ଚୋମନ ସାରିଣ ବିଡ଼ିଆ ଭୁଞ୍ଜିଲା
ବେଗ ଯାଇଣ ସେ ବାହାରେ ବିଜେ କଲା ।
ଆନନ୍ଦ ମନରେ ଜଗତି ପରେ ବସି
ଖଟଣୀ ସୀମନ୍ତମାନେ ଚଉପାଶେ ବସି ।
ଅପସରାମାନେ ହୋଇଲେକ ତ୍ୱରା
ରାବଣ ଆଗରେ ମିଳିଲେକ ସାତଯୋଡ଼ା ।
ଦେଖିଣ ରାବଣ ମନରେ ତୋଷ ହେଲା
ଅପସରୀଙ୍କୁ ଚାହିଁଣ ବଚନ ବୋଇଲା ।
ଇନ୍ଦ୍ରଜିତ ଅଇଲେ ତୁମ୍ଭେ କରିବ ନୃତ୍ୟ
ଶୁଭେ ଯାଇ ଇନ୍ଦ୍ରଜିତ ଆଣୁ ବାନରତ ।
ଏହି ସମୟରେ ମିଳିଲେ ଦେବଗଣ
ରାବଣର ଛାମୁରେ ଦେଖା ହେଲେ ଜାଣ ।
ଦେଖି କରି ରାବଣ ଦେବତାଙ୍କୁ କହି
ହୀରା ଜଗତି ପରେ ବସ ତୁମ୍ଭେ ଯାଇ ।

ଶୁଣିଣ ତ୍ରିଦଶ ଦେବତା ତହୁଁ ଗଲେ
ହୀରାର ଜଗତି ପରେ ଯାଇଣ ବସିଲେ ।
ଏହି ସମୟରେ ବେଦବର ଆସି
ନାରଦ ଅଙ୍ଗିରା ସଙ୍ଗରେ ଅଛନ୍ତି ।
ଏମନ୍ତ ସମୟରେ ମିଳିଲୁ ଯେ ଆମ୍ଭେ
ନନ୍ଦୀ ଯେ ଭୃକୁଟି ଅଛନ୍ତି ମୋର ସଙ୍ଗେ ।
ଏହି ସମୟରେ ମିଳିଲେ ଦେବରାଜା
ଦେଖି୍ଣ ରାବଣ ଯେ ମନରେ ହେଲା ଚେତା ।
ବୋଇଲା ବସ ବୈଦୂର୍ଯ୍ୟ ଜଗତି ଉପର
ସମସ୍ତେ ଦେଖ ତୁମ୍ଭେ ବାନର ଆସିବାର ।
ଏମନ୍ତ ସମୟରେ ଅଇଲେ ପୁତ୍ରନାତି
ଭାଇ ବନ୍ଧୁ କୁଟୁମ୍ବ ସମସ୍ତ ସୈନ୍ୟ ଛନ୍ତି ।
ଦେଖିକରି ରାବଣ ହରଷ ମନ ହେଲା
ସମସ୍ତଙ୍କୁ ଚାରି ପାଶେ ବସାଇ ରଖିଲା ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ସେଦିନ ରାତିରେ ମାରୁତି କି କଲା ।
ଈଶ୍ୱର ବୋଇଲେ ଅକ୍ଷୟକୁ ମାରି
ତ୍ରୋଣା ଖମ୍ବ ଉପରେ ବସିଲା ଯାଇ କରି ।
କେତେବେଳ ଉତ୍ତାରେ ବନରେ ଯାଇ ପଶି
ରାଜ ଆମ୍ବଯାକ ଖାଇଲା ମନ ତୋଷି ।
ଜାଇଫଳ ଲବଙ୍ଗ ଅଳାଇଚ ଖାଇଲା
ଉଦର ଶାନ୍ତ କରି ଖମ୍ବରେ ବସିଲା ।
ବିଚାର କରଇ ମାରୁତି ମନର
ବିଳମ୍ବ ହୋଇଲାତ କାର୍ଯ୍ୟ ରାମଙ୍କର ।
ଈଶ୍ୱର ବୋଇଲେ ଶୁଣ ଗୋ ହେମବନ୍ତୀ
ଇନ୍ଦ୍ରଜିତ ମଧୁବନେ ପ୍ରବେଶ ଝଟତି ।
ସଙ୍ଗରେ ସୈନ୍ୟବଳ ଚାଲନ୍ତି ଅପ୍ରମିତ
ଲଙ୍କାପୁରବାସୀ ଦେଖି ହୁଅନ୍ତି ସନ୍ତାପିତ ।
ଯିବା ଦୈତ୍ୟଙ୍କର ପଛରେ ଗୋଡ଼ାଇ
କହନ୍ତି ଆଗୁଆ ହୋଇ ନ ଯିବଟି କେହି ।
କଠୋର ମାରୁଣୀ ବାନର ମାରଇ
ନିର୍ଦ୍ଦୟ କପି ସେ ତାର ହୃଦରେ ଦୟା ନାହିଁ ।
ଅସୁରଙ୍କର ଅନ୍ତକୁ ଗଳାରେ ଲମ୍ବାଇ
ନାନା ରତ୍ନମାନ ସେ ଆଭରଣ ହୋଇ ।
ଯତନରେ ରୁଧିର ଅଙ୍ଗରେ ହୁଏ ବୋଳି
ମାଇଲା ପାଞ୍ଚ ସେନାପତି ଜମ୍ୱୋମାଳି ।
ଶାଳକଗଣ ନାଶିଲା ରଣକେଳି କରି
ଅକ୍ଷୟ କୁମରକୁ ସେହି ନାଶ କରି ।
ସନକ କହିଣ ତିଆରନ୍ତି ଲୋକେ
ସଂଗ୍ରାମକୁ ସୈନ୍ୟ ଧାମନ୍ତି ଉଛୁକେ ।

ଏ କିଳିକିଳା ରାବ ଦେଇଣ ଚଳନ୍ତି
ଏକକୁ ଆରେକ ଆଗ ସରି ହୋନ୍ତି ।
ସମସ୍ତ ବଳ ଯାଇ ଠୁଳ ମଧୁବନେ
ଦେଖିଣ ହନୁମନ୍ତ ବିଚାରଇ ମନେ ।
ଅଗୋଚର ସୈନ୍ୟବଳ ଆସୁଛନ୍ତି ମାଡ଼ି
ପ୍ରଳୟ କାଳରେ ଯେହ୍ନେ ସାଗର ଆସେ ମାଡ଼ି ।
ଅସଂଖ୍ୟ ସୈନ୍ୟ ଏ ଅଛଇ ସମ୍ଭାଳି
ଏଣୁ କରି ସାଧ୍ୟ କରେ ଏହୁ ମହିଆଳି ।
ତିନି ଭୁବନେ ତେଜ ଲାଗଇ ଏହାର
ଧନ୍ୟ ଧନ୍ୟ ଦଶାନନ ମହିମା ତୋହର ।
ମନେ ମନେ ବିଚାର କରଇ ମହାବୀର
ମେଘନାଦ ସଙ୍ଗେ ମୁଁ କି କରିବି ସମର ।
ଏହାର ମୃତ୍ୟୁ ଅଛି ଲକ୍ଷ୍ମଣ ହସ୍ତର
ପୂର୍ବରୁ ଧାତା ଏହା ପକାଇଛି ଗାର ।
ସମର ନ କରିବା ତ କି ବୁଦ୍ଧି କରିବା
କ୍ଷତ୍ରୀ ବୃତ୍ତେ ଲୁଚିକରି ଫେରି ତ ନ ଯିବା ।
ମଧୁବନ ତୋଟା ମାତ୍ର କରିଅଛି ନାଶ
ଦଇତ ବଳ ଅନେକ ହେଲାଣି ବିନାଶ ।
ସେମାନଙ୍କୁ ମାରିଲି ଏହାକୁ ଡରିଲେ
ଉପହାସ ମିଳିବ ପଳାଇଣ ଗଲେ ।
ଯେମନ୍ତ ଅଟଇ ମୁଁ ସ୍ୱାମୀ ପାଦ ଦାସ
ସେହି ପରକାରେ କରିବି ପଉରସ ।
ତେବେ ସେ ପ୍ରଭୁଙ୍କ ମନ ସନ୍ତୋଷ ହୋଇବ
ତେବେ ସିନା କଲା ପରାଏ ଦିଶିବ ।
ଦଇତ ବଳ ଅନେକ ହୋଇଲେ ବିନାଶ
ଲଙ୍କାଗଡ଼ଯାକ ମୁଁ କରିବଇଁ ଧ୍ୱଂସ ।
ତେବେ ସେ ପ୍ରଭୁ ମହିଁମା ଦିଶିବ ସୁନ୍ଦର
କାର୍ଯ୍ୟ ଦକ୍ଷ ବୋଲି ମୋତେ କହିବେ ସଂସାର ।
ବ୍ରହ୍ମାଦି ଦେବତାମାନେ ହୋଇବେ ସନ୍ତୋଷ
ତିନିପୁରେ ପୂର୍ଣ୍ଣ ହେବ ଧନ୍ୟ ଧନ୍ୟ ଘୋଷ ।
ସାତ ସେନାପତି ଥିବେ ବଡ଼ ଦୁଃଖୀ ହୋଇ
ଏକଥା ଶୁଣିଲେ ଦୁଃଖ ଯିବ ଯେ ପଳାଇ ।
ଜାନକୀ ମହାଦୁଃଖୀ ହୋଇଣ ଅଛନ୍ତି
କଥା ଦେଖିଲେ ସୁଖୀ ହୋଇବ ସେ ସ୍ୱତୀ ।
ଅସୁରୀମାନେ ଛାର ଡରାନ୍ତି ସୀତାଙ୍କୁ ତ
ମୋ ଚରିତ ଦେଖି ଭୟେ ହେବେ ସେ ନିବର୍ତ୍ତ ।
ସୁଗ୍ରୀବ ରାଜାକୁ ହେବ କେଡ଼େ ପଉରସ
ଅନେକ ସୁଖ ତାଙ୍କୁ କରିବେ ରଘୁ ଶିଷ୍ୟ ।
କପିକୂଳରେ ଅନେକ ପାଇବେ ସାହସ
ଦୈତ୍ୟକୂଳ ପାଇବେ ମନରେ ବଡ଼ ତ୍ରାସ ।

ବିଚାରିବେ ହନୁମାନ କରିଲା ଏମନ୍ତ
ଏହା ମନେ ବିଚାରି ଦେଖି ହେବ ତ୍ରସ୍ତ ।
ବାଲ୍ୟକାଳେ ସୂର୍ଯ୍ୟଙ୍କୁ କରିଛି ବନ୍ଧନ
କଲା କର୍ମମାନ କେବେ ନୁହଇ ତ ଆନ ।
ପିତାଙ୍କର ଶାପ ପୂର୍ବରୁ ଅଛଇଁ ତ
ଏହାର ହସ୍ତେ ବନ୍ଧନ ଦଇବ ଲେଖିଛି ତ ।
ପଳାଇବା କଥା ହେବ ଅସୁନ୍ଦର
କ୍ଷତ୍ରୀୟ ଧର୍ମ ନୁହେ ଏମନ୍ତ ବେଭାର ।
ପ୍ରଭୁଙ୍କର ମହିଁମାକୁ ତ ନୋହିବ ଖଣ୍ଡନ
ଦଶ ବଦନକୁ ଯେହ୍ନେ ନୋହିବ ଦଣ୍ଡନ ।
ବନ୍ଧନ ହୋଇବା ପରାଭବକୁ ପାଇବ
ନାନା ଉପାୟ କରି ଏ ଲଙ୍କାକୁ ଦହିବ ।
ତେବେ ସିନା ଦଶଗ୍ରୀବ ଡରିବ ମନର
ମୋର ଗର୍ବ ଚୂନା କଲା ଏକା କପିବୀର ।
ଶ୍ରୀରାମର ଏହିପରି କେତେ କପି ଛନ୍ତି
ଏମନ୍ତ ଭାଳି ଶଙ୍କା ପାଇବ ଲଙ୍କପତି ।
କପିମାନଙ୍କୁ ଦଇତେ କରିବେ ମହାଭୟେ
ମନେ ବିଚାରି ଶଙ୍କା କରିବ ଲଙ୍କା ରାୟେ ।
ଏହି କଥା ଯେବେ ନିଶ୍ଚୟ ହୋଇବ
ଏକଥାମାନ ଯେ ଉତ୍ତମ ବିକିଣିବ ।
ରାମଚନ୍ଦ୍ର ପ୍ରଭୁଙ୍କର ମହିଁମା ବିକଶିବ
ଜାନକୀ ମୁଖ ଚନ୍ଦ୍ରମା ପରାୟ ଦିଶିବ ।
ପହରେ ଯେବେ ଏହୁ ଦୁଃଖକୁ ନ ସହିବି
ତେବେ ଏଡ଼େ ବଡ଼ ଯଶ କେମନ୍ତେ ପାଇବି ।
ବାନ୍ଧି ସିନା ନେବ ନ ପାରିବ ପ୍ରାଣ ହରି
ପ୍ରଭୁ ମହିମାରେ ନିଶ୍ଚୟ ଯିବି ତରି ।
ଦଶାନନ ଆଗରେ କହିବି ମର୍ମ କଥା
ଯେମନ୍ତେ ମହା କୋପ କରିବ ଦଶମଥା ।
ଯେବେ ମାରିବାକୁ ମୋତେ ଉପାୟ କରିବ
ଯାହା କହିବି ତାହା ସମ୍ପ୍ରତେ କରିବ ।
ଯହୁଁ ଦେଖିବ ମୋର ଚରିତ ବିପରୀତ
ଯେତେ ଛନ୍ଦ କହିଲେ କରିବ ସବୁ ସତ ।
ଦେବତାଏ ସମସ୍ତେ କହିବେ ଆମ୍ଭ କଥା
ମନରୁ ଛାଡ଼ିବେ ସେ ଚିରକାଳ ବ୍ୟଥା ।
ଏତେ ମନେ ବିଚାରି ସେ ମଧୁବନେ ପଶି
ପଳାଶ ବୃକ୍ଷ ଉପରେ ବୀରବର ବସି ।
ଅତି ହିଁ ସାନ ଯେ ଶରୀର ତାର କଲା
ପତ୍ର ଗୋଟିକର ଉହାଡ଼େ ଲୁଚି ରହିଲା ।
ଏଥୁ ଅନନ୍ତରେ ମେଘନାଦ ବୀର
ପ୍ରବେଶ ହେଲା ଯାଇ ମଧୁବନ ଦ୍ୱାର ।
ସଇନ ପଛରେ ପଶିଲେ ଧସାଇ
କେ କହେ ବାନରରେ ପଶିଅଛୁ କାହିଁ ।
କେ କହେ ନ ଦିଶଇ ଗଲା କେଉଁ କତି
କେ କହେ ପଳାଇଲା ପ୍ରାଣକୁ କରି ଭୀତି ।
କେ କହେ ଏହିକ୍ଷଣି ଏହି ବନେ ଥିଲା
କେ କହେ ସୈନ୍ୟଙ୍କୁ ଦେଖିଣ ପଳାଇଲା ।
କେ କହେ ଦ୍ରୋଣୀ ଖମ୍ବ ଉପରେ ତାର ଠଣା
କେ କହେ କେଉଁଆଡ଼େ ହୋଇଅଛି ବଣା ।
କେ କହେ ଦେଖ ଦେଖ ଲୁଚିଥିବ କାହିଁ
କେ କହେ ଅନାଅ ହେ କାହିଁ ଦିଶୁ ନାହିଁ ।
କେ କହଇ ଗଛେ ଗଛେ ନିରେଖିଣ ଦେଖ
କେ କହେ ଗହଳ ଶାଖାମାନଙ୍କୁ ନିରେଖ ।
କେ କହଇ କାହିଁ ଗଲାଣି ପଳାଇ
କେ କହଇ ପଳାଇ ଥିବ ସେ କିମ୍ପାଇଁ ।
କେ କହଇ ପଳାଇଲା ଲୋକକୁ କି ପାଇବ
କେ କହେ ପଳାଇଲେ ଯେ କେଉଁ କତିଯିବ ।
ଚାରିକତି ସାଗର ସେ ଯିବଟି କେମନ୍ତେ
କେ କହଇ ସାଗର ଲଙ୍ଘି ଅଇଲା ଯେମନ୍ତେ ।
କେ କହେ ପଳାଇଲେ କେ ତାକୁ ପାଏ ପୁଣି
କେ କହଇ ଲୁଚି ଶୁଣୁଥିବ ସେ ସବୁ ବାଣୀ ।
କେ କହଇ ଶୁଣୁ ପଛେ କେମନ୍ତେ ପାଇବା
ତେବେ ସିନା ତାକୁ ବଡ଼ କରିଣ ଲେଖିବା ।
କେ କହେ ଦେଖିଲେ ତାକୁ ନ କରିବା ନାଶ
ଜିଅନ୍ତା ଆଣ କହିଛନ୍ତି ଲଙ୍କାଈଶ ।
କେ କହଇ ଡାଳେ ଡାଳେ ପତ୍ରେ ପତ୍ରେ ଖୋଜ
କେ କହେ ଧାଇଁ ନ ପଡ଼ ମନେ ମନେ ହେଜ ।
କେ କହେ ମାୟା ବାନର ଗୁପତରେ ଥାଇ
କେ କହେ ପକ୍ଷୀ ପରି ଗଗନେ ଉଡ଼ଇ ।
କେ କହେ ପର୍ବତ ସମ କରଇ ଶରୀର
କେ କହଇ ଭଇରବ ରୂପ ଧରେ ବୀର ।
କେ କହଇ ତାକୁ ସାମାନ୍ୟ ନ ବିଚାର
କେ କହେ ଅତିମାୟାବୀ ପାପିଷ୍ଠ ବାନର ।
କେ କହଇ ମେଳ ହୋଇ ଲୋଡ଼ିବା ଚଉକତି
କେ କହଇ ଚାଣ୍ଡାଳ ମୂଢ଼ ଅଟେ ପଶୁ ଜାତି ।
କେ କହଇ ଧରି ନୁହେଁ ମାଇଲେ ନ ମରଇ
କେ କହେ ମାଇଲେ ଉପ୍ରୋଧ ନ କରଇ ।
ଏମନ୍ତ ସମୟରେ ମେଘନାଦ ବୀର
ତୋଟାଦ୍ୱାରେ ନେଇ ସେ କଲା ରହୁବର ।
ଆଜ୍ଞା ଦେଲା ବାନର ରହିଅଛି କାହିଁ
ଧରି ତାକୁ ଘେନି ଆସ ଲୁଚିଥିବ ରହି ।

ଶୁଣିଣ ଦୈତ୍ୟଦଳ ପଶିଲେ ମଧୁବନ
ଖୋଜନ୍ତି ମନେ ମନେ ସେ ପବନ ନନ୍ଦନ ।
ଗଛମାନଙ୍କରେ ଉଠି ଚାହାଁଲେ ତାଳେ ଖୋଜି
ମେଘନାଦ ଆଗରେ କହନ୍ତି ସେ ହେଜି ।
ଶୁଣ ଦେବ ଅସୁର କୁଳ ଶିରୋମଣି
ଅମର ପୁରେ ପଶି ନାଶିଲୁ ବହୁ ପ୍ରାଣୀ ।
ତୁମ୍ଭର ଧାଡ଼ିକି କାହିଁ ଭାଳିନ ବାନର
ଭୟ କରି ପଳାଇ ଗଲାଣି ସେ ଖର ।
ଗଛେ ଗଛେ ପତ୍ରେ ନ ପାଇଲୁଁ ଲୋଡ଼ି
ମଧୁବନ ତୋଟା ବଉପାଣ ଲୋଡ଼ି ।
ଭୟ କରି ପଳାଇ ଗଲାଣି କେଉଁ କଡ଼େ
ଗୁରୁତର ଧ୍ୱଜନ ସେ ଦେଖି ଟଉକନ୍ତି ।
ଶୁଣିଣ ମେଘନାଦ ରଥରୁ ଓହ୍ଲରି
ଅକମ୍ପନ ଧୂମ୍ରାକ୍ଷ ଦୁହିଁଙ୍କ କର ଧରି ।
ତୋଟାର ଭିତରେ ପଶିଲା ସେ ଯାଇ
ସୈନ୍ୟଙ୍କୁ ଚାହିଁ ଆଜ୍ଞା ଦେଲି ଶବଦାଇ ।
ଯେହୁ ଆଣି ବାନରକୁ ଦେବ ମୋର ଆଗ
ଏ ଲଙ୍କା ଗଡ଼ରେ ତାକୁ ଦେବି ଦିବ୍ୟ ଭୋଗ ।
ଅନେକ ସମ୍ପଦ ଦେବି ମୁଁ ତାହାକୁ
ରାଜାର ଆଗରେ ପ୍ରସାଦ ଦେବି ତାକୁ ।
ଶୁଣି କରି ସଇନ ଲୋଡ଼ନ୍ତି ତାକୁ ବନ
ତରୁଲତା ଆଡ଼ ଉହାଡ଼ ଯେତେ ସ୍ଥାନ ।
ଏହି ପରକାରେ ସେ ଲୋଡ଼ନ୍ତି ସ୍ଥାନମାନ
କାହିଁ ସେ ନ ଦେଖିଲେ ପବନ ନନ୍ଦନ ।
ଅଶୋକ ଆରୋହି ସେ ଆପଣେ ଇନ୍ଦ୍ରଜିତ
ହସ୍ତରେ ଧରିଅଛି ସେ ନବନିଶ କୁନ୍ତ ।
କରକସି କରେ ଧରିଛି କମାଣ
ଲଙ୍କା ଅସୁର ସଙ୍ଗେ କରନ୍ତି ଭ୍ରମଣ ।
ତୋଟାକୁ ଅନାଇ ସେ ହୁଅଇ ବିକଳ
ଦେଖିଲା ବୃକ୍ଷମାନେ ପଡ଼ିଛନ୍ତି ତଳ ।
ଦେଖିଣ ମହାବୀର ମନେ କୋପ କରି
କହିଲା କାହିଁ ଅଛି ଆଣ ତାକୁ ଧରି ।
କେବଣ ସ୍ଥାନରେ ସେ ରହୁଛି ଲୁଚିଣ
ବନରେ ଭ୍ରମଇଁ ସେ ଏମନ୍ତ କହିଣ ।
ତୋଟାର ଭିତରୁ ସେ ହୋଇଲା ବାହାର
ମହା କୋପଭରେ ତନୁ କମ୍ପଇ ତାହାର ।
ରକ୍ତେ କର୍ଦ୍ଦମ ମଡ଼ା ପଡ଼ିଛି ଅପ୍ରମିତ
ଅକ୍ଷୟ କୁମରକୁ ଦେଖିଲା ଇନ୍ଦ୍ରଜିତ ।
ମୁଣ୍ଡକୁ ଚିହ୍ନିଣ ଅନେକ ଶୋକ କଲା
ଆରେକ ପାଖରେ ଜମ୍ବୁମାଳିକି ଦେଖିଲା ।

ଦାସକଣ୍ଠ ବିରୂପାକ୍ଷ ଆଦି ପାଞ୍ଚବୀର
ଯୁଦ୍ଧେ ପଡ଼ି ଅଛନ୍ତି ଦିଶନ୍ତି ନାଳଖାର ।
ବନ୍ଧୁଜନମାନଙ୍କୁ ମେଘନାଦ କହି
ଶ୍ମଶାନେ ଏମାନଙ୍କୁ ଦହନ କର ନେଇ ।
ଏତେ ଏଡ଼େ ବୀରମାନେ ଜିଣି ନ ପାରିଲେ
ଛାର ବିଲକ୍ଷଣ ବାନର ହସ୍ତେ ମଲେ ।
କେମନ୍ତେ ରୂପ ତାର ତାହାକୁ ଦେଖିବି
ତେବେ ସିନା ମନରୁ ଶୋଚନା ଛାଡ଼ିବି ।
ଏମନ୍ତ କହି ବନ ମଧ୍ୟରେ [illegible]
ଅସାଧ୍ୟ ସ୍ଥାନମାନ ଖୋଜିଣ ଆସଇ ।
ଯେବଣ ତରୁ ଧରେ [illegible] ଉପୁଡ଼ି
ତାର ତଳେ ହେଲା ସେନା ନିଗ୍ରହର ଗତି ।
ସୈନ୍ୟଙ୍କୁ ଆଜ୍ଞା ଦେଲା ପତ୍ରେ ପତ୍ରେ ଲୋଡ଼
ବୃକ୍ଷଲତା ଯେତେ ଅଛି ସମସ୍ତ ଉପାଡ଼ ।
କାହିଁରେ ଥିବ ତାକୁ ନେଇ ମୋତେ ଆଣି
ଭାଇର କଷ୍ଟ ହରିବି ବାନ୍ଧିକେ ମୁଁ ଜାଣି ।
ସମସ୍ତେ କହନ୍ତି ଦେବ କପି ଏଥେ ନାହିଁ
ନ ଥିବାର ଲୋକକୁ ଲୋଡ଼ିବା କିମାଇଁ ।
ଶୁଣିଣ ମେଘନାଦ ଯୋଦ୍ଧାକୁ ଆଜ୍ଞା ଦେଲା
ହସ୍ତୀଙ୍କୁ ଲଗାଇ ବୃକ୍ଷ ଉପାଡ଼ ବୋଇଲା ।
ତହୁଁ ସେ ମାହୁନ୍ତ ହସ୍ତୀକି ଲଗାଇ
ଅଙ୍କୁଶ ଲଗାଇ ଦିଅନ୍ତି ଲଖିଆଇ ।
ଟିପିତାଳି ହସ୍ତୀଙ୍କି ବୋଲନ୍ତି ଧର ଧର
ଲୌହ ଠେକି ସିଂହେ ଗର୍ଜନ କଲେ ଘୋର ।
ରୋଷରେ ହସ୍ତିମାନେ ତରୁବର ଠେକି
ଥୋର ହସ୍ତରେ ଠେକି ବୃକ୍ଷ ଦେଲେ ଡାଳି ।
ମହା ମହା ବୃକ୍ଷମାନେ ଉପୁଡ଼ି ପଡ଼ିଲେ
କାହାକୁ ଆଉଜାଇ ପକାନ୍ତି ମହିତଳେ ।
କେବଣ ତରୁକୁ କଲେ ଖଣ୍ଡ ଖଣ୍ଡ
କେବଣ ତରୁକୁ ଦଳି କଲେ ମଶିଗୁଣ୍ଡ ।
ହନୁମନ୍ତ ଉବୁରା ଯେତେକ ବୃକ୍ଷ ଥିଲା
ସବୁ ତା ମେଘନାଦ ଭଙ୍ଗାଇଣ ଦେଲା ।
ତୋଟାକୁ ଆବୋରି କରି ରହିଛନ୍ତି ଆଟ
ସୁଚୀ ଗଳିବାକୁ ତହିଁରେ ନାହିଁ ବାଟ ।
ଭାଙ୍ଗିଲାର ବୃକ୍ଷମାନ ଆଡ଼ କରି ଥୋଇ
ସମସ୍ତେ ବୋଲନ୍ତି ମାରୁତି କୋପ ହୋଇ ।
ଦେଖି କରି ନ ପାଇଲେ ତୋଟା ଚଉକଡ଼ି
ମେଘନାଦର ଛାମୁରେ ଯାଇଣ ଜଣାନ୍ତି ।
ନାହିଁ ଦେବ କପି କେବଣ କତି ଗଲା
ବୃକ୍ଷ ପଡ଼ନ୍ତେ ଅବା ପ୍ରାଣ ତାର ଗଲା ।

ମରି ପଡ଼ିଥିଲେ ତ ମିଳନ୍ତା ଏଥି ଶବ
କେ କହଇ କପିର ତ ନ ମିଳିଲା ଠାବ ।
ଅଳପ ସୈନ୍ୟ ଦେଖି ସମର କରୁଥିଲା
ଦିଗଦହନ ଚିରାଳ ଦେଖି ପଳାଇଲା ।
ନାହିଁ କପି ଏଥି ଦେବ ବାହୁଡ଼ିଣ ଯିବା
ନୃପତିଙ୍କ ଛାମୁରେ ବାରତା ଜଣାଇବା ।
ଶୁଣି କରି ଇନ୍ଦ୍ରଜିତ ସ୍ତବଧ ହୋଇଲା
କେଣେ ଗଲା ବାନର ମନରେ ଭାଳିଲା ।
କି ବୋଲି ଜଣାଇବି ପିତାଙ୍କର ଆଗେ
ନଗ୍ରବାସୀମାନେ ମୋ କି ବୋଲି ବୋଲିବେ ।
ବୋଲିବେ ଭୟ କରି ଫେରିଣ ଆସିଲେ
ସମର୍ଥ ନୁହନ୍ତି ବାନର ଧରିବାରେ ।
ଅନେକ ଅପଯଶ ଏଥିରେ ମୋତେ ହେବ
ରାଜା ମୋହଠାରେ କୋପ ହିଁ କରିବ ।
ଏମନ୍ତ କଥା ଯାହୁଁ କହିଛି ଇନ୍ଦ୍ରଜିତ
ଶୁଣିର ସୈନ୍ୟମାନେ ହୋଇଲେ ଡରହ ।
ଏମନ୍ତ ଶୁଣି କରି ହସେ ହନୁମାନ
ଆପଣେ ବିଚାର କରଇ ମନେ ମନ ।
ଏତେକ ଉପଦ୍ରବ କଲି ଆସି ଏଥ
ମୋତେ ଖୋଜିବାକୁ ନୋହିଲେ ସମର୍ଥ ।
ଏବେ ଯେବେ ମୁହିଁ ତୁନି ହୋଇଯିବି
ଅଣୋଚିତ କଥା ହେବ ନିନ୍ଦାକୁ ପାଇବି ।
ଏମନ୍ତ ମନରେ ବିଚାର କରି ବୀରବର
ଲୁଚିଣ ବସିଥିଲା ପଲାଶ ଉପର ।
ଆରେ ଆରେ ବୋଲିଣ ଶବଦେକ କଲା
ପକ୍ଷୀ ପ୍ରାୟ ହୋଇ ଗଗନେ ଉଡ଼ିଲା ।
ଯାଇ ଫଳବୃକ୍ଷ ଉପରେ ସେ ବସି
ଶୁଣି କରି ଅସୁରେ ଚମକିଲେ ତ୍ରାସି ।
ମାରୁତି ରଡ଼ି ଶୁଣି ମେଘନାଦ ଚକିତ
ପଚାରଇ ଏକଥା ଅଟଇ କେମନ୍ତ ।
ଅସୁରେ ବୋଇଲେ ଦେବ ବାନରଟି ସେହି
**ଅକ୍ଷୟ** କୁମାରକୁ ମାଇଲାଟି ଏହି ।
ବଡ଼ ମାୟାବୀ ଅଟଇ ସେହି ଯେ ବାନର
କେଉଁ ବୃକ୍ଷେଥିଲା ନ ପାଇଲେ ତା ଖବର ।
ପଲାଶ ବୃକ୍ଷ ଉପରୁ ଏବେ ସେ ଉଡ଼ିଗଲା
ଆରେ ଆରେ ବୋଲିଣ ଶବଦ ଉଛେ କଲା ।
ଭଲା ଉପରକୁ ନ ପଡ଼ିଲା ତେଇଁ
ଧର୍ମ ଯେ ରକ୍ଷାକଲା ଗଲା ସେ ରଡ଼ି ଦେଇ ।
ଏବେ ଯାଇ ଫଳ ବୃକ୍ଷ ଉପରେ ବସିଲା
ଶୁଣିଣ ଇନ୍ଦ୍ରଜିତ ଅଶ୍ୱକୁ ଧୂଆଁଇଲା ।

ଖପ ନାରାଚେକ ବୀର ଧନୁରେ ଯୋଚି କରି
ପ୍ରଚଣ୍ଡ ଆଦିତ୍ୟ ଜିଣିଗଲା ସେ ଗତି କରି ।
ଚଳିଗଲା ନାରାଚ ଘୋର ରାବ କରି
ଦେଖିଣ ମାରୁତି ମନରେ ବିଚାରି ।
ଏ ଅସୁରକୁ କ୍ରୋଧେ ପେଷିଛି ରାବଣ
କରିବ ବଡ଼ ଯୁଦ୍ଧ ମୋର ସଙ୍ଗେ ଜାଣ
ଏମନ୍ତ ସମୟରେ ନାରାଚ ଚଳିଗଲା
ଜାଇଫଳ ବୃକ୍ଷର ଡାଳକୁ କାଟିଲା ।
ଲଣ୍ଠା ବୃକ୍ଷ ଉପରେ ବସିଛି ମାରୁତି
ପ୍ରଚଣ୍ଡ ଆଦିତ୍ୟ ପ୍ରାୟ ଦିଶଇ ତାର ଜ୍ୟୋତି ।
ଦୁଇ ଆଡ଼କୁ ଦୁଇ ଗୋଡ଼କୁ ଲମ୍ବାଇ
ଜାଇଫଳ ଫଳକୁ ଧରିଣ ଭୁଞ୍ଜଇ ।
ବେନି ଖଣ୍ଡ କରିଣ ଧରିଣ ନଖର
ଅଧେଖ ଖାଇ ଅଧେକ ପକାଏ ତଳର ।
ବୁକୁକୁ ଆଉଁସିଣ ଖାସଇ ଖୁଉଁ ଖୁଉଁ
ନାରାଚ ଗରଜନ ଶୁଣଇ ବେଗେ ତହୁଁ ।
ଦେଖିଣ ବାହା ମରଦୀ ନିଶରେ ହସ୍ତ ଦେଇ
ଆଖି ମିଟିକା ମାରି ଇନ୍ଦ୍ରଜିତକୁ କହଇ ।
ହସିଣ ମାରୁତି ବୋଲେ ନାମ ତୋର କିସ
କେବଣ ଅସୁରର ଅଟୁ ତୁହି ଶିଷ୍ୟ ।
ଅଜ୍ଞାନ ଦୈତ୍ୟ ତୁମ୍ଭେରେ କିଛି ହିଁ ନ ଜାଣ
ଆଖି ଥାଉ ଥାଉରେ ହେଉ ଅନ୍ଧ କାଣ ।
ଯେତେକ ଅସୁର ଲଙ୍କାରେ ରହି ଅଛ
ସମସ୍ତଙ୍କର ପାଞ୍ଜି ପୋଛିବ ସୂର୍ଯ୍ୟ ବଂଶ ।
ଯେତେକାଳ ତୁମ୍ଭର ଯଶଶିରୀ ଥିଲା
ମୁଁ ଆସିଲା ଦିନରୁ ତୁମ୍ଭର ସବୁ ଗଲା ।
ତୁ ହୀନ ଅଲକ୍ଷଣ ଅଇଲୁ ନ ଜାଣି
କର୍ମର ଦୁର୍ବଳରେ ମିଳିଲୁ ଏଥେ ପୁଣି ।
ଶ୍ରୀ ରାମନାରୀଙ୍କି କିମ୍ପା ଆଣିଲ ଚୋରାଇ
ଜ୍ଞାନ ଗୋଚର ବୁଦ୍ଧି ତୁମ୍ଭର କିଛି ନାହିଁ ।
ରାଜା ହୋଇ ତୁମ୍ଭେଦେ ଚୋର ଅପର ନାରୀ
ବିଶେଷ ଚୋର ତୁମ୍ଭେରେ ହୀନ ସଙ୍ଗେ ସରି ।
ଚୋର ହେଲେ କେବେରେ ନୁହଇ ସେରନ୍ତା
ମାଗି ଖାଇବା ଲୋକହୁଁ ଏକି ବଳବନ୍ତା ।
ସେ କଥା କିପରିରେ ମନରୁ ପାସୋର
ଚୋର ହୋଇ ସେରନ୍ତା ପଣକୁ ଏବେ କର ।
ମନେ ମନେ ତୁମ୍ଭେରେ ବଡ଼ ବୋଲାଉଛ
ଅଧର୍ମ କଥାକୁରେ ବଡ଼ ବିଚାରୁଛ ।
ଅଧର୍ମେ ନାଶ ଯାଇ ଧର୍ମେ ଉଦେ ହୋଇ
ପାପ କଲା ଲୋକକୁ ଅଧର୍ମ ନାଶଇ ।

ତୁମ୍ଭେ ଆଗେ ଅଧର୍ମ କଲାରେ ଦଇତ
ଏବେ ବିନାଶ ହୋଇବ ଶ୍ରୀରାମଙ୍କ ହସ୍ତ ।
ନ ଜାଣିଲ ଶ୍ରୀରାମ ଅଟନ୍ତି ଚକ୍ରଧର
ଅସୁରଙ୍କୁ ମାରିବାକୁ ଜନମ ଧରଣୀର ।
ପିତାର ସତ୍ୟପାଳି ସେ ବନବାସ କଲେ
ଭାଇ ଭାରିଯା ଘେନି କାନନେ ବଞ୍ଚିଲେ ।
ଜଗତର ଜନନୀ ରାମଙ୍କ ଘରଣୀ
ତୁମ୍ଭେ ତାହାଙ୍କୁ ଚୋରାଇ ଆଣିଛରେ ଜାଣି ।
ଖୋଜି ଅଇଲା ଦୂତ ସଙ୍ଗରେ କର କଳି
ତୁମ୍ଭରତ ଏ କଥା ନୁହଁଇ ଭଲ ଭଳି ।
ଶୁଣିଣ ମେଘନାଦ କହଇ ବଚନ
କିମ୍ପାଇଁ ପ୍ରବେଶ ହେଲୁରେ ଏ ସ୍ଥାନ ।
ଯେବଣ ଲଙ୍କାଗଡ଼କୁ ଦେବେ ଭୟ କରି
ତୁ ଏ ପୁରେ କେମନ୍ତେ କରୁଛୁ ହୁରିଳୁରି ।
ଖୋଜିବାକୁ ତେବେରେ ଅଇଲୁ ମର୍କଟ,
ମଧୁବନ ତୋଟା ଭାଙ୍ଗି କଲୁ ନଷ୍ଟ ।
ଜଗିଲା ଲୋକଙ୍କୁ ବଳେ ନାଶ କଲୁ
ସୈନ୍ୟବଳ ଆମ୍ଭର କିମ୍ପାଇ ନାଶିଲୁ ।
ସୀତାକୁ ଠାବ କରି ଯାଇଥାନ୍ତୁ ରାମପାଶ
ତୋଠାରୁ ଶୁଣି ରାମ ଆସନ୍ତା ଏ ଦେଶ ।
ଆମ୍ଭର ସଙ୍ଗରେ କରନ୍ତା ସେ କଳି
ନୀତି ଶାସ୍ତ୍ର ନିୟମ ଅଟଇ ଏହିଭଳି ।
ଜିଣିଲେ ଘରଣୀକି ଏଥୁ ଘେନି ଯାନ୍ତା
ନୋହିଲେ ଆମ୍ଭ ହସ୍ତେ ତାର ମୃତ୍ୟୁ ହୋନ୍ତା ।
ଦୂତ ହୋଇ ତୋରରେ ଏଡ଼େକ ଗାରିମା
ଜାଣିନାହୁଁ କିରେ ଡରେ ଆମ୍ଭଙ୍କ ବ୍ରହ୍ମା ।
ଏହି ଅସୁରଙ୍କୁ ଦେବତା ସେବା କରେ
ବିଧାତାଙ୍କର କର୍ତ୍ତବ୍ୟ ନାହିଁ ଏହି ପୁରେ ।
ସଦାଶିବର ବଳ ତ ନ ପାଏ ଅସୁରଙ୍କୁ
ସୁର ରାଜା ବପୁରେ ତ ନ ଲଙ୍ଘେ ଆମ୍ଭଙ୍କୁ ।
ଦଶରଥ ପୁଅରେ ଅଟେ ରାମଯତି
କି କରି ପାରିବ ସେ କେତେକ ଶକତି ।
ଆମ୍ଭେ ଅସୁର ନରବାନର ମାଂସ ଖାଉ
ରାମ କିସ କରିବ କହୁଛୁ ତାର ଦାଉ ।
ମୁହିଁ ତ ଇନ୍ଦ୍ରଜିତ ରାବଣ କୁମର
ଆଜ ମୁହିଁ ତୋତେରେ ପେଶିବି ଯମପୁର ।
ଏ ବଚନ ଶୁଣିଣ ଶ୍ରୀରାମର ଦୂତ
କ୍ରୋଧଭର ହୋଇଣ ସେ ଉଠିଲା ତ୍ୱରିତ ।
ରାବଣର କୁମର ଉପରେ ପଡ଼େ ଯାଇ
ମାଡ଼ିବସି ମୁକୁଟ କୁଣ୍ଡଳ ଛିଣ୍ଡାଇ ।

ଇନ୍ଦ୍ରଜିତକୁ ଉତ୍ତାନ କରି ପକାଇଲା
ସେଠାରୁ ହନୁମନ୍ତ ଉଘେଇ ଡେଇଁଗଲା ।
ବେନିଗଜ ବେନି ଅଶ୍ୱ ଧରି ସେ କରେ
ରାଉତଙ୍କ ଉପରେ ପିଟିଲା କ୍ରୋଧରେ ।
ଅନେକ ମାତଙ୍ଗ ବଳ କ୍ଷଣକେ ନାଶ କଲା
ନାଗବଳ ଧରି ହନୁ ଅଶ୍ୱଙ୍କୁ ମାରିଲା ।
ଅଶ୍ୱଙ୍କର ଉପରେ ଅଶ୍ୱଙ୍କୁ ନେଇ ପିଟି
କ୍ଷଣକରେ ଅସୁର ବଳ ଭୂମିରେ ଲୋଟି ।
ସେଠାରୁ ହନୁମନ୍ତ ପଦାତି ବଳ ମାରି
ଲାଞ୍ଜରେ ବାନ୍ଧିଣ କଚାଡ଼େ ବେଗ କରି ।
ରଣଭଣ କରିଣ ମାଇଲା ସୈନ୍ୟବଳ
କ୍ଷଣକେ ରୁଧିର ନଦୀ ବହିଲା ପ୍ରବଳ ।
କବନ୍ଧ ନାଚିଲେ ହୋଇ ଧାଡ଼ି ଧାଡ଼ି
ସ୍ରୋତରେ ମହାମାଡ଼େ ଭାସିଗଲେ ପଡ଼ି ।
ବାକି ଯେତେ ସୈନ୍ୟବଳ ବଳି ରହିଥିଲେ
ସମସ୍ତେ ପଳାଇଲେ ଗୋଟିଏ ନ ରହିଲେ ।
ରୁଧିର ନଦୀଟି ବହିଲା ଖରତର
ଅଶୋକବନ ବାଟେ ହୋଇଲା ବାହାର ।
ଅସୁରୁଣୀମାନେ ଦେଖି ତାଟକା ହୋଇଲେ
ତ୍ରିଜଟା ଦେଖିଣ ସୀତାଙ୍କୁ କହିଲେ ।
ଦେଖ ତୋ ସ୍ୱାମୀର ଦୂତ ଅଟଇ ବାନର
ଏକାରେ ଅନେକ ସେ କରଇ ସମର ।
ତିନିଦିନ ହେଲା ଯେ ରୁଧିର ନଦୀ ବହି
ସୈନ୍ୟବଳ ମାରଇ ନ ଡରଇ ସେହି ।
ଯେଉଁ ମେଘନାଦକୁ ଦେବତା ଡରନ୍ତି
ତା ସଙ୍ଗେ ଯୁଝଇ ଦେଖ ସେ ମାରୁତି ।
ଏମନ୍ତ କଥା ତ୍ରିଜଟା ସୀତାଙ୍କ ଆଗେ କହି
ଅନ୍ତର୍ଗତେ ଜାନକୀ ସନ୍ତୋଷ ମନ ହୋଇ ।
ବିଚାରିଲେ ଭଲ ଦୂତ ପେଶିଥିଲେ ରାମ
ରାବଣକୁ ମାରିବେ ସେ ଦିଶୁଛି ଆଗମ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ସୈନ୍ୟ ମାରିବାର ଦେଖି ବିଶ୍ରବାର ନାତି ।
ଉବୁରା ସୈନ୍ୟମାନେ ପଳାଇଣ ଗଲେ
ଆଡ଼ହୋଇ ଯାଇଣ ସେମାନେ ରହିଲେ ।
ଦେଖିଣ ଇନ୍ଦ୍ରଜିତ ହେଲା ମନେ କ୍ରୋଧ
ବିଚାରିଲା ଏ ବାନର ଜାଣେ ମାୟା ଛନ୍ଦ ।
ଇନ୍ଦ୍ରଜିତ ରହିବାରୁ ସୈନ୍ୟ ପାଳଟିଲେ
ମେଘନାଦ ପାଶରେ ପ୍ରବେଶ ହୋଇଲେ ।
ତହୁଁ ସେ ହନୁମନ୍ତ ରଣଭୂମିରୁ ଗଲା
ବୃକ୍ଷର ଉପରେ ଯାଇଣ ବସିଲା ।

ଇନ୍ଦ୍ରଜିତ ବୋଇଲା ଶୁଣରେ ବାନର
ମୁହିଁ ଥାଉ ଥାଉ ଏଡ଼େ ଗାରିମା ତୋହର ।
ଏତେ ବୋଲି ଇନ୍ଦ୍ରଜିତ କୁନ୍ତେକ ମାଇଲା
ଯାଇଣ ହନୁମନ୍ତ ଉପରେ ପଡ଼ିଲା ।
ଉପୁଡ଼ି ପଡ଼ିଲା ସେ ନବନିଶି କୁନ୍ତ
ଟହ ଟହ ହୋଇଣ ହସଇ ହନୁମନ୍ତ ।
ବୋଇଲା ଏଣିକିରେ ସେରନ୍ତା ଜିଣି ହୁଏ
ଚୋର ତସ୍କର ବଳ ବପୁ ଗଲା କ୍ଷୟେ ।
ଯେତେ ନାରାଚ ବିନ୍ଧିବୁ ମୋର କିସ ହୋଇ
ତୋହର ନାରାଚ କିରେ ମୋତେ ସେ ନାଶଇ ।
ଗୁରୁ ମୁଖରୁ ଯେତେ ଶସ୍ତ୍ର ତୋ ଅଛଇଁ
ସେ ଶରମାନ ମାରରେ ସାବଧାନ ହୋଇ ।
ଶୁଣିଣ ଇନ୍ଦ୍ରଜିତ ମନେ ପାଇ ଖଙ୍ଗ
ତକ୍ଷଣେ ସୁମରିଲା ସହସ୍ର ପନ୍ନଗ ।
ଧନୁ ଧରି ଶର ଯୋଚିଲା ଶୀଘ୍ର କରି
ଚଳିଲାକ ନାରାଚ ଘୋର ଗର୍ଜନ କରି ।
ଘୁଫୁକାର ଶବଦ କରିଣ ଚଳିଗଲା
ଦେଖିଣ ହନୁମନ୍ତ ବୃକ୍ଷରୁ ପଳାଇଲା ।
ଆକାଶ ମାର୍ଗେ ହନୁ ଉଡ଼ିଯାନ୍ତେ ପୁଣି
ନାଗପାଶ ଶର ଘୋଟିଲା ତତକ୍ଷଣି ।
ଭୁଜ ଦୁଇକି ପଛ କରିଣ ବାନ୍ଧିଦେଲା
ଗଳାଠାରୁ ପାଦଯାଏଁ ନିରୋଧି ବାନ୍ଧିଲା ।
ପ୍ରବଳ ନାଗପାଶ ଛନ୍ଦିଣ ବାନ୍ଧିଲା
ଆକାଶୁ ଖସି ହନୁ ଭୂମିରେ ପଡ଼ିଲା ।
ମାରୁତି ପଡ଼ନ୍ତେ କମ୍ପିଲା ଲଙ୍କାପୁର
ମନରେ ବିଚାରଇ ଅଞ୍ଜନା କୁମର ।
ଶ୍ରୀରାମଙ୍କ କାର୍ଯ୍ୟ ତ ନ ପାରିଲି କରି
ମାୟା ଯୁଦ୍ଧରେ ମୋତେ ଇନ୍ଦ୍ରଜିତ ଧରି ।
କ୍ଷୁଦ୍ରରୂପ ଧରିଣ ଗଲେ ମୁଁ ପଳାଇ
ଲଙ୍କାପୁର ତ ଦହନ ହୋଇପାରିବ ନାହିଁ ।
ଭୋ ପିତାମହ ମୁହିଁ କି ବୁଦ୍ଧି କରିବି
କି ରୂପେ ଶ୍ରୀରାମଙ୍କୁ ବାରତା କହିବି ।
ଏ ରୂପେ ମନରେ ଭାଳଇ କପିବୀର
ପବନ ଦେବତା ଆସି କହିଲେ ସତ୍ୱର ।
ବୋଇଲେ କୁମର ତୁ ହୁଅରେ ଧଇର୍ଯ୍ୟ
ନାଗ ପାଶକୁ ଚିନ୍ତା ନ କର ତନୁଜ ।
ପୂର୍ବରେ ରବିଙ୍କୁ ବାନ୍ଧିବା ଦୋଷେ ତୋର
ଏତେକାଳେ ଭୋଗ କଲୁ ଅହିଶର ।
ଆଜକ ଭିତରେ ତୋର ବନ୍ଧନ ଫିଟିବ
ଲଙ୍କାକୁ ପୋଡ଼ିଲେ ସିନା ତୋ ଯଶ ରହିବ ।
ଶ୍ରୀରାମଙ୍କ ଆଗରେ ବାରତା କହିବୁ
ଯୁଗେ ଯୁଗେ ତୁ ଯେ କଥା ରୁହାଇବୁ ।
ଶ୍ରୀରାମ ଅଇଲେ ମରିବେ ଅସୁର
ଦେବଙ୍କର କଷ୍ଟ ଦୂର କରିବେ ଚାପଧର ।
କିଛି ନ ବିଚାରି ମନରେ ଦମ୍ଭ ହୁଅ
ରାମନାମକୁ ମନରେ ସୁମରରେ ପୁଅ ।
ଏମନ୍ତ କହି ଚଳିଗଲେକ ପବନ
ଶୁଣିଣ ହନୁମନ୍ତ ହେଲା ଆନନ୍ଦ ମନ ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ମାରୁତି ଧରଣୀରେ ପଡ଼ିଛି ଲୋଟ ଗାଳି ।
ଦେଖିଣ ଇନ୍ଦ୍ରଜିତ ଦୈତ୍ୟଙ୍କୁ ଆଜ୍ଞା ଦେଲା
ବାନରକୁ ଧରରେ ବୋଲିଣ ବୋଇଲା ।
ମାୟା ବାନର ଏହୁ ତ ଅଟେ ବଳୀୟାର
ଶୁଣିଣ ଦୈତ୍ୟବଳ ବେଢ଼ିଲେ ଧାଡିକାର ।
ଅନେକ ଦଉଡ଼ିରେ ବାନ୍ଧିଲେ ଦୈତ୍ୟବଳ
କରଚରଣେ ତଡ଼ାରୀ ଲଗାଇ ଚଞ୍ଚଳ ।
ଦୈତ୍ୟଙ୍କର ଆନନ୍ଦ କହିଲେ ନ ସରେ
କେ ବୋଲଇ ବାନର ବୋରେହା ରାଜାରେ ।
କାହାର ତନୟ ଏ ଯେ କାହାର ସେବକ
କେବଣ ଦେଶର ଏ ଅଟେ କାହାର ଲୋକ ।
କେ ବୋଲଇ ମାଇଲେ ନମରେ ଏ ପୁଣି
କେ ବୋଲଇ ଏହାକୁ ନ ମାର ଏହିକ୍ଷଣି ।
ବାନରକୁ ଧରିନେଲେ ଅନେକ ଯଶ ଅଛି
ପ୍ରାଣେ ନମାରି ଧରି ନେବାକୁ କହିଛି ।
ରାଜା କହି ଅଛନ୍ତି ଧରି ନେବା ପାଇଁ
ନୋହିଲେ ପ୍ରାଣରେ ଯେ ମାରନ୍ତି ତାକୁ ମୁହିଁ ।
ଏତେ ବୋଲି ମେଘନାଦ ସିଂହରଡ଼ି ଦେଇ
ମାରୁତିକୁ ବାନ୍ଧିବାରୁ ବାହାଦୁରି ହୋଇ ।
କେ ବୋଲଇ ବାନରକୁ ଧର ଯତ୍ନ କରି
ଅପ୍ରମିତ ବଳ ଯେ ଅଟଇ ତାହାରି ।
ପଳାଇ ଗଲେ ସେତ ଧରିତ ନୁହଁଇ
ନିର୍ବନ୍ଧ କରିଣ ଧର ଏହାକୁ ହିଁ ।
ପୁଣି ବିଚାର କରନ୍ତି କପି କେଣେ ଯିବ
ନାଗପାଶ ବନ୍ଧନରୁ କେମନ୍ତେ ଫିଟିବ ।
ଇନ୍ଦ୍ର ଦେବତାଙ୍କୁ ସ୍ୱର୍ଗରୁ ଆଣିଲା ବାନ୍ଧି
ସକଳ ସୁରଗଣଙ୍କୁ ଏ ଶରରେ ଛନ୍ଦି ।
ଯହୁଁ ଗର୍ବ କଥା କହିଲା ବାନର
ତେଣୁ କପିକି ସିନା ବିନ୍ଧିଲା ଏ ଶର ।
ଏଥୁ ଅନନ୍ତରେ ମେଘନାଦ କହି
ଆଜ୍ଞା ଦେଇ ଅଛନ୍ତି ଲଙ୍କାପୁର ସାଇଁ ।

ଅଣ୍ଟାରେ ଦଉଡ଼ି ବାନ୍ଧି ନେଇ କରି
ଗଳାରେ ଦଉଡ଼ିଏ ବାନ୍ଧିଲେ ଯତ୍ନ କରି ।
ଷଡ଼ସହସ୍ର ଅସୁର ଦଉଡ଼ି ଧଇଲେ
ସହସ୍ରେ ଅସୁର ଆଗୁସାର ହେଲେ ।
ମଧୁବନ ତୋଟାରୁ ବାହାର କରିନେଲେ
ଶତେସହସ୍ର ଦଉଡ଼ି ଧରିଣ ଚାଲିଲେ ।
ମେଘନାଦ ଆଜ୍ଞାରେ ଧରି ଘେନିଯାନ୍ତି
ହୁଳହୁଳି କିଳିକିଳି ରାବ ସେ ଦିଅନ୍ତି ।
କେହୁ ନିଶମରଦେ କେ ମାରେ ଗାଲେ ତୁରୀ
କେହୁ ଚିରା ମାରିଣ ଧାମନ୍ତି ଆଗସରି ।
ଆପଣେ ଇନ୍ଦ୍ରଜିତତ ରହୁ ବରେ ବସି
ଆଗରେ ମାରୁତି ଯେ ପଛେ ସେହୁ ଆସି ।
ରଥ ଗଜ ସୈନ୍ୟବଳ ସଙ୍ଗରେ ଅଛନ୍ତି
ଉଦଣ୍ଡ ଉଲ୍ଲେଖ ଯେ ଚିରାଳ ପନ୍ତି ପନ୍ତି ।
ବିଲମ୍ବ ଆଲାମ୍ବ ଯେ ଟେକି ପାଟଛତି
ବିବିଧ ଛନ୍ଦେ ବୀର ବାଜା ସେ ବଜାନ୍ତି ।
ସୈନ୍ୟବଳ ଆନନ୍ଦ ଜୟ କରିବାରୁ
ହରଷ ମନରେ ପୁରବାସୀ ଦେଖିବାରୁ ।
ଶରଧା କରିଣ ଦେଖି ଆସନ୍ତି ପୁଣ
ଗଉରବ କଥା କହନ୍ତି କେ ଜାଣ ।
ଯୁବାସ୍ତିରୀମାନେ ଆସନ୍ତି ଖର କରି
ବୃଦ୍ଧାସ୍ତିରୀମାନେ ଦେଖନ୍ତି ଶ୍ରଦ୍ଧା କରି ।
ଦାଣ୍ଡ ହାଟରେ ଯେ ପୂରିଲେ ସ୍ତିରୀଗଣ
ଏକକୁ ଆରେକ ପଚାରନ୍ତି ପୁଣ ।
କେ ବୋଲନ୍ତି ଆସ ଗୋ ବାନର ଦେଖିଯିବା
ଅପୂର୍ବ କପି ଗୋଟି ଦିଶେ କେମନ୍ତ ଶୋଭା ।
ପାଞ୍ଚ ସାତଜଣ ହୋଇ ଏକମେଳ
ଆନନ୍ଦ ମନରେ ଧାମନ୍ତି ସକଳ ।
ଥାଟ ଭିତରେ ପଶି ଦେଖନ୍ତି ହନୁମନ୍ତ
ଧରିଛନ୍ତି ଦଉଡ଼ି ସହସ୍ରେ ବଳବନ୍ତ ।
ସାତଗୋଟି ଦଉଡ଼ି ଆବର ନାଗଫାଶ
ଧୀରେ ଧୀରେ ଚାଲିଯାଏ ପବନର ଶିଷ୍ୟ ।
ଅସୁରୁଣୀଙ୍କି ଦେଖିଣ ବୀର ହନୁମନ୍ତ
ମୁଖକୁ ତଳକୁ କରି ସୁମରେ ଦଇବତ ।
ଏମନ୍ତ ଆରମ୍ଭ ଯେ ଦେଖିଣ କୁଶହସ୍ତ
ପବନକୁ ହକାରି କହିଲେ ଗୁପତ ।
ତୋହର କୁମର ହନୁମନ୍ତ ବୀର
ନାଗଫାଶରେ ବାନ୍ଧି ଆଣିଛି ଅସୁର ।
ଶ୍ରୀରାମଙ୍କ କାର୍ଯ୍ୟ ତ ହେଉଛି ବିଳମ୍ବ
ତୁମ୍ଭମାନଙ୍କ ଦୁଃଖ ଅଳପ ଦିନେ ଯିବ ।
ତିନିପକ୍ଷରେ ଯେ ମରିବ ରାବଣ
ପ୍ରତ୍ୟକ୍ଷରେ ବିଜୟ କରିବେ ରାମରାଣ ।
ସୁବଳୟା ଗିରିରେ ଠଣା ସେ କରିବେ
ନଉସାଗର ବାନର ଭାଲୁ ଯେ ଆସିବେ ।
ଗିରିର ତିନିପାଶେ ରହିବେ ସକଳ
ଦକ୍ଷିଣ ପାରୁଶରେ ରହିବେ ଯୋଗ୍ମୀବଳ ।
ପର୍ବତମାନ ବହି ଆଣିବେ କପିଗଣ
ସମୁଦ୍ରରେ ବନ୍ଧ ବାନ୍ଧିବେ ରାମାରାଣ ।
ଦୁଇପକ୍ଷ ସତର ଦିନେ ରାବଣ ଯିବ ନାଶ
ସୀତାଙ୍କର ଚଉଦ ମାସ ଦୁଇଦିନ ଶେଷ ।
ଜାନକୀ କହିବା କଥା ସତ ଯେ ହୋଇବ
ଚାରି ରାବଣ ନିଶ୍ଚେ ନାଶିବେ ରାଘବ ।
ମରିବେ ଅନେକ ଅସୁର ଯେ ଗଣ
ପୃଥ୍ୱୀ ହେବ ଉଶ୍ୱାସ ଦେବଙ୍କୁ କାରଣ ।
କ୍ଷୀର ସାଗର ବାସୀ ଅଟନ୍ତି ନାରାୟଣ
ଦେବଙ୍କର ଛଳରେ ଜନମ ହେଲେ ଜାଣ ।
ଦୈତ୍ୟବଳ ମାରିଣ ଧରଣୀ ଉଶ୍ୱାସିବେ
ଲଙ୍କାଗଡ଼େ ରାଜା ବିଭୀଷଣଙ୍କୁ କରିବେ ।
ଜନକର ଦୁହିତା ନାମ ତାର ସୀତା
ଦୈତ୍ୟ ଘରେ ବନ୍ଦିଅଛି ମନେ କରି ଚିନ୍ତା ।
ରାମାୟଣ ଯୁଦ୍ଧକୁ କବାଟ ହନୁମନ୍ତ
ଦେବତାମାନଙ୍କର ଉପକାରୀ ସେ ତ ।
ତୁମ୍ଭେମାନେ କିମ୍ପାଇଁ ତୁନି ହୋଇଅଛ
ବନ୍ଧନରେ ପଡ଼ିଲାଟି ପବନର ବତ୍ସ ।
ମୋର ବୋଲକର ହନୁମନ୍ତ ପାଶେ ଯାଅ
ମାରୁତିର କର୍ଣ୍ଣରେ ବାରତାକୁ କହ ।
ଶୁଣିକରି ପବନ କହଇ ବଚନ
ବନ୍ଧନ ବେଳେ ପୁତ୍ରକୁ ଧୈର୍ଯ୍ୟ ଦେଲି ଜାଣ ।
କୁଶପାଣି ବୋଇଲେ ଆଉ ଥରେ ଯାଅ
ମୋହର କହିଲା ବୋଲି ମାରୁତିକି କହ ।
ଶୁଣିଣ ପବନ ବେଗେ ଚଳିଗଲା
ହନୁମନ୍ତ କର୍ଣ୍ଣରେ ବାରତା କହିଲା ।
ଶୁଣ ବାବୁ କୁମରରେ ମୋହର ବଚନ
ବାନ୍ଧି ଆଣିବାରୁ ତୁ କି ଭୟ କରୁ ମନ ।
ଆମ୍ଭେ ଦେବତାଏ ତୋହର ପକ୍ଷ ଅଛୁଁ
ତୋହର ହୃଦଗତରେ ତୁ ଯାହା ପାଞ୍ଚୁଛୁ ।
ନିଶଙ୍କ ହୋଇଣ ଦେବ କାର୍ଯ୍ୟ କର
ଚାରିଯୁଗେ ତୋର ନାମ ହେବ ସାର ।
ରାବଣକୁ ନ ଡର କି ନ ଡର ଦୈତ୍ୟବଳ
ତୋତେ ବଧିବାକୁ କି ସମର୍ଥ ଦୈତ୍ୟକୁଳ ।

ଆଜି ଦିବସ ଅଷ୍ଟମୀ ଯୋଗ ଅଟେ ବିଷ୍ଟି
ଦଶଘଡ଼ି ସମୟରେ ଯିବ ଏ ଅରିଷ୍ଟି ।
ପ୍ରହରେ ଆଉ କଷ୍ଟ ଅଛଇଁ ତୋତେ ଜାଣ
ବିଷ୍ଟିବେଳରେ ଲଙ୍କାକୁ ଅଇଲୁ ତୁ ଜାଣ ।
ତ୍ରିଦଶ ଦେବତାଏ ବେଦବର ମୋତେ
ପଠାଇଲେ ତୋତେ ଧୈର୍ଯ୍ୟ କରିବା ନିମନ୍ତେ ।
ପୁଣି ହିଁ ମରତ୍ ନାଗପାଶ କର୍ଣ୍ଣେ କହି
ତେତିଶ କୋଟି ଦେବତା ହନୁମନ୍ତ ଦେହି ।
ଉଶ୍ୱାସ ହୋଇଣ ରହ ନ କର କଟାଳ
କଟାଳ କଲେ ମୃତ୍ୟୁ ହେବ ବିନତା ବାଳ ।
ଶୁଣିଣ ନାଗପାଶ ଉଶ୍ୱାସ ହୋଇଲା
ମାରୁତିକି ବସ୍ତ୍ର ପିନ୍ଧିଲା ପରାୟ ଲାଗିଲା ।
ଏତେ କହି ପବନ ଅନ୍ତର୍ଦ୍ଧାନ ହେଲେ
ବିଧାତାଙ୍କ ଆଗରେ ଯାଇ ଜଣାଇଲେ ।
ଆଜ୍ଞା ପରମାଣେ ବହନ ଚଳିଗଲି
ହନୁମନ୍ତ କର୍ଣ୍ଣରେ ସକଳ କହିଲି ।
ହନୁମାନ ନିଶଙ୍କା ହୋଇଲା ଜାଣିଲି
ନାଗ ପାଶକୁ ଉଶ୍ୱାସ କରିଣ ଅଇଲି ।
ଶୁଣିଣ ବେଦବର ପରମ ତୋଷ ହେଲେ
ମାରୁତି ଚେଷ୍ଟା ଶୁଣି ଚିନ୍ତା ଉପେକ୍ଷିଲେ ।
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ
ସେଠାରୁ ଅସୁରେ କଲେ କେଉଁରୀତି ।
ଅସୁରୁଣୀ ବୋଇଲେରେ ପାପିଷ୍ଟ ମନ୍ଦକପି
କିମ୍ପା ଏଥି ପ୍ରବେଶ ହେଲୁ ମହାପାପି ।
କେ ବୋଲଇ ନିଲ୍ଲଜରେ ଲାଜ ନ ମାଡ଼ଇ
ମୋହର ଭାଇକିରେ ମାଇଲୁ କିସପାଇଁ ।
କେ ବୋଲଇ ମୋହର ମଉଳାଶୁର ମଲା
କେ ବୋଲଇ ମୋର ଶାଶୁ ବିଧବା ହୋଇଲା ।
କେ ବୋଲଇ ମୋହର ପୁତ୍ର ନାଶଗଲା
କେ ବୋଲଇ ମୋହର ଦାଦିକୁ ମାଇଲା ।
କେ ବୋଲଇ ଗୁରସ୍ତକୁ ନାଶକଲା
ପାଞ୍ଚଗୋଟା ପୁତ୍ରକୁ ଅନାଥ କରିଗଲା ।
କେ ବୋଲଇ ମୋହର ଖୁଡୁତାଶୁର ମଲା
ଖୁଡ଼ି ଶାଶୁ ମୋର ଲୋ ବିଧବା ହୋଇଲା ।
କେ ବୋଲଇ ମୋର ଶ୍ୱଶୁର ଗଲେ ନାଶ
ସୁବର୍ଣ୍ଣର ଘରଣୀଟି ଛାଡ଼ିଲେ ମୁହାଁଶ ।
କେ ବୋଲଇ ମୋହର ଏ ମାଇଲା ପିତାକୁ
କେ ବୋଲଇ ମୋହର ମାଇଲା ପୁତୁରାକୁ ।
କେ ବୋଲଇ ମୋହର ମାଇଲା ଦୁଇଶଳା
କେ ବୋଲଇ ମୋହର ମାଇଲା ମଉଳା ।
କେ ବୋଲଇ ମୋହର ମଲେ ଦେଢ଼ଶୂର
କେ ବୋଲଇ ମୋହର ମାଇଲା ଦିଅର ।
ଏମନ୍ତ କୁହାକୁହି ହୁଅନ୍ତି ଦଇତୁଣୀ
ତୋଟା ଦ୍ୱାରରେ ସର୍ବେ ପ୍ରବେଶ ହେଲେ ପୁଣି ।
ସେ ବନ ତୋଟାଳିଆ ଚଉଦ ସସ୍ରଘର
ପ୍ରତିଦ୍ୱାରେ ପରିବାର ଚଉଦ ସସ୍ରବଳ ।
କିଙ୍କରଗଣ ମଲେ ଚଉଦ ସସ୍ରଜାଣ
ଶାଶୁବୋହୂ କାନ୍ଦୁଛନ୍ତି ମରିବାରୁ ପୁଣ ।
ମାରୁତିକି ଦେଖିଣ କ୍ରୋଧରେ ଦ୍ୟନ୍ତି ଗାଳି
କେଉଁ ଦଇତୁଣୀ ଯେ କରନ୍ତି ବୋବାଳି ।
କେ ବୋଲଇ ମୋ ଘରକୁ କୁଣିଆଁ ଆସଥିଲେ
ଯୁଦ୍ଧ ଦେଖିବାକୁ ଯାଇ ତେଣେ ସେ ନାଶ ଗଲେ ।
କେ ବୋଲଇ ମୋର ଶଉତୁଣୀର ଭାଇ
କେ ବୋଲଇ ମୋହର ମଲା ତ ଜୁଆଇଁ ।
କେ ବୋଲଇ ଆହେ ଜମ୍ବୋମାଳି ମଲା
କେ ବୋଲଇ କିଙ୍କର ଗଣକୁ ନାଶ କଲା ।
କେ ବୋଲଇ ମଲେ ଯେ ପାଞ୍ଚ ସେନାପତି
ତାଙ୍କ ସଙ୍ଗରେ ମଲେ ଅନେକ ଘୋଡ଼ାହାତୀ ।
କେ ବୋଲଇ ଅନେକ ସୈନ୍ୟବଳ ମଲେ
କେ ବୋଲଇ ବାନର ମାରିଲା ଧରି ବଳେ ।
କେ ବୋଲଇ ରଥ ଏ ଭାଙ୍ଗିଲା କରତୋଳି
କେ ବୋଲଇ ବାନର ଅଟଇ ମହାବଳୀ ।
କେ ବୋଲେ ମଧୁବନେ ତିନିଦିନ ଯୁଦ୍ଧ ହେଲା
ରକତ ନଦୀ ଗୋଟା ସେଠାରେ ବହିଲା ।
କେ ବୋଲଇ ଏହାକୁ କିମ୍ପା ଛନ୍ତି ଥୋଇ
ଏହାକୁ ବେଗେ ମାରିବାର ତ ଯୋଗାଇ ।
କେ ବୋଲଇ ଜୀଇଣ କରିବ ଏ କିସ
ଏହାଯୋଗୁ ଖଳବଳ ହେଲା ଲଙ୍କାଦେଶ ।
କେ ବୋଲଇ ଏହୁ ଯେତେବେଳେ ଆସିଅଛି
କେ ଅବା ଆନ କି ପକାଇବ ପୋଛି ।
କେ ବୋଲଇ ଏ କପି ଗୋ ମରୁ ଜିଉପୁଣ
ମଲା ଲୋକମାନେ କି ଜିଇବେ ଆଉ ଜାଣ ।
ତୁମ୍ଭେମାନେ ବୋଇଲେ ହୋଇବ ଆଉ କିସ
ରାଜା ବିଚାରିଣ ଦଣ୍ଡ ବହିବ ଅବଶ୍ୟ ।
ଏସନକ କହିଣ ଲୋକ କନ୍ତାକନ୍ତି
ଶୁଣନ୍ତି ପାର୍ବତୀ କହନ୍ତି ଶୂଳପତି ।
ତୋଟାରୁ ବାହାର କରି ମାରୁତିକି ନେଲେ
ନଗ୍ରର ଭିତରେ ନେଇଣ ଛିଡ଼ା କଲେ ।
ଇନ୍ଦ୍ରଜିତ ଆଜ୍ଞା ଦେଲା ଅସୁରଙ୍କୁ ଚାହିଁ
ପାଞ୍ଚ ସେନାପତିଙ୍କୁ ଦାହ କର ନେଇ ।

ତୋଟାଳିଆମାନଙ୍କୁ ଚାହିଁଣ ଆଜ୍ଞା ଦେଲା
ତମ୍ଭ ଜାତି ମଡ଼ା ବୋହିନିଅ ସେ ବୋଇଲା ।
ସମୁଦ୍ରରେ ମଡ଼ାଙ୍କୁ ମେଲି ଦେଇ ଆସ
ଏପରି ଆଜ୍ଞା ଦେଲା ରାବଣର ଶିଷ୍ୟ ।
ଆଜ୍ଞା ପାଇ ତୋଟାଳିଆମାନେ ଚଳିଗଲେ
ଆପଣା ଜାତିଗୋତ୍ର ମଡ଼ା ବହି ନେଲେ ।
କିଙ୍କରଗଣମାନଙ୍କୁ ବୋଇଲା ଇନ୍ଦ୍ରଜିତ
ତୁମ୍ଭ ଜାତି ମଡ଼ା ବହି ନିଅରେ ତ୍ୱରିତ ।
ଆଜ୍ଞା ପ୍ରମାଣେ କିଙ୍କରଗଣେ ଗଲେ
ମଡ଼ାମାନଙ୍କୁ ସବୁ ବାହାର କରି ନେଲେ ।
ସାଗରରେ ନେଇଣ ପକାଇଣ ଦେଲେ
ଜଳରେ ମତ୍ସ୍ୟ ମଗର ସମସ୍ତଙ୍କୁ ଭକ୍ଷିଲେ ।
ଭଲ ଭଲ ଦୈତ୍ୟ ଦହନ ହୋଇଲେ
ଅକ୍ଷୟ ସେନାପତିଙ୍କୁ ଦହନ କରାଇଲେ ।
ଶାଳକଗଣଙ୍କୁ ସାଗରେ ମେଲି ଦେଲେ
ପଦାତିବଳମାନଙ୍କୁ ଏହିରୂପେ କଲେ ।
ହସ୍ତୀ ଘୋଡ଼ା ସାରେଣୀଙ୍କୁ ବହି ନେଲେ ପୁଣ
ସମୁଦ୍ରେ ମେଲିଦେଲେ କୂଳରେ ରହିଣ ।
ତୋଟାକୁ ନିର୍ମଳ କରାଇ ଇନ୍ଦ୍ରଜିତ
ହନୁକୁ ଘେନି ନଗ୍ରରେ ମିଳିଲା ତ୍ୱରିତ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଦେଖଣାହାରି ଲୋକେ ଦେଖୁଥିଲେ ତଥି ।
ଦାଣ୍ଡରେ ହନୁମନ୍ତ ଚାଲେ ଧୀର ହୋଇ
ନଗ୍ରରେ ନରନାରୀ ଦେଖୁଛନ୍ତି ରହି ।
ପାର୍ବତୀଙ୍କ ଆଗରେ କହନ୍ତି ତ୍ରିପୁରାରୀ
ଅଶୋକ ବନରୁ ଅସୁରୀ ଯାଇଥିଲେ ଫେରି ।
ଦେଖିଲେ ଲଙ୍କାର ଦାଣ୍ଡରେ ହନୁମନ୍ତ
ବାନ୍ଧି କରି ଅସୁର ତାକୁ ନିଅନ୍ତି ତ ।
ଦେଖିକରି ଅସୁରୁଣୀ ଫେରିଣ ଅଇଲେ
ଅଶୋକ ବିପିନରେ ପ୍ରବେଶ ହୋଇଲେ ।
ସେଠାରେ ଶ୍ରୀରାମଙ୍କର ନାରୀ ସୀତାସତି
ବସିଥିଲେ ଭାବନା କରିଣ ମା ମଥାପୋତି ।
ତ୍ରିଜଟା ଦଇତୁଣୀ ତାହାଙ୍କ ପାଶେ ବସିଥିଲା
ଏତିକି ବେଳରେ ପାବନି ମିଳିଲା ।
ବୋଇଲା ଜାନକୀ ଆଉ ତ୍ରିଜଟାଙ୍କ ଆଗେ
ଦେଖି ଆସିଲି ମୁଁ ମଧୁବନୁ ଏଇଲାଗେ ।
କେଉଁ ଦେଶରୁ ଗୋଟାଏ ମର୍କଟ ଆସିଣ
ରାଜାଙ୍କର ମଧୁବନ କରିଲା ଯେ ଭଗନ ।
ହଜାର ହଜାର ତୋଟା ରଖୁଆଳ ଜଗିଥିଲେ
ସେହି ବାନର କରେ ସରବେ ମରିଲେ ।
ସକଳ ରଖୁଆଳଙ୍କୁ କରି ସେ ବିନାଶ
ନିର୍ଭୟରେ ମଧୁବନରେ କରିଲା ପ୍ରବେଶ ।
ଯେତେ ପରକାର ଦେବ ଭୋଗ୍ୟ ପକ୍ୱଫଳ
ଛିଣ୍ଡାଇ ସବୁ ଭକ୍ଷଣ କଲାକ ତତ୍‌କାଳ ।
କେବଳ ସେ ଫଳ ଯଦି ଭକ୍ଷଣ କରିଥାନ୍ତା
ଦୈତ୍ୟ ପତିଙ୍କର ମନେ ଦୁଃଖ ନ ହୁଅନ୍ତା ।
ସ୍ୱରଗପୁର ନନ୍ଦନ କାନନରୁ ବାଛି
ଯେତେ ବୃକ୍ଷ ଆଣିଥିଲେ ବିଶ୍ରବାଙ୍କ ବଛି ।
ସେ ସକଳ ବୃକ୍ଷକୁ ଭାଙ୍ଗି ଚୂର୍ଣ୍ଣ କରି
ମାଟିରେ ମିଶାଇ ଦେଇଅଛି ସେ ଦୂରାଚାରୀ ।
ରଖିଆଳମାନେ ତାକୁ ଯେତେ ବାଂଧା ଦେଲେ
କଉଣସି ମତେ ତୋଟା ରଖି ନ ପାରିଲେ ।
ଯିଏ ରଣ କରିଲା ବାନର ସଙ୍ଗରେ
ମୃତ୍ୟୁ ଲଭି ତା ହସ୍ତେ ଗଲା ଯମପୁରେ ।
ଏସନ ଖବର ଯହୁଁ ପାଇଲେ ଲଙ୍କପତି
ବଛା ବଛା ବୀରକୁ ପେଶିଲେ ଝଟତି ।
ସେମାନଙ୍କୁ ଏକ ଏକ ଚାପୋଡ଼ା ମାରିଣ
ଭୂତଳେ ଶୁଆଇ ଦେଲା କ୍ଷଣକ ମଧ୍ୟେଣ ।
ସେ ଖବର ଯହୁଁ ମନ୍ତ୍ରୀଙ୍କ ପୁତ୍ର ପାଇଲେ
କରେ ଅସ୍ତ୍ର ଶସ୍ତ୍ର ଧରି ବାହାର ହୋଇଲେ ।
ସେମାନଙ୍କୁ ଚାପୋଡ଼ ମାରି ସେ ମର୍କଟ
ସଙ୍ଗେ ସଙ୍ଗେ ଯମପୁରେ କରାଇଲା ଭେଟ ।
ଏହି ପରକାରେ ବହୁ ବୀରଙ୍କୁ ମାରନ୍ତେ
ଅକ୍ଷୟ କୁମର ମିଳିଲାକ ସାଥେ ସାଥେ ।
ସଙ୍ଗତେ ସହସ୍ରାଧିକ ସଇନିଙ୍କୁ ନେଇ
ରଣ ଆରମ୍ଭ କରିଲେ ବାନର ସଙ୍ଗତେ ହିଁ ।
ଯେତେ ପରକାର ବାଣ ବର୍ଷିଲେ ଦଇତ
ନ ଭେଦିଲା ସେ କପିର ଶରୀରେ ଆଗୋମାତ ।
କ୍ରୋଧେ ବଡ଼ ବଡ଼ ବୃକ୍ଷମାନ ଉପାଡ଼ିଣ
ଗୋଡ଼ାଇ ପିଟିଲା ବାନର ଦାନବଙ୍କୁ ଜାଣ ।
ଏକ ଏକ ପ୍ରହାରରେ ଶତ ଶତ ବୀର
ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଣ ମିଶିଗଲେ ମାଟିର ।
ଦେଖିଣ ଅକ୍ଷୟ କୁମାର ମହାକ୍ରୋଧ କଲା
ମର୍କଟ ଉପରେ ଗଦା ପ୍ରହାରିଲା ।
ସେ ଗଦା ଛଡ଼ାଇ ନେଇ ଖଣ୍ଡ ଖଣ୍ଡ କରି
ଭାଙ୍ଗି ଚୂନା କଲା ଦାନବ ଅଇରି ।
ବଜ୍ରସମ ଏକ ବିଧା ମାରି ସେ କୁମରକୁ
ବଧ କରି ପଠାଇଲା ଶମନ ପୁରକୁ ।
ସେ ଅକ୍ଷୟ କୁମର ମରଣ କର୍ଣ୍ଣେ ଶୁଣି
ବହୁ କ୍ରନ୍ଦନ କଲେ ବୀର ଲଙ୍କମଣି ।

ଇନ୍ଦ୍ରଜିତ କୁମରଙ୍କୁ ପାଶକୁ ହକାରିଲେ
ଗୋଟି ଗୋଟି କରି ତାହାକୁ ସକଳ କହିଲେ ।
ଶ୍ରବଣ କରିଣ ଇନ୍ଦ୍ରଜିତ ହୋଇ ରୋଷ
ବାହାର ହେଲା ହାତରେ ଧରି ନାଗପାଶ ।
ମଧୁବନ ତୋଟାରେ ପ୍ରବେଶ ହୋଇଲେ
ସେ ବାନର ସଙ୍ଗତରେ ଘୋର ରଣ କଲେ ।
ଯେତେ ବାଣମାନ ସେହୁ ବିନ୍ଧିଲେ ତୁହାଇ
ବାନର ଅଙ୍ଗରେ ତିଳେ ନ ଭେଦିଲା କେହି ।
ଶେଷେ ନାଗ ପାଶ ଶର ବରଷି ଇନ୍ଦ୍ରଜିତ
ବନ୍ଧନ କଲେ ମର୍କଟକୁ କରି ଶକ୍ତ ।
ନାଗ ପାଶକୁ ସେ ଛିନ୍ନ କରି ନ ପାରିଲା
ଅଣ ଆୟତ ହୋଇଣ ସେ ବନରେ ପଡ଼ିଲା ।
ଆହୁରି ମଧ୍ୟ ମୁଁ କର୍ଣ୍ଣରେ ଶୁଣିଲି ମାତ
ସେ ମର୍କଟକୁ ନେବେ ରାଜାଙ୍କ ନିକଟ ।
ତାହାଙ୍କ ଆଗରେ ତାକୁ ଅଗ୍ନିରେ ପକାଇ
ପୋଡ଼ି ଭସ୍ମ କରିଦେବେ ହୁଅନ୍ତି କୁହାକୁହି ।
ଏତିକି ମାତର ମୁହିଁ ନୟନରେ ଦେଖିଣ
ପଳାଇ ଆସିଲି ତବ ସନ୍ନିଧିକୁ ଜାଣ ।
ହନୁକୁ ଭସ୍ମ କରିବା କଥା ଯହୁଁ ଶୁଣିଲେ
ମାତା ସୀତା ଦେବୀ ଅଗ୍ନିକୁ ସ୍ମରଣ କରିଲେ ।
ସ୍ମରିବା ମାତ୍ରରେ ଅଗ୍ନିଦେବ ଗୁପତରେ
ମିଳିଲେ ଆସି ମାତାଙ୍କ ପାଶରେ ।
ବୋଇଲେ କିବା ଆଦେଶ ଦିଅ ମହାମାତ
ପାଳନ କରିବା ପାଇଁ ଅଛି ମୁଁ ପ୍ରସ୍ତୁତ ।
ଶୁଣିଣ ଜାନକୀ ହରଷ ମନ ହେଲେ
ଆଣ ଅଷ୍ଟ ଗୋଟି ପୁଷ୍ପ ଅଗ୍ନିଙ୍କି କହିଲେ ।
ଶୁଣିଣ ଅଗ୍ନି ଦେବତା ବେଗେ ଚଳିଗଲେ
ଅଶୋକ ପୁଷ୍ପ ଆଣି ସୀତାଙ୍କ ହସ୍ତେ ଦେଲେ ।
ଶ୍ରୀରାମ ସୁମରି ସ୍ୱତୀ କଲେକ ଭୋଜନ
ରତ୍ନ ଝରୀରୁ ନୀର କରିଲେକ ପାନ ।
ଅଶୋକ ବନକୁ ସ୍ତୁତି କଲେ ରାମାମଣି
ଘେନ ହେ ଅଶୋକ ବନ ମୋହର ଦଇନୀ ।
ତୁ ଯେବେ ଅଶୋକବନ ଶୋକ ମୋର ଖଣ୍ଡ
ତୋର କୀର୍ତ୍ତି ଯୁଗେ ଯୁଗେ ରହିବ ବ୍ରହ୍ମାଣ୍ଡ ।
ଆଜ ଦିନ ମୋର ଶୋକ ଶାନ୍ତକର ତୁହି
ଏମନ୍ତ ବୋଲି ଦେବୀ ବନକୁ ଜଣାଇ ।
ଏ ଦୁର୍ଗୀତୀରୁ ମାରୁତି ବେଗେ ପାରି ହେଉ
ଯାଇଣ ଶ୍ରୀରାମଙ୍କୁ ବାରତା ଜଣାଉଁ ।
ଶ୍ରୀରାମ ଆସିଣ ମାରନ୍ତୁ ଦଶଶିର
ହେ ଅଶୋକବନ ମୋତେ ଦୟା କର ।

ଯେତେବେଳେ ଦେବୀ ଏମନ୍ତ ବାଞ୍ଛା କଲେ
ଜ୍ଞାନ ଜାତ ହେଲା ମାରୁତିର ସେତେବେଳେ ।
ଅକଳିତ ବଳ ହୋଇଲା ହନୁର
ଶରୀରରୁ ତୁଟିଲା ଅଜ୍ଞାନ ତାହାର ।
ମନେ ବିଚାରେ ମାରୁତି ଏ କିସ ସଂକଟ
ଏହିକ୍ଷଣି ମୁହିଁ ଯେ ପୋଡ଼ିବି ଲଙ୍କା ରାଷ୍ଟ୍ର ।
ଶ୍ରୀମତୀ ସତୀ ପ୍ରସନ୍ନେ ଏଠାରୁ ମୁଁ ଯିବି
ଦଶାନନକୁ ଆଜି ମୁଁ ଅପବାଦ ଦେବି ।
ଏମନ୍ତ ଭାବିଣ ବୀର ମାୟା ପୁଣ କଲା
ଶ୍ରୀରାମଙ୍କୁ ସୁମରି ମନେ ଆନନ୍ଦ ହୋଇଲା ।
ତଳକୁ ଓଲୋଟି ଗାଳି ପଡ଼ିଲାକ ଶୋଇ
ହାଇ ମାରି ହନୁମନ୍ତ ବେଲେ ଆଇ ଆଇ ।
ଏହା ଦେଖି ଅସୁରେ ନିଅନ୍ତି ଘୋଷାରି
ଲୋଟଗାଳି ମାରୁତିକି ଘୋଷାରନ୍ତି ଆଣ୍ଟକରି ।
କେ ବୋଲେ ନ ଘୋଷାର ମରିଯିବ ଏହି
ଏମନ୍ତ ସମୟରେ ଇନ୍ଦ୍ରଜିତ କହି ।
ରାଜା ଦେଖିବାଯାଏଁ ପ୍ରାଣ ଯାର ଥାଉ
ସେଥି ଉତ୍ତାରେ ଏହାକୁ ମରଣ ପଛେ ହେଉ ।
ଧୀର ଧୀର ହୋଇଣ ଏହାକୁ ଘେନି ଚାଲ
ଯେବଣ ନାଗପାଶ ଯମଦଣ୍ଡ ତୁଲ ।
ସେ ପାଶରେ ମୁଁ ଯେ ବାନ୍ଧିଛି ଯତ୍ନ କରି
ବେଭାରେ ହୋଇଲାଣି ମଲାର ସଙ୍ଗେ ସରି ।
ଏତେ ବୋଲି ସମସ୍ତେ ଚଳନ୍ତି ଧୀର ଧୀର
ଦାଣ୍ଡରେ ଓଟାରିଣ ନିଅନ୍ତି କପିବୀର ।
ଦେଖଣାହାରିମାନେ ମାରନ୍ତି ଯେ ଟେକା
କେ ବୋଲେ ଭାଇକି ମୋର ମାଇଲା ଏ ଏକା ।
ପଥର ଧରିଣ କେହୁ ମାରେ ପୁଣି
କେବଣ ଦଇତୁଣୀ ପକାନ୍ତି ଧୂଳି ଆଣି ।
କେବଣ ରାକ୍ଷସୁଣୀ ଚୂନ ପାଣି ଫିଙ୍ଗି
କେବଣ ଲୋକ ଯାଇ ଗୋଇଠା ମାରେ ରାଗି ।
କେହୁ କ୍ରୋଧ ହୋଇଣ କହୁଣୀ ଯେ ମାରି
କେବଣ ଲୋକ ଆଗେ ମାରଇ କରତାଳି ।
କେବଣ ଦଇତୁଣୀ ହୁଳହୁଳି ଦ୍ୟନ୍ତି
କେହୁ ନେଇ ଗୋବର ପାଣି ଯେ ଫିଙ୍ଗନ୍ତି ।
କେବଣ ଦଇତୁଣୀ ଧରିଣ ଠେଙ୍ଗା ବାଡ଼ି
କେବଣ ଦଇତୁଣୀ ଦାନ୍ତକୁ ରଗଡ଼ି ।
ଶାଳକଗଣ ନାରୀ ଅନେକ ଗାଳି ଦେଲେ
କିଙ୍କର ନାରୀମାନେ ଯଷ୍ଟିରେ ପ୍ରହାରିଲେ ।
ତୋଟାଳିଆମାନେ ଯେ ଜାତିରେ ବାଉରି
ତୋଟା ଝାଡୁ କରନ୍ତି ପନ୍ତି ଖାଇ କରି ।

ବାନର ହସ୍ତେ ମଲେ ଗେରସ୍ତ ଦିଅର
ଶ୍ୱଶୁର ମଲାଶୂର କାହାର ପିଅର ।
ଭାଇ ବନ୍ଧୁ କୁଟୁମ୍ବ ମଲାରୁ ବଡ଼ ଦୁଃଖୀ
କ୍ରୋଧରେ ତାଙ୍କ ନାରୀ ହନୁକୁ ଯାଇ ଦେଖି ।
କେଉଁ ବାଉରାଣୀ ପାହୁରାଣିରେ ମାରେ
କେବଣ ଦଇତୁଣୀ ପିଟଇ ଝାଡୁରେ ।
କେବଣ ବାଉରାଣୀ ଅଳିଆ ଫିଙ୍ଗଇ
କେବଣ ବାଉରାଣୀ ଠେଙ୍ଗାରେ ପିଟଇ ।
ଏମନ୍ତ ପ୍ରକାରେ ହନୁକୁ ମାଡ଼ ମାରି
ମାଡ଼ଖାଇ ହନୁ ଯେ ଭୂମିରେ ଲୋଟଗାଳି ।
ସାଇ ସାଇ କନ୍ଦିମାନଙ୍କେ ଘୋଷାରାଇ
ଲଙ୍କାଗଡ଼ ଯାକ ଯେ ଆଣିଲେ ବୁଲାଇ ।
ରାଜାର ସିଂହଦ୍ୱାରେ ହୋଇଲେ ସର୍ବେ ଠୁଳ
ଚହଳ ଶବଦରେ ସେଠାରେ ହୁଏ ଗୋଳ ।
ଇନ୍ଦ୍ରଜିତ ବୀର ରଥରୁ ଓହ୍ଲାଇଲା
ଦ୍ୱାରେ ରଥ ରଖି ଭିତରକୁ ଗଲା ।
ପିତାର ଛାମୁରେ କଲା ଦରଶନ
ପାଦେ ପଡ଼ି ଶୋଇଣ ଉଠେ ପୁନଃ ପୁନଃ ।
ଶିରେ କର ଦେଇଣ ନିକଟକୁ ଗଲା
ବାନରକୁ ବାନ୍ଧିଣ ଆଣିଲି ବୋଇଲା ।
ଶୁଣି କରି ରାବଣ ହୋଇଲା ହରଷ
ଆଜ୍ଞା ଦେଲା ମୋର ଛାମୁକୁ ଘେନି ଆସ ।
ନୃପତିର ଆଜ୍ଞାରେ ହନୁକୁ ଘେନିଗଲା
ଜଗତି ତଳରେ ନେଇ ବସାଇଲା ।
ସାତଗୋଟି ଦଉଡ଼ି ଆବର ନାଗଫାଶ
ଦେଖିଣ ରାବଣେଶ୍ୱର ହୋଇଲା ହସ ହସ ।
ପଟୁଆର ଭିତରେ ହନୁ ଅଛି ଶୋଇ
ବେଦବର ମୁଖ ଚାହିଁ ସୁର ରାଜା କହି ।
ବାସବ ବୋଇଲେ ଏ କେବଣ ଚରିତ
କି ବୁଦ୍ଧି ଭ୍ୟାଇ ଅଛ ହେ ଜଗତର ତାତ ।
କେତେ ନର ବାନରେ ରାବଣେ ହେବେ ହତ
ଏବେ ବନ୍ଦିରେ ପଡ଼ିଲା ରାମଙ୍କର ଦୂତ ।
କେଉଁ ପ୍ରକାରେ ତାକୁ ମୁକୁଳାଇ ହେବ
ଏଥିରେ ସନ୍ଦେଶ ମୋତେ କହ ସାବିତ୍ରୀଧବ ।
ବିଧତା ବୋଇଲେ ସେ ପୂର୍ବର ଦୋଷ ଅଛି
ଅଜ୍ଞାନ କାଳରୁ ହନୁ ଯାହା ଅର୍ଜିଅଛି ।
ସେ କଥା ତୋର ଆଗେ କହୁଛି ସୁରପତି
ଜାଣିଲେ କୋପ ପୁଣି କରିବ ଲଙ୍କପତି ।
ଇନ୍ଦ୍ର ବୋଇଲେ ତାର ମାରୁତିଠାରେ ମନ
ଆମ୍ଭର କଥାକୁ ତାର ଲକ୍ଷ୍ୟ ନାହିଁ ଜାଣ ।

ବେଦବର ବୋଇଲେ ଶୁଣ ସୁରପତି
ଯେଉଁ କାଳରେ ଜନ୍ମ ହୋଇଲା ମାରୁତି ।
ଜନମ ହୋଇଣ ସେ ସୂର୍ଯ୍ୟଙ୍କୁ ବାନ୍ଧିଲା
ସେ କାଳେ ଦିନମଣି ତୋତେ ସୁମରିଲା ।
ସେତେବେଳେ ତୁହି ମାଇଲୁ ବଜ୍ରଶର
ବଜ୍ରଘାତେ ଅଚେତ ହୋଇଲା ହନୁବୀର ।
ପବନ ଆସି ତାକୁ ଜୀବ ଦାନ ଦେଲା
ତ୍ରିଦଶ ଦେବତାଙ୍କୁ ଅନେକ ଧିକ୍କାରିଲା ।
ତେଣୁ ସକଳ ଦେବେ ହନୁକୁ ବର ଦେଲେ
ଚାରିଯୁଗେ ଅମର ହୁଅ ତୁ ବୋଇଲେ ।
ତେତିଶ କୋଟି ସିଂହର ବଳ ତାକୁ ଦେଲେ
ତ୍ରିଦଶ ଦେବତାଙ୍କର ବଳ ତାଠାରେ ଠୁଳ କଲେ ।
ସେହି ଦୋଷୁ ବନ୍ଧନ ପବନର ବାଳ
ପ୍ରହରେ ଗଲେ ଦେଖିବ ହନୁର କେତେବଳ ।
ଶୁଣିଣ ସନ୍ତୋଷ ହେଲେ ସୁରେଶ୍ୱର
ସେହି ଦୋଷୁ ଏ ଦଶା ଭୋଗୁଛି ହନୁବୀର ।
ଏମନ୍ତ ଶୁଣି ଇନ୍ଦ୍ର ପଚାରେ ବେଦବରେ
ହନୁର ଆଦ୍ୟ ଜନ୍ମ କେମନ୍ତ ପ୍ରକାରେ ।
ବିଧାତା ବୋଇଲେ ସେ କଥା ଏବେ ଶୁଣ
ଯେମନ୍ତ ପ୍ରକାରେ ମାରୁତିର ଜନ୍ମ ।
କିଷ୍କିନ୍ଧ୍ୟାରେ ରାଜା ଯେ ଖଡ଼୍‌ଗଦ ନୃପତି
ପ୍ରଭଞ୍ଜନୀ ନାମେ ତାର ଏକଇ ଦୁହିତୀ ।
କେଶରୀ କପି ଯେ ତାହାକୁ ବିଭା ହେଲା
ସେହି ବିଳାସୁଣୀ ଯେ ଜଗତ ମୋହିଲା ।
ନାଗ ନର ସୁର ଦେଖି ତାହାରେ ବଶ ହୋନ୍ତି
ଧନ୍ୟ ଧନ୍ୟ ସୁନ୍ଦରୀ ପଦ୍ମିନୀ ତାର ଜାତି ।
ରଜସ୍ୱଳା ଏକଦିନେ ଅବଳା ହୋଇଲା
ନର୍ମଦା ନଦୀରେ ଯାଇଣ ସ୍ନାନ କଲା ।
ମ୍ଳେଛ ତନୁ ତେଜିଣ ନିର୍ମଳ ତନୁ ଧରି
ହରିଦ୍ରା ଚନ୍ଦନ ଅଗୁରୁ ଅଙ୍ଗେ ବୋଳି ।
ସୁଗନ୍ଧ ଦଳିଣ ଚାରୁର ଅଙ୍ଗେ ବୋଳି
ନଦୀରେ ପଶିଣ ସ୍ନାନ କଲା ବାଳୀ ।
ସୁଗନ୍ଧ ବୋଳିଣ ଚାରୁକେଶ ଧୋଇ
ଗନ୍ଧ ଛତୁଃସମ ଯେ ଦେହରେ ବୋଳି ହୋଇ ।
ନର୍ମଦା ନଦୀରେ ସ୍ନାନ କରି ନାରୀ
ନଦୀରୁ ବାହାର ହୋଇଲା ସୁନ୍ଦରୀ ।
କୂଳରେ ଉଭା ହୋଇଣ ଶରୀର ପୋଛିଲା
ସରୁ ଝୀନ ଅମକାଣ ବସନ ପିନ୍ଧିଲା ।
କବେରୀ ଶୁଖାଇଣ କୁସୁମେ ଖୋସା ଖୋସି
ଅଗୁରୁ ଚନ୍ଦନ ଅଙ୍ଗରେ ହେଲା ଘଷି ।

ନୟନରେ କଜ୍ଜ୍ୱଳ ଚରଣେ ଅଳତା
ତାମ୍ବୁଳ ଭୁଞ୍ଜିଣ ଅଧର କଲା ଆତା ।
ବିଭିନ୍ନ ଅଳଙ୍କାର ଆଭରଣ ହେଲା
ଦଶଦିଗକୁ ଚାହିଁଣ ଓଲଗି ସେ ହେଲା ।
ଏମନ୍ତ ସମୟରେ ପବନ ଦେବ ଦେଖି
ବୋଇଲେ ସାଧୁ ତୁହି ଅଟୁ ଚନ୍ଦ୍ର ମୁଖି ।
ନାହିଁ କାହିଁ ତୋତେ କେ ତ୍ରିଭୁବନେ ସରି
କିନ୍ନରୀ ଅପସରୀ ଯକ୍ଷ ବିଦ୍ୟାଧରୀ ।
ସୁନ୍ଦର ପଣେ ତୋତେ କେହି ନୁହେଁ ସରି
ଧନ୍ୟରେ ସାଧବୀ ଚଞ୍ଚଳା ସଙ୍ଗେ ସରି ।
ଏତେ କହି ପବନ ଧରଣୀରେ ମିଳି
ପ୍ରଭଞ୍ଜନୀ ନାରୀକି କହେ ଧୀର କରି ।
ବୋଲଇ ସୁନ୍ଦରୀରେ ପ୍ରାଣକୁ ମୋର ରଖ
ଏ ମୋହର ଶରୀର ବିହ୍ୱଳିତ ଦେଖ ।
ମଦନ ଶରେ ବିହ୍ୱଳ ହୋଇଲିରେ ବାଳୀ
ତୋହର ରୂପ ଦେଖି ନ ପାରେ ମୁଁ ଚଳି ।
ମୁହିଁ ସେ ପବନ ଦେବତା ଅଟେ ବାଳି
ମୁହିଁ ସେ ଜଗତ ଜନଙ୍କୁ ପ୍ରତିପାଳି ।
ନକର ନିରାଶ ମୋତେ ସମର୍ପ ତୋର ଅଙ୍ଗ
ଅତିପୀଡ଼ା ମୋତେ ଦେଉଛି ଅନଙ୍ଗ ।
ଗଗନ ମାର୍ଗରେ ମୁଁ ଯାଉଥିଲି ଯହିଁ
ତୋହର ରୂପ ଦେଖି ଏତକୁ ଅଇଲଇଁ ।
ତୁ ମୋତେ ନିରାଶ ନ କର ଚନ୍ଦ୍ରମୁଖି
ଏତେ ବୋଲି ମରୁତ ହୋଇଲା ବିନତିକି ।
ତୋତେ ଦେଖି ମୋର ଆଖି ଲାଖି ଯେ ରହିଲା
ଆଗୋ ପ୍ରଭଞ୍ଜନୀ ମୋତେ ରକ୍ଷା କର ଭଲା ।
ମଳୟ ବହିଣ ଯେ ଆମୋଦ କଲା ଅଙ୍ଗ
ଦିବ୍ୟରୂପ ଦେଖାଇବାରୁ ମନ ଚଙ୍ଗ ଚଙ୍ଗ ।
ପ୍ରଭଞ୍ଜନୀ ନାରୀ ତାକୁ କହିଲା ବଚନ
ସତ୍ୟକର ତୁମ୍ଭେ ଦେବତା ପବନ ।
ତୁମ୍ଭଠାରୁ ଯେଉଁ ସୁତ ଜନମ ହୋଇବ
ଚାରି ଯୁଗକୁ ସେ କଥା ରୁହାଇବ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହୋଇବେ ଉତ୍ପୁଷି
ନର ବାନର ତାକୁ କରିବେ ଯେ ସ୍ତୁତି ।
ଦେବତାଏ ଭଲ ବୋଲି ବୋଲିବେ ତାକୁ ପୁଣ
ଦୁଷ୍ଟଙ୍କୁ ମାରି ଉତ୍ପୁସି ସନ୍ଥରେ ହେବ ଜାଣ ।
ପବନ ବୋଇଲା ଏକଥା ଅସ୍ତୁ ହେଉ
ବିଷ୍ଣୁଭକ୍ତି ଭାବ ତାର ହୃଦେ ଧରି ରହୁ ।
ଶୁଖି ଖଡ଼୍‌ଗଦ ନନ୍ଦିନୀ ସନମତ କଲା
ତା ଶରୀରେ କାମପୀଡ଼ା ଯହୁଁ ବାଧା କଲା ।

ମୁଖରେ ପ୍ରଭଞ୍ଜନୀ କହିଲାକ ଯହୁଁ
ପବନ ଦେବତା ଯେ ରମଣ କଲେ ତହୁଁ ।
ବଳରାମ ଦାସ ହନୁ ଚରଣେ ଶରଣ
ହନୁମନ୍ତ ଜନ୍ମ ହେଲେ ଦେବଙ୍କୁ କାରଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ବେଦବର ଇନ୍ଦ୍ରଙ୍କର ଆଗରେ କହନ୍ତି ।
ବିବିଧ ବିନୋଦରେ କରଇ ରମଣ
କାମିନୀ ଘୋଟେ ତାର ପଞ୍ଚଶର ଜାଣ ।
ନାନାରଙ୍ଗେ ରମଣରେ ଖସିଲାକ ବୀର୍ଯ୍ୟ
ପ୍ରଭଞ୍ଜନୀ ଗର୍ଭରେ ରହିଲା ଯାଇ ତେଜ ।
ନାଭି ମଣ୍ଡଳ ଧରି ରହିଲା ଯାଇ ବୀର୍ଯ୍ୟ
ସରୋବର ଗୁମ୍ଫା ମଧ୍ୟରେ ହେଲା ତେଜ ।
ସେଠାରୁ ସରୋବର ଗୁମ୍ଫା ଯେ ମୁଦ୍ରିତ
ମାହିନ୍ଦ୍ର ବେଳରେ ଗର୍ଭୋଦୟ ହୋଇଲା ତ ।
ସେହିଦିନ ପବନ କହି ଚଳିଗଲେ
ଅସମୟ କାଳେ ମୋତେ ସୁମରିବୁ ଭଲେ ।
ପବନଠାରୁ ଶୁଣି ମନରେ ହରଷ
ସେହିଦିନୁ ଛାଡ଼ିଲା ମନରୁ ମୁହାଁସ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ପ୍ରଭଞ୍ଜନୀ ଗର୍ଭରେ ରହିଲା ମାରୁତି ।
ସେଠାରୁ ବାରବରଷ ଦିନ ବହିଗଲା
ଗର୍ଭେ ଥାଇ ହନୁମନ୍ତ ଚେତା ଯେ ପାଇଲା ।
ଏତେ ଦିନ ବିଳମ୍ବ ହୋଇବାରୁ ପୁଣ
ପ୍ରଭଞ୍ଜନୀ ଚିନ୍ତା କରି ମନରେ ଭାଳିଣ ।
ଜାଣି ହନୁମନ୍ତ ଗର୍ଭରେ ଉଙ୍କାରିଲା
ପବନ ଦେବତାକୁ ସୁମର ବୋଇଲା ।
ଶିବଙ୍କଠାରୁ ବଜ୍ର କାଛଟା ଆଣ ଯାଇ
ସେ କାଛଟା ପିନ୍ଧିଲେ ଜନମ ହେବି ମୁହିଁ ।
ଶୁଣିଣ ପ୍ରଭଞ୍ଜନୀ ବାତଙ୍କୁ ସୁମରିଲା
ଜାଣିଣ ପ୍ରବେଶ ହେଲେ କଶ୍ୟପଙ୍କ ବଳା ।
ଦେଖିଣ ପ୍ରଭଞ୍ଜନୀ କହିଲା ବଚନ
ବାରବର୍ଷ ହେଲା ଜନ୍ମ ନୋହିଲା ନନ୍ଦନ ।
ତେଣୁ କରି ଚିନ୍ତା ଯେ ମନରେ ମୁହିଁ କଲି
ଗର୍ଭରୁ ଉକାର ଶବଦ ଶୁଣିଲି ।
କାଛଟା ଗର୍ଭକୁ କ୍ଷେପ ବେଗେ ତୁହି
ତେବେ ସିନା ଜନମ ହୋଇବଇଁ ମୁହିଁ ।
ଶୁଣିଣ ପବନ ବେଗେ ଚଳିଗଲେ
ଈଶ୍ୱରଙ୍କ ପାଶରେ ପ୍ରବେଶ ହୋଇଲେ ।
ଶିବଙ୍କୁ ମନାଇଁ କାଛଟା ଆଣିଲେ
ସେ କାଛଟାକୁ ନେଇ ପ୍ରଭଞ୍ଜନୀକି ଦେଲେ ।

ତକ୍ଷଣେ ପ୍ରଭଞ୍ଜନୀ କାଛଟାକୁ ଧରି
ଗର୍ଭକୁ କ୍ଷେପିଲା ନାରାୟଣଙ୍କୁ ସୁମରି ।
ପ୍ରଭଞ୍ଜନୀ ବୋଇଲା ଶୁଣ ହେ ମରୁତ
ସ୍ତିରୀ ହତ୍ୟା ପାତକ ତୁମ୍ଭଙ୍କୁ ଲାଗିବ ତ ।
ପବନ ବୋଇଲା ଶୁଣ ଗୋ ପ୍ରଭଞ୍ଜନୀ
ଅଷ୍ଟଦିଗପାଳେ ସେହି କଥା ଛନ୍ତି ଜାଣି ।
ପେଟ ମୋର ବ୍ୟଥା କଲା ପ୍ରାୟେ ଲାଗୁଅଛି
ହାଇ ଘନ ଘନ ହୋଇ ଅଳସ ଲାଗୁଛି ।
ଏହି ସମୟରେ ଶୂଳ ସଞ୍ଚରିଲା
ସଧୀର ସଧୀର ହୋଇ ସମୀର ବହିଲା ।
ଗର୍ଭରୁ ଜନମ ହୋଇଲା ହନୁମନ୍ତ
କି ଜାଣି ପଟାନ୍ତର ପବନ ସଞ୍ଜାତ ।
ମାତାର ଗୁଣ ବହି କପି ତନୁ ଧରି
ମେଷ ସଙ୍କରାନ୍ତି ଦିନ ବୀର ଅବତରି ।
ପ୍ରଭାତ ସମୟରେ କୁମର ଉତପତ୍ତି
ବିଷ୍ଣୁଭକ୍ତ ଶିରୋମଣି ଦିବ୍ୟ ମୂର୍ତ୍ତି ।
ବଳିଷ୍ଠ ପୁଣ ଶ୍ରେଷ୍ଠ ପ୍ରତାପି ବଳବନ୍ତ
ଦେଖିଣ ପ୍ରଭଞ୍ଜନୀ ମନରେ କଲା ଭୀତ ।
କାଳ ଦେବତାକି ମହିରେ ଅବତରି
ଉଠି ବସିଲା କୁମର ଜନ୍ମ ହୋଇ କରି ।
ଜନନୀକି କହିଲା ଶୁଣ ସି ଗୋ ମାତ
ଏ ମୋହର ଶରୀର କ୍ଷୁଧାରେ ଆରତ ।
ଦିଅ ତୁ ଆହାର କରିବି ମୁଁ ଗ୍ରାସ
ଶୁଣିଣ ପ୍ରଭଞ୍ଜନୀ ମନେ କଲା ତ୍ରାସ ।
ଆପଣା ମନେ ମନେ କରଇ ବିଚାର
ପବନର ବୀର୍ଯ୍ୟରୁ ଏ ପୁତ୍ର ଅବତାର ।
ଏଣୁ କରି ଏଡ଼େ ବଳବାନ ଏ ହୋଇଲା
ଖଡ୍‌ଗ ନନ୍ଦିନୀ ଦଶ ଦିଗକୁ ଅନାଇଁଲା ।
ଦେଖିଲା ପୂର୍ବ ଦିଗରେ ଉଦୟେ ଆଦିତ୍ୟ
ରକ୍ତବର୍ଣ୍ଣ ଦିଶଇ ରବିଙ୍କର ରଥ ।
ସୁପକ୍ୱଫଳ ପରାଏ ଶରୀର ତାହାର
ଭୟ ମନରେ ଅଞ୍ଜନା କରଇ ବିଚାର ।
ଏ ନନ୍ଦନ ଅରିଷ୍ଟ କରିବ ଉତପାତ
ଆହାର ନ ପାଇଲେ କରିବ ମୋତେ ହତ ।
ଏ ଆଦିତ୍ୟ ଦେବତାଙ୍କୁ ଦେବି ମୁଁ ଦେଖାଇ
ବଳବନ୍ତ ପଣ କେତେ ବୁଝିବଇଁ ।
ଏତେ ଭାଳି ଅଞ୍ଜନା କୁମରକୁ କହି
ଏହି ଫଳକୁ ବାପ ଭୁଞ୍ଜସିରେ ଯାଇ ।
ଶୁଣିଣ ହନୁମାନ ଉଠିଲା ଉଘେଇ
ଲକ୍ଷେକ ଯୋଜନ ଉପରକୁ ଉଠିଯାଇ ।

ସୂର୍ଯ୍ୟ ମଣ୍ଡଳରେ ବୀର ବସିଲାକ ଯାଇ
ଦେଖି ମନେ ଶଙ୍କା କଲେ ଛାୟାଦେବୀ ସାଇଁ ।
ସିଂହାକାର ନନ୍ଦନ ପରାଏ ମଣିଲେ
ଭୟ ମନ କରି ନିରେଖି ଚାହିଁଲେ ।
ଏସନକ ସମୟରେ ପବନ କୁମର
ମହା ତେଜ ମହା ଉଗ୍ର ମୂର୍ତ୍ତି ଯେ ତାହାର ।
ଛାଗଳଙ୍କ ମଧ୍ୟେ ଯେହ୍ନେ ବ୍ୟାଘ୍ର ପଲାଶଇ
ତେମନ୍ତ ପ୍ରକାରେ ହନୁ ଗତିକି କରଇ ।
ନିକଟରେ ଦେଖିଲା କିଛି ଫଳ ନାହିଁ
ନଖ ମୁଖ ପାଦ ପାଣି ତାହାର ଅଛଇଁ ।
ଶିରରେ ମୁକୁଟ କର୍ଣ୍ଣେ କୁଣ୍ଡଳ ଶୋଭାବନ
ଗଳାରେ ମନ୍ଦାର ମାଳ ଦିଶଇ ଯତନ ।
ବିଦ ମୁଦି ବାହୁଟି ବଳୟ କଙ୍କଣ
ପାଶୁଶେ ଅଛନ୍ତି ଛାୟା ସଞ୍ଜା ଦୁଇଜଣ ।
ମଧ୍ୟେ ସୂର୍ଯ୍ୟ ଦେବତା କମଳ ବେନି କରେ
ସ୍ୟମନ୍ତକ ମଣି ସୁନ୍ଦର ଦିଶେ ଭାଳରେ ।
ଚରଣରେ ନୂପୁର ଶୋଭଇ ମଣିମୟ
ଆଗରେ ଅଛି ଅରୁଣ ବିନତା ତନୟ ।
ଉଚ୍ଚୈଃଶ୍ରବା ମୂଳେ ସପତ ଅଶ୍ୱ ଯୋଚି
ବାଗ ଦଉଡ଼ି ଧରି ବାହାଇ ନେଉଅଛି ।
ବ୍ରହ୍ମଋଷିମାନେ ଅଛନ୍ତି ତହିଁ ବସି
ଅପସରୀ ବିଦ୍ୟାଧରୀ କିନ୍ନରୀ ସୁକେଶୀ ।
ଗନ୍ଧର୍ବ ବିଦ୍ୟାଧରୀ କିନ୍ନର ସହିତେ
କାଳ ଅନୁସାରେ ଅଛନ୍ତି ସେ ରଥେ ।
ଆସ୍ଥାନରେ ପୂରିତ ଛାୟା ଦେବୀର ପତି
ଏମନ୍ତ ସମୟରେ ମିଳିଲା ମାରୁତି ।
ନିରେଖି ଚାହିଁଲା ନୁହଇ ସେ ଫଳ
କ୍ଷୁଧାରେ ଆରତ ପବନର ବାଳ ।
ସୂର୍ଯ୍ୟଙ୍କୁ କହିଲା ମୋତେ ଦିଅ ତୁ ଆହାର
ନୋହିଲେ ମୋର ସଙ୍ଗେ କର ତୁ ସମର ।
ଆଦିତ୍ୟ କହିଲେରେ ପାମର କପି ଛାର
ଆମ୍ଭଙ୍କୁ କି ରୂପେ ଆସି ମାଗୁଛୁ ଆହାର ।
ଆମ୍ଭେ ଯେ ସପତ ଦ୍ୱୀପର ଅଧିପତି
ଷାଠିଏ ଦଣ୍ଡରେ ପୃଥିବୀ ବୁଲୁଁ ନିତି ।
ଆମ୍ଭ ଉଦୟ ଦେଖି ଜଗତ ଜନ ସୁଖୀ
ସମସ୍ତ ଜୀବମାନଙ୍କର ମୁହିଁ ଆଖି ।
ମୁହିଁ ଯେ ଅଟଇ ଜଗତ ଅଧିକାରୀ
ମୋହର ତେଜେ ଦୂର ହୁଏ ବିଭାବରୀ ।
ନିଲକ୍ଷଣ କପିରେ କିଛି ତୁ ନ ଜାଣୁ
ଇତର ଜନ ପରାୟ ମୋତେ ତୁହି ମଣୁ ।

ଏହା ଶୁଣି ହନୁମନ୍ତ ବଇରାଗ ପାଇ
ଆଦିତ୍ୟ ଉପରକୁ ପଡ଼ିଲାକ ଡେଇଁ ।
ବୋଇଲା ତୁ ଯେବେ ଅଟୁ ଜଗତ ଈଶ୍ୱର
କ୍ଷୁଧା ଆରତରେ ତନୁ କମ୍ପଇ ମୋହର ।
ଦିଅ ତୁ ଆହାର ତୋଷି ବି ମୁଁ ପିଣ୍ଡ
ନୋହିଲେ ତୋତେ ମୁଁ ନ ଛାଡ଼େ ମାରତଣ୍ଡ ।
ଏତେ ବୋଲି କ୍ରୋଧରେ ଲାଙ୍ଗୁଡ଼ ବେଢ଼ାଇ
ଆଦିତ୍ୟ ଉପରକୁ ପଡ଼ିଲାକ ଡେଇଁ ।
ନିବିଡ଼ରେ ଲାଙ୍ଗୁଡ଼ ବାନ୍ଧିଲା ଆଛା କରି
ବିକଳରେ ଦିନକର ତୁମ୍ଭଙ୍କୁ ସୁମରି ।
ତାହା ଜାଣି ତୁମ୍ଭେ ଗଲ ଶଚୀସାଇଁ
ବଜ୍ରଶର ବିନ୍ଧିଲ ପାବନୀକି ତହିଁ ।
ଦିବାକର ଦେବତାଙ୍କୁ ମୁକୁଳାଇ ଦେଲ
ଏବେ ସେ କଥାକୁ କିପରି ପସୋରିଲ ।
ତୁମ୍ଭର ବଜ୍ରଘାତରେ ହନୁମନ୍ତ ମଲା
ତାହା ଦେଖି ପବନ ଦେବତା କୋପ କଲା ।
ଜଗତ ଜନ୍ତୁଙ୍କର ନିରୋଧିଲା ଶ୍ୱାସ
ଦେଖି ଦେବତାମାନେ ପାଇଲେକ ତ୍ରାସ ।
ପବନର ଉପ୍ରୋଧେ ସମସ୍ତ ଦେବେ ଗଲେ
ଅଞ୍ଜନାର ନନ୍ଦକୁ ପ୍ରାଣ ଦାନ ଦେଲେ ।
ଶିରପରେ ଆମ୍ଭଙ୍କୁ ବସାଇଲେ ନେଇ
କେଶପରେ ଭଗବତୀ ଆପଣେ ବସଇ ।
ନୟନେ ଚନ୍ଦ୍ରମା ନାସାରେ ମରୁତ
ଗଙ୍ଗା ଯମୁନା ବେନି ଶ୍ରବଣରେ ସ୍ଥିତ ।
ଅଷ୍ଟ ବସୁ ରହିଲେ ଦନ୍ତରେ ବାସ କରି
କପୋଳରେ ଅନଳ କନ୍ଧରେ ଦେବୀ ଶିରୀ ।
ଗନ୍ଧର୍ବଗଣ ତାର ଗଳାରେ ଯେ ରହି
ଯକ୍ଷଗଣ ବକ୍ଷସ୍ଥଳ ଆବୋରିଲେ ଯାଇ ।
ପୃଷ୍ଠଭାଗେ ମଦନ ଅପସରାଗଣ
ବ୍ରହ୍ମ ଋଷିମାନେ ତାର ବିଜେ କଲେ ମନ ।
ଚେତନାରେ ଚେତି ସେ ବିଜେ କଲେ ହରି
ଯୋଗସିଦ୍ଧଗଣ ଆଚରଣକୁ ଆଚରି ।
ଦୁଇ ବାହାରେ ତାର ରହିଲେ ଜନ୍ତୁରାଜ
କଟୀରେ ଶିବ ବିଜେ ସୁଗୁଣ ଦିବ୍ୟ ତେଜ ।
କୁବେର ରହିଲା ତାର କୁକ୍ଷି ଦେଶ ଧରି
ଖଗରାଜ ରହିଲା ଲଙ୍ଗୁଳ ଆବୋରି ।
ବିଶ୍ୱଦେବ ରହିଲେ ନଖରେ ତାହାର
ବରୁଣ ଦେବତା ଯେ ରହିଲେ ପାଦର ।
ତେତିଶକୋଟି ଦେବତା ଆବର ଯେତେ ଗିରି
ସମସ୍ତେ ହନୁମାନକୁ ରହିଲେ ଆବୋରି ।

ମୁକୁଟ କୁଣ୍ଡଳ ଯେ ପଦକ ହାର ଦେଲେ
କପିଇନ୍ଦ୍ର ବୋଲି ସର୍ବେ ଅଭିଷେକ କଲେ ।
ଏତେ କଥା ମାନ ତୁମ୍ଭେ ଥାଇ ଦେଖିଥିଲ
ଏବେ କିମ୍ପା ବାସବ ସେ କଥା ପାସୋରିଲ ।
ଅଦୋଷେ ଆଦିତ୍ୟଙ୍କୁ କରିଲା ବନ୍ଧନ
ତେଣୁ ଏହାକୁ ବାନ୍ଧିଲା ରାବଣ ନନ୍ଦନ ।
କଲା କଥାମାନ ଯେ କେବେ ହେଁ ଆନ ନୁହେଁ
ଯେ ଯାହା କରିଥାଇ ଅବଶ୍ୟ ଭୋଗ ସିଏ ।
ଏଥେ ଯେବେ ହନୁମନ୍ତ ବନ୍ଦି ନ ପଡ଼ନ୍ତା
ଏତେବଡ଼ ପୁରକୁ କେ ଅନଳେ ଦହନ୍ତା ।
ରାମଚନ୍ଦ୍ର ବିଜେ କଲେ ହେବ ରଣ ଘୋର
ତେବେ ସେ ଭାଙ୍ଗିବ ଦର୍ପ ରାବଣର ।
ଲଙ୍କାଗଡ଼ ପୋଡ଼ି ଦେଇ ସିନ୍ଧୁ ହେବ ପାର
ବାରତା କହିବ ରାମଙ୍କ ଛାମୁର ।
ଏହାକୁ ସାମାନ୍ୟ ବୋଲି ନମଣ ସୁନାଶିର
ବିଷ୍ଣୁ ଅଂଶ ମହାଭକ୍ତ ନିର୍ମଳ ଶରୀର ।
ହରିହର ଅଂଶରେ ଏ ପବିତ୍ର କଳେବର
ତ୍ରିପୁର ବିଜୟୀ ଚାରିଯୁଗରେ ଅମର ।
କମଳା ବିଜୟ ଏହାର କନ୍ଧର
ଏ ମରିବ ବୋଲି ସଂଶୟ ନ କର ।
ଏକା ଏ ଯାହା କରି ପାରିବ ଏ ପୁରୀ
ତିନିପୁର ଲୋକେ ତାହା ନ ପାରିବେ କରି ।
ମନରୁ ସଂଶୟ ତୁମ୍ଭେ ଛାଡ଼ ଶଚୀକାନ୍ତ
ଲୟକର ଯାହା କହଇ ହନୁମନ୍ତ ।
ଏମନ୍ତ ବିଚାରି ବାସବ ବିଧାତା ବେନି ଜନ
ଦେଖନ୍ତି ଜଗତି ତଳେ ଅଛଇଁ ହନୁମାନ ।
ରାବଣ ପଚାରଇ ଏ ଏବେ ଥିଲା କାହିଁ
ମେଘନାଦ କହଇ ଶୁଣ ଲଙ୍କସାଇଁ ।
ଅଶୋକ ବିପିନକୁ ଏ କଲା ଛାରଖାର
ମଧୁବନରୁ ବୃକ୍ଷ ଭାଙ୍ଗିଲା ଅପାର ।
ତୋଟାଦ୍ୱାରେ ତ୍ରୋଣା ଖମ୍ଭ ପରେ ବସିଥାଇ
ଅନେକ ସଇନ ତୋର ମାଇଲା ଗୋସାଇଁ ।
ଉତ୍ତମ ଜନମାନ ଅନେକ ମାଇଲା
ଏ ପାପି କପି ହସ୍ତେ ଅକ୍ଷୟ ଭାଇ ମଲା ।
ତା ଶୁଣି ଲଙ୍କପତି ପାଇଲା ମନେ ବ୍ୟଥା
ହନୁମାନ ମୁଖ ଚାହିଁ ପୁଛେ ଦଶମଥା ।
ଆରେ ଆରେ ବାନର ଅଇଲୁ ତୁ କାହୁଁ
ଆମ୍ଭେ ଯେ ଅସୁର ନରବାନରଙ୍କୁ ଖାଉ ।
ଏକତା ତୋର ମନେ ନ ହେଲାରେ ଭୟ
ସିନ୍ଧୁ ଲଙ୍ଘି ଅଇଲୁ କି କାରଣେ କହ ।

ଏଡ଼େ ଦୁର୍ଜୟ ଗଡ଼େ ପଶିଲୁ କିମ୍ପାଇଁ
କପି ପାମରରେ ତୋର ପ୍ରାଣକୁ ଭୟ ନାହିଁ ।
କେ ତୋହର ପିଅର କେ ତୋହର ମାତା
କେହୁ ଅଟଇ ତୋର ଇଷ୍ଟ ଯେ ଦେବତା ।
ଅଶୋକ ବନକୁ ତୁ ଭାଙ୍ଗିଲୁ ପାମର
ମଧୁବନ ତୋଟାକୁ କଲୁ ଛାରଖାର ।
ତୋଟାଳିଆମାନଙ୍କୁ ତୁହି ନାଶ କଲୁ
କିଙ୍କରଗଣଙ୍କୁ ଅଯଥା ନାଶିଲୁ ।
ଶାଳକଗଣଙ୍କୁ କଲୁ ତୁ ବିନାଶ
ପାଞ୍ଚ ସେନାପତିଙ୍କୁ ମାଇଲୁ ନୃଶଂସ ।
ଜମ୍ବୁ ମାଳିକି ମୋର ତୁହି କଲୁ ହତ
ଆବର ମାଇଲୁ ମୋର ଅକ୍ଷୟ ନାମେ ସୁତ ।
ଅଠରଗଣ୍ଡା ପୁତ୍ରରେ ଅଟଇ ସେ ସାନ
ବୀରପଣେ ଦିଗପାଳେ ନୁହନ୍ତି ସମାନ ।
ଅଲିଅଳ ପୁତ୍ରକୁ ମାଇଲୁରେ ଦୁଷ୍ଟ
କି କାରଣେ ଗଡ଼େ ପଶି କଲୁ ଏତେ ନଷ୍ଟ ।
କେ ତୋତେ ରକ୍ଷା କରିବ ଏଠାରେ ପୁଣି
ଦଶଗ୍ରୀବ ବଚନେ ହନୁ କହେ ବାଣୀ ।
ସୁଗ୍ରୀବ ରାଜା ହେଲେ କିଷ୍କିନ୍ଧ୍ୟାରେ ଯାର
ତାହାର ଭଉଣୀଟି ଅଟେ ମାତା ମୋର ।
ପିତା ମୋର କେଶରୀ ଶୁଣ ଦେଇ ମନ
ବେନି କୁଳ ନିଷ୍କଳଙ୍କ ଅଟଇ ପ୍ରମାଣ ।
ତୋର ପରି ଚୋରରେ ନ ଦେଖେ ତ୍ରିଜଗତ
ମୁହିଁଟି ହନୁମନ୍ତ ଶ୍ରୀରାମଙ୍କ ଦୂତ ।
ପଞ୍ଚବଟୀକି ଯାଇ ସୀତାଙ୍କୁ କଲୁ ଚୋରି
ତାଙ୍କୁ ଖୋଜିବାକୁ ମୋତେ ପେଶିଲେ ଚାପଧାରୀ ।
ମାୟା ମୃଗକୁ ମାରିବାକୁ ରାମ ଗଲେ
ସୀତାଙ୍କୁ ଚୋରି କରି ଆଣିଲୁ ତୁ ଭଲେ ।
ବାହୁଡ଼ି ଆସି ରାମ ନ ଦେଖିଲେ ସୀତା
ଜଟାୟୁଷ କହିଲା ସିଦ୍ଧାନ୍ତ ବାରତା ।
ବାର୍ତ୍ତା ପାଇ ତହୁଁ ରାମ ଲକ୍ଷ୍ମଣ ଚଳିଲେ
ଋଷ୍ୟମୁକ ପର୍ବତରେ ସୁଗ୍ରୀଙ୍କୁ ଭେଟିଲେ ।
ସୁଗ୍ରୀବର ସଙ୍ଗେ ରାମ ମଇତ୍ର ହୋଇଲେ
ମଇତ୍ର ଛଳେ ପ୍ରଭୁ ବାଳିକି ବଧ କଲେ ।
ରାବଣ ବୋଇଲେ କିମ୍ପା ମାଇଲା ବାଳିକି
ରାମସଙ୍ଗେ ବାଳିବୀର ବିବାଦ କଲାକି ।
ହନୁ ବୋଇଲା ବାଳି ହରିଲା ଭାଇ ବୋହୂ
ସେହି ଦୋଷରେ ତାକୁ ମାଇଲେ ରାମ ରାହୁ ।
ବାଳିକି ମାରିଣ ତା ଘରଣୀ ତାରାକୁ
ସୁଗ୍ରୀବ ସଙ୍ଗେ ଅଭିଷେକ କଲେ ତାକୁ ।

ତଦନ୍ତେ ରାମଚନ୍ଦ୍ର କହିଲେ ସୁଗ୍ରୀଙ୍କୁ
ରାବଣ ଚୋରୀ କରି ନେଲା ମୋ ପ୍ରିୟାଙ୍କୁ ।
ଲଙ୍କାର ରାବଣକୁ କରିବି ମୁଁ ନାଶ
ପୁତ୍ର ନାତି ସହିତେ ତାହାର ସବଂଶ ।
ତାହାର ଘରଣୀକି ଆନକୁ ଦେବି ନେଇ
ତେବେ ସେ ଦାରାବୈରୀ ଋଣ ସୁଝିବଇଁ ।
ସୁଗ୍ରୀବର ବୋଇଲେ ସୈନ୍ୟ ଘେନିଯିବା
ଦୂତ ପେଶି ଆଗେ ସୀତାଙ୍କୁ ଠାବ କରାଇବା ।
ଏହିପରି ଶ୍ରୀରାମ ସୁଗ୍ରୀବ କଥା ହେଲେ
ଅଙ୍ଗଦକୁ ପେଶି ବାନର ଭାଲୁ ଅଣାଇଲେ ।
ନଉସାଗର ବାନର ଭାଲୁ ଏବେ ଠୁଳ
ଚାରି ଦିଗକୁ ଦୂତ ପେଶିଲେ ରଘୁବାଳ ।
ତିନିଦିଗରୁ ଦୂତ ଆସି ଜଣାଇଲେ
ରାବଣ ନେଲା ବୋଲି ସବୁଠୁଁ ଶୁଣିଲେ ।
ଦକ୍ଷିଣ ଦିଗକୁ ଆମ୍ଭେ ଆସିଛୁଁ ଅଷ୍ଟବୀର
ଆମ୍ଭେ ସଙ୍ଗେ ଅଛନ୍ତି ବାଳିଙ୍କ କୁମର ।
ଷଡ଼ମାସ ହେଲା ଖୋଜିଲୁଁ ବହୁ ସ୍ଥାନ
କେଉଁଠାରେ ନ ପାଇଲୁଁ ସ୍ୱତୀଙ୍କ ସନ୍ଧାନ ।
ଜଟାୟୁଷଙ୍କ ଭାଇ ସମ୍ପାତି କହିଲା
ଜନକ ତନୟାଙ୍କୁ ରାବଣ ଘେନି ଗଲା ।
ସେଠାରୁ ସାତବୀର ରହିଲେ ସିନ୍ଧୁକୂଳେ
ସାଗର ଲଙ୍ଘି ମୁଁ ଅଇଲି ବାହୁବଳେ ।
ପ୍ରଥମେ ବିଲଙ୍କାରେ ହୋଇଲି ପ୍ରବେଶ
ସେଠାରେ ଖୋଜିଣ ନ ପାଇଲି ସନ୍ଦେଶ ।
ସେଠାରୁ ଜ୍ୟୋତିଲଙ୍କାରେ ପ୍ରବେଶ ହୋଇଲି
ସେ ପୁରେ ନ ଦେଖିଣ ତହୁଁ ବାହୁଡ଼ିଲି ।
ସୁଲଙ୍କାରେ ପ୍ରବେଶ ହେଲେ ଯାଇ ପୁଣ
ନ ପାଇଲି ପ୍ରତ୍ୟେକ ଘରକୁ ଖୋଜିଣ ।
ସେଠାରୁ ଅଲଙ୍କା ଗଡ଼କୁ ଚଳିଗଲି
ଶତେ ଯୂଣ ନଗର ଖୋଜି ନ ପାଇଲି ।
ସେଠାରୁ ଅଇଲି ଲଙ୍କାଗଡ଼ ପୁଣ
ପ୍ରତି ଘର ଖୋଜି କାହିଁ ନ ପାଇଲି ଜାଣ ।
ସୀତା ଅଛନ୍ତି ଲୋକଙ୍କ ମୁଖୁଁ ଶୁଣିଲି
ତୋର ପୁତ୍ର ନାତିଙ୍କ ଘର ମାନ ଖୋଜିଲି ।
ଅକ୍ଷୟ କୁମରର ନାରୀଙ୍କି ରାଣ୍ଡ କଲି
ମୋର ହସ୍ତେ ମରିବ ସଙ୍କେତ ଜାଣିଲି ।
କୁମ୍ଭକର୍ଣ୍ଣକୁ ଉତ୍ତର ମୁଖରେ ଶୁଆଇ
ମିଛ ହେଲେ ଏକଥା ଦେଖ କିନା ଯାଇ ।
ତୋର ପୁରେ ପଶିଣ ଦେଖିଲି ତୋତେ ପୁଣ
ମନ୍ଦୋଦରୀ ରାଣୀ ଶୋଇଥିଲା ତୋ କୋଳେଣ ।

ରାଣୀକି ମାରିଣ ଚେତା କରାଇଲି
ତାର ମୁଣ୍ଡ ବାଳକୁ ଧରି ଝିଙ୍କି ଦେଲି ।
ରାବଣ ବୋଇଲା ମନ୍ଦୋଦରୀ କି ଦୋଷ କଲା
ସୀତାକୁ ଆଣିବାବେଳେ ମୋତେ ମନା କଲା ।
ମାରୁତି ବୋଇଲା ନ ମାନିଲେ ତାର କଥା
ତେଣୁ ତାହାକୁ ମୁହିଁ କରି ଦେଲି ଚେତା ।
ସୀତାଙ୍କୁ ଭେଟିଲାବେଳେ କହିଲେ ଠାକୁରାଣୀ
ଚଉଦ ମାସେ ରାବଣକୁ ମାରିବେ ରଘୁମଣି ।
ସେ କଥାକୁ ତୁ ଲୟ ନ କଲୁଟି ପୁଣ
ତେଣୁ ସେ ଉପଦ୍ରବ ଘଟିଲାଟି ଜାଣ ।
ସେଠାରୁ ଅଶୋକ ବନକୁ ମୁଁ ଗଲି
ବଇଡୁର୍ଯ୍ୟ ମଣ୍ଡପରେ ସୀତାଙ୍କୁ ଦେଖିଲି ।
ମାୟାରେ ଖୂର୍ପରୂପ ହୋଇଣ ସେ ପୁଣ
ବୈଦୁର୍ଯ୍ୟ ଓରାପରେ ବସିଲି ମୁଁ ଜାଣ ।
ଦେଖିଲି ରାମ ନାରୀ ଅସ୍ଥିରୂପ ହୋଇ
ବିଚାରିଲି ଜାନକୀ ଏ ହିତ ଅଟଇ ।
ଏମନ୍ତ ସମୟରେ ତୁହି ଯାଇ ମିଳି
ସୀତାଙ୍କୁ କଥା ଯେ କହିଲେ ଖଣ୍ଡିଆଳି ।
ତେଣୁ ସେ ରାମନାରୀ ଅତି କ୍ରୋଧ ହେଲେ
ପୋଡୁ ତୋ ଲଙ୍କାଗଡ଼ ବୋଲିଣ ବୋଇଲେ ।
କାଲିଠାରୁ ତିନିଦିନ ହେଉ ଗଣ୍ଡଗୋଳ
ତହିଁରେ ମରନ୍ତୁ ତୋ ପୁତ୍ରାଦି ସକଳ ।
ମୋହର ବଚନ ଅନ୍ୟଥା ନୋହିବ
କାଲିଠାରୁ ଲଙ୍କାରେ ଅର୍ନଥ ଉପୁଜିବ ।
ସେ କଥାକୁ ଶୁଣିଣ ଫେରିଲୁ ନିଜପୁର
ମଦ ମାଂସ ଖାଇବାରେ ପାସୋର ଗଲା ତାର ।
ଦୁର୍ଗୁଣ କଥା ସାରି କହିଲା ଜାନକୀଙ୍କି
ତେଣୁ ସେ ରାତ୍ରିରେ ମୁଁ ମାରିଲି ସାରୀକି ।
ମଧୁବନ ତୋଟାକୁ ଭାଙ୍ଗିଲି ଖିଆଲେ
ଜଗୁଆଳ ଦଇତୁଣୀ ତୋ ଆଗେ କହିଲେ ।
ଜାନକୀ ଶିକ୍ଷାରେ ମର୍କଟ ଭାଙ୍ଗେ ମଧୁବନ
ସେ କଥା ଶୁଣି ତୁ ହେଲୁ କୋପ ମନ ।
ବିଧାତା ବୋଇଲେ ଏଠାକୁ ତାକୁ ଆଣ
କେଉଁ ଦେଶେ ଘର ତାର ପଚାରିବା ପୁଣ ।
ତେଣୁ ବିଧାତାର ବୋଲ ତୁ ନ ମାନିଲୁ
ଗରବ କଥା କହିଣ ବହୁ କ୍ରୋଧ ହେଲୁ ।
ବିଷ୍ଣୁ ଦ୍ୱାରପାଳରେ ଏତେକ ଗର୍ବ ତୋର
ଅଳପ ଦିନେ ତୋତେ ମାରିବେ ରଘୁବୀର ।
କାଳ ପୂରିବାବେଳେ ନ ରହେ ଆୟତ୍ତ
ଦେଖିବା ତୋତେ କିପରି ରଖିବ ବିଶ୍ରବା ତାତ ।

ଚଉଦଗଣ୍ଡା ଯୁଗ ତୋତେରେ ବୟସ
ରାମଙ୍କୁ ଅଟଇ ଏବେ ବୟସ ଅଠାଇଶ ।
ଆଜି ନିଶ୍ଚେ ମୁହିଁରେ ବିଧ୍ୱଂସିବି ଲଙ୍କା
ତୋର ଦଶ ମୁଣ୍ଡକୁ ଛିଣ୍ଡାଇବି ଏକା ।
ଇନ୍ଦ୍ରଜିତ କୁମରକୁ ଦେବି ଏବେ ମାଡ଼
ଜୀଇଥିବା ଯାକ ତାର ବଥାଇବ ହାଡ଼ ।
ସୁବର୍ଣ୍ଣମୟପୁର ଅଙ୍ଗାର କରିଦେବି
ତେବେ ସିନା ବୀର ହନୁମନ୍ତ ବୋଲାଇବି ।
ଆଜିର ମଧ୍ୟରେ ମୁଁ ସିନ୍ଧୁ ଡେଇଁଯିବି
ଶ୍ରୀରାମଙ୍କ ଛାମୁରେ ବାରତା କହିବି ।
ତେବେ ସିନା ଶ୍ରୀରାମ ଆସିବେ ସିନ୍ଧୁ ଡେଇଁ
ଆଜକୁ ତିନି ପକ୍ଷରେ ମରିବୁ ଲଙ୍କସାଇଁ ।
ହନୁ ବଚନ ଶୁଣି ରାବଣ କ୍ରୋଧ ହୋଇ
ବିଂଶ ଲୋଚନରେ ତରାଟି ତାକୁ ଚାହିଁ ।
ଆରେ ଆରେ ବାନର ତୁ ଗର୍ବ କଥା କହୁ
ମାନବ ତପସି କିରେ ବୋଲାଏ ମହାବାହୁ ।
ସାମାନ୍ୟ ଭରସା କି ବୋଲିବା ତୋହର
ଋକ୍ଷବାନର ଘେନି ମାରିବ ରଘୁବୀର ।
ମୁହିଁଟି ଅଟଇ ରାଜାଧି ରାଜେଶ୍ୱର
ତୁହି ତ ନିଲକ୍ଷଣ ବନର ବାନର ।
ମନ୍ଦର ପର୍ବତ ଉପରେ ବସି ଥାଅ
ଅସୁରଙ୍କୁ ଦେଖିଲେ ଦୂରକୁ ପଳାଅ ।
ନଖ ମୁଖ ନାସିକାରେ ଦିଶେ ହିନିମାନ
ପାପୀ ଜୀବଗୋଟା ତୁରେ ଦେଖିବାକୁ ହୀନ ।
ତୋତେ ଅବା କହିଲେରେ ଆମ୍ଭର କି ଯଶ
ଅକଥାକୁ ଛଳ କଲେ ମିଳେ କି ପୌରୁଷ ।
କାହିଁରେ ଶ୍ରୀରାମ ସେ କାହାର ତନୟେ
ପାପୀ ଜୀବ ତୁରେ ତୋତେ ଦେଖି ନ ଯୋଗାଏ ।
ଆରେ ଆରେ ରାବଣ ଶୁଣ ମୋ ବଚନ
ଆପଣା ମନେ ମନେ ଶଶା ସିଂହ ହେଉ ପୁଣ ।
କାହିଁକି ଜାଣିବୁ ତୁରେ ଶ୍ରୀରାମ କାହିଁର
ଯାହାର ହସ୍ତେ ମଲେ ଖର ଦୂଷଣ ତୋହର ।
ତ୍ରିଶିରା ଭାଇ ତୋର ଯାହାଙ୍କ ହସ୍ତେ ମଲା
ସୂର୍ପଣଖା ଭଉଣୀର ନାକ ଯେ କାଟିଲା ।
ସେ ରାମଙ୍କୁ ତୁରେ ଜାଣିବୁ କାହୁଁ ପୁଣି
ଯେଉଁ ରାମଙ୍କ ସୀତାଙ୍କୁ ଚୋରି କଲୁ ଜାଣି ।
ସେ ରାମ ଆଗରେ ଯେବେ ବନେ ଥାନ୍ତୁ ପଡ଼ି
ଦଶ ମୁର୍ଦ୍ଧନୀ ତୋର ପଡ଼ିଥାନ୍ତା ଛିଡ଼ି ।
ମାୟାମୃଗ ଦେଖିଣ ଜାନକୀ ଶ୍ରଦ୍ଧା କଲେ
ତେଣୁ ସେ ଶ୍ରୀରାମ କୁରଙ୍ଗୀ ମାରିଗଲେ ।

ସେଠାରୁ ବଢ଼ିଲା କି ବଡ଼ିମା ତୋହର
ଏବେ ପଚାରୁ ମୋତେ ଶ୍ରୀରାମ କାହିଁର ।
ମୋର ହସ୍ତେ ମଲା ଯେଣୁ ଅକ୍ଷୟ କୁମର
ମୋତେ ପଚାରିବା ତୋର ଅଟଇ ବେଭାର ।
ମୋତେ ତୁହି ସାମାନ୍ୟ ପରାଏ କରି ମଣୁ
ମୋହର ମହିମା ତୁରେ ଜାଣିଣ ନ ଜାଣୁ ।
ଏ ଭୁଜ ଦଣ୍ଡ ଧରିଣ ମାରିବି ଯାହାକୁ
ତତ୍‌କ୍ଷଣେ ଯମ ବାନ୍ଧି ନେବଇ ତାହାକୁ ।
ମେରୁ ସହିତେ ମୁଁରେ କରିପାରେ ଗୁଣ୍ଡା
ଦଶମୁଣ୍ଡ ମୋଡ଼ି ତୋର କରିବିରେ ଲଣ୍ଡା ।
ତୋତେ ମାରି ସୀତାଙ୍କୁ ରାମପାଶେ ଦେବି
ମନ କଲେ ଲଙ୍କାକୁ ଉପାଡ଼ି ଘେନି ଯିବି ।
ଶୁଣିଣ ରାବଣେଶ୍ୱର ହସିଣ ବୋଇଲା
ଯାହା ତୁ ବୋଇଲୁରେ ସେ କଥା ଭଲ ହେଲା ।
ସେ ରାମ କିମ୍ପାଇଁରେ ଆସିବ ଦୁଃଖ ସହି
ତୁ ଯେବେ ସଂଗ୍ରାମରେ ଏଥି ଥାଇ ।
ଏ ବଚନ ଶୁଣିଣ ବୋଲଇ ମାରୁତି
ଯାହା କହିଲୁ ସେଥିରେ ଅଛି ପୁଣି ଗତି ।
ବାଳିକି ମାରି ଶ୍ରୀରାମ ସୁଗ୍ରୀବେ ରାଜ୍ୟ ଦେଲେ
ମାଲ୍ୟବନ୍ତ ପର୍ବତେ ଚତୁର୍ମାସ୍ୟା ରହିଲେ ।
ସଙ୍ଗରେ ଅଛନ୍ତି ଲକ୍ଷ କପିବଳେ
ପୃଥିବୀ ନ ଦିଶଇ ସୈନ୍ୟଙ୍କ ଗହଳେ ।
ଅଙ୍ଗଦ ନଳନୀଳ ଗନ୍ଧମାରଦନ
ସୁଷେଣ ତାରାକ୍ଷ ଯେ ମାହିନ୍ଦ୍ର ଲୋଚନ ।
ବସନ୍ତ ଶତବାଳୀ ଶଉରୀ ସେନାପତି
ଏକକୁ ଆରେକ ଯେ ପ୍ରତିଜ୍ଞା କରନ୍ତି ।
କେ ବୋଲଇ ଲଙ୍କାଗଡ଼ ବସିବାକୁ ମାଡ଼ି
କେ ବୋଲଇ ଲଙ୍କାଗଡ଼ ଆଣିବା ଉପାଡ଼ି ।
କେ ବୋଲଇ ସମୁଦ୍ରକୁ ଶୋଷି ଦେବାହେଲେ
କେ ବୋଲଇ ଅସୁରଙ୍କୁ ମାରିବା ବାହୁ ବଳେ ।
ବାଳି ରାଜାଙ୍କ ନନ୍ଦନ ଅଟନ୍ତି ଅଙ୍ଗଦ
ବୋଇଲେ ରଘୁନାଥ ହେ ନ କର ତୁମ୍ଭେ ଦ୍ୱନ୍ଦ୍ୱ ।
ରାବଣ ଦଶ ମଣ୍ଡକୁ ମୁଁ ଆଣିବି ଛିଣ୍ଡାଇ
ତାହା ଶୁଣି ପ୍ରତିଜ୍ଞା କଲେ ରଘୁସାଇଁ ।
ଦକ୍ଷିଣ କରକୁ ଭୂମିରେ ସେ ମାରି
ବୋଇଲେ ମୁଁ ମାରିବି ମୋ ଦାରା ବିଇରୀ ।
ମୋର ଘରଣୀକି ସେ ନେଇଛି ଚୋରାଇ
ମୁହିଁ ତାକୁ ମାରିବି ଅନେକ ଦୁଃଖ ଦେଇ ।
ଏମନ୍ତ ପ୍ରତିଜ୍ଞା କରିଛନ୍ତି ରଘୁପତି
ତେଣୁ କରି ମୋତେ ମୁଁ ନ ମାରେ ଏ ଘାନ୍ତି ।

ନୋହିଲେ ଜଗତିରେ କି ତୁହି ଥାନ୍ତୁ ବସି
ଏ ବଚନ ଶୁଣିଣ ରାବଣେଶ୍ୱର ହସି ।
· ବାଇକି ବାତୁଳ ତୁହି ଅଟୁରେ ବାନର
ଏଠାରେ ନିଶ୍ଚେ ମୃତ୍ୟୁ ହୋଇବ ତୋହର ।
ଏତେ ବଳ ଯେବେ ଅଛି ତୋର ଦେହି
ବାଳୁତ ପୁଅ ବାନ୍ଧି ଆଣିଲା କିମ୍ପାଇଁ ।
ସେତେବେଳେ ମୁକୁଳି ନ ଗଲୁ କିମ୍ପାଇଁ
ଯତନେ ବିଧାତା ତୋତେ ଆଣିଛି କଢ଼ାଇ ।
ଏଡ଼େ ବାନ୍ଧଣାରେ ତୋର ଗରବ ନ ସରେ
ନିର୍ଲ୍ଲଜ ଦେହ ତୋର କେମନ୍ତେ ଧରିଛୁରେ ।
ଦଶରଥ ନନ୍ଦନ ତ ଅଟଇ ଅଜ୍ଞାନ
ଜଣା ଯାଉଅଛି ତାର ପାରିବାର ପଣ ।
ରାଜପଣ ଛାଡ଼ି କରି ବନବାସ ଗଲା
ବୁଦ୍ଧିବଳ ପ୍ରାକର୍ମ ସବୁ ତ ନାଶ ଗଲା ।
ରକ୍ଷ ମର୍କଟ ସୈନ୍ୟରେ ମୋତେ କି ହୁଏ ମାରି
ରାଜାଧି ମହାରାଜା ମୁଁ ଲଙ୍କା ଦଣ୍ଡଧାରୀ ।
ଦଶବଦନ ମୋର ଅଟଇ ବିଂଶ କର
ମୋହର ନାମେ ଚମକି ପଡ଼େ ତିନିପୁର ।
ସାନୁଜ କୁମ୍ଭକର୍ଣ୍ଣ କ୍ଷତ୍ରୀୟ ସମ ନାହିଁ
ପୁତ୍ର ମେଘନାଦ ଜିଣିଲା ଶଚି ସାଇଁ ।
ଅଠର ଗଣ୍ଡା କୁମର ତେରଶତ ନାତି
ଏକେ ଏକେ କ୍ଷତ୍ରୀବର ସମସ୍ତେ ଅଟନ୍ତି ।
ଅଜୟ ଲଙ୍କାଗଡ଼ ସମସ୍ତେ ତ କ୍ଷତ୍ରି
ଦେବାସୁର ନରଙ୍କୁ ମୋ ମନରେ ନାହିଁ ଭୀତି ।
ତୁ ହୀନ ପାମରରେ ବଡ଼ିମା ପଣ କହୁ
ଯେଉଁରୂପେ ଅରଖର ଡାଳେ ଡାଳେ ଡେଉଁ ।
ତେମନ୍ତ ପରାଏ ବୁଝି ଅଇଲୁ ନ ଜାଣି
ଏବେ କେ ରହିବ ତୋତେ କହ ତଥ୍ୟବାଣୀ ।
ହନୁମନ୍ତ କହଇ ରାବଣ ମୁଖ ଚାହିଁ
ଯେତେକ କଥା ତୁହୋ କହିଲୁ ଲଙ୍କସାଇଁ ।
ନ ଜାଣିବା ପଣରେ ସବୁ ଅଟେ ତୋର
ଶ୍ରୀରାମଙ୍କୁ ମନୁଷ୍ୟ ପରାଏ ମଣୁ ଛାର ।
ଐରାବତ ଗଜକୁ ହସ୍ତୀ ସଙ୍ଗେ ଲେଖୁ
ଉଚ୍ଚୈଃଶ୍ରବା ଅଶ୍ୱକୁ ଅଶ୍ୱ ସଙ୍ଗେ ରଖୁ ।
ରମାଙ୍କୁ ଯୁବତୀଙ୍କ ସଙ୍ଗେ ସଙ୍ଗେ କରୁ
ଆନ ପର୍ବତଙ୍କ ସଙ୍ଗେ ସମ କରୁ ମେରୁ ।
ମୁହିଁ ସେ ହନୁ ତୁ କପି ବୋଲୁ ମୋତେ
ଆହୁରି କଥା ଏକ କହିବି ମୁଁ ତୋତେ ।
ତୁ ଯେବେ କହୁ ପୁତ୍ର ବାନ୍ଧିଲା ମୋହର
ଏକଥା ପୂର୍ବରୁ ଶାପ ଥିଲା ମୋର ।

ଯେବଣ କାଳରେ ମୁଁ ଜନମ ହୋଇଲି
ଖାଇବାକୁ ଆଧାର ମାତାଙ୍କୁ ମାଗିଲି ।
ଆଦିତ୍ୟ ଦେବତାଙ୍କୁ ଦେଖାଇ ଦେଲେ ମାତ
ବୋଇଲେ ଏ ଫଳକୁ ଖାଅ ଯାରେ ସୁତ ।
ତାହା ଶୁଣିଣ ମୁହିଁ ଶୂନ୍ୟରେ ବିକ୍ରମି ଗଲି
ଗଗନବିହାରୀଙ୍କୁ ବାନ୍ଧି ପକାଇଲି ।
ଭୟରେ ସୂର୍ଯ୍ୟଦେବ ଇନ୍ଦ୍ରଙ୍କୁ ସୁମରି
ଐରାବତ ଚଢ଼ିଣ ଅଇଲେ ବଜ୍ରଧାରୀ ।
କ୍ରୋଧରେ ଶଚୀନାଥ ବଜ୍ରେକ ମାଇଲା
ମୋହର ଶରୀରରେ ଆସିଣ ଘାତ କଲା ।
ଜ୍ଞାନଭ୍ରଷ୍ଟ ହୋଇଣ ପଡ଼ିଲି ମୁଁ ଜାଣ
ପିତା ଗଗନେ ବେଗେ ଅଇଲେ ଧାଇଁଣ ।
ଯେଣୁ ଶଚୀନାଥ ଦେଲେ ତାଙ୍କୁ ପୁତ୍ରଚିନ୍ତା
ତେଣୁ ବାୟୁ ନିରୋଧ କଲେ ମୋର ପିତା ।
ଛପନକୋଟି ଜୀବ ଆକୁଳ ହୋଇଲେ
ଜାଣି ତ୍ରିଦଶ ଦେବତା ସେଠାରେ ମିଳିଲେ ।
ବେଦବର ସଦାଶିବ ଯାଇ ତହିଁ ମିଳି
ଇନ୍ଦ୍ର ଦେବତାଙ୍କୁ ସେ ଦେଲେ ବହୁ ଗାଳି ।
ଅମୃତ ଖୁଆଇ ମୋତେ ଚେତା କରାଇଲେ
ଚାରିଯୁଗେ ଅମର ହୁଅ ତୁ ବୋଇଲେ ।
ସକଳ ଦେବତାମାନେ ମୋତେ ତେଜ ଦେଲେ
ସଦାଶିବ ମୋ ଅଙ୍ଗେ ବିଭୁତି ବୋଳିଲେ ।
ତେଣୁ ସେ ବଜ୍ର ଅଙ୍ଗ ହୋଇଲା ମୋହର
ଜଳେ ସ୍ଥଳେ ମରଣ ନାହିଁ ତୁ ହେତୁ କର ।
ସେଠାରୁ ଇନ୍ଦ୍ର ଦେବତା କିରିଟୀ ମୋତେ ଦେଲେ
ଅମୃତ କୁଣ୍ଡଳ ରବି ସମର୍ପିଲେ ।
ଅମୋହ ଚନ୍ଦ୍ରମଣି ଚନ୍ଦ୍ର ମୋତେ ଦେଲେ
ଦେବ ଇନ୍ଦ୍ର କପିଇନ୍ଦ୍ର ବୋଲିଣ କହିଲେ ।
ଯେଉଁ ନାଗ ରାଜାରେ ତୁମ୍ଭଙ୍କୁ ଫାଶ ଦେଲା
ସେ ମୋତେ ଡରଇରେ ନଉକେଶାର ବଳା ।
ଦଶଦିଗପାଳଙ୍କୁରେ ନ ଗଣଇଁ ମୁହିଁ
ଆଉ କଥାମାନଙ୍କୁ ଖାତର ନ କରଇ ।
ମୁହିଁ ଯାଇ ଆଣିବି ଗରୁଡ଼ର ବାଳ ଧରି
ବରୁଣକୁ ଧରି ନେବି ଜାଣ ହେତୁ କରି ।
ଇନ୍ଦ୍ରଙ୍କ ପୁରକୁ ଯିବି ମୁହିଁ ପୁଣ
ଅମୃତ ଆଣିବି କାହାକୁ ନ ଶଙ୍କିଣ ।
ଅଦୋଷରେ ବାନ୍ଧିଲି ମୁଁ ଛାୟାଦେବୀ କାନ୍ତ
ତେଣୁ ମୋତେ ବାନ୍ଧିଲା ତୋ ପୁତ୍ର ଇନ୍ଦ୍ରଜିତ ।
ବିଧାତାର ଲିଖନ କେ କରିବ ଆନ
ଏମନ୍ତ କଥା କିମ୍ପାରେ କହୁ ଦଶାନନ ।

ତୋତେ ଯେ ବିଧାତା ଅନେକ ସୁଖ ଦେଲା
ଶ୍ରୀରାମଙ୍କ ହସ୍ତରେ ମୃତ୍ୟୁକୁ ରଖିଲା ।
କାହାର ବଳେ ତାହା ନୋହିବରେ ଆନ
ମଲାବେଳେ ଗର୍ବ କହୁରେ ଦଶାନନ ।
ଶୁଣି କରି କୋପ କଲା ବିଶ୍ରବା ନନ୍ଦନ
କେନ୍ତେ ଶୁଦ୍ଧରେ ତୁହି କହୁଛୁ ବଚନ ।
ହୀନପଶୁ ହୋଇଣ ତୁ କେତେ କଥା କହୁ
ଜାତିରେ ଅଟୁ ମର୍କଟ ଏଡ଼େ ଗର୍ବ ବହୁ ।
ଏହିକ୍ଷଣି ତୋତେ ମୁଁ କରିବିରେ ନାଶ
କେଉଁଆଡ଼େ ଯିବୁ ତୁରେ କରିଛୁ ସାହସ ।
ହନୁମନ୍ତ ବୋଇଲା ଭାର୍ଜନ ନୋହୁ ତୁହି
ତୋହର ମନକୁ ମୋର କଥା ନ ଯୋଗାଇ ।
ପୂର୍ବର ଦୋଷ ଥିବାରୁ ହୋଇଲି ବନ୍ଧନ
ଆଉ ମୋତେ ବାନ୍ଧିବାକୁ ନୁହେ କେ ଭାର୍ଜନ ।
କ୍ଷୀର ସାଗରବାସୀଙ୍କର ଅଟଇ ମୁଁ ଦାସ
ଅସୁର କୁଳ ତାଙ୍କ ହସ୍ତେ ହେବ ନାଶ ।
ଆଖି ଥାଉଁ ଥାଉଁରେ କଣା ହେଉଅଛ
ସମୁଦ୍ର ଡେଇଁ ଆସିଛି ବୁଝି ନ ପାରୁଛ ।
ଆଜ୍ଞା ଯେବେ ଦେଇଥାନ୍ତେ ଦଶରଥ ସୁତ
ଦଶମୁଣ୍ଡ ମୋଡ଼ି ତୋର ନିଅନ୍ତିରେ ଦୈତ୍ୟ ।
କାହିଁ ତୁ କୁହନ୍ତୁ କଥା ଏତେ ଗର୍ବ କରି
ତୋର ପାଞ୍ଜି ଯମରାଜା ଦିଅନ୍ତାଣି ଚିରି ।
ତୋହର ପରାଏ ହେଲେ କୋଟିଏ ରାବଣ
କୀଟପ୍ରାୟ ସବୁଙ୍କୁ ମୁଁ କରନ୍ତି ମର୍ଦ୍ଦନ ।
ଆଜ୍ଞା ନାହିଁ ସ୍ୱାମୀଙ୍କର ଛେଦିବାକୁ କନ୍ଧ
ଏଥର ସମ୍ଭାଳ ମୋର କ୍ଷ୍ୱାକା ଦଶ କନ୍ଧ ।
ଏ ବଚନ ଶୁଣିଣ ଦଶାନନ କହି
ବଡ଼ଲୋକ ସଙ୍ଗରେ ବସିବା ତୋର ନାହିଁ ।
ସମସ୍ତ କଥା ଛାଡ଼ି ଗର୍ବ କଥା କହୁ
ତୁ ଛାର ବାନର ମୋତେ ଚିହ୍ନୁରେ କାହୁଁ ।
ହନୁମନ୍ତ ବୋଇଲା ଶୁଣ ଲଙ୍କସାଇଁ
ଶ୍ରୀରାମ ଉତାରୁ ଭଲ ଲୋକ ଅଛି କେହି ।
ତୋର ପରି ଭଲ ଲୋକ କାହିଁ ଅଛି ଚୋର
ଚୋର ଖଣ୍ଡ ସବୁଦିନେ ପୃଥିବୀକି ସଲ ।
ତୁ ଭଲଲୋକ ଥିଲେ ମୁଁ କିମ୍ପା ଲଙ୍କା ଆସିଥାନ୍ତି
ମୋର ଭଲପଣ ଥିଲେ ଚୋରକୁ ଓଳଗନ୍ତି ।
ତିନିପୁରେ ଜାଣିଛନ୍ତି ଚୋର ଦଶମଥା
ଆପଣା ରାଜ୍ୟେ କେତେ ବୋଲାଉ ସେରନ୍ତା ।
ରାବଣ ବୋଇଲା ଶୁଣ ଶୁଣରେ ମାଙ୍କଡ଼
ତୋତେ ମାରିବି ଏବେ ଜଣାଯିବ ବଡ଼ ।

ଅକ୍ଷୟ କୁମରକୁ କଲ ତୁହି ହତ
ତେଣୁ ତୋତେ ମାରିବାର ଅଟଇ ଉଚିତ ।
ଏତେ ବୋଲି ରାବଣ ଡକାଇ ପ୍ରଶସ୍ତକୁ
ଆଜ୍ଞା ଦେଲା ବେଗରେ ମାର ଏ କପିକୁ ।
ଡାଳର ଜୀବ ଯାକୁ ବିଶ୍ୱାସ ନ କର
ମାର ମାର ଏହାକୁରେ ବିଳମ୍ବ ନ କର ।
ଏ କପିର ଶିର ଛେଦି ପକାଅ ବୋଇଲା
କର ଦୁଇଯୋଡ଼ି ବିଭୀଷଣ ଜଣାଇଲା ।
ଭୋଦେବ ଲଙ୍କାର ଠାକୁର ଦଶଗ୍ରୀବ
ଦୂତକୁ କେବେ ହେଁ ବଧ ନ କର ହେ ଦେବ ।
ନ ଜାଣି କପି ଯେବେ ଭାଙ୍ଗିଲା ମଧୁବନ
ସେ କଥା ପ୍ରଭାବ ସେ ପାଇଲା ବନ୍ଧନ ।
ଛାଡ଼ିଦିଅ ଏବେ ସେ ଜୀବନ ଘେନି ଯାଉ
ମାଇଲେ କି ଯଶ ପାଇବା ଆମ୍ଭେ ଆଉ ।
ଜଗତଜନମାନେ କହିବେ ମନ୍ଦ ବାଣୀ
ପରନାରୀ ଚୋରାଇ ଆଣିଲା ବିଂଶପାଣି ।
ଖୋଜି ଅଇଲା ଲୋକକୁ ପ୍ରାଣେ ନାଶ କଲା
ମହାରାଜା ହୋଇକରି ଅଧର୍ମକୁ ଗଲା ।
ଜଗତଜନ ମୁଖେ ପାଇବା ଅପବାଦ
ଛାଡ଼ ଛାଡ଼ ଭୋଦେବ ଏକଥା ନୁହେଁ ସିଦ୍ଧ ।
ବିଭୀଷଣ ବଚନ ଶୁଣିଲା ଲଙ୍କପତି
କଟାକ୍ଷ କରି କୋପରେ ଚାହିଁଲା ତରାଟି ।
ତୁରେ ସାନୁଜ କିଛି ନ ଜାଣୁ ଛେଦ ଭେଦ
ଏ କପି ଜୀଇଲେ ପଡ଼ିବ ପ୍ରମାଦ ।
ମାଇଲା ମୋ ଦୁଲଣା ପୁଅ ଯେ ଅକ୍ଷୟ
ପଞ୍ଚ ସେନାପତି ଜମ୍ୱୋମାଳି କଲା କ୍ଷୟ ।
ଲକ୍ଷେ ଷାଠିଏ ସହସ୍ରବଳ ମାଇଲା ମୋର
ହସ୍ତୀଅଶ୍ୱ ଅନେକ ମାଇଲା ପାମର ।
ଦୂତପଣେ ଆସିଥିଲେ କହନ୍ତା ବାରତା
ଏଠାରେ କିମ୍ପାଇଁ ରଣଗୋଳ ସେ କରନ୍ତା ।
ଚୋରଙ୍କର ଧର୍ମ ନୁହେଁ ରଣ କରିବାର
ଯେଉଁ କାର୍ଯ୍ୟେ ଆସିଥିଲା ଯେ କାର୍ଯ୍ୟ ତାର ।
ଯେବେ ରଣକଲା ହେଲା ମୋହର ବଇରୀ
ସନ୍ତୋଷ ମନ କରିବି ଏ ବାନରକୁ ମାରି ।
ଏହାକୁ ଛାଡ଼ି ଦେବାକୁ ବୋଲୁରେ କେମନ୍ତ
ଆପ୍ତହସ୍ତୁ ଗଲେ ଆମ୍ଭେ ହେବାକି ନିଶ୍ଚିନ୍ତ ।
ସମୁଦ୍ର ମଧ୍ୟରେ ଗଡ଼ ଅଟେ ମୋର
ଦୂରୁ ଦେଖି ଡରନ୍ତି ଦେବାସୁର ନର ।
କାହୁଁ ଏ ବାନର ପ୍ରବେଶ ହେଲା ଆସି
ନିଶାରେ ବୁଲିଲା ଏକା ଘରେ ପଶି ।

ମଧୁବନ ଭାଙ୍ଗିଣ ସୈନ୍ୟଙ୍କୁ ନାଶ କଲା
ଅକ୍ଷୟ ମୂଳେ ସେନାପତିଙ୍କୁ ମାଇଲା ।
ଏ ବାନର ଯେବେ ଏଠାରୁ ବରତିବ
ଶତ୍ରୁର ଆଗେ ଯାଇ ବାରତା କହିବ ।
ଛିଦ୍ର ପାଇଲେରେ ଆସିବ ରାମରାଣ
ମନ୍ତ୍ରୀ ହୋଇ ଅଛୁ ତୁ ନାହିଁ ତୋ ଯୋଗ୍ୟପଣ
ଶୁଣିଣ ବିଭୀଷଣ କହଇ ବଚନ
ବ୍ରହ୍ମାର ବୋଲଏ ବେଳେ ନ ମାନୁ ଦଶାନନ ।
ନ ମାନିବା ତୋର ଦିଶିଲା ସମର୍ଥ
ଘରଣୀଙ୍କ ଭାଇଙ୍କୁ କରାଇଲ ହତ ।
ପାର୍ଥ ସେନାପତିଙ୍କ ସଙ୍ଗରେ ସୈନ୍ୟ ଗଲେ
ଅକ୍ଷୟ କୁମାରକୁ ହରାଇଲ ହେଲେ ।
ଏବେ ମୋର ବୋଲ କର ଲଙ୍କସାଇଁ
ଅନେକ ପ୍ରମାଦ ଏ କପି ଦେବଇଁ ।
ଏକା ଗୋଟାଏ ବାନର ରଣ ରଙ୍ଗେ ଭୋଳ
ଇନ୍ଦ୍ରଜିତ ନ ଯାଇଥିଲେ ନୁହନ୍ତା ସମ୍ଭାଳ ।
ଶୁଣିଣ ରାବଣ କ୍ରୋଧରେ ଜର୍ଜର
କିରେ ବିଭୀଷଣ ମୋତେ ଡରାଉ ବାନର ।
ଶୁଣିକରି ମଉନ ହେଲେ ବିଭୀଷଣ
ପ୍ରଶସ୍ତକୁ ଚାହିଁଣ ବୋଇଲା ରାବଣ ।
ଖଡ଼ଗ ଘେନି ଛେଦ ବାନରର ଶିର
ରକ୍ଷା କରନ୍ତୁ ଆସି ରାମ ଲକ୍ଷ୍ମଣ ବୀର ।
ରାବଣ ଆଜ୍ଞାରେ ପ୍ରଶସ୍ତ ବେଗେ ଗଲା
ସାତଗୋଟି ଦଉଡ଼ି ପୁଣି ସେ ଟଣାଇଲା ।
ରାବଣର ଆଗରେ ଇନ୍ଦ୍ରଜିତ ଥିଲା
ପିତାର ଆଗରେ ଯାଇଣ ଜଣାଇଲା ।
ନାଗଫାଶରେ ବାନରକୁ ଅଛି ବାନ୍ଧି
କର ଚରଣ କଣ୍ଠ ଅଣ୍ଟାରେ ଅଛି ଛନ୍ଦି ।
ମଲା ପ୍ରାଣୀଠାରେ ପୁଣି ନ ରହଇ ଶସ୍ତ୍ର
ଫେଡ଼ିବାକୁ ଆଜ୍ଞା ମୋତେ ଦିଅ ଲଙ୍କନାଥ ।
ଶୁଣିଣ ଦଶଗ୍ରୀବ ହୋଇଣ ତୃପତ
ବୋଇଲା ଏକଥାଟି ଅଟଇ ଯୁକତ ।
ଏକେ ସେ ନାଗପାଶ ମେରୁ ସମଗରୁ
ମାରିବା ବେଳରେ ପୁଣ ନୁହ ହନ୍ତକାରୁ ।
ଶୁଣି ମେଘନାଦ ନାଗଫାଶକୁ ସୁମରି
ବୋଇଲା ଆସ କପି ଅଙ୍ଗ ଛାଡ଼ି କରି ।
ଇନ୍ଦ୍ରଜିତ ତୃଣୀରେ ଯାଇ ସମ୍ଭାଇଲା
ନାଗଫାଶେ ଯାନ୍ତେ ହନୁ ଉଶ୍ୱାସ ପାଇଲା ।
ଅଳଗେ ଦଉଡ଼ି ଯେ ଲାଗିଅଛି ସତ
ଧରିଛନ୍ତି ସାତ ସହସ୍ର ବଳବନ୍ତ ।

ରାବଣ ବୋଇଲା ଜଗତିରେ ଥାଇ
କିରେ ବାତୁଳ ବାନରକୁ ନ ମାର କିମ୍ପାଇଁ ।
ମାରରେ ଖଡ଼ଗ ଛିଡୁ ଯାଉ ଶିର
ବାନର ପ୍ରାଣରେ ଥିବାର ଅଟଇ ଅସାର ।
ପାମର ଜନ୍ତୁକୁ କ୍ଷଣେ ରଖି ନ ଯୋଗାଇ
ଆଶ୍ୱାସି କହିଲେ ଅଣହିତ ସେ ମଣଇଁ ।
ଦଶାନନ ବଚନରେ ସମସ୍ତ ଅସୁର
ଖଡ଼ଗ ଉଞ୍ଚାଇଣ କହନ୍ତି ସେ ଗୀର ।
କେ ତୋର ଇଷ୍ଟଦେବତା ଆରେ କପି କହ
ସ୍ମରଣା କରରେ ରଖନ୍ତୁ ତୋର ଦେହ ।
ଏ ଜନ୍ମର ସୁଖରେ ଯାଉଛି ତୋର ଜାଣ
ବନ ଜୀବମାନେରେ ତୁମ୍ଭେ ଅଟ ଅଜ୍ଞାନ ।
ଶୁଣିଣ ହନୁମନ୍ତ କହିଲା କୁହାଟି
ତୁହିପରା ସୁମାଳିର ନନ୍ଦନ ଅଟୁଟି ।
ତୋର ବାପକୁ ପରା ମାରିଲେ ନାରାୟଣ
ବସୁଦେବଙ୍କୁ ଡରି ତୁ ଅଛୁ ଏଠାରେଣ ।
ମୋହର ଇଷ୍ଟଦେବତା ଅଯୋଧ୍ୟାପୁର ବାସୀ
ତୁ କାହୁଁ ଜାଣିବୁରେ ମୋଠାରୁ ବିଶେଷି ।
ସୂର୍ଯ୍ୟବଂଶେ ଜାତ ଦଶରଥଙ୍କ ତନୟ
ଜାନକୀ ଦେବୀ ବଲ୍ଲଭ ଦଶରଥ ରାୟ ।
କୌଶଲ୍ୟାଙ୍କ ନନ୍ଦନ ଲକ୍ଷ୍ମଣଙ୍କ ଜ୍ୟେଷ୍ଠଭ୍ରାତ
ରାବଣାଦି ଦୈତ୍ୟଙ୍କୁ ଯେ କରିବେ ନିପାତ ।
ସେ ମୋହର ପ୍ରାଣର ଅଟନ୍ତି ଅଧିକାରୀ
ତୁମ୍ଭ ଛାର ବଳେ କିରେ ମୋତେ ମାରିପାରି ।
ବାଇ ଧରିଛି ଦଇତ କିଛି ହିଁ ନ ଜଣା
ତୁମ୍ଭମାନଙ୍କୁ କହି ଆଖି ଥାଉ ବଣା ।
ପ୍ରତ୍ୟକ୍ଷ ଦେଖିଲ ତ ଅକ୍ଷୟ ବୀର ମଲା
ଜମ୍ବୁମାଳି ସହିତେ ଗଲ ଯମଶାଳା ।
ଅଶୋକ ବନକୁ ଭଗ୍ନ କଲି ହେଳେ
ଶତେ ଯୁଣ ସାଗର ତରିଲି ଭୁଜବଳେ ।
ପୂର୍ବ ଶାପରୁ ବଳେ ପଡ଼ିଲି ବନ୍ଧନେ
ମୃତ ପ୍ରାୟ ଏକଥା ମଣିଛ ଦୁଷ୍ଟଜନେ ।
ହାଣିବ ବୋଲି ମୋତେ ଆସିଅଛ ଧାଇଁ
ଜ୍ଞାନଗୋଚର ତୁମ୍ଭର ତିଳେମାତ୍ର ନାହିଁ ।
ତାହା ଶୁଣି କୋପରେ ପ୍ରଶସ୍ତ ସେନାପତି
ପ୍ରଚଣ୍ଡ ଖଡ଼ଗ ନେଇ ମାଇଲା ତଡ଼ତି ।
ହନୁମାନ ଉପରେ ପଡ଼ିଲା ଅସୀବର
ବଜ୍ର ସମାନ ତନୁ ଅଟଇ ତାହାର ।
କେନେ ବଡ଼ ଆୟୁଧ ସେ ରୁମ ନ କଟିଲା
ଦାନ୍ତ ମୋଡ଼ି ହୋଇକରି ଧିଙ୍କ ଲେଉଟିଲା ।

ପଞ୍ଜରୀ ଭାଙ୍ଗିଣ ଖଣ୍ଡା ପଡ଼ିଲାକି ତଳେ
ଦେଖିକରି ଚମତ୍କାର ହୋଇଲେ ସକଳେ ।
କେ ବୋଲଇ ଏ ବାନର ଜାଣଇ ଅକାଟ
ବନ ଜୀବମାନଙ୍କର ଅନେକ କପଟ ।
ମୁଣ୍ଡ ନ ଛିଡ଼ିଲେ କେବେ ନ ମରିବ କପି
ଦେଖି ଦଶାନନ ଆଜ୍ଞା ଦେଲା ହୋଇ କୋପି ।
ମାରମାର ଗୁରୁଜରେ ଉପ୍ରୋଧ ନ କର
ଯେମନ୍ତେ ମରଇ ସେ ତେମନ୍ତ କରିମାର ।
ଶୁଣିଣ ପ୍ରଶସ୍ତ ଯେ ଖଡ଼ଗ ପକାଇ
ଗୁରୁଜ ଘେନିକରି ପିଟିଲାକ ନେଇ ।
ଯତ୍ନ କରି ମାରୁତି କାହିଁକି ପାତେ ମୁଣ୍ଡ
ବାଜିକରି ଗୁରୁଜ ହୋଇଲା ଖଣ୍ଡ ଖଣ୍ଡ ।
ତାହା ଦେଖି ରାବଣକୁ ନ ସ୍ଫୁରଇ କିଛି
ଅବହେଳ ହୋଇ ହନୁମାନ ବସିଅଛି ।
ମେଘନାଦ କହଇ ପ୍ରଶସ୍ତ ମୁଖ ଚାହିଁ
ନବରୁ ବାହାର କରି ମାର ଯାକୁ ନେଇ ।
ଯେମନ୍ତ ମରଇ ତେମନ୍ତ କରିମାର
ଏ ପାପି ଦୁରାତ୍ମାକୁ ଉପ୍ରୋଧ ନ କର ।
ଶୁଣି ନଗ୍ରଜନମାନେ ଉଷତ ହୋଇଲେ
ଶକ୍ତି ଗୁରୁଜ ଲାଙ୍ଗିଆ ଦରିଣ ଧାଇଁଲେ ।
କେ ଭୂଷଣ୍ଡି ମୁଦୁଗର ଧରିଣ ପିଟନ୍ତି
କେହୁ ଛେଲଭାଲି କୁନ୍ତନେଇ ପ୍ରହାରନ୍ତି ।
କେହୁ ଖଣ୍ଡା ଶାବେଳୀ ତୀର କମାୟଣ
କେହୁ ବିନ୍ଧୁଛନ୍ତି ଅପ୍ରମିତ ବାଣ ।
ବିଧାଖୁନ୍ଦା ମାରିଣ ପ୍ରହାରନ୍ତି ନାତ
ତୀକ୍ଷ୍ଣ ଖଡ଼ଗ ଧରି କେହୁ କରେ ଘାତ ।
ଲଙ୍କାର ଚଉଷଠି ଦାଣ୍ଡରେ ବୁଲାନ୍ତି
କନ୍ଦିବିକନ୍ଦି ବୁଲାଇ ହନୁକୁ ମରାନ୍ତି ।
ଅସୁରୁଣୀ ପିଟନ୍ତି ପାହାରକୁ ଧରି
ପିଲାଏ ଧୂଳି ମାଟି ପଥର ପ୍ରହାରି ।
କେବଣ ନାରୀ ତପତ ଘିଅ ଓଜାଡ଼ନ୍ତି
କେହୁ ରଙ୍ଗ ପାଣି ନେଇ ପିଚିକା ମାରନ୍ତି ।
କେବଣ ଯୁବତୀ ଘରେ ହାଣ୍ଡି ଧୋଉଥିଲା
ହନୁମନ୍ତର ଉପରେ ନେଇ ପକାଇଲା ।
କେଉଁ ଅସୁରୁଣୀ ଚୂଲି ପାଉଁଶ ଧରିଣ
ହନୁମନ୍ତ ଉପରକୁ ପକାଏ ଛଳେଣ ।
କେବଣ ଯୁବତୀ ସେ ରାନ୍ଧଣାଶାଳେ ଥିଲା
ତତଲା ପାଣି ନେଇ ମୁଣ୍ଡରେ ଢାଳିଲା ।
କେଉଁ ଦଇତୁଣୀ ଚଟୁ ଘେନିଣ ପ୍ରହାରି
ଡିଙ୍କିଶାଳୁ ଧାଇଁ କେ ପିଟେ କୁଲା ଧରି ।

ପଡ଼ିଉଠି ଧାଏଁ କେହୁ ଧରିଣ ଚାଲୁଣୀ
କେବଣ ଦାନବ ଯେ ମାରଇ କହୁଣୀ ।
ଛାଞ୍ଚୁଣୀ ଧରିଣ କେବଣ ଅସୁରୀ
ମାରୁତିକି ପିଟଇ ଗାଳି ଦେଇ କରି ।
କେବଣ ଦଇତୁଣୀ ବାଇଗଣ ଭୁଣ୍ଡି
ମାରୁତିର ଉପରକୁ ଫୋପାଡ଼ଇ ଉଣ୍ଡି ।
କେବଣ ରାକ୍ଷାସୁଣୀ ଘରକୁ ଓଳାଇ
ଅଳିଆ ଧୂଳି ହନୁ ଅଙ୍ଗରେ ପକାଇ ।
ଚାହିଁଲା କପିମଣି ମିଟି ମିଟି କରି
ତୁ ଛାର ପାମରୀ ଲୋ ଅଟୁ ଅନ୍ୟାଚାରୀ ।
ଆଲୋ ଅଲକ୍ଷଣୀ ଆଜି ପୋଡ଼ିବି ତୋର ଘର
ଘର ଓଳାଇ ଆଣି ପକାଉ ମୋ ଉପର ।
ଏଥିରୁ ଦଣ୍ଡ ତୋତେ ଦେବି ଲୋ ଦୋଚାରୀ
କହୁ କହୁ ହନୁକୁ ସେ ନିଅନ୍ତି ଘୋଷାରି ।
ଏକ ଦଇତୁଣୀ ଯେ ଘରୁ ଧାଇଁଆସି
ତତଲା ଘିଅ ହନୁ ଉପରେ ବରଷି ।
ଆଇ ଆଇ ବୋଲିଣ ବୋଲେ ହନୁମନ୍ତ
ବୋଇଲା ତୁହି ଜାଣିଲୁ ମୋହର କଷ୍ଟ ତ ।
ମୋହର ଶରୀରେ ଯେତେକ ବ୍ୟଥା ଥିଲା
ତୋ ଘିଅ ବାଜି ସବୁ ବ୍ୟଥା ଛାଡ଼ିଗଲା ।
ତୁ ମୋହର ହୋଇଲୁ ଧରମରେ ଆଇ
ନ ପୋଡ଼ିବି ତୋର ଘର ଭୟ କର ନାହିଁ ।
ଏମନ୍ତେ ମାରୁତିକି ଦାଣ୍ଡରେ ବୁଲାନ୍ତି
କେବଣ ଅସୁର ଯାଇ ଖୁନ୍ଦାଏ ମାରନ୍ତି ।
କେହୁ ପଥର ମାରଇ କେ ଫୋପାଡ଼େ ଇଟା
କେହୁ ସୋଧନୀ ପିଟଇ କେ ମାରେ ଗୋଇଠା ।
ହୁରିଆମାନେ ଆଗରେ କରୁଥାନ୍ତି ନାଟ
କେବଣ ହୁରିଆ ପିଟନ୍ତି ନେଇ ଛାଟ ।
କେ କହଇ ମୋହର ମାଇଲା ସାନ ଭାଇ
କେ କହଇ ମୋହର ମାଇଲା ଜୁଆଁଇ ।
କେ କହଇ ମୋର ଖୁଡୁତାକୁ ଏ ମାଇଲା
କେ କହଇ ମୋହର ବାପାକୁ ନାଶ କଲା ।
କେହୁ ବୋଳି ପାଡ଼ିଣ ଦିଅନ୍ତି ହୁଳହୁଳି
କିଳିକିଳା ଶବଦରେ କୁରୁମ ଉଛୁଳି ।
ମାୟାରେ ପବନ ସୁତ ହରାଇଲା ଜ୍ଞାନ
ଖରତର ନିଃଶ୍ୱାସ ବହଇ ଘନ ଘନ ।
ବେନି ନୟନ ବୁଲାଇ ପଡ଼ିଲା ସେ ଶୋଇ
ମଲାର ପ୍ରାଣୀ ପଡ଼େ ଯେବଣ ମୃତ ହୋଇ ।
ତାହା ଦେଖି ପ୍ରଶସ୍ତ ବିଚାର କରି ମନ
ନିଶ୍ଚୟ ମର୍କଟ ଏବେ ହାରିଲା ଜୀବନ ।

କେ କହଇ କପି କେତେ ଦୁଃଖ ପାଇ ମଲା
କେ କହଇ ହନୁ ମୋର ସଗୋତ୍ର ମାଇଲା ।
କେ କହଇ ମରିନାହିଁ ଗାଳି ପାରିଅଛି
କେ କହଇ ତୁମ୍ଭେମାନେ ନ ଜାଣ କେ କିଛି ।
କେ କହଇ ଏତେ ମାଡ଼େ ଜୀଇବ କେମନ୍ତ
କେ କହଇ ଦେଖ ମଲାଣି ନିୟତ ।
ନ ଚଳଇ ଠାବରୁ ସେ ନିଅନ୍ତି ଘୋଷାରି
ପୁଣ୍ୟବନ୍ତ ଲୋକମାନେ ଧର୍ମକୁ ସୁମରି ।
କାହୁଁ ଏ ପୁରକୁ କପି ଆଇଲା ନ ଜାଣି
ମରିବାକୁ ନଇବ ଏଥକୁ ଥିଲା ଆଣି ।
କାହାର ବୋଲରେ ଆସି ଏ ପୁରେ ପଶିଲା
ମୂର୍ଖପଣ କରିଣ ଆପଣେ ନାଶ ଗଲା ।
ସୁରଗକୁ ବୋଲି କରି ଏ ଜୀବ ଗଲା ଛାଡ଼ି
କେ ନେଇ ମଲାପରେ ପିଟୁଛନ୍ତି ବାଡ଼ି ।
କେହୁ ଚିରାମାରି ଅଲାଗେ ନାନ୍ତି ଡେଇଁ
କେବଣ ନଘାତ ଯାଇ କହୁଣୀ ମାରଇ ।
କେ ବୋଲେ ଆହା ମଲା ପ୍ରାଣିକି କିମ୍ପା ମାର
ପାପପୁଣ୍ୟ ଦୁଇ କଥା ବିଚାର ନ କର ।
ମଲା ଲୋକମାନଙ୍କୁ ମାଇଲେ ପାପ ହୋଇ
କେ କହଇ ଏହାକୁ ମାଇଲେ ଧର୍ମ ହୋଇ ।
କେ କହଇ ସେ କଥାକୁ ବିଚାର ନ କର
କେ କହଇ ଦୁଷ୍ଟ ଅଟେ ଏ ମୂଢ଼ ପାମର ।
କେ କହେ ଏଡ଼େ ନଗ୍ରେ ଏମନ୍ତ ଗୋଳ କଲା
ଅକ୍ଷୟ ପରା ପୁତ୍ରକୁ ଜୀବନେ ମାଇଲା ।
ଜମ୍ବୁମାଳି ଆଦି ମଲେ ପାଞ୍ଚ ସେନାପତି
ମଧୁବନ ତୋଟାକୁ ଭାଙ୍ଗିଲା ଦୁଷ୍ଟମତି ।
ଆଗହୁଁ ରାଜା ଯେବେ ପେଶି ଥାନ୍ତା ଇନ୍ଦ୍ରଜିତ
କିମ୍ପାଇଁ ବାନର କରି ଥାନ୍ତା ଉତପାତ ।
କେ କହଇ ଯାହାକୁ ଯେମନ୍ତ ଯୋଗ ଥିଲା
ବେଳକାଳ ଜାଣି ସେହୁ ପଥ ବହିଗଲା ।
ଏବେ ଏହାକୁ ମାଇଲେ ହେବ ଆଉ କିସ
ଆପଣା କର୍ମ ଘେନିଗଲା ଏହୁ ନାଶ ।
ପ୍ରଶସ୍ତ କହେ ଏହାକୁ ସିଂହଦ୍ୱାରକୁ ଘେନ
ଜଣାଇ ଦେବା ରାଜାଙ୍କର ସନ୍ନିଧାନ ।
ଲୋକମାନେ କହନ୍ତି ଏ ମଲାଣି ଗୋସାଇଁ
ଚାଲିଯିବ କେମନ୍ତେ ଦେହରେ ପ୍ରାଣ ନାହିଁ ।
ପ୍ରଶସ୍ତ କହିଲା ତାକୁ ଘୋଷାରିଣ ନିଅ
ତାହା ଶୁଣି ଦଇତେ ହସନ୍ତି ଟହ ଟହ ।
ଦଉଡ଼ି ଧରି କରେ ଆଣ୍ଟେ ଭିଡ଼ି ନ୍ୟନ୍ତି
ବଢ଼ି ନଦୀରେ ଯେହ୍ନେ ପହଁରଇ ହସ୍ତୀ ।

ରାଜାର ସିଂହଦ୍ୱାରେ ନେଇ ତାକୁ କଲେ
ପ୍ରଶସ୍ତ ସେନାପତି ରହ ରହ ବୋଲେ ।
ଅଶ୍ୱପରୁ ଓହ୍ଲାରି ଭିତର ପୁରେ ଗଲା
ଜଗତୀ ପରେ ରାଜା ଅଛନ୍ତି ଦେଖିଲା ।
ପାଏ ପଡ଼ି ଶୋଇଣ ସଧୀରେ ଉଠିଲା
ଧୂଇ କର ଯୋଡ଼ିଣ ଦୈତ୍ୟ ଜଣା ଦେଲା ।
ରାବଣ ବୋଇଲା କହିକୁ କିସ କଲୁ
ଯାମର ବାନରକୁ କି ଦଣ୍ଡ ବିହିଲୁ ।
ପ୍ରଶସ୍ତ ବୋଇଲା କଟକ ବୁଲାଇଲି
ଅନେକ ପ୍ରକାରେ ମାଡ଼ ମାରାଇଲି ।
ଯୋଜନେ ପର୍ଯ୍ୟନ୍ତ ଛନ୍ଦମରେ ଥିଲା
କେତେବେଳ ମାଡ଼ ହୋନ୍ତେ ପ୍ରାଣ ବିସର୍ଜିଲା ।
ପ୍ରାଣ ଯାନ୍ତେ ତାକୁ ଆଣିଲି ଗୋଷ୍ଠରାଜ
ସିଂହଦ୍ୱାରେ ମୃତ ବାନର ଅଛି ଶୋଇ ।
ଦନ୍ତ ନିକୁଟିଣ ଦ୍ୱାରେ ଅଛି ପଡ଼ି
ଜଣା ପିମ୍ପୁଡ଼ିମାନେ ଯାଉଛନ୍ତି ବେଢ଼ି ।
ମୃତ ଶବ ତୋର ଯେ ପଡ଼ିଛି ସିଂହଦ୍ୱାର
କି କରିବି ମୋତେ ଆଜ୍ଞା ଦିଅ ନୃପବର ।
ରାବଣ ବୋଇଲା ମୋ ଛାମୁକୁ ଘେନି ଆସ
ଦେଖିବା ମର୍କଟର ମରିବା ଭବିଷ୍ୟ ।
କେମନ୍ତେ ତା ଦେହରୁ ଛାଡ଼ିଲାକ ପ୍ରାଣ
କଥାଏ ନ ଛାଡ଼ଇ କହଇ ସେ ଟାଣ ।
ଦେଖିଲେ ଜାଣିବା ସେ ମରିବାର ଗତି
ରାଜାଙ୍କ ଆଜ୍ଞାରେ ଗଲା ପ୍ରଶସ୍ତ ତଡ଼ତି ।
ଦୂରରୁ ଡାକ ଦେଲା କପିକି ଘେନିଆସ
ଶରଧା କରିଛନ୍ତି ଦେଖିବେ ଦଶଶୀଶ ।
ଶୁଣିଣ ଦୈତ୍ୟବଳ ଯୋଗାରିଣ ନ୍ୟନ୍ତି
ଜୀବଗଲା ପ୍ରାୟ ଯେ ହନୁକୁ ମଣନ୍ତି ।
ମଲା ଲୋକମାନେ ଦିଶନ୍ତି ଯେମନ୍ତ
ତେସନକ ପ୍ରାୟ ଦିଶଇ ହନୁମନ୍ତ ।
ଗଡ଼ଦ୍ୱାର ଯିବାରୁ ଦିଶିଲା ମାରୁତି
ବଡ଼ି ନଦୀରେ ଯେହ୍ନେ ଭାସୁଥାଏ ହସ୍ତୀ ।
ଜଗତି ତଳେ ଥାଇ ହସଇ ରାବଣ
ଦେଖ ହୋ ବାନରର ସରିଲା ବଡ଼ପଣ ।
ବଡ଼ିମା ପଣରେ ହନୁ କେତେ କହୁଥିଲା
ସେ କଥାମାନ ତାର କେଣିକି ଏବେ ଗଲା ।
ଜଗତିର ତଳେ ଯେ ପଡ଼ିଛି ମାରୁତି
ହସିଣ ରାବଣ ଆନନ୍ଦ କଲା ମତି ।
ଛାମୁର ଦ୍ୱାରକୁ ସୈନ୍ୟ ଗଲେ ପ୍ରତିହାରୀ
ଅଧକୋଶ ଯାଏଁ ଯେ ପଟୁଆର କରି ।

ରାବଣ ଆଗେ ଅଛି ପବନର ସୁତ
ଉଛୁରା ଉଛୁରି ହୋଇ ଅଛନ୍ତି ସମସ୍ତ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସୁର ପୁରକୁ ରାଜା ବ୍ରହ୍ମାଙ୍କୁ ପଚାରି ।
ହନୁମନ୍ତ ମଲା ତ କେ ପୋଡ଼ିବ ଲଙ୍କା
ବାରତା ନ ପାଇ ରାମ କରିବେ ଯେ ଶଙ୍କା ।
ଜାନକୀ କହିବାର ତ ନିଷ୍ଫଳ ହୋଇଲା
ହନୁକୁ ମାରି ରାବଣ ନିଃଶଙ୍କେ ରହିଲା ।
ବ୍ରହ୍ମା ଚାହିଁ ଦେଖ ବୋଇଲେ ଦୈବତ
ଏହିକ୍ଷଣି ଲଙ୍କାକୁ ପୋଡ଼ିବ ହନୁମନ୍ତ ।
ଲଙ୍କା ପୋଡ଼ିବାକୁ ଛନ୍ଦ ଅଛି ସେ ଭିଆଇ
ଏହିକ୍ଷଣି ଉଠିବ ପବନ ତନୟି ।
ଏମନ୍ତ ବଚନ ଶୁଣି ଇନ୍ଦ୍ର ତୁନି ହେଲେ
ଏଥୁ ଅନନ୍ତରେ କଥା ଶୁଣ ଦେବୀ ଭଲେ ।
ନିଚେଷ୍ଟା ହୋଇଣ ହନୁବୀର ପଡ଼ିଥିଲା
ଜଗତିର ତଳେ ସେ ଯେ ଉଠିଣ ବସିଲା ।
ହାଇ ମାରି ମାରୁତି ହୋଇଲା କୁଣ୍ଡିଆଇ
ଆଖି ମଳିନ ସେ ବୋଲଇ ଆଇ ଆଇ ।
ମିଟିକା ମାରିଣ ହନୁ ନିଶ ମରଦିଲା
ଦେଖିଣ ରାବଣେଶ୍ୱର ଚକିତ ହୋଇଗଲା ।
ସୈନ୍ୟବଳ ସହିତ ହେଲେ ଆତମ୍ବିତ
ଇନ୍ଦ୍ରଜିତ ବୋଇଲା ଏ କେବଣ ଚରିତ ।
ମଲା ମର୍କଟ ଏବେ ହୋଇଲା ସଚେତ
କେମନ୍ତ କରି ଜାଣିବା ଏଥର ତଦନ୍ତ ।
ଏସନକ ଚରିତ ଦେଖା ଶୁଣା ନାହିଁ
ପୁତ୍ରକଥା ଶୁଣିଣ ବୋଲଇ ଲଙ୍କସାଇଁ ।
ତୁ ହୋ ଇନ୍ଦ୍ରଜିତ ନ ଜାଣୁ ଯେ କିଛି
ନନ୍ଦୀକେଶ୍ୱର ଶାପକୁ ମୋର ଭୟ ଅଛି ।
ଯେବଣ କାଳେ ମୁଁ ଦିଗ ବିଜେ କରିଗଲି
ପୁଷ୍ପକ ଯାନରେ ବସି ନାନା ରାଜ୍ୟ ଗଲି ।
କପିଳାସ କନ୍ଦରେ ପଶିଲି ଧସାଇ
ବିମାନ ନ ଚଳିଲା ପୂର୍ବ ଶାପ ପାଇ ।
ରୁଦ୍ରଗଣ ଆସିଣ ଓଗାଳିଲେ ପଥ
ବୋଇଲେ ଏଥି ବିଜେ କରିଛନ୍ତି ଶୂଳହସ୍ତ ।
ଯାଅ ତୁ ବାହୁଡ଼ି ଦଶାନନ ବୀର
ସଦାଶିବ ସ୍ଥଳକୁ ଗଞ୍ଜାଳ ନ କର ।
ତାହାଙ୍କ ବଚନକୁ ମାନିଲି ମୁଁ ଜାଣ
ବିମାନରୁ ଓହ୍ଲାଇ କଲିଟି ଗମନ ।
କରେ ଖଡ୍ଗ ଧରି ପର୍ବତ ପରେ ଗଲି
ସିଂହଦ୍ୱାରେ ପ୍ରବେଶି ନନ୍ଦୀକି ଭେଟିଲି ।

ସେ ମୋତେ ବୋଇଲା ଏ ଭିତରେ ନ ପଶ
ପାର୍ବତୀଙ୍କି ଘେନିଣ ଅଛନ୍ତି ଦିଗବାସ ।
ଏ ବଚନ ଶୁଣିବାରୁ ତାକୁ କୋପ କଲି
ଶିର ଛେଦିବି ବୋଲି ଖଡ୍‌ଗ ଉଞ୍ଚାଇଲି ।
ବୋଇଲି ପାମରରେ କରିବି ତୋତେ ନାଶ
ପାରିଲେ ତୋତେ ରଖନ୍ତୁ ପାର୍ବତୀ ବିଳାସ ।
ଶୁଣିଣ ନନ୍ଦିକେଶର ମୋତେ ଶାପ ଦେଲା
ନର ବାନରଙ୍କ ହସ୍ତେ ମର ତୁ ବୋଇଲା ।
ତାହାଠାରୁ ଶୁଣିଣ ମୁଁ ଘୁଞ୍ଚିଣ ଅଇଲି
କଇଳାସ ଗିରିକି କ୍ରୋଧରେ ଉପାଡ଼ିଲି ।
ମୁହିଁ ଉପାଡ଼ନ୍ତେ ଜାଣିଲେ ଦିଗମ୍ବର
କ୍ରୋଧ ହେବାରୁ ତ୍ରିଲୋଚନ ଗିରିଭାରି ଘୋର ।
ଧରି ନ ପାରିବାରୁ ଗିରିପଡ଼େ ଧରିଣୀର
ପର୍ବତ ମୋ ପରେ ମାଡ଼ି ବସିଲା ସତ୍ୱର ।
ଶତେବର୍ଷ ପର୍ଯ୍ୟନ୍ତେ ମୋ ପରେ ଗିରି ରହି
ଜାଣିଣ ପୌଲସ୍ତି ଯେ ସଦାଶିବଙ୍କୁ କହି ।
ତେଣୁ ସଦାଶିବ ଦୟା ମୋତେ କଲେ
ପର୍ବତ ଉଶ୍ୱାସ ହୁଅନ୍ତେ ଅଇଲି ମୁଁ ଭଲେ ।
ସେଠାରେ ବରଷେ ତାଙ୍କ ସଙ୍ଗେ ଲାଗି
ଜିଣି ନ ପାରିବାରୁ ହେଲି ରଣ ଭାଗି ।
ଷଡ଼ମାସ ପରିଯନ୍ତେ ବନ୍ଧନ ମୋତେ କଲା
ବେଦବର କହିବାରୁ ମୋତେ ଛାଡ଼ି ଦେଲା ।
ସେ କଥାକୁ ଜାଣି ମୁଁ ଅଛି ଭୟକରି
ନନ୍ଦୀକେଶ୍ୱର ଶାପ ମନେ ପଡ଼େ ମୋରି ।
ବାଳିଠାରୁ ମୁକୁଳି ମୁଁ ଅଯୋଧ୍ୟାକୁ ଗଲି
ଶ୍ରୀରାମ ଉପର ବଂଶେ ଯୁଦ୍ଧ ଆରମ୍ଭିଲି ।
ଅନରଣ୍ୟ ନାମରେ ଯେ ତହିଁର ନୃପତି
ମରିବାର ବେଳରେ କହିଲା ମୋତେ ତାତି ।
ମୋର କୁଳେ ଜନ୍ମ ହୋଇ ତୋତେ ସେହୁ ମାରୁ
ନର ବାନର ହସ୍ତରେ ତୋର ଶିରୀ ସରୁ ।
ନରରାଜା ବୋଲି ମୋତେ କଲୁ ଉପହାସ
ଶୁଣି ମୁଁ ବୋଇଲି ତୋର ହସ୍ତେ ହେବ କିସ ।
କ୍ରୋଧରେ ତାକୁ ମୁହିଁ ଚାପୋଡ଼େ ମାଇଲି
ମୁକୁଟ କୁଣ୍ଡଳ ତା'ର ଛିଣ୍ଡାଇ ପକାଇଲି ।
ତେଣୁ ଶାପ ଦେଲା ମୋତେ ଅଯୋଧ୍ୟା ନୃପତି
ସେ ବଂଶରେ ରଘୁନାଥ ହେଲେ ଉତପତ୍ତି ।
ନ ଜାଣିବା ପଣରେ ମୁଁ ହରି ଆସିଲି ସୀତା
ଅକାରଣେ ତାର ସଙ୍ଗେ କରିଲି ଶତ୍ରୁତା ।
ଶ୍ରୀରାମର ଦୂତ ବୋଲି ହନୁମନ୍ତ କହି
ରଘୁନାଥ ଚରଣରେ ସୁଗ୍ରୀବ ଖଟଇ ।

ବାଳିବୀର ବଳିୟାର ଜଗତେ ବିଦିତ
ତ୍ରିଦଶ ଦେବତାଙ୍କୁ ରଣେ ନଗଣେ ସେତ ।
ଦଶରଥ ନନ୍ଦନ ତାହାକୁ ନାଶ କଲା
ଏକଥା ଶୁଣି ମୋତେ ସନ୍ଦେହ ଲାଗିଲା ।
ନର ବାନର ଅଟନ୍ତି ଆମ୍ଭର ବଇରୀ
ଏ ବାନରକୁ ବାବୁରେ ଉପ୍ରୋଧ ନ କରି ।
ଶୁଣି କରି ଇନ୍ଦ୍ରଜିତ କହଇ ବଚନ
ଯେବେ ଆଗରୁ ଅଛଇଁ ଏମନ୍ତ ଶକୁନ ।
ଏବେ ରାମ ନାରୀକି ଫେରାଇଣ ଦେବା
ଶ୍ରୀରାମ ସଙ୍ଗରେ ଆମ୍ଭେ ଭବୁଁଷି ହୋଇବା ।
ରାବଣ ବୋଇଲା ତାହା ଉଚିତ ନୁହଇ
ତିନିପୁରେ ପ୍ରତାପୀ ବୋଲାଉଛି ମୁହିଁ ।
ତ୍ରିଦଶ ଦେବତା ମୋର ପାଦରେ ଖଟନ୍ତି
ନାଗବଳ ମୋତେ ଅଷ୍ଟରତନ ଦିଅନ୍ତି ।
ମର୍ତ୍ତ୍ୟ ରାଜାମାନେ କିଙ୍କର ପରି ରହି
ରାମକୁ ଭବୁଷି ହେଲେ ନ ମାନିବେ କେହି ।
ଶ୍ରୀରାମକୁ ଜିଣିଲେ ବହୁତ କାର୍ଯ୍ୟ ହେବ
ସପ୍ତପୁର ଆମ୍ଭଙ୍କୁ ଆକଟ ନୋହିବ ।
ନାରାୟଣ ବିନୁ ମୋତେ ନ ମାରିବେ କେହି
ବାସୁଦେବ ଅସୁରଙ୍କ ଦଳନ ଅଟଇ ।
ନାରାୟଣ ଯେବେ ରାମରୂପେ ଅବତାର
ତେବେ ଉତ୍ତମ କଥା ହୋଇବ ଆମ୍ଭର ।
ମଲେ ସ୍ୱର୍ଗକୁ ଯିବା ନ ମଲେ ହେବା ରାଜା
ଶୁଣିଣ ଇନ୍ଦ୍ରଜିତ ମନରେ କଲା ହେଜା ।
ପାର୍ବତୀଙ୍କ ଆଗରେ କହନ୍ତି ଧୂର୍ଜଟି
ପିତା ପୁତ୍ରଙ୍କର ଏତେ ଗୁପ୍ତ ବିଚାରଟି ।
ଏକାନ୍ତେ ବସି କଲେ ଗୁପତ ଭାଳେଣି
ଆସ୍ଥାନର ଲୋକେ ତାହା ନ ପାରିଲେ ଜାଣି ।
ଅସୁରୁଣୀମାନେ ଯେ ସେଠାରେ ଦେଖୁଥିଲେ
ହନୁର ଗତି ଦେଖି ଅଶୋକ ବନେ ଗଲେ ।
ତ୍ରିଜଟା ଜାନକୀଙ୍କୁ କହିଲେ ସନ୍ଦେଶ
ଯେବଣ ବାନର ସଙ୍ଗେ ଭାଳୁଥିଲ କିସ ।
ମଧୁବନ ଭାଙ୍ଗିଲା ଯେବଣ ବାନର
ମାଡ଼ର ପ୍ରତାପରେ ମଲା ସେହି ପୁର ।
ଦାଣ୍ଡହାଟ କନ୍ଦି ସେ ବିକନ୍ଦି ବୁଲାଇଲେ
ମଲା ବାନରକୁ ଘୋଷଡ଼ାଇ ନେଲେ ।
ରାବଣ ଆଗରେ ନେଇଣ ପକାଇଲେ
ଚେତା ପାଇଣ କପି ବସିଲାକ ଭଲେ ।
ଅଗ୍ନିରେ ପୋଡ଼ିବାକୁ କରନ୍ତି ବିଚାର
ଦେଖି ଅଇଲୁ ଆମ୍ଭେ ରାବଣ ଛାମୁର ।

ଶୁଣି କରି କ୍ରୋଧଭର ହେଲେ ରାମନାରୀ
ଅନ୍ତର୍ଗତେ ବିଧାତା ଜାଣିଲେ ବିଚାରି ।
ପବନକୁ ରାଇଣ ବେଗେ ଆଜ୍ଞା ଦେଲେ
ଜାନକୀର କର୍ଣ୍ଣେ କଲା ବୋଲିଣ ବୋଇଲେ ।
ବୋଲିବୁ ହନୁମନ୍ତ ସର୍ବ ଶୁଭେ ଅଛି
ମନରେ ବଇରାଗ ନ ହୁଅ ତୁ କିଛି ।
ଏମନ୍ତ ବଚନ ଯହୁଁ କହିଲେ ବେଦବର
ପବନ ଦେବତା ତହୁଁ ଚଳିଲେ ସତ୍ୱର ।
ଅଶୋକ ବନରେ ମିଳିଲେକ ବେଗେ
ଜାନକୀଙ୍କ କର୍ଣ୍ଣରେ କହିଲେ ସରାଗେ ।
ବୋଇଲେ ଜାନକୀଗୋତ୍ରେ ଲୋକ୍ୟଠକୁରାଣୀ
ତ୍ରିଦଶ ଦେବତାଏ ଲଙ୍କାରେ ରୁଣ୍ଡ ଜାଣି ।
ଶ୍ରୀରାମଙ୍କ ଦୂତ ଯେ ହନୁମନ୍ତ ବୀର
ଶ୍ରୀରାମ କହିବାରୁ ଅଇଲା ଲଙ୍କାପୁର ।
ମଧୁବନ ଭାଙ୍ଗି ସେ ଦୈତ୍ୟଙ୍କୁ ମାଇଲା
ରାବଣର ପୁତ୍ର ଅକ୍ଷୟକୁ ନାଶ କଲା ।
ଏବେ ଲଙ୍କାପୋଡ଼ି ଦେଖିବୁ ଏଥି ଥାଇ
ହନୁକୁ ଜିଣିବାକୁ ତ୍ରିପୁରେ ବୀର ନାହିଁ ।
ମନରେ ବିରସ ନୁହଁ ଦେବୀ ତୁମ୍ଭେ
ତ୍ରିଦଶ ଦେବତାଏ ଜଗିଅଛୁ ଆମ୍ଭେ ।
ଲଙ୍କାରେ ଯଶ କରି ହନୁମନ୍ତ ଯିବ
ରଘୁନାଥଙ୍କ ଆଗେ ବାରତା କହିବ ।
ତେବେ ଲଙ୍କାକୁ କଟକାଇ କରିବେ ରାମରାହୁ
ରାବଣ ମରିବଟି ତିନିପକ୍ଷେ ଆଉ ।
ଶୁଣିଣ ଜାନକୀ ଯେ କହନ୍ତି ବଚନ
ଏବେ ଯାଇ ହନୁମନ୍ତ ଆଣୁ ରାମରାଣ ।
ଶୁଣିଣ ପବନ ଗଗନମାର୍ଗେ ଗଲେ
ତ୍ରିଦଶ ଦେବତାଙ୍କ ସଙ୍ଗରେ ମିଳିଲେ ।
ପବନ ଦେବତା କହେ ଦେବତାଙ୍କ ଆଗ
ଜାଣିଲେ ଇନ୍ଦ୍ରାଦି ସର୍ବ ସୁର ଦେବ ।
ପବନଠାରୁ ଶୁଣି ଜାନକୀ ସନ୍ତୋଷ
ବିଚାରିଲେ ନିଶ୍ଚୟ ମରିବ ଦଶଈଶ ।
ତ୍ରିଦଶ ଦେବତା ଯାହାକୁ ବାମ ହୋଇ
ସଦାଶିବ ଦେବାକୁ ତାହାକୁ ନ ରଖଇ ।
ଏମନ୍ତ ବିଚାରି ମନରେ ତୋଷ ହେଲେ
ନିଶ୍ଚେ ଶ୍ରୀରାମ ଲଙ୍କାକୁ ଆସିବେ ଭାବିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାବଣ ଛାମୁରେ ବସି ଅଛଇଁ ମାରୁତି ।
ହନୁକୁ ଦେଖିଣ ଦଶାନନ ରାୟେ
କୋପ ମୁଖ ହୋଇଣ ମାରୁତିକି ଚାହେଁ ।

ପ୍ରଶସ୍ତକୁ ବୋଇଲା ହେଳା ତୁ ନ କର
ଯେମନ୍ତେ ପାରୁ ବାବୁରେ କପିକି ବେଗେ ମାର ।
ଏ କପି ଜୀଇଥିଲେ ଆମ୍ଭଙ୍କୁ ବଡ଼ ମନ୍ଦ
ପ୍ରଶସ୍ତ ବୋଇଲା ଦେବ ଶୁଣ ଦଶକନ୍ଧ ।
ଗୁରୁଜ କୁନ୍ତ ମାଇଲେ ଉପୁଡ଼ି ପଡ଼ିଲା
କିଜାଣି ମର୍କଟ ବଜ୍ର ତନୁ ହେଲା ।
ଅନେକ ପ୍ରକାରେ ମୁଁ ମାଡ଼ ମରାଇଲି
ଢେଲ ଚକ୍ର ଗଦା କୁନ୍ତ ଖଡ଼ଗରେ ହଣାଇଲି ।
ମଲା ପ୍ରାୟ ହୋଇଣ ଏ କପି ପଡ଼ିଥିଲା
ତୁମ୍ଭ ପାଶେ ଆସନ୍ତେ ଉଠିଣ ବସିଲା ।
କେବେ ହେଁ ନ ମରଇ କରିବି କିସ ବୁଦ୍ଧି
ବାନ୍ଧି ପକାଇଲି ତାକୁ ଲବଣ ଜଳଧି ।
କେବେ ହେଁ ମୃତ୍ୟୁ ଯେ ନୋହିବ ଏହାକୁ
ଗୁପତେ ଏ କପି ଆଶ୍ରେ କରିଛି କାହାକୁ ।
ଏ ବଚନ ଶୁଣିଣ ବୋଲଇ ହନୁମନ୍ତ
କିସ ବିଚାର କରୁଛୁ ମନ୍ଦୋଦରୀ କାନ୍ତ ।
ନିଜେ ଛାମୁରେ ମୋତେ ମାଡ଼ ମରାଇଲୁ
ଏତକରେ ପୁଣି ଯେ ସନ୍ତୋଷ ନୋହିଲୁ ।
ମୋହର ପ୍ରାଣ ନେଲେ ତୁ ସୁଖ ପାଇବୁ
ଭୋଗ ଯୋଗ ମୋହର ଛଡ଼ାଇ ନେଇଯିବୁ ।
ମୁହିଁ ଯେ ନିରେଖି ଅଟେ ପଶୁଜାତି
ରାମ ମହତ ପୁରୁଷ ମୋତେ ପେଶିଛନ୍ତି ।
ତୁ ତାଙ୍କ ଭାରିଯାକୁ ଆଣିଲୁ ଚୋରାଇ
ବିରହ ଜ୍ୱାଳାରେ ତାପିତ ସୀତାସାଇଁ ।
ବାଳି ନୃପତିକି ପ୍ରାଣରେ ବଧ କଲେ
ସୁଗ୍ରୀବ ସଙ୍ଗରେ ମଇତ୍ର ହୋଇଲେ ।
ମାଲ୍ୟବନ୍ତ ପର୍ବତେ ଅଛନ୍ତି ଭାଇବେନି
ଭଲ୍ଲୁ ମର୍କଟ ତାଙ୍କର ଅଟନ୍ତି ସଇନି ।
ଚାରି ଦିଗକୁ ଦୂତ ପେଶିଲେ ରଘୁରାଣ
ଦକ୍ଷିଣକୁ ଆମ୍ଭେ ଅଇଲୁ ଆଠ ଜଣ ।
ସାତଜଣ ସାଗର କୂଳେ ଛନ୍ତି ରହି
ମୁହିଁ ଆସିଛି ସୀତା ଖୋଜିବାର ପାଇଁ ।
ଶତେ ଯୁଣ ସିନ୍ଧୁ ତରିଲି ଅବହେଳେ
ବନ୍ଧନେ ପଡ଼ିଲି ଆସି କର୍ମର ଅବଳେ ।
ବାନ୍ଧିଲ ମାରିଲ ହାଣିଲ ଯେ ମୋତେ
ପ୍ରାଣ ନେବାକୁ ଏବେ ଭାବି ଅଛ ଚିତ୍ତେ ।
ଆଉ ମୋତେ କଦର୍ଥ୍ୟ କରନା ବହୁତ
ମୃତ୍ୟୁଭେଦ ଶୁଣ ମୋର କହୁଛି ନିୟତ ।
ଯେବଣ କାଳରେ ମୁଁ ଜନମ ହୋଇଲି
ଆଦିତ୍ୟ ଦେବତାଙ୍କୁ ଯାଇଣ ବାନ୍ଧିଲି ।

ସବୁ ଦେବତାଙ୍କ ମନ ମୋ ଦେହେ ଠୁଳହେଲା
ସେହି ଦିନରୁ ମୋର ପ୍ରାକର୍ମ ବଢ଼ିଲା ।
ବନରେ ଉତପାତ ହୋଇଲି ମୁଁ ଜାଣ
ଋଷିଙ୍କର ମଢ଼ିଆ ଭାଙ୍ଗିଲି ଅକାରଣ ।
ସମସ୍ତ ଋଷିମାନେ ମୋତେ ଶାପ ଦେଲେ
ଦହନ ହୋଇବୁ ତୁ ପ୍ରଚଣ୍ଡ ଅନଳେ ।
ଆନ ପ୍ରକାରେ ହେ ମୃତ୍ୟୁ ତୋର ନାହିଁ
ଲାଞ୍ଜରେ ଯେତେ ବସ୍ତ୍ର ବେଢ଼ାଇବ ନେଇ ।
ତଇଳ ଢାଳିଣ ଯେ ଜଳିବ ଅନଳ
ସେତେବେଳେ ପ୍ରାଣ ତୋର ଯିବ ଯମଆଳ ।
ଲାଙ୍ଗୁଳରେ ବ୍ୟାଧି ମୋର ବଢ଼ଇ ଦ୍ୱିଗୁଣ
ବସ୍ତ୍ର ଗୁଡ଼ାଇଣ ଦିଅ ଯାଉ ବ୍ୟଥା ପୁଣ ।
ମୋର ଲାଞ୍ଜକୁ ଯେବେ ଭିଆଇ ପାରୁଥିବ
ତେବେ ସେ ମୋର ହେବ ଭସ୍ମମାତ ।
ସାତଗୋଟା ଦଉଡ଼ିରେ ବାନ୍ଧିଅଛ ଭିଡ଼ି
ବଳେ ମୁଁ ନ ପାରେ ପୁଣି ଆଣନ୍ତି ଘୋଷାଡ଼ି ।
ଆନ ଲୋକ ହୋଇଥିଲେ ଯାଆନ୍ତାଣି ଜୀବନ
ଏତେ ମାଡ଼େ ଜୀଇବାର ଅଟେ ଧିକ୍‌କ ପଣ ।
ନେଉ ଅବା ନ ନେଉ ସୀତାକୁ ରାମ ଆସି
ଆସିବାର ଫଳ ମୋତେ ମୃତ୍ୟୁ ଯୋଗ ଅଛି ।
ରଣ କରିଥିଲେ ସିନା ସବୁ ମୋତେ ଭଲ
ବିନା ଦୋଷେ ମୋତେ ମାଡ଼ ମାରୁଛ ଲଙ୍କା ମଲ୍ଲ ।
ଏତେ ବୋଲି ମାରୁତି ଉତ୍ତାନ ହୋଇ ଶୋଇ
ଆଖି ତରାଟିଣ ବୋଲଇ ଆଇ ଆଇ ।
ରାବଣକୁ ଚାହିଁଣ ବୋଲଇ ବେଗେ ମାର
ଶୁଣିକରି ଟହ ଟହ ହସେ ଦଶଶିର ।
ପ୍ରଶସ୍ତ ସେନାପତିକି ହକାରି କହିଲା
ମଲାବେଳକୁ ଏ କପି ସତ ଯେ କହିଲା ।
ମୃତ୍ୟୁଭେଦ ମର୍କଟ କହିଲା ନିୟତ
ମିଥ୍ୟାଭାଷି ନୁହଇ ତ ରାମଚନ୍ଦ୍ର ଦୂତ ।
ଆଣ ବସ୍ତ୍ର ବେଢ଼ାଅ ତାହାର ଲାଞ୍ଜରେ
ତଇଳ ଢାଳି କରି ପୋଡ଼ ଅନଳରେ ।
ରାବଣର ଆଜ୍ଞାରେ ଭଣ୍ଡାର ଅଧିକାରୀ
ଦଶ ସହସ୍ର ଶାଢ଼ୀ ଆଣିଲା ବେଗ କରି ।
ଦେଖିଣ ଆଜ୍ଞା ଦେଲା ଲଙ୍କାର ଈଶ୍ୱର
ଯାହା କହିଲା ମର୍କଟ ସେହି କଥାକର ।
ଜଗତିରୁ ଓହ୍ଲାଇ ପ୍ରଶସ୍ତ ବେଗେ ଗଲା
ହନୁମାନକୁ ଚାହିଁଣ ବଚନ ବୋଇଲା ।
ଦେଖାରେ ମର୍କଟ ବେଗେ ତୋର ଲାଞ୍ଜକାଢ଼ି
ବିବିଧ ବର୍ଣ୍ଣରେ ଆମ୍ଭେ ଆଣିଅଛୁ ଶାଢ଼ୀ ।

ବିବିଧ ବର୍ଣ୍ଣର ବସ୍ତ୍ର ଏବେ ଭୋଗ କର
ଦିଅରେ ଲାଞ୍ଜ ବଢ଼ାଇ ଆନ ନ ବିଚାର ।
ଶୁଣି କରି ହନୁମନ୍ତ କପାଳେ ମାରେ ହାତ
କାନ୍ଦି ବୋଲେ ଭୋ ସ୍ୱାମୀ ମୁଁ ହୋଇଲି ଅନାଥ
ପୂର୍ବ ଜନମରେ ଏହା ଅର୍ଜିଥିଲି ମୁହିଁ
ଋଷିଙ୍କର ମଢ଼ିଆ ମୁଁ ଭାଙ୍ଗିଲି କିମ୍ପାଇଁ ।
ଋଷିମାନଙ୍କର ଶାପ ପଡ଼ିଲାକ ମୋତେ
ଆଜ କେ ରକ୍ଷା କର୍ତ୍ତା ନାହିଁ ମୋର ଏଥେ ।
ହନୁମନ୍ତ ବୋଲି ଏ ଦେହ ଯାଉ ମୋର
ଏତେ ମାଡ଼ ଖାଇ ଜିଇବା ନୁହେଁ ଭଲ ।
ପାହୁନାଣୀ ଘାତେ ମୋର ଫାଟାଉଛି ଦେହ
ବେକମୁଣ୍ଡା ଧକ ଧକ କମ୍ପୁଛି ହୃଦୟ ।
ମୁଦ୍‌ଗରର ମାଡ଼ରେ ଦେହ ମୋର ଚୂନା
ପୋଡ଼ିଦିଅ ମୋତେ କଦର୍ଯ୍ୟ ଯାଉକିନା ।
ପ୍ରଶସ୍ତ ବୋଇଲା ନୁହଇ ନିଶ୍ଚିତ
ଲାଞ୍ଜ କାଢ଼ି ଦିଅ ପବନର ସୁତ ।
ଶୁଣିଣ ହନୁମନ୍ତ ଉଠିଣ ବସିଲା
ରାମରାମ ପଦ ଗୋଟି ହୃଦରେ ଧ୍ୟାଇଲା ।
ପଛ ଆଡ଼କୁ ସେ ଲାଞ୍ଜକୁ ମୋଡ଼ି ଦେଇ
ଆସୁଥିଲି କିମ୍ପା ବୋଲେ ଉପରକୁ ଚାହିଁ ।
ଏକଥା ଶୁଣି ଦୈତ୍ୟେ ହରଷ ହୋଇଲେ
ବସ୍ତ୍ରମାନ ନେଇ ଲାଙ୍ଗୁଡ଼ରେ ଗୁଡ଼ାଇଲେ ।
ଏମନ୍ତ ସମୟରେ ହନୁମନ୍ତ କହି
ଶୁଣ ମୋ ବଚନ ଲଙ୍କାପୁର ସାଇଁ ।
ସତେ କି ମୋ ଲାଙ୍ଗୁଳେ ଜୁଇ ଲଗାଇବୁ
ପଛକେ ଭାଳିଲେ ଏ ସୁଖ ନ ପାଇବୁ ।
ବଳରାମ ଦାସ ମନେ ଭାବନା କରଇ
ଏ ଆପଦରୁ ତ୍ରାହି କର ହେ ଲଙ୍କସାଇଁ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ପ୍ରାନ୍ତ ସୁନ୍ଦରା କାଣ୍ଡ କହିବି ବିସ୍ତାରି ।
ହନୁମନ୍ତ ମନେ ମନେ ସନ୍ତୋଷ ହୋଇଲା
ଛନ୍ଦରେ ନାନା ପ୍ରକାର ଦୁଃଖ ପ୍ରକାଶିଲା ।
ଅଷ୍ଟଦିଗପାଳେ ସାକ୍ଷୀ ହୋଇଥାଅ
ମୋହଠାରେ ଦୋଷ କେବେ ହେଁ ନ ଦିଅ ।
ଜନକ ନନ୍ଦିନୀ ଶ୍ରୀରାମଙ୍କ ପାଟରାଣୀ
ତାହାଙ୍କୁ ଚୋରାଇ ଆଣିଛି ଲଙ୍କମଣି ।
ଶ୍ରୀରାମଙ୍କ ଦୂତ ଅଟଇ ମୁଁ ଜାଣ
ମୋତେ କୁପାଞ୍ଚ କଲା ମାରିବାକୁ ଯେ ରାବଣ ।
ଜଗତରେ ଦୂତ ଯେ ଅଟନ୍ତି ଅବଧ
ଅବଧ ବଧିବାକୁ କଲୁ ଯେବେ ସଧ ।

ଏ ଲଙ୍କାରେ ମୃତ୍ୟୁ ଜନମେ ଲେଖା ଅଛି ମୋର
ତେଣୁ କରି ମୁହିଁ ଆସିଲି ଏ ଲଙ୍କାପୁର ।
ଯେଉଁରୂପେ ମରିବି ସେ କଥା ଦେଲି କହି
ପ୍ରାଣ ଗଲାବେଳେ ମୁଁ ନିଶତ ହୁଅଇ ।
ତୁ କିମ୍ବା ବସ୍ତ୍ରକୁରେ କରୁଅଛୁ ଲୋଭ
ମୋର ଏହିଠାରୁ ସରୁଛି ବଇଭବ ।
ଗଲାଦ୍ରବମାନ ପାଇବ ପୁଣି ତୁମ୍ଭେ
ମୋତେ ତ ଜିଆଇ ନ ପାରିବ କେଭେ ।
ଏକଥାକୁ ନ ବିଚାରି ମନରେ ଲୋଭ କରୁ
ପ୍ରାଣରେ ମାରିବୁ ମୋତେ ମନରେ ନ ବିଚାରୁ ।
ଏହା ଶୁଣି ଲଙ୍କପତି ଦେଲାକ ଆଦେଶ
ଚାଙ୍ଗଡ଼ା ଘରେ ମୋର ଅଛି ଯେତକ ବାସ ।
ଆଜ୍ଞା ପାଇଣ ବେଗେ ଭଣ୍ଡାର ଅଧିକାରୀ
ଆଣିଲା ଦଶ ସହସ୍ର ମଡ଼ିଆଳ ଶାଢ଼ୀ ।
ଲାଞ୍ଜରେ ବେଢ଼ାଇଲା ଅତି ଯତନରେ
ବିବିଧ ବସନ ଆଣି ତାର ପରେ ।
ଉବୁରିଣ ଲାଞ୍ଜ ଯେ ଦିଶେ ଚାରି ହାତ
ପୁଣି ଯାଇ ବସ୍ତ୍ର ଆଣିଲେ ତ୍ୱରିତ ।
ଲାଞ୍ଜରେ ଗୁଡ଼ିଆନ୍ତେ ଅଳପ ଦିଶେ ଆଉ
କୋପରେ ଆଜ୍ଞା ଦେଲା ନୃପତିକୁଳ ରାହୁ ।
ତେତେକ ବସନ ମୋର ତଡ଼ପ ଲାଗିଅଛି
ଚାଙ୍ଗଡ଼ା ଘରୁ ମୋର ଘେନିଆସ ବାଛି ।
ଧାଇ ମୁଦୁସୁଲୀ ଭିତରେ ପୁରେ ଯାନ୍ତୁ
ସେ ଘରୁ ବସ୍ତ୍ରମାନ ଆଣିଣ ଦିଅନ୍ତୁ ।
ନଗ୍ରର ଦଣ୍ଡୁ ଆସୀକି ଆଜ୍ଞା ଦେଲା ବେଗେ
ପାଞ୍ଚକୋଟି ବସ୍ତ୍ର ଆଣି ଦିଅ ଏହି ଲାଗେ ।
ଆଜ୍ଞା ପାଇ କଟୁଆଳ ବେଗେ ଚଳିଗଲା
ହାଟ ବାଟ ଦାଣ୍ଡରୁ ବସ୍ତ୍ର ଜୁର କଲା ।
ପ୍ରତି ଘରେ ପଶିଣ ବସନ ଘେନିଗଲା
ଆପଣାର ଦେଶକୁ ଆପଣେ ଉଜାଡ଼ିଲା ।
ଧୋବା ତୁଠ ମାନ ସେ କରନ୍ତି ହୁରି ଜୁରି
ଯେ ଯାହାଘରେ ଲୋକେ ପକାନ୍ତି ହାଲହୋଳି ।
କିଏ ବୋଲଇ ଏକଥା ଶୁଣା ନାହିଁ ଶ୍ରୁତି
ବସ୍ତ୍ର ଗୁଡ଼ାଇଲେ କିଏ ମରିବ କେମନ୍ତି ।
କେ ବୋଲଇ ଏ କପି ଆସିଲାକ କାହୁଁ
ନାନାକଥା ଭିଆଣ ଏ ପୁରେ କଲା ସେହୁ ।
ଲୁଗା ଗୁଡ଼ାଇଲେ କି ହେବ ତା ମରଣ
ଜ୍ଞାନ ହରାଇଲେ ଏବେ ଲଙ୍କାପୁର ରାଣ ।
କେ ବୋଲଇ ତାକୁ ହାଣିଲେ ନୁହେ କିଛି
ତାକୁ ମାରିବାକୁ ଏ କୁପାଞ୍ଚ କରିଅଛି ।

ସତ୍ରେ ଯେବେ ଚନ୍ଦ୍ର ସୂର୍ଯ୍ୟ ସବୁ କଥାରେ ସାଥୀ
ରାମ ରାଣୀକି ଆଣିବା ମନ୍ଦ ଏ କରିଅଛି ।
ଦୂତକୁ ବଧ କଲେ ଏ ପୁର ଯିବ ଘରି
କାଲି ଏତେବେଳକୁ ଲଙ୍କା ଯିବ ଜଳି ।
କେ ବୋଲଇ ମନରେ ବିମନ କିମ୍ପା ହୁଅ
ରାଜାର ବଚନେ ଏବେ ବସନ କାଢ଼ିଦିଅ ।
ଯେତେବେଳେ ଯେଉଁ କଥା କରିବାନା ତାହା
ଏତେକାଳେ ବିଧାତା କଲା ଆଣି ଏହା ।
ଏତେ ବୋଲି ଦଇତ ହୁଅନ୍ତି ବିକଳ
ଦୁଇଶତ କୋଶ ଲଙ୍କା ପଡ଼ିଲା ଚହଳ ।
ପେଣ୍ଟ ଗଣ୍ଡିଆ ଯେ ରଜାର ଲୋକ ସଙ୍ଗେ
ପରର ଦ୍ରବ୍ୟମାନ ନିଅନ୍ତି ନାନାରଙ୍ଗେ ।
ଯେ ମୁଖରେ ପଡ଼ଇ କରଇ ପୁଣ କ୍ରୁର
ନଗ୍ରର ଦଇତ ଯେ ଛଚାଟ ଅପାର ।
ବସନମାନ ଘେନି ବେଗେ ଚଳିଗଲେ
ଦଶଗ୍ରୀବ ଆଗରେ ସମସ୍ତ ଗଦାଇଲେ ।
ପସରାଇତିମାନେ ଘେନି ବୁଲନ୍ତି ପସରା
ପେଣ୍ଡ ଗଣ୍ଡିଲା ଧରି କ୍ରୁର କଲେ ପରା ।
ଦୁଇ ଚାରିମେଳ ହୋଇ ଉଚ୍ଛୁଡ଼ି ଘେନି ଯାନ୍ତି
କେହୁ ନେଇ ଘରେ କିଛି ରଖିଣ ଆସନ୍ତି ।
ପ୍ରହରେ ପରିଯନ୍ତେ ପଡ଼ିଲା ଚମକ
ରହ ରହ ବୋଲିଣ ଉପରୁ କରେ ଡାକ ।
ସମସ୍ତଙ୍କ ବସ୍ତ୍ରମାନ ଏକଠାବ କରି
ବୋଝ ଭାର କରିଣ ନିଅନ୍ତି ବେଗ କରି ।
ଦଶଗ୍ରୀବ ଛାମୁରେ ଦେଲେ ନେଇ ତାହା
ଦେଖିକରି ସନ୍ତୋଷ ହେଲା ବିଂଶବାହା ।
ଛଡ଼ା ମଦୁସୁଲୀ ଯେ ଧାଇ ପରିବାରୀ
ଅନ୍ତଃପୁର ଭିତରୁ ଦ୍ୟନ୍ତି ଶାଢ଼ୀ ନେଇକରି ।
ଚାଙ୍ଗଡ଼ା ଘର ମେକାପ ଘେନିଣ ଶାଢ଼ୀମାନ
ଗଦାଇ ଦେଲା ନେଇ ନୃପତି ସନ୍ନିଧାନ ।
ଭଣ୍ଡାର ଅଧିକାରୀ ଭଣ୍ଡାରୁ ଶାଢ଼ୀ ଆଣି
ଗଦାଇ ଦେଲା ବେଳରେ ଦେଖେ ବିଂଶପାଣି ।
ହନୁମନ୍ତ ଲାଞ୍ଜକୁ ମେଲି ଅଛି ତହିଁ
ଦଇତ ଗୁଡ଼ାନ୍ତି ବସ୍ତ୍ର ମହାସୁଖ ପାଇ ।
ଯେତେ ବସନ ଆଣି ରୁଣ୍ଡ କରିଥିଲେ
ସବୁ ନେଇ ମାରୁତି ଲାଞ୍ଜରେ ବେଢ଼ାଇଲେ ।
ଚାରି ହାତକୁ ପୁଣ ନିଅଣ୍ଟ ବସନ
ଦେଖିକରି ଲଜ୍ୟା ପାଏ ଦଶାନନ ।
ଲାଞ୍ଜକୁ ବଢ଼ାଇଣ ହନୁମାନ ବସି
ଦଶାନନ ନ ଜାଣଇ ମାୟା ହେଲା ଆସି ।

ବିମୁଖ ପାଇଲା ଯେ ପ୍ରଶସ୍ତ ସେନାପତି
ନ ଅଣ୍ଟିଲା ଲାଞ୍ଜରେ ଛଣ ଗୁଡ଼ିଆନ୍ତି ।
ହନୁମନ୍ତ ବୋଇଲା ଟେକପଣ ବହୁ
ଭଲ ତୁ ଲଙ୍କାଗଡ଼ରେ ରାବଣ ବୋଲାଉ ।
ଲାଞ୍ଜ ଗୋଟିକୁ ମୋର ନ ଦେଲୁ ତୁ ବାସ
ରାମଙ୍କୁ ଜିଣିବାକୁ କରିଛୁ ସାହାସ ।
ମୋତେ ମାରିବାକୁ ତୋର ମୂଳ ହେଲା
ମୋ ମରଣ ବିଧାତା ଏତେ ଲେଖିଥିଲା ।
ତଇଳ ଅଣାଅଁ ଖରେ ବିଂଶପାଣି
ଲାଞ୍ଜରେ ବସନକୁ ତିନ୍ତାଅ ବେଗେ ପୁଣି ।
ଜୀଇବାର ମୋର ପ୍ରୟୋଜନ ନାହିଁ
ବେଗେ ମୁହିଁ ମଲେ ତୋର କଳଙ୍କ ଯିବଇଁ ।
ରାବଣ ବୋଇଲା ଦୋସାଧୁ ମୁଖ ଚାହିଁ
ଭଣ୍ଡାର ଘରୁ ନଡ଼ପ ଆଣି ଜମା କଲା ।
ଖୋଜିବାର ଖୋଜିଲେ ବୁହନ୍ତା ବୋହି ନେଲେ
ତଇଳମାନ ନେଇ ରାଜାର ଆଗେ ଦେଲେ ।
ଲାଞ୍ଜରେ ନଫନ ପଡ଼ିଲେ ଦୈତ୍ୟଗଣ
କେ ବୋଲଇ ମରିବ ଏ ଆଜପରା ଦିନ ।
ଚଇତ୍ର ଶୁକ୍ଳପକ୍ଷ ନବମୀ ଆଜଦିନ
ଶ୍ରୀରାମ ଦୂତ ଏତେ ନାଶ ଯିବ ଜାଣ ।
ଏସନକ ବିଚାର କରନ୍ତି ଦୈତ୍ୟଗଣ
ଏଥୁ ଅନନ୍ତରେ ଶୁଣ ଯେ ବିଧାନ ।
ତଇଳ ନ ଅଣ୍ଟିବାରୁ ହନୁ ମହାବଳୀ
ରାବଣକୁ ଚାହିଁଣ ସେହୁ ଦିଏ ଗାଳି ।
ତୁହିରେ ଦଶାନନ ଅନେକ କଥା କହୁ
ନିରପକ୍ଷ ଶରୀର ତୁ ମୂଢ଼ମତି ବହୁ ।
ମୋହର ଲାଞ୍ଜକୁ ତୁ ନ ଦେଲୁ ପୁରା ବାସ
ନଡ଼ପ ଛାରକୁ ତୁ କରିଛୁ ମୁହାଁସ ।
ଏଡ଼େ ବଡ଼ ରାଜା ହୋଇ କୁଟିଳ ବୁଦ୍ଧି ତୋର
ତୋ ଆଜ୍ଞା ବୁଝି କୁବେର ବୁଝେ ରତ୍ନପୁର ।
ଏହି ଛାର କଥାକୁ ଲୋଭ ତୁ ବଳାଇ
ମୋତେ କେମନ୍ତେ ଦେଉଛୁ ପରାଭବ ତୁହି ।
ଶୁଣି କରି ରାବଣ ହସିଣ କହିଲା
ଏତେବେଳେ କପି ତ ସତ ହିଁ କହିଲା ।
ଭଣ୍ଡାରୁ ଆଣ ମୋର ଅମୂଲ୍ୟ ତୈଳମାନ
ଯେତେକ ତୈଳ ଅଛି ଔଷଧକୁ ଜାଣ ।
ଅଗ୍ନିକୁମାର ତୈଳ ସମୀର ତୈଳପୁଣ
ହେମାର ହେମ କେଦାର ତୈଳ ଅଛି ଜାଣ ।
ନାରାୟଣ ତୈଳ ବାତରାକ ତୈଳ ଅଛି
ଭଣ୍ଡାର ଘରରୁ ଘେନି ଆସ ବାଛି ।

ତୈଳ ନ ଅଣ୍ଟିଲେ ଘିଅ ଘେନି ଆସ
ଯେମନ୍ତେ ତଇଳରେ ତିନ୍ତିବ ସବୁ ବାସ ।
ରାବଣ ଆଜ୍ଞାରେ ଭଣ୍ଡାର ଅଧିକାରୀ
ବେଗେ ଯାଇ ଅଣାଇଁଲା ବୋଝଭାର କରି ।
ଦେଖିଣ ଦଶଗ୍ରୀବ ବୋଇଲା ବେଗେଇଡ଼
ସବୁ ବସ୍ତ୍ର ତିନ୍ତୁ ଯେ ଟିକାଏ ନ ଛାଡ଼ ।
ଅସୁର ବଳମାନ ନଡ଼ପ ଘେନିଗଲେ
ହନୁମନ୍ତ ଲାଙ୍ଗୁଳ ଉପରେ ଅଜାଡ଼ିଲେ ।
ପ୍ରଶସ୍ତ ବୋଇଲା ଦେବ ଶୁଣ ଲଙ୍କପତି
ତଇଳରେ ଜର୍ଜର ହେଲା ଲାଞ୍ଜ ତିନ୍ତି ।
କିସ କରିବି ଦେବ ମୋତେ ଆଜ୍ଞା ଦିଅ
ମାରୁତି ବୋଇଲା କିସ ପୁଛୁ ରାୟ ।
ଆଣିଣ ହୁତାଶନ ଦିଅ ବେଗେ ଜାଳି
ମୁହିଁ ମଲେ ତୁମ୍ଭର ଯାଉ ସବୁ ଅଳି ।
ସାତଗୋଟା ଦଉଡ଼ି ଫିଟାଅ ବେଗ କରି
ମରିବାବେଳେ ବନ୍ଧନ ନ କର ଦଶଶିର ।
ଶୁଣି କରି ଦଶଗ୍ରୀବ ହସି ଆଜ୍ଞା ଦେଲା
ଲାଞ୍ଜରେ ଅଗ୍ନି ଜାଳି ଦିଅରେ ବୋଇଲା ।
ଶୁଣିଣ ଦେବ ସଭାରୁ ଉଠିଲେ ପବନ
କରଯୋଡ଼ି ଉଭା ହେଲେ ରାଜା ସନ୍ନିଧ୍ୟାନ ।
ରାବଣକୁ ଚାହିଁଣ ବୋଇଲେ ମରୁତ
ମୋହର ବଚନ ଶୁଣ ହେ ଲଙ୍କାନାଥ ।
ଏ କପି ହନୁମନ୍ତ ଅଟେ ମୋର ବଳା
ବାଳି ସୁଗ୍ରୀବ ଅଟନ୍ତି ଏହାର ମଉଳା ।
କେଶରୀ ତନୟ ପ୍ରଭଞ୍ଜନୀ ସୁତ
ମୋହର ବୀର୍ଯ୍ୟରୁ ଏ ହୋଇଛି ସମ୍ଭୁତ ।
ବାଳି ନୃପତି ଯେ ମଇତ୍ର ତୁମ୍ଭର
ଲେଖାରେ ମଉଳା ତୁମ୍ଭେ ହୋଇବ ହନୁର ।
ବିଶେଷେ ମୋହର ଆତ୍ମାରୁ ଉତପତ୍ତି
ଏକଥାକୁ ବିଚାର କର ଲଙ୍କପତି ।
ବାନ୍ଧିକରି ଅଣାଇଲୁ ମାଡ଼ ମରାଇଲୁ
ବିବିଧ ପ୍ରକାରେ ତାହାକୁ ଦଣ୍ଡ ଯେ ବିହିଲୁ ।
ଏବେ ତୁମ୍ଭେ ହନୁକୁ ନ ମାର ଯେ ଆଉ
ମୋହର ବୋଲକର ବେଳେକ ରକ୍ଷା ହେଉ ।
ପୁତ୍ର କଷ୍ଟ ମୋତେ ନ ଦିଅ ଲଙ୍କସାଇଁ
ବହୁ ଦୁର୍ଗତିରୁ ତାକୁ ରଖିଛି ବଞ୍ଚାଇ ।
ମୋହର କଥାକୁ ଏବେ କର ଲୟ
ଏ ବେଳକ ତାର ଦୋଷ କ୍ଷମାକର ରାୟ ।
ପବନଙ୍କ ବଚନ ଶୁଣିଣ ବିଂଶବାହୁ
କୋପରେ ବୋଇଲା ମୋତେ କେତେ କଥା କହୁ ।

ବାନରୀକୁ ଦେଖି ତୁହି ମଦନେ ବଶ ହେଲୁ
ବଳବନ୍ତ ପଣରେ ରମଣ ତାକୁ କଲୁ ।
ତେଣୁ ସେ ବାନର ଯେ ତୋହର କୁମର
ତାହାକୁ ସ୍ନେହ ତୁହି କଲୁ ହୋ ସମୀର ।
ଅକ୍ଷୟ କୁମର ଯେ ଅଟେ ମୋର ସୁତ
ତାହାକୁ ମାଇଲା ତୋର ପୁତ୍ର ହନୁମନ୍ତ ।
ମୟ ଦଇତର ଦୁହିତା ମନ୍ଦୋଦରୀ
ସେ ମୋର ପାଟରାଣୀ ଅଟଇ ମନୋହାରୀ ।
ତାହାର ଗର୍ଭରୁ ଯେ ହେଲେ ପାଞ୍ଚସୁତ
ଜ୍ୟେଷ୍ଠ ତନୟ ନାମ ଅଟେ ଇନ୍ଦ୍ରଜିତ ।
ନାଦ ମହାନାଦ ଦେବଦତ୍ତ ନାମ ଜାଣ
ଅକ୍ଷୟ କୁମାର ଯେ ଅଟଇଟି ସାନ ।
ସେ କୁମରକୁ ମାଇଲା ପାମର କପି ଛାର
ହାନି ଅପଚୟ କିଛି ନ କଲା ବିଚାର ।
ଇନ୍ଦ୍ରଜିତ ବୋଇଲା କିଛି ନ ଜାଣ ମରୁତ
ସହଜେ ତୁମ୍ଭର ସେ ନୁହେ ନିଜ ସୁତ ।
ଲେଖା ଲେଖିରେ ସିନା ଅଟଇ ତନୟ
ଏଥକୁ କିମ୍ପାଇଁ ମନରେ ଛଳ ହୁଅ ।
ମୁହିଁ କେହ୍ନେ ମୂର୍ଛି ବି ଭାଇକି ମରାଇ
ପରିଘାଇ କହ କେତେ ପର ପୁଅ ପାଇଁ ।
ତୁମ୍ଭେ ଦେବତାଏ କେଉଁକାଳେ ନୁହ ଭଲ
ତୁମ୍ଭର ଉପାୟରେ ଏକଥା ମାନ କଲ ।
ନୋହିଲେ କି ମର୍କଟ ଏଡ଼େ କର୍ମ କରି
ଶ୍ରୀରାମ ମାନବକି ଆମ୍ଭଙ୍କୁ ହୁଏ ସରି ।
ତୁମ୍ଭ ଭିଆଣ ସବୁ କଲ ତୁମ୍ଭେ ପରା
ତୁମ୍ଭର ବିଚାରରେ ମୋର ଭାଇ ମଲା ।
ଲାଜ ସଂକୋଚଯେ ତୁମ୍ଭ ମୁଖେ ନାହିଁ
ଦେବତା ହୋଇ ଅସୁର ପାଦେ ଖଟ ରହି ।
ଏବେ ଏପରି କହ ପରପୁଅ ପାଇଁ
ଆମ୍ଭର ମନ୍ଦ କଥା ମନେ ଅଛ ବହି ।
ରାମ ଲକ୍ଷ୍ମଣଙ୍କୁରେ ବାରତା ଦେବ ପୁଣ
ଆମ୍ଭଙ୍କୁ ମରାଇଲେ ନିଶ୍ଚିନ୍ତ ହେବ ଜାଣ ।
ତୁମ୍ଭେ ମନ୍ଦ ଚିନ୍ତିଲେରେ ଆମ୍ଭର କିସ ହୋଇ
ଯେବେରେ ରଘୁନାଥ ଏଠାକୁ ଆସିବଇଁ ।
ଆମ୍ଭର ବାଣରେ ମରିବେ ବେନି ଭାଇ
ତୁମ୍ଭେ ଦେବତାଏ କହିଲେ କିସ ହୋଇ ।
ଯେବେ ଦଶରଥ ପୁଅ ଆମ୍ଭଙ୍କୁ ମାରିବେ
ସେତେବେଳେ ତୁମ୍ଭଙ୍କୁ ସେ ନିଶ୍ଚିନ୍ତ କରିବେ ।
ତୁମ୍ଭେ ରଘୁନାଥଙ୍କୁ ତ କରିଅଛ ବଳ
ବିଚାରିଛ ଆମ୍ଭର ସାରିବ ସ୍ଥଳକୁଳ ।

ଅନ୍ୟ ଲୋକ ହେଲେ କିରେ ପାଇବକି ଯଶ
ନାରାୟଣ ଜନ୍ମ ନୋହିଲେ ନୋହୁ ଆମ୍ଭେ ନାଶ ।
ସେ ଆମ୍ଭ ବଇରୀ ଅଟେ ମୁକତି ପସରା
ତାଙ୍କ ହସ୍ତେ ମଲେ ଆମ୍ଭେ ସ୍ୱର୍ଗ ଯିବୁଁ ପରା ।
ଇନ୍ଦ୍ରଜିତ କହିବାରୁ ମରୁତ କହିଲା
ମରିବାର କଥାମାନ ତୋ ପିତା ଅର୍ଜିଲା ।
ଯେତେବେଳେ ଜନମ ହେଲା ତୋର ପିତା
କର୍ମରେ ତାହାର ଯେ ଲେଖିଛି ବିଧାତା ।
ଶ୍ରୀରାମଚନ୍ଦ୍ରଙ୍କ ନାରୀ ସୀତାଙ୍କୁ ହରିଲେ
ନିଶ୍ଚୟ ତୁ ମରିବୁ ଅନ୍ୟଥା ନୋହିପାରେ ।
ଜନକର ଦୁହିତା ଆଣିଲେ ଜାନକୀ
ମରିବ ବୋଲି ବିଧତା କର୍ମରେ ଅଛି ଲେଖି ।
ନ ହରିଲେ ଛପନଗଣ୍ଡା ଯୁଗ ଜିଇ
ବର ଦେଲାବେଳେ ବିଧାତା ଗଲେ କହି ।
ସେ କଥାକୁ ପିତା ତୋର ଅପ୍ରତେ ପୁଣ କଲା
ଯାଗକୁଣ୍ଡେ ମୁଣ୍ଡମାନ କାଟି ପକାଇଲା ।
ଅଗ୍ନିରେ ପକାନ୍ତେ ଅକ୍ଷୟ ତହିଁ ଦେଖି
ସୀତାଙ୍କୁ ହରିଲେ ତୁ ମରିବୁ ବିଂଶ ଆଖି ।
ତାହା ଶୁଣି ତୋ ପିତା ଧାତାଙ୍କୁ କହିଲା
ସେ କଥା ମନରୁ ପାସୋର ଯିବ ପରା ।
ଶୁଣିଣ ବିଧାତା ଚିତ୍ରପଟ ଦେଲା
ସେ ଚିତ୍ରପଟ ଲିଖନ ସାଇତି ରଖିଲା ।
ପକ୍ଷକରେ ଥରେ ଯେ ପଢ଼ଇ ତୋର ପିତା
ଚୌଦଗଣ୍ଡା ଯୁଗଯାଏଁ କଲା ସେହୁ ଚେତା ।
କାଳ ଘୋଟିଲାବେଳେ ଅଚେତା ହୋଇଲା
ଜାନକୀଙ୍କି ଆଣିବାକୁ ଲଙ୍କାରୁ ବାହାରିଲା ।
ସେତେବେଳେ ମାତା ତୋର ମନା କଲା ପୁଣ
ନ ମାନି ତୋ ପିତା ଗଲା ପଞ୍ଚବଟୀ ବନ ।
ମାୟାମୃଗ ଦେଖାଇଲା ଶ୍ରୀରାମଙ୍କୁ ତହିଁ
ଶ୍ରଦ୍ଧା କରି ତାକୁ ମାରିଗଲେ ରଘୁସାଇଁ ।
ମାୟା ଡାକ ଶୁଣିଣ ଗଲେକ ଲକ୍ଷ୍ମଣ
ଦେଖିଣ ତୋର ପିତା ସନ୍ୟାସୀ ହେଲା ପୁଣ ।
ଭିକ୍ଷା ସେ ମାଗିଲା ଜାନକୀ ପାଶେ ଯାଇ
ସେଦିନ ଜାନକୀ ଅଶୁଦ୍ଧ ଥିଲେ ହୋଇ ।
ଜାନକୀ ବୋଇଲେ ଶୁଣ ତପୋବନ୍ତ
ମଢ଼ିଆରେ ନାହାନ୍ତି ରାମ ଲକ୍ଷ୍ମଣ ତ ।
ମୋ ସ୍ୱାମୀଦେବର ଯେବେ ମଢ଼ିଆରେ ଥାନ୍ତେ
ବହୁତ ସମ୍ବନ୍ଧନା ତୁମ୍ଭଙ୍କୁ କରନ୍ତେ ।
ମାୟାରକ୍ଷି ବୋଇଲେ ଶୁଣ ତୁଗୋ ନାରୀ
ଭିକ୍ଷାସୀ ଅଟୁଁ ଆମ୍ଭେ ବୋଲାଉଁ ବ୍ରହ୍ମଚାରୀ ।

ସୀତୟା ବୋଇଲେ ଶୁଣ ଆହେ ଋଷି
ଭିକ୍ଷା କିଏ ସେ ତୁମ୍ଭଙ୍କୁ ଦେବ ଯେ ପରସି ।
ପକ୍ଷେକ ଦେହ ମୋର ଅଶୌଚ ଯେ ଜାଣ
ଫଳମୂଳ କେମନ୍ତ ତୁମ୍ଭଙ୍କୁ ଦେବି ପୁଣ ।
ସେଠାରୁ ତୋର ପିତା ତାହାଙ୍କୁ କହିଲା
ଲଙ୍କାର ରାବଣ ମୁଁ ଆସି ଅଛି ପରା ।
ତୋତେ ମୁଁ ଲଙ୍କାକୁ ନେବିରେ ସୁନ୍ଦରୀ
ଶୁଣିଣ ଜାନକୀ ଯେ ଅଗ୍ନିରୂପ ଧରି ।
ବୋଇଲେ ମରିବାର କାଳ ହେଲା ତୋର
ଲଙ୍କାକୁ ଗଲେ ମୁଁ ତୁ ମରିବୁ ପାମର ।
ଶ୍ରୀରାମ ନାରାୟଣ ତୋର ପାଇଁ ଜାତ
ତୋତେ ମାରି ଦେବଙ୍କୁ ରଖିବେ ଜଗନ୍ନାଥ ।
ତାଙ୍କଠାରୁ ଶୁଣିଣ ତୋ ପିତା କହିଲା
ଭାଇବନ୍ଧୁ କୁଟୁମ୍ବ ଅଛନ୍ତି ମୋର ପରା ।
ସମସ୍ତଙ୍କୁ ମାରିବାକୁ ରଖିଛି ତୋତେ ନେଇ
ତୋତେ ଛାଡ଼ିଯିବାକୁ ମୋ ମନ ବଳୁ ନାହିଁ ।
ଶୁଣି ଜାନକୀ ବୋଇଲେ ଏ କଥାଟି ସତ୍ୟ
ତୋର ପିତା ବୋଇଲେ ମୁଁ ସତ୍ୟକଲି ଏଥ ।
ଜାନକୀ ବୋଇଲେ ନାହିଁ ମୋର ଦୋଷ
ନିଶ୍ଚୟ ରାମ ବାଣେ ତୋ ବଂଶ ହେବେ ଧ୍ୱଂସ ।
ଆସ ରଥେ ବସ ବୋଲି କହିଲେ ତୋ ପିତା
ଶୁଣିଣ ତୋଷମନେ ବାହାରିଲେ ସୀତା ।
ଜାନକୀ ଆସି ଯହୁଁ ରଥରେ ବସିଲା
ଅଗ୍ନିତେଜ ଲାଗି ତୋର ପିତା ଘୁଞ୍ଚିଗଲା ।
ଏ ପର ପିଢ଼େ ଜାନକୀ ତଳେ ତୋର ପିତା
ରଥବାହି ଆଣିଲା ବୀର ଦଶ ମଥା ।
ଅଗ୍ନିରୂପ ଦେଖି ଭୟେ ଅଶୋକ ବନେ ରଖି
ଅଗ୍ନିରେ ସ୍ୱାହାନ କରଇ ଶଶି ମୁଖି ।
ତେରମାସ ହେଲା ସେ ନ କରେ ଆହାର
ସାକ୍ଷାତରେ ଦେଖୁଛ ଅଛି ଏ ଲଙ୍କାପୁର ।
ଘରଣୀକି ଆଣିବାରୁ ଶ୍ରୀରାମ କ୍ରୋଧ ହେଲେ
ତୁମ୍ଭର ପୁରକୁ ହନୁମନ୍ତକୁ ପେଶି ଦେଲେ ।
ତେଣୁ ସେ ହନୁମନ୍ତ ଲଙ୍କା ଗଡ଼କୁ ଆସି
ସୀତାଙ୍କୁ ଠାବକଲା ଅଶୋକ ବନ ପଶି ।
ଚେତାଇ ଦେବାକୁ ସେ ମଧୁବନ ଗଲା
ତୋଟା ଭଗ୍ନ କରି ସୈନ୍ୟଙ୍କୁ ସେ ନାଶକଲା ।
ସେନାପତି ଜମ୍ବୁମାଳି ଅକ୍ଷୟକୁ ମାରି
ତେଣୁ ତୁ ବାନରକୁ ଭାଇର ଛଳେ ଧରି ।
ଦଣ୍ଡ ମଣ୍ଡ ଦେଇଣ ଅନେକ ଶାସ୍ତି ଦେଲା
ବିଭୀଷଣ କହିବାରୁ କଥାକୁ ନ କଲା ।
ମୋହର କହିବାରେ କୋପ କରୁଛ ତ
ପୂର୍ବର କଥାକୁ ନ ହେଜୁଛ ଚିତ୍ତ ।
ନନ୍ଦୀର ଶାପ କିରେ ହୋଇବ ମୋକ୍ଷଣ
ରମ୍ଭା ନାରୀର ଶାପ କେଣିକି ଯିବ ପୁଣ ।
ଆପଣାର କଥାରେ ଆପଣାକୁ କାଳ
କପାଳ ଲେଖାକୁ କେ କରିବ ବଦଳ ।
ହନୁମନ୍ତ ଏକା ବିନା ଅନେକ ଅଛ ତୁମ୍ଭେ
ଏକାକୀ ମାରୁତି ତୁମ୍ଭ ରାଜ୍ୟକୁ ଆସେ ଏବେ ।
ଏକା ମର୍କଟରେ କେତେ କର୍ମ ଗଲା
ବାପର ସଙ୍ଗେ ବଣା ହେଲୁ ତୁହେ କଳା ।
ନଭ ଶାଗର କପି ଭାଲୁ ବନ ପୂରି
ସେମାନେ ଅଇଲେ ରହିବକି ଲଙ୍କାପୁରୀ ।
ସେଥି ସକାଶେ ଆମ୍ଭେ କହୁଛୁଁରେ ଭଲ
ଭଲ କହିଲେ ତୁମ୍ଭେ ମଣୁ ଅଛ ସଳ ।
ଦୂତକୁ ମାରିବାର ଜଗତେ ନାହିଁ ଦେଖା
ଦେଖୁଛ ତ ମାରୁତିର ନାହିଁ କେହି ସଖା ।
ଅଧର୍ମର ବାଟରେ ପଶୁଛ ଆସି ତୁମ୍ଭେ
ଛାଡ଼ିଲ ଧର୍ମବାଟ ବିଚାର ବାଦ ଏବେ ।
ଇନ୍ଦ୍ରଜିତ ବୋଇଲା ଧର୍ମ କଥା ମୂଳ
ଅଧର୍ମ ନ କଲେ ଦିଶା ଝଳନ୍ତ ପାଦତଳ ।
ଯେବୁଦିନେ ଦୈତ୍ୟକୁଳ ଅଧର୍ମୀ ଆମ୍ଭେ ଅଟୁ
ତେଣୁ ଦେବତାମାନଙ୍କୁ ଶାସ୍ତି ଦେଇ ଯାଉଁ ।
ମରିବା ଜିଇବାକୁ ଆଶା ଯେ ନ କରୁ
ତୁମ୍ଭ ପ୍ରାୟ ହୀନଜନଙ୍କୁ ନ ବିଚାରୁ ।
ଇନ୍ଦ୍ରଜିତ କହିବାରୁ ମାରୁତି ଶୁଣିଲା
ନିବର୍ତ୍ତ ହୋଇଣ ଯେ ମାରୁତ ରହିଲା ।
ମାରୁତିକି ମାରିବାରେ ତାହାର ବିଚାର
ମରୁତ କଥା ନ ମାନେ ଇନ୍ଦ୍ରଜିତ ବୀର ।
ବିଭୀଷଣ କଥାକୁ ନ କଲା ଦଶଶିର
ମାରୁତିକି ମାରିବାକୁ ତାହାର ବିଚାର ।
ବିଭୀଷଣ ସେଠାରେ ରହିଲା କି ଗଲା
ଦେବତାମାନଙ୍କୁ ଯେ ରାବଣ କିସ କଲା ।
ସେ କଥା ମୋର ଆଗେ କହ ବିଶ୍ୱବାସ
ଯେ କଥାମାନ ଶୁଣିଲେ ହେବି ମୁଁ ସନ୍ତୋଷ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ମନରେ ବିଚାର ଯେ କରଇ ମାରୁତି ।
ଦେବତାଙ୍କର ହେତୁରୁ ମାରୁତି ନ ମରଇ
ଦେବତାଙ୍କ ସାହାଯ୍ୟ ମାରୁତି ଅଛି ପାଇ ।
ଦେବତାଙ୍କୁ କହିବିଅ ଏଠାରୁ ସେ ଯାନ୍ତୁ
ମର୍କଟର ମରଣ ସେମାନେ ନ ଦେଖନ୍ତୁ ।

ଦେଖିଲେ ରାମଙ୍କୁ କହି ଦେବେ ଦେବଗଣ
ଦୂତକୁ ତୋହର ଏବେ ମାଇଲା ରାବଣ ।
ଶୁଣି କରି ଆସିବେ ସେ ହୋଇ କୋପମନ
ଅନର୍ଥ କରିବେ ଏ ପୁରେ ପଶିଣ ।
ବାରତା ନ ପାଇଲେ ନ ଆସିବେ ଆଉ
ଏମନ୍ତ ବିଚାର ମୋ କରଇ ଲଙ୍କା ରାହୁ ।
ଦେବତାଙ୍କୁ ବୋଇଲା ତୁମ୍ଭେ ସବେ ଯାଅ
ନିଜ ନିଜ ପୁରରେ ଶାନ୍ତିଭାବେ ରହ ।
ପାଞ୍ଚ ସାତ ଦିବସ ଛାଡ଼ିଣ ଆସିବ
କପିକି ନ ମାରିବି ଭଲୁ ତୁମ୍ଭ ଭାବ ।
ତୁମ୍ଭର କଥା ଭଲୁ ରାମଦୂତ ଯାଉ
ଶୁଣି ରାମ ଆସିଲେ କି କରିବ ସେହୁ ।
ଶୁଣିଣ ଦେବଗଣ ଆନନ୍ଦେ ଚଳିଗଲେ
ଅମରପୁରେ ଯାଇ ପ୍ରବେଶ ହୋଇଲେ ।
ସଭା ମଣ୍ଡାଇଣ ବସିଲେ ସର୍ବ ସୁର
ବୋଇଲେ ହନୁମନ୍ତ ଅଟେ ପାରିବାର ।
ସୀତାଙ୍କୁ ଠାବକଲା ମାଇଲା ଅସୁର
ଲଙ୍କା ପୋଡ଼ି ଦେବାକୁ ସେ କରିଛି ବିଚାର ।
ଶୂନ୍ୟରେ ଥାଇ ଆମ୍ଭେ ଦେଖିବା ଏ ଗତି
ଏମନ୍ତ ବିଚାର ଯେ ଦେବତା କରନ୍ତି ।
ହର ଦେବ ବ୍ରହ୍ମା ଯେ ତାଙ୍କର ସଙ୍ଗେ ରହି
ଲଙ୍କା ପୋଡ଼ି ଦେବାକୁ ସେ ବିଚାର କରଇ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବିଭୀଷଣ ସେଠାରୁ ବେଗେ ଗଲା ଚଳି ।
ଆପଣା ପୁରରେ ହେଲା ଉପଗତ
ଦାସୀମାନେ ଆସିଣ ମଣାଇଁ ନେଲେ ପଥ ।
ଶତେରାଣୀ ଆସିଣ ତାହାକୁ ଓଳଗିଲେ
ସୁବାସିତ ଜଳରେ ଚରଣ ଧୋଇଦେଲେ ।
ମର୍ଦ୍ଦନ ମାଜଣା କରିଲେ ସେ ପୁଣ
ସୁବାଷିତ ଜଳରେ କରାଇଲେ ସ୍ନାନ ।
ଅମଳାଣ ବସ୍ତ୍ର ଯେ ପିନ୍ଧିଲା ବିଭୀଷଣ
ନିତ୍ୟକର୍ମ ସାରିଣ କଲାକ ଭୋଜନ ।
ଆଞ୍ଚୋମନ ସାରିଣ ବସିଲା ପଲଙ୍କରେ
ରାଣୀହଂସ ଆସିଣ ଖଟିଲେ ଚରଣରେ ।
ସକଳ ସଙ୍ଗିନୀଙ୍କି କହିଲା ବିଭୀଷଣ
ରାବଣର ମୃତ୍ୟୁକାଳ ହୋଇଲା ତୁମ୍ଭେ ଜାଣ ।
ତେଣୁ ସେ ଦେବତାଙ୍କର ବୋଲ ନ ମାନିଲା
ବିଧାତାର ବଚନ ଅନ୍ୟଥା ଏବେ କଲା ।
ମୋହର ବଚନ ଯେ ନ କଲା ଦଶମାଥ
ଦଶ ପୁତ୍ର ଘେନି ତୁମ୍ଭେ ରହିବ ନିଶ୍ଚିନ୍ତ ।

ମୁଁ ଯାଇ ରାମଠାରେ ପଶିବି ଶରଣ
ରାବଣ ମଲେ ମୁଁ ଯେ କରିବି ରାଜପଣ ।
ସେ ଯେବେ ଦେଶରୁ ବାହାର କରିଦେବ
ବନରେ ପେଟ କାଟି ରହିଥିବି ସର୍ବ ।
ଶୁଣିଣ ସର୍ବନାରୀ ସନ୍ତୋଷ ମନ ହେଲେ
ବିଭୀଷଣ ଜ୍ୟେଷ୍ଠ ନାରୀ ପଚାରେ ପୁଣି ଭଲେ ।
ବୋଇଲା ସେ ରାମଙ୍କୁ ଶରଣ କେହୁ ଗଲା
ଶରଣ ପଶି କେହୁ ନିଶ୍ଚିନ୍ତ ହୋଇଲା ।
ବିଭୀଷଣ ବୋଇଲା ସୁଗ୍ରୀ ପଶିଲା ଶରଣ
ବାଳିକି ମାରି ତାକୁ ରାଜା କଲେ ପୁଣ ।
ଜ୍ୟେଷ୍ଠ ନାରୀ ବୋଇଲା ଯେବେ ଶରଣ ପଶିବ
ଶ୍ରୀରାମ ଚରଣେ ଅବିଶ୍ୱାସୀ ନ ହୋଇବ ।
ବିଶ୍ୱାସରେ ରହିଲେ ସକଳ କାର୍ଯ୍ୟ ସିଦ୍ଧି
ଧର୍ମକୁ ଲଙ୍ଘିଲେ ହୁଏ ରୋଗ ଶୋକ ବ୍ୟାଧି ।
ଶୁଣିଣ ବିଭୀଷଣ ହରଷ ହୋଇଲା
ସ୍ୱୟଂ ନାରାୟଣ ସେ ଦଶରଥ ବଳା ।
ଏମନ୍ତ ବିଚାର ଯେ ବିଭୀଷଣ ଘରେ
ବିଭୀଷଣ କହେ ଏକଥା ଗୁପ୍ତ ରଖ ଭଲେ ।
ଏଥୁ ଅନନ୍ତରେ ଗୋ ଭଗବତୀ ଶୁଣ
ମନ୍ଦୋଦରୀକି କହିଲେ ଦାସୀଏ ଯାଇଣ ।
ବୋଇଲେ ବିଭୀଷଣ ଦିଅର ତୁମ୍ଭର
ତୁମ୍ଭ ସ୍ୱାମୀଙ୍କି କହିଲେ ଉଚିତ ବିଚାର ।
ବୋଇଲେ ଦୂତ ବଧ ନାହିଁ ଚାରିଯୁଗେ
ଛାଡ଼ିଦିଅ ବାନରକୁ ଯାଉ ଏଥୁଁ ବେଗେ ।
ଶୁଣିଣ ଲଙ୍କପତି ଅତି କ୍ରୋଧ ହେଲା
ଗାଳି ଶୁଣି ବିଭୀଷଣ ସେଠାରୁ ଅଇଲା ।
ଶୁଣିଣ ମନ୍ଦୋଦରୀ ବେଗେ ଚଳିଗଲା
ବିଭୀଷଣ ନବରେ ପ୍ରବେଶ ହୋଇଲା ।
ଦେଖି ସକଳ ନାରୀ ଚରଣେ ଓଳଗିଲେ
କରଯୋଡ଼ି ଆଗରେ ସମସ୍ତେ ଉଭା ହେଲେ ।
ଦେଖିଣ ବିଭୀଷଣ ରାଣୀଙ୍କି ପଚାରେ
କି କାରଣେ ବିଜୟ କଲ ମୋର ପୁରେ ।
ମନ୍ଦୋଦରୀ ବୋଇଲା ଦାସୀଏ ମୋତେ କହି
ଲଙ୍କପତି ତୁମ୍ଭଙ୍କୁ କ୍ରୋଧ ମନ ହୋଇ ।
ବିଭୀଷଣ ବୋଇଲା ସେ କଥା ଅସତ୍ୟ
କାଳ ଘୋଟିଲା ବେଳେ ନ ରହେ ଆୟତ ।
ମୁଁ ବୋଇଲି ରାଜନ ଦୂତକୁ ନ ମାର
ଦୂତମାନେ ବୋଲକରା ଅଟନ୍ତି ସମସ୍ତଙ୍କର ।
ତେଣୁଟି ଦଶାନନ ମୋତେ କ୍ରୋଧ ହେଲା
ମୋର କଥାରେ ବ୍ୟଥା ନ ଦିଅ ବୋଇଲା ।

ସେଥିଲାଗି ନିଜପୁରେ ଅଇଲି ଯେ ମୁହିଁ
ତୁମ୍ଭଙ୍କୁ କହୁଛି ଶୁଣ ଗୋ ମହାଦେଇ ।
ବିଧାତାର ବଚନ ନ କଲା ସେହୁ ପୁଣ .
ଦେବତାଏ କହିବାରୁ ଧିକ୍କାରିଲା ଜାଣ ।
ହନୁକୁ ମାରିବାକୁ ବିଚାରିଛି ମତି
ଦେଖିବ ଲଙ୍କାଗଡ଼ ପୋଡ଼ିବ ମାରୁତି ।
ଏକା କପି ଗୋଟାଏ ଏତେ ବଳ ମାରି
ଏହାଙ୍କର ବୁଦ୍ଧିରେ କିସ ତାଙ୍କୁ କରି ।
ତିନିପକ୍ଷ ଦୁଇଦିନ ସକଳ ନାଶଯିବ
ଲଙ୍କାପତି ବୁଦ୍ଧିରେ କିଛି ନ ରହିବ ।
କାଲି ରାତ୍ର ପାହିଲେ ମାରୁତି ଏଥୁ ଯିବ
ତିନି ଦିନରେ ରାମଙ୍କୁ ବାରତା କହିବ ।
ବାରଦିନେ ଲଙ୍କାକୁ ଆସିବେ ରଘୁନାଥ
ଆଉ ଚାରିଦିନରେ ଲଙ୍କାରୁ ଯିବି ମୁଁ ତ ।
ମୋହର ପୁତ୍ରନାତି ନାରୀମାନେ ପୁଣ
ଏମାନଙ୍କୁ ସମ୍ଭାଳି ରଖିବାବେଳେ ଜାଣ ।
ଶୁଣି କରି ମନ୍ଦୋଦରୀ ସନ୍ତୋଷ ବୋଇଲା
ସମସ୍ତଙ୍କୁ ସେଠାରୁ ବାହାର କରିନେଲା ।
ଏକାନ୍ତରେ ବିଭୀଷଣ ସଙ୍ଗରେ କଲା ପ୍ରୀତି
ରତି ରଙ୍ଗେ ତୋଷମୟ ଦୈତ୍ୟର ଦୁହିତି ।
ବୋଇଲା ମୋଠାରେ ତୁମ୍ଭର ଦୟା ଥିବ
କାଳେ କାଳେ ତୁମ୍ଭର ମୋହର ଅଟେ ଭାବ ।
ଏତେ କହି ମନ୍ଦୋଦରୀ ନିଜ ପୁରେ ଗଲା
ଏଥୁ ଅନନ୍ତରେ ଶୁଣ ହେମବନ୍ତୀ ଦୁଲା ।
ହନୁମନ୍ତ ଲାଞ୍ଜେ ତୈଳ କରି ଜର ଜର
କଥା ବୁଝିବାରେ ତହିଁ ସକଳେ ଗହଳ ।
ଇନ୍ଦ୍ରଜିତ ବୋଇଲା ଶୁଣ ହେ ସେନାପତି
ଏକଥା ଶୁଣି କରି କି ହେଲ ଭୋଳମତି ।
ତୁହୋ ପ୍ରଶସ୍ତ କିମ୍ପାଇଁ କରୁଅଛୁ ହେଳା
ଦେବତାଙ୍କର ମେଣ୍ଟ ତ ଏଠାରୁ ଭାଙ୍ଗିଲା ।
ଅଗ୍ନି ନେଇ ହନୁମାନ ଲାଙ୍ଗୁଳେ ଲଗାଅ
ବାର ଘଡ଼ି ବେଳ ହେଲା ଯାକୁ ବେଗେ ନିଅ ।
ଏ ପାପୀ ମର୍କଟ ତିନିଦିନ ହେଲା
ଆମ୍ଭଙ୍କୁ ଜଞ୍ଜାଳ କରୁଛି ଆସିପରା ।
ଶୁଣି ପ୍ରଶସ୍ତ ବୀର ଅଗ୍ନି ଘେନିଗଲା
ହନୁମନ୍ତ ଲାଞ୍ଜରେ ନେଇଣ ଲଗାଇଲା ।
ତଇଳ ରସ ଯହୁଁ ଅଗ୍ନିରେ ଲାଗିଲା
ପ୍ରଜ୍ୱଳିତ ହୋଇ ଅଗ୍ନି ଜଳିଣ ଉଠିଲା ।
ଏମନ୍ତ ସମୟରେ ବୀର ହନୁମାନ
ରାବଣ ମୁଖ ଚାହିଁ ବୋଲଇ ବଚନ ।

ଶୁଣ ହୋ ଦଶାନନ ନୃପତି ଅଟୁ ତୁହି
ତୋର ହୃଦରେ କିଞ୍ଚିତ ଦୟାଧର୍ମ ନାହିଁ ।
ଦେଖୁଛୁ ତ ମୋ ନାମ ବୀର ହନୁମନ୍ତ
ମୋଠାରେ କେମନ୍ତେ ତୁହି ଅଗ୍ନି ଲଗାଉ ତ ।
ଜଣାଗଲା ତୋର ସବୁ ବୁଦ୍ଧି ବଳ ଜ୍ଞାନ
ରାଜପଣ କରିବାର ବୁଦ୍ଧି ହୀନମାନ ।
ତୋର ଆଜି ସୁଫଳରେ ପାହିଥିଲା ରାତି
ନେତ୍ରରେ ଦେଖିବୁ ତୁ ଅଗ୍ନିଙ୍କ ତେଜ ମୂର୍ତ୍ତି ।
କି କହିବି ମୁହିଁରେ କାହାକୁ କହିବଇଁ
ମୋହର କର୍ମରେ ଯାହା ଲେଖିଅଛି ବିହି ।
ଦେଖିଣ ଆନନ୍ଦ ମନ ସୈନ୍ୟବଳ ହୋନ୍ତି
ମଲା ମଲା ବୋଲି ଉଚ୍ଚେ ଶବଦ କରନ୍ତି ।
ଜଗତୀ ପରେ ଥାଇ ହସେ ଦଶାନନ
ମନରେ ଆନନ୍ଦ ହେଲା ବିଶ୍ରବା ନନ୍ଦନ ।
ଦୈତ୍ୟମାନେ ଦେଖିଣ ଆନନ୍ଦେ ଗୀତ ଗାନ୍ତି
ହନୁ ଲାଙ୍ଗୁଳରେ ଅଗ୍ନି ଦେଖିଣ ହସନ୍ତି ।
ହାହା ବୋଲି ଶବଦ କରନ୍ତି ତହିଁ ଥୋକେ
କାହା ନେତ୍ରୁଁ ଅଶ୍ରୁଜଳ ପଡୁଅଛି ଶୋକେ ।
କେଉଁ ଦୈତ୍ୟ ଆନନ୍ଦ ହୋଇଣ ନୃତ୍ୟ କରି
କେଉଁ ଦୈତ୍ୟ ହରଷେ ବଜାଏ ଗାଲତୁରୀ ।
ରାବଣ ଆଜ୍ଞା ଦେଲା ବଜାଅ ତୁରୀ ବୀର
ଲଙ୍କାଗଡ଼ ଅରିଷ୍ଟ ଆଜ ହେଲା ଦୂର ।
ପାମର କପିକି ତ ପଡ଼ିଲା ପ୍ରମାଦ
ଆପଣା ଇଚ୍ଛାରେ ସେ କହିଲା ମୃତ୍ୟୁଭେଦ ।
ମରିବାର ବେଳେ ସେ ଶୁଣୁ ବାଦ୍ୟ ବାଜା
ବଜାଅ ଦୁନ୍ଦଭି ବାଜା ହେଉ ତେଜା ।
ଶୁଣିଣ ଦୈତ୍ୟମାନେ ବଜାନ୍ତି ଗାଲତୂରୀ
ହନୁମନ୍ତ ବୁକୁରେ ବେନିକର ମାରି ।
ମଲି ମଲି ବୋଲି କରି ଛଟପଟ ହୋଇ
ଲାଗିଲା ଅନଳ ମହା ପ୍ରଜ୍ୱଳିତ ହୋଇ ।
ଦଉଡ଼ି ଧରିଣ ଯେତେକ ଲୋକ ଥିଲେ
ଅଗ୍ନିତେଜ ଲାଗନ୍ତେ ସମସ୍ତେ ଦୂର ହେଲେ ।
ମେଲାହୋଇ ରହିଲା ପବନ କୁମର
ମନରେ ବିଚାର କରଇ ହନୁବୀର ।
ଦୈତ୍ୟଙ୍କର ସମାଚାର ସକଳ ଜାଣିଲି
ବୁଦ୍ଧିବଳ ପ୍ରତିଜ୍ଞା ସବୁ ଠାବ କଲି ।
ଏଥର ଭସ୍ମରାଶି କରିବି ଲଙ୍କାପୁର
ଏ ମହାରାଜ୍ୟଯାକ କରିବି ଛାରଖାର ।
ରାବଣକୁ ଚାହିଁଣ ବୋଲଇ ହନୁବୀର
ଦଉଡ଼ି ନ ଫେଡ଼ିଲୁ ମରିବା କାଳର ।

ରାବଣ ବୋଇଲା ତୁ ଅଗ୍ନିରେ ପୋଡ଼ିଯାଉ
ଶ୍ରୀରାମଙ୍କୁ ସୁମର ଆସି ସେ ଫିଟାଉ ।
ଏହା ଶୁଣି ମାରୁତି ଭିଡ଼ିମୋଡ଼ି ହେଲା
ସାତଗୋଟି ଦଉଡ଼ି ଖରେ ଫିଟିଗଲା ।
ରାବଣକୁ ଚାହିଁଣ ବୋଲଇ ହନୁମନ୍ତ
ବୁଦ୍ଧିରେ ବଳବନ୍ତ ଅଟୁ ତୁରେ ଦୈତ୍ୟ ।
ଏବେ ତୁ ଦଶଗ୍ରୀବରେ ଧର୍ମକୁ ଲଙ୍ଘିଲୁ
ଶ୍ରୀରାମଙ୍କ ଦୂତକୁ ମାରିବୁ ମନ କଲୁ ।
ଜଗତରେ ଦୂତମାନେ ଅଟନ୍ତି ଅବଧ
ଅବଧ ବଧିବାକୁରେ କଲୁ ତୁହି ସିଦ୍ଧ ।
ପାମର ରାବଣ ତୁରେ କଥା ନ ବିଚାରୁ
ପାପକଥାମାନଙ୍କୁ ତୁ ସର୍ବଦା ମନେ ଧରୁ ।
କୁତ୍ସିତ ବୁଦ୍ଧିମାନ ଶିଖିଲୁ କେଉଁଠାରୁ
ଅନଳେ ପୋଡ଼ିକରି ତୁହି ମୋତେ ମାରୁ ।
ତୋହର ହୃଦରୁ ଧର୍ମ ଛାଡ଼ିଲାରେ ଯହୁଁ
ମୋହର ଲାଙ୍ଗୁଳରେ ଅଗ୍ନି ଲଗାଇଲୁ ତହୁଁ ।
ତରକ କଥାମାନ ତୁହିରେ ନ ଜାଣୁ
ତୋହର ବୁଦ୍ଧିବଳ ଜାଣିଲି ମୁହିଁ ତେଣୁ ।
କିମ୍ପାଇ ତୋର ନାମ ବୋଲାଉ ରାବଣ
ଏ ବଚନ ଶୁଣିଣ ବୋଲଇ ଦଶାନନ ।
ମୋହର ମହିମାକୁ ଦେବତାମାନେ ଡରି
ତୁ ଆସି ପଶିଲୁ ଗୁପ୍ତରେ ମୋର ପୁରୀ ।
ଘରେ ଘରେ ପଶିଲୁ କହିଲୁ ମୋର ଆଗ
ତେଣୁ ତୋହଠାରେ ବଢ଼ିଲା ମୋର ରାଗ ।
ଯାହା ତୁ ମଧୁବନ ତୋଟାକୁ ଭାଙ୍ଗିଲୁ
ପଞ୍ଚଭୂତ ଆତ୍ମାକୁ ତୁ କେଡ଼େ ପୀଡ଼ା ଦେଲୁ ।
ଦଇତ ବଳ ମୋହର ମାଇଲୁ କିମ୍ପାଇଁ
ଅକ୍ଷୟକୁ ମାଇଲୁ ଭୟ ତୋର ନାହିଁ ।
ଜନ୍ତୁପତି ଡରଇ ଲୋକଙ୍କୁ ଦେଖି ମୋର
ଭାଙ୍ଗିଲୁ କେଡ଼େ ପୁରୁଷାର୍ଥ କପି ଛାର ।
ଏଣୁ କରି ତୋରଠାରେ ନାହିଁ ମୋ ଉପ୍ରୋଧ
ନିଶ୍ଚୟ ଜୀବନରେ କରିବି ତୋତେ ବଧ ।
ହନୁମନ୍ତ କହଇ ତୁ ପାପୀ ଦୁରାଚାରୀ
କିମ୍ପାଇଁ ଆଣିଲୁରେ ଜନକ କୁମାରୀ ।
ସେ କାରଣୁଁ ମୁହିଁ ସୀତାଙ୍କୁ ଲୋଡ଼ିଲି
ତେଣୁ କରି ତୋହର ବିପିନ ଉପାଡ଼ିଲି ।
ଏ ଘେନି ତୋ ନନ୍ଦନ ମସ୍ତକ ମୋଡ଼ିଲି
ତୋର ପୁରୁଷାର୍ଥ ମୋ ପାଦେ ଚୂର୍ଣ୍ଣ କଲି ।
ଏବେ ଏହିକ୍ଷଣି ତୋର ପୋଡ଼ିବି କଟକ
ମନ କଲେ ମୁଁ ତୋର ମୋଡ଼ିବି ମସ୍ତକ ।

ଆହୁରି କଥାଏ ଶୁଣ ଇନ୍ଦ୍ରଜିତ ତାତ
ବଡ଼ ବୁଦ୍ଧିବନ୍ତ ତୋତେ ବୋଲନ୍ତି ଜଗତ ।
କେମନ୍ତେ ଦଶାନନ ବୋଲାଉ ତୁ ବୀର
କ୍ଷତ୍ରୀମାନଙ୍କର ନୁହେଁ ଏମନ୍ତ ବିଚାର ।
ସମର କରି ସିନା ଶତ୍ରୁକୁ ମାରି କରି
ଧରିବାନ୍ଧି କେହୁ କେଉଁ କାଳେ ମାରି ।
ନିତି ପରା ଚାରିବେଦ ପଢୁରେ ଅସୁର
ଅଜ୍ଞାନରୁ ସବୁ ଧର୍ମ ବିଅର୍ଥ ତୋହର ।
ନିତି ଅନଳେ ପରା ଦେଉ ତୁହି ଘୃତ
ତାମସ ଗୁଣେ ସେକଥା କରିଲୁ ବଅର୍ଥ ।
ଦୁଃଖି ଦରିଦ୍ରଙ୍କୁ ପରା ନିତି ଦେଉ ଦାନ
ନିର୍ଦ୍ଦୟା ଭାବରେ ବ୍ୟର୍ଥ କରିଲୁ ସେମାନ ।
ନିତି ଅର୍ଘ୍ୟ ଦେଉପରା ସୂର୍ଯ୍ୟ ଦେବତାରେ
ଧର୍ମକି ହୋଇବ ଏତେ ଦୁରାତ୍ମାରେ ।
ସର୍ବଜନ ସେବନ୍ତି ଯେଉଁ ଦେବତାଙ୍କୁ
ଏଡ଼େ ଗର୍ବ ତୋର ସେବା କରାଉ ତାହାଙ୍କୁ ।
ଧର୍ମଶାସ୍ତ୍ରମାନ ସବୁ ଜାଣୁ ତୁରେ ଦୁଷ୍ଟ
ଧର୍ମ ପଥକୁ କିମ୍ପା କରୁ ତୁରେ ଭ୍ରଷ୍ଟ ।
ତରକ କଥା ବହୁତ ଜାଣୁ ପରା ତୁହି
ମୁଁ ଜାଣିଲି ତୋହର ବୁଦ୍ଧି କିଛି ନାହିଁ ।
ମୋତେ ମାରିବାକୁ ତୁ ଏତେ ଉପାୟେ କଲୁ
ମୋତେ କି ମାରିବୁରେ ଆପଣେ ତୁହି ମଲୁ ।
ତୁପରା ମାୟା ସମୁଦ୍ର ବୋଲାଉ ରାବଣ
ଏ ନାମ ବହିବାର ଅଟେ ଅକାରଣ ।
ଦେଖି ଏହିକ୍ଷଣି ଭସ୍ମ କରିବି ତୋ ପୁର
ଆଜ ତୁ ଚିହ୍ନିବୁ ଦୁଷ୍ଟ ଦୁରାତ୍ମା ଅସୁର ।
ଲଙ୍କାଗଡ଼ ପୋଡ଼ିବି ବାରତା ଏଥୁଁ ନେବି
ଶ୍ରୀରାମଚନ୍ଦ୍ରଙ୍କୁ ଏଥେ ବିଜେ କରାଇବି ।
ତେବେ ସିନା ତୋତେରେ ହୋଇବ ମୃତ୍ୟୁଯୋଗ
ତେବେ ସିନା ଦେବତାଏ ପାଇବେ ସ୍ୱର୍ଗଭୋଗ ।
ଆନନ୍ଦରେ ଋଷିମାନେ ଚିନ୍ତିବେ ବ୍ରହ୍ମଜ୍ଞାନ
ନିର୍ଭୟରେ ରହିବେ ତିନିପୁର ଜନ ।
ତେବେ ସିନା ସୀତାଙ୍କର ତୁଟିବ ମହାଦୁଃଖ
ରଘୁକୁଳ ଚନ୍ଦ୍ରମା ପାଇବେ ମହାସୁଖ ।
ଋତୁମାନେ ସମୟରେ କରିବେ ଯେ ଭୋଗ
ଦେବତାମାନେ ସୁଖେ ଭୁଞ୍ଜିବେ ହବିର୍ଭାଗ ।
ଏମନ୍ତ କହି ବୀର ନିଶରେ ହସ୍ତଦେଇ
ବାହାସ୍ଫୋଟ ମାରିଣ ଉଠିଲା ଉଘାଇ ।
ଜଗତି ଚାଳ ଉପରେ ହନୁବୀର ବସି
ଅସୁରମାନଙ୍କୁ ଚାହିଁ ଟହଟହ ହସି ।

ଲାଞ୍ଜର ଅଗ୍ନି ଲାଗନ୍ତେ ପୋଡ଼ିଗଲା ଚାଳ,
ଚଉପାଶେ ଦଇତ ଚାହାନ୍ତି ଦଳ ଦଳ ।
ଜଗତୀ ଉପରେ ଯେତେକ ଦୈତ୍ୟଥିଲେ
ରାବଣକୁ ଛାଡ଼ିଣ ସମସ୍ତେ ପଳାଇଲେ ।
ଦେଖିଣ ହନୁମନ୍ତ ଜଗତି ଚାଳୁଁ ଖସି
ଲାଞ୍ଜ ବଢ଼ାଇଲା ସେ ରାବଣକୁ ତ୍ରାସି ।
ବୋଇଲା ଦଶଗ୍ରୀବରେ ଆଜ ଯିବୁ କାହିଁ
ଏତେ କହି ହନୁମନ୍ତ ବିଧାଏ ମାରଇ ।
ବେନି ହସ୍ତେ ହନୁ ଯେ ମାଇଲା ଦୃଢ଼ ମୁଥ
ଆଣ୍ଡୋଇ ପଡ଼ିଲା ଯେ ବିଶ୍ରବାର ସୁତ ।
ନାତମାରି ଉତାନ କଲା ସେ ରାବଣକୁ
ଆଖି ତରାଟି ରାବଣ ଧଇଲା ହନୁକୁ ।
ମାଇଲା ମାରୁତି ମୁଥ ଖୁନ୍ଦା ବିଧା
ଅଗ୍ନି ପ୍ରତାପରେ ରାବଣକୁ ହେଲା ବାଧା ।
ଦେଖିଣ ହନୁମନ୍ତ ଉତ୍ତାନେ ପକାଇଲା
ବୁକୁରେ ହନୁମନ୍ତ କ୍ରୋଧରେ ବସିଲା ।
ଦଶ ମୁକୁଟକୁ ଫିଟାଇଣ ଦେଲା
ଲୋଟାଜଟା କରିଣ କାଛଟାରେ ବାନ୍ଧିଲା ।
ତହୁଁ ହନୁମନ୍ତ ରାବଣକୁ ଛାଡ଼ି ଦେଲା
ଡେଇଁଣ ମାରୁତି ବିକ୍ରମ ଗତି କଲା ।
କାଚ ଢାଳ ଘରେ ବସିଲା ଯାଇକରି
ଶ୍ରୀରାମଙ୍କୁ ସୁମରିଣ ଅଗ୍ନି ଦେଲା ଜାଳି ।
ଦେଖିଣ ଦୈତ୍ୟଗଣ ଆଶ୍ଚର୍ଯ୍ୟିତ ହେଲେ
ହନୁମନ୍ତ ଯିବାରୁ ରାବଣକୁ ଚେତା କଲେ ।
କାଚ ଘରକୁ ଅଗ୍ନିରେ ଜାଳିଲା ମାରୁତି
ସକଳ ଦୈତ୍ୟମାନେ ଅନାଇଁ ଅଛନ୍ତି ।
ରାବଣର ଶୋଇଲା ମନ୍ଦିର ପରେ ଯାଇ
ସେଥିରେ ହୁତାଶନ ଦେଲାକ ଲଗାଇ ।
ତେଇଁ ନାଟପା ମନ୍ଦୀରେ ବସିଲାକ ଯାଇ
ସେଠାରେ ଅଗ୍ନି ଲାଗିଲା ପ୍ରଜ୍ୱଳିତ ହୋଇ ।
ଯହୁଁ ହୁତାଶନ ଲାଗିଲା ଚଉକତି
କରଯୋଡ଼ି ଜଣାଏଁ ପ୍ରଶସ୍ତ ସେନାପତି ।
ଭୋଦେବ ଲଙ୍କେଶ୍ୱର ଅସୁର କୁଳ ସାଇଁ
ମର୍କଟ କଥାକୁ ପ୍ରତେଗଲୁ ତୁ ଗୋସାଇଁ ।
ଦେଖ ଏବେ ଘରମାନ ପୋଡ଼େ ଅବିଛନ୍ନ
ପ୍ରଳୟ ଅନଳ ପରି ଦିଶେ ହୁତାଶନ ।
କପି ହୋଇଣ ଏମନ୍ତ କୁମାର୍ଗ ସେ କଲା
ତାହାର ମରିବା ଛାଡ଼ି ଏହା ଭିଆଇଲା ।
ଶୁଣିଣ ରାବଣେଶ୍ୱର ବୋଲଇ ବଚନ
ଯେତେ ମୋତେ ମାଡ଼ ଯେ ଦେଲା ହନୁମାନ ।

ଏତେ କହି ରାବଣ ଆସନ ଉପେଖି
ସମସ୍ତ ଅସୁରଙ୍କୁ ଚାହିଁଲା ନିରେଖି ।
ଜଗତିରୁ ଦଶାନନ ଅଇଲା ଓହ୍ଲାଇ
ଦେବଦତ ଦଇତ କରରେ କର ଦେଇ ।
ବାହାରକୁ ଆସିଣ ସେ ଉର୍ଦ୍ଧ୍ୱକୁ ଦେଲା ଦୃଷ୍ଟି
ଦେଖିଲା ଧୂମ୍ରମୟ ହୋଇ ଅଛି ସୃଷ୍ଟି ।
ଅନଳକୁ ଚାହିଁ କରି କୋପେ ଆଜ୍ଞା ଦେଲା
କିରେ କିରେ ବଶ୍ୟାନର ଏ କିସ ହୋଇଲା ।
ତୁହିରେ ଦହନ କରୁଛୁ ତୁ ମୋ ପୁରକୁ
ମୁହିଁ ସେ ଦଶାନନ ନ ଚାହୁଁ ମୁଖକୁ ।
ଦଶାନନ ମୁଖରୁ ଏସନ ବାଣୀ ଶୁଣି
ତତକ୍ଷଣେ ଲିଭିଲା ସେ ମୁଦ୍‌ଗର ପାଣି ।
ହନୁମନ୍ତ ଦେଖିଲା ଲିଭିଲା ହୁତାଶନ
ଯହୁଁ ସେ କୋପ କଲା ନୃପ ଦଶାନନ ।
ମନେ ମନେ ବିଚାର କରଇ ମାରୁତି
ଦଶାନନର ଦେବେ ଅଟନ୍ତି ବଶ୍ୟାବୃତ୍ତି ।
ଆଜ୍ଞା ପରମାଣେ ଯେ ଲିଭିଲା ଦହନ
ଏବେ ମୁଁ ଲଙ୍କାଗଡ଼ ପୋଡ଼ିବି କେସନ ।
ମୋହର କପାଳରେ ଯେ ଅଛଇଁ ଅନଳ
ଏତେ ଭାଳି ରହିଲା ପବନ ଦୁଲାଳ ।
ଜାନକୀଙ୍କି ଦେଖିଣ ମୁଁ ଯେବେ ଯାଇଥାନ୍ତି
ଶ୍ରୀରାମଚନ୍ଦ୍ରଙ୍କ ମହିମା କେହ୍ନେ ରଖିଥାନ୍ତି ।
ମଧୁବନ ଭାଙ୍ଗିଲି ମାରିଲି ଦୈତ୍ୟବଳ
ରାବଣ ଆଗରେ ଦେଖାଇଲି ମୋର ବଳ ।
ନାଗପାଶ କଲାବେଳେ ଯେବେ ଯାଇଥାନ୍ତି
ପଳାଇଗଲା ବୋଲି କ୍ଷତ୍ରିରେ ନିନ୍ଦା ପାନ୍ତି ।
ଲଙ୍କା ପୋଡ଼ିବା ପାଇଁ ମନରେ ବିଚାରିଲି
ତେଣୁ କରି ଏତେ ପରାଭବକୁ ପାଇଲି ।
ମୋହର ବଚନକୁ ଦଇତ ପ୍ରତ୍ୟେଗଲା
ବସ୍ତ୍ର ତୈଳ ଯେତେକ କହିଲି ଅଣାଇଁଲା ।
ଏବେ ସେ କଥା ସବୁ ହେଉଛି ବିଅର୍ଥ
କେମନ୍ତେ ରଖିବି ମୁଁ ସ୍ୱାମୀଙ୍କ ପୁରୁଷାର୍ଥ ।
ପ୍ରଭୁ ମହିମା ଦିଶିବ ଲଙ୍କା ପୋଡ଼ି ଦେବି
ଅନଳ ଡରିଲା ଏବେ କି ବୁଦ୍ଧି କରିବି ।
ଏମନ୍ତ ବିଚାରି ସେ ମନରେ ଦୁଃଖ କରି
ଶ୍ରୀରାମଚନ୍ଦ୍ରଙ୍କ ରୂପ କିରତି ସୁମରି ।
ଜୟ ଜୟ ଶ୍ରୀରାମ ଦଶରଙ୍କ ନନ୍ଦନ
ଜୟ ଜୟ କୌଶଲ୍ୟା ହୃଦୟ ଚନ୍ଦନ ।
ଜୟ ଜୟ ଶ୍ରୀରାମଚନ୍ଦ୍ର ସର୍ବ ପୁଣ୍ୟମୟ
ଜୟ ଜୟ ରାମଚନ୍ଦ୍ର ଦୀନ ଜନପ୍ରିୟ ।

ଜୟ ଜୟ ରଘୁନାଥ ଭକତ ବତ୍ସଳ
ଜୟ ଜୟ ଶ୍ରୀରାମ ଦଇତ କୁଳ କାଳ ।
ଜୟ ଜୟ ରାମଚନ୍ଦ୍ର ବିଶ୍ୱାମିତ୍ର ପ୍ରିୟ
ଜୟ ଜୟ ରାମଚନ୍ଦ୍ର ତାଡ଼କୀ ବଲ କ୍ଷୟ ।
ଜୟ ଜୟ ରାମ ହେ ଅହଲ୍ୟା ତାରଣ
ଜୟ ଜୟ ରାମ ଭାଙ୍ଗିଲ ଶିବ ଶରାସନ ।
ଜୟ ଜୟ ରାମ ହେଲେ ଜାନକୀଙ୍କୁ ବିଭା
ଜୟ ଜୟ ରାମ ଭାଙ୍ଗିଲ ପର୍ଶୁରାମ ପ୍ରଭା ।
ଜୟ ଜୟ ରାମ ପିତା ସତ୍ୟ ପାଳି କରି
ବନଗାମି ହେଲ ପ୍ରଭୁ ବିଭୁତି ତୁଚ୍ଛ କରି ।
ଜୟ ରାମ ସୂର୍ପଣଖା ନାସାକର୍ଣ୍ଣ ଛେଦି
ଜୟ ଜୟ ରାମ ଖରାଦି ଦୈତ୍ୟବଳ ଭେଦି ।
ଜୟ ରାମ କବନ୍ଧ ଦୈତ୍ୟର ମୋକ୍ଷଦାତା
ଜୟ ରାମ ଶବରୀ ଆୟରେ ତୋଷ ଚିତା ।
ଜୟ ରାମ ସୁଗ୍ରିବର ଦୁଃଖ କଲ ଦୂର
ଜୟ ରାମ ବାଳିରାଜା କଲୁଷରୁ ତାର ।
ଜୟ ରାମ ମାଲ୍ୟବନ୍ତ ପରେ ବିଜେ କଲ
ଜୟ ରାମ ଚାରି ଦିଗେ ଦୂତ ବରିଗଲ ।
ଜୟ ରାମ ତବ ଭୃତ୍ୟ ହନୁମାନ କପି
ଜୟ ରାମ ନାମ ବଳେ ଲଙ୍କା ଗଡ଼କୁ ମୁଁ ତାପି ।
ତୁମ୍ଭର ପ୍ରସାଦେ ମୁଁ ଭାଙ୍ଗିଲି ମଧୁବନ
ତମ୍ଭ ବଳେ ମାଇଲି ଅସଂକ୍ଷ ଦୈତ୍ୟଗଣ ।
ତୁମ୍ଭର ପ୍ରସାଦେ ସିନା ଏତେ କଥା କଲି
ରାବଣ ନାଶଦ୍ରବ୍ୟ ତା ହସ୍ତେ ଅଣାଇଲି ।
ଜୟ ଜୟ ଜାନକୀ ଦେବୀ ପ୍ରାଣକାନ୍ତ
ଜୟ ଜୟ ହନୁମାନ ପ୍ରାଣ ପଞ୍ଚଭୂତ ।
ଜୟ ରାମ ଜଗନ୍ନାଥ ଅନିଳ ଗିରି ବାସୀ
ବଳରାମ ଦାସ ଚିନ୍ତେ ଅହନିଶି ।
ଏମନ୍ତେ ହନୁମାନ ଅନେକ ସ୍ତୁତି କରି
ରାମ ରାମ ରାମ ରାମ ଶ୍ରୀରାମ ସୁମରି ।
ଅନଳ ଲିଭିଲା ଏବେ କରିବି କି ବୁଦ୍ଧି
ବୁଦ୍ଧି ଦିଅ ଦେବ ହେ କରୁଣା ବାରିଧି ।
ଏମନ୍ତ ସ୍ଥିର ମନେ ସୁମରି ହନୁମାନ
ଏସନ ସମୟେ କର୍ଣ୍ଣେ କହିଲା ପବନ ।
ରାମନାମ ସୁମରି ତୁ ଯୋଗାସନେ ବସ
ଯେମନ୍ତେ ଲଙ୍କା ପୋଡ଼ିବୁ ହେବ ତୋତେ ଦୃଶ୍ୟ ।
ଶୁଣି ତାହା ମହାବୀର ମନରେ ଆନନ୍ଦ
ହୃଦ ବିକାଶଇ ଯେହ୍ନେ ପୂର୍ଣ୍ଣିମାର ଚାନ୍ଦ ।
ଯୋଗାସନ କରି ବୀର ବସିଲାକ ଯହୁଁ
ବ୍ରହ୍ମଲୋକ ଅନଳ ଦିଶିଲା ତାକୁ ତହୁଁ ।

ଶ୍ରୀରାମ ସୁମରି ତାହା ଆଣିଲା ମାରୁତି
ପୁଣି ଦିଶିଲା ସୁଦର୍ଶନ ଚକ୍ର ଜ୍ୟୋତି ।
ସେ ଅଗ୍ନି ହନୁମାନ ଆଣିଲା ବେଗ କରି
ପୁଣି ଉର୍ମିଳା ଅଗ୍ନି ଦିଶିଲା ସ୍ୱର୍ଗପୁରୀ ।
ଯୋଗବଳେ ସେ ଅନଳ ଆଣିଲା ହନୁବୀର
ଜାନକୀର ଶୋକ ଅଗ୍ନି ଦିଶିଲା ଆଗର ।
ଚାରି ଅଗ୍ନିକୁ ଯହୁଁ କଲାକ ଏକ ମେଳ
ପ୍ରଳୟ ଅନଳ ପ୍ରାୟ ଦିଶିଲା ଉଜ୍ଜ୍ୱଳ ।
ପୁଣି ମହାବୀର ଶ୍ରୀରାମ ସୁମରି
ଆପଣାର ଲାଙ୍ଗୁଳ ଦକ୍ଷିଣ କରେ ଧରି ।
ନିଜ କପାଳରେ ଘଷିଲାକ ନେଇ
ଉଠିଲା ସେ ଅନଳ ପ୍ରଜ୍ୱଳିତ ହୋଇ ।
ଯେବଣ କାଳେ ତାକୁ ଦଇବ ବର ଦେଲା
ଅନଳକୁ ନେଇ ତାରକଯୋଳେ ରଖିଲା ।
ହନୁମାନ ନିଜ ଦେହ କଥା ସେ ଜାଣଇଁ
ତେଣୁ ଲଲାଟରୁ ବେଗେ ଅନଳ ଅଣାଇଁ ।
ପଞ୍ଚଅନଳ ଘେନି ପୋଡ଼ିଲା ଲଙ୍କାପୁର
ତାହା ଦେଖି ରନ୍ଧ ଉହ କହେ ଦଶଶିର ।
ଦଶାନନ ବଚନେ ସେ ନିବର୍ତ୍ତି ନୋହିଲା
ଅଣଚାଶ ମୂର୍ତ୍ତି ଧରି ପବନ ବହିଲା ।
ଘୋଟିଗଲା ଅନଳ ବିକରାଳ ହୋଇ
ଦଶାନନ କହଇ ପବନ ମୁଖ ଚାହିଁ ।
ତୁହୋ ମରୁତ ଅଟୁ ଦିତୀ ଦେବୀ ସୁତ
ଦେବତା ଅଟନ୍ତି ତ ତୋ ସାବତ ମାତା ସୁତ ।
ଅଣଚାଶ ଖଣ୍ଡ କଲା ସହସ୍ର ଲୋଚନ
ଅମୃତ ପରସାଦେ ପାଇଲୁ ଜୀବନ ।
ସେ କଥା ନ ଜାଣୁ ତୁ ଦେବଙ୍କ ସଙ୍ଗେ ଥାଉ
ମୁଁ ତୋହର ସୋଦର ଅଭାବ ମୋତେ ହେଉ ।
ଏ ତୋର ନନ୍ଦନ ହନୁମାନ ଯେ ଅଟଇ
ରାମ ମାନବ ତପୁସି ତା ପାଦେ ଖଟଇ ।
ଏ ଲଙ୍କାଗଡ଼ରେ ଯେତେ ଉପଦ୍ରବ କଲା
ମଧୁବନ ଭାଙ୍ଗିଲା ଅକ୍ଷୟ ନାଶ କଲା ।
ଏବେ ସେ ମାୟା କରି ଦହଇ ମୋର ପୁର
ଅପ୍ରିୟ ହେଲୁ ତୁହି କି ଲାଗି ମୋହର ।
ଲଙ୍କା ପୋଡ଼ିବାର କାଳେ ବହୁ ଅଣଚାଶ
ଏତେକାଳେ ତୁହି ମୋତେ ହେଲୁ ଅବିଶ୍ୱାସ ।
ମରୁତ କହିଲା ତୁହୋ ଶୁଣ ଲଙ୍କସାଇଁ
ମୁଁ ଯାହା କରୁଅଛି ତୋହର ହିତପାଇଁ ।
ଲିଭାଇବାକୁ ବିଚାର କରଇ ମନେ ମନ
ନିଉନ ହୋଇବ ସେ ପ୍ରଳୟ ହୁତାଶନ ।

ଶୁଣି ଦଶାନନ ମନ ପରମ ସନ୍ତୋଷ
ଉଚ୍ଚେ କହେ ଯାଅ ତୋ ପୁତ୍ରକୁ ଘେନି ଆସ ।
ନ ଜାଣିବା ପଣରେ ସେ ଯେତେ କର୍ମ କଲା
ତୋହର ଉପ୍ରୋଧରେ ସବୁ ପାର ଗଲା ।
ମେଘନାଦଠାରୁ ତାକୁ ପ୍ରଶଂସା କରିବା
ସୁଖ ଭୋଗ ସମ୍ପଦ ବହୁତ ତାକୁ ଦେବା ।
ଯେ ତୋହର ନନ୍ଦନ ସେ ମୋହର ତନୟ
ଅଯୋଧ୍ୟା କଟକରେ କରିବି ତାକୁ ରାୟ ।
ଆଣ ଆଣ ପବନ ତୋ ପୁତ୍ରକୁ ଡିଆରି
ମୋହର ରାଣ ପକାଇ ଆଣ କର ଧରି ।
ମେଘନାଦ ଶପଥ ମୁଁ ନ କରିବି କିଛି
ପବନ କହେ ଶୁଣ ଯାହା ମୁଁ କହୁଛି ।
ନୋହିବ ଶାନ୍ତି ସେ ନ କରିବ ମୋର ବୋଲ
ଆଗ ହୁଁ ତାହାକୁ ଯେ ଉପ୍ରୋଧ ନ କଲ ।
ହସ୍ତରୁ ପିଟିଲା ସେ ପାଇବ ତ କାହୁଁ
ଏ ବଚନ ଶୁଣିଣ ବୋଲଇ ଲଙ୍କାରାହୁ ।
ଆସିଲେ ଆସୁ ନ ଆସିଲେ ଗଲେ ପଛେ ଯାଉ
ଲଙ୍କା ଭୁବନ ମୋହ ଯେମନ୍ତେ ରକ୍ଷା ପାଉ ।
ତୁ ଏବେ ମରୁତ ପ୍ରତିକାର କର
ହୁତାଶନ ଲିଭିବାର ମନରେ ବିଚାର ।
ଶୁଣିକରି ମରୁତ କହିଲା ଖର ହୋଇ
ହନୁମନ୍ତକୁ ସାହା ହେଲା ବେଗେ ଯାଇ ।
ଅନଳ ସଙ୍ଗ ଘେନି ବହିଲା ଅଣଚାଶ
ମଣ୍ଡପ ଅଟ୍ଟାଳୀ ଜଗତି ହେଲା ନାଶ ।
ମହାଭୟେ ଦଶାନନ ମନ ଛନ୍ନ ଛନ୍ନ
ବିଚାରିଲା ପୁର ମୋର ଦହୁଛି ପବନ ।
ବିମାନ ଉପରେ ସମସ୍ତଙ୍କୁ ବସାଇବି
ଅସମ୍ଭାଳ ହୋଇଲେ ପଳାଇ ଏଥୁଁ ଯିବି ।
ଏମନ୍ତ ବିଚାରି ସମସ୍ତଙ୍କୁ ଡକାଇଲା
ପୁଷ୍ପକ ରଥ ଆଣି ତହିଁରେ ବସାଇଲା ।
କୋଡ଼ିଏ ଯୁଗ ପର୍ଯ୍ୟନ୍ତ ଯାନକୁ ଟେକି ନେଲା
ଶୂନ୍ୟ ମାର୍ଗେ ବିସର୍ବା ନନ୍ଦନ ରହିଲା ।
ହୁତାଶନ ଘେରି ପୋଡ଼ଇ ଲଙ୍କାପୁରୀ
ପୁତ୍ରମାନେ ଯାନ ଚଢ଼ି ଘେନି ତାଙ୍କ ନାରୀ ।
ଗଡ଼ର ଦକ୍ଷିଣ ପାଶେ ରହିଲେ ବେଢ଼ି କରି
ନାତି ଢୁଆଇଁ ସେନାପତି ସେହିପରି ।
ଚାରିଦ୍ୱାର ମେଲା କରାଇଲା ଦଶଶିରୀ
ଦଇତ ଦଇତୁଣୀ ପଳାଇଲେ ଡରି ।
ଚାରିଦ୍ୱାର ବାଟରେ ହୋଇଲେ ବାହାର
ଦକ୍ଷିଣ ଦିଗରୁ ପବନ ବହେ ଖର ।

ଅଗ୍ନିତେଜ ଲାଗନ୍ତେ ସିନ୍ଧୁ ଉତ୍ପାତ କରଇ
ଧୂମ୍ରର ଘାଏ ଦଶଦିଶ ନ ଦିଶଇ ।
ବିମାନେ ବସି ରାବଣ ମନେ ଭୟ କଲା
ପଶ୍ଚିମ ଦିଗକୁ ସେ ଆଉଜିଣ ଗଲା ।
ଭାଜିଣ ପଳାଇଲେ ଲଙ୍କାରୁ ସର୍ବଜନ
ରାବଣର ନବର ଦଶ ଯେ ଯୋଜନ ।
ଦଣ୍ଡକରେ ଦହନ କଲାକ ମାରୁତି
ଅଶୋକ ବନରେ ଅଛନ୍ତି ସୀତାସ୍ୱତୀ ।
ଅନଳ ଭୟ ବୀର ନ ଦେଲାକ ତହିଁ
ବିଭୀଷଣ ବିଷ୍ଣୁଙ୍କର ଭକତ ଅଟଇ ।
ତାର ସଦନକୁ ରକ୍ଷା କଲା ହନୁମନ୍ତ
ନିକୁମ୍ଭିଲା ବଟକୁ ରଖିଲା ନିଶ୍ଚିନ୍ତ ।
ତହିଁ ଅନଳ ଭୟ ନ ଦେଲା ହନୁବୀର
ଧର୍ମ ଭାବେ ରଖିଲା ସେ କୁମ୍ଭକର୍ଣ୍ଣ ପୁର ।
ପୁଷ୍ପକ ଯାନ ସବୁଦିନରେ ଅକ୍ଷୟ
ତେଣୁ ତାହାକୁ ରଖିଲା ପବନ ତନୟ ।
ଯେହୁ ତାହାର ଅଙ୍ଗରେ ଢାଳିଥିଲା ଘିଅ
ତାର ଘର ନ ପୋଡ଼ିଲା ପବନର ପୁଅ ।
କରେ ଧଇଲା ମଇନାକ ଦେଲା କାନ୍ତି
ଲବଣ ଜଳେ ବୁଡ଼ାଇ ସିଞ୍ଚିଲା ମାରୁତି ।
ସେ ମଣି ପଡ଼ନ୍ତେ ଅଗ୍ନି ନ ଲାଗିଲା
ଏମାନଙ୍କ ପୁର ସଭା ରକ୍ଷା ଯେ ହୋଇଲା ।
ଏତେ ସ୍ଥାନ ଛାଡ଼ି ସେ ପୋଡ଼ିଲା ସବୁ ପୁର
ଅନଳର ଶିଖା ହେଲା ଗଗନେ ପ୍ରଚାର ।
ଦେବାର୍ଚ୍ଚନ ମନ୍ଦିରେ ନୃତ୍ୟରଙ୍ଗେ ସ୍ଥିର
ଆସ୍ଥାନ ନବର ଦେବତାଙ୍କର ମନ୍ଦିର ।
ରାଣୀହଂସ ପୁରତୋଟା ନିଳୟ ଜଗତୀ
ତ୍ରିପୁର ମେଢ଼ମାନ ପୋଡ଼ଇ ଚଉକତି ।
ହସ୍ତୀ ଅଶ୍ୱ ଶାଳମାନ ପୋଡ଼ଇ ସଦନ
ପ୍ରଳୟ କାଳ ଜାଣି ଜଳଇ ହୁତାଶନ ।
ଯହିଁରେ ହନୁମାନ ବସଇ ଡେଇଁ ଯାଇ
ସେ ପୁର ସେହିକ୍ଷଣି ପୋଡ଼ି ଭସ୍ମ ହୋଇ ।
ନଗର ପୋଡ଼ି ବୀର ଶୂନ୍ୟକୁ ଡେଇଁଗଲା
ଶତ ଯୋଜନ କରି ଲାଙ୍ଗୁଳ ବେଢ଼ାଇଲା ।
ଲଙ୍କାର ଆକୃତିକି ପାଇଲା ତାର ପୁଚ୍ଛ
ଶୂନ୍ୟରେ ଆସନ କଲା ପବନର ବତ୍ସ ।
କୁମର ନାତି ପୁତୁରାମାନଙ୍କ ମନ୍ଦିର
ପାତ୍ର ଅମନାତ୍ୟ ଆଦି ସମସ୍ତଙ୍କ ପୁର ।
ଆବର ଯେତେ ଉତ୍ତମଜନଙ୍କର ପୁର
ଅନଳ ଲାଗି ସଭା ହୋଇଲା ଭସ୍ମସାର ।

ସାତପୁର ଲଙ୍କା ସହସ୍ରେକ ଘାଟ
ଶତେ ରାଜ ଦାଣ୍ଡ ଦୁଇ ସହସ୍ର ଯେ ବାଟ ।
କନ୍ଦି ବିକନ୍ଦି ତହିଁରେ ତଦନ୍ତ ନ ଜାଣି
ଘରେ ହେଁ ନ ଛାଡ଼ିଲା କପିକୁଳ ମଣି ।
ସମସ୍ତ ଭୁବନରେ ଅନଳ ଲଗାଇଲା
ପବନ ବଳରେ କରି ଦ୍ୱିଗୁଣ ଲାଗିଲା ।
ନଗ୍ରସ୍ତିରୀ ପୁରୁଷ ବିକଳେ ରଡ଼ି ଦ୍ୟନ୍ତି
ଦ୍ରବ୍ୟ ଅଳଙ୍କାର ଧରି ପଳାଇଣ ଯାନ୍ତି ।
କାହାର ଲୁଗାପଟା ପୁଅର ହାତ ଧରି
ପୋଖରୀ ଭିତରେ କେ ପଶଇ ବେଗ କରି ।
କେ କହଇ ବାପ ମାଆଲୋ ପଡ଼ିଲାଟି ଡକା
କେ କହଇ ମାଆଲୋ ପଳାଇ ଆ ଏକା ।
କେ ବୋଲଇ ଦାଦି ଆଲୋ ମୋ ଆଡ଼କୁ ଅନା
କେ କହେ ମୋତେ ତୁମ୍ଭେ ସମ୍ଭାଳି ନିଅ କିନା ।
କେ କହେ ଉପବନରେ ପଶିବା ହେ ଆସ
କେ କହଇ ଆଗରେ ଅନଳର ତ୍ରାସ ।
କେ ଦୂରକୁ ଯାଇଣ ଚାହିଁଇ ଦଶ ଦିଶ
କେ ବୋଲଇ ବେଗହୋଇ ମାଆଲୋ ତୁ ଆସ ।
କେ କହଇ ମାମୁଁ ଆହେ ବେଗ ଯାଅ ଧାଇଁ
କେ କହଇ ମୋତେ ତୁମ୍ଭେ ସମ୍ଭାଳି ନିଅ ଭାଇ ।
କେ କହଇ ମୋହର ପଣତ ଗଲା ପୋଡ଼ି
କେ ବୋଲଇ ମୋହର ପୋଡ଼ିଲା ଲୁଗା ପେଡ଼ି ।
କେ କହଇ ମୋହର ନନ୍ଦନ ଗଲା କାହିଁ
କେ କହଇ କେଣେ ଗୋ ଗଲେ ମୋର ସାଇଁ ।
କେ କହଇ ପୁତ୍ର ମୋର ପୋଡ଼ି ଯାଉଅଛି
କେ କହଇ ଝିଅ ମୋର କୂଅରେ ପଡ଼ିଛି ।
କେ କହଇ ମାମୁଁ ହେ ଆସ ଆସ ମାଏ
କେଣିକି ଯାଉଛନ୍ତି ତୁମ୍ଭର ଚାରିପୁଏ ।
କେହୁ କହଇ ମୋର ନଣନ୍ଦ ନାଶ ଗଲେ
କେହୁ କହେ ମୋର ବୁଢ଼ାବାପା ପୋଡ଼ି ମଲେ ।
କେହୁ କାନ୍ଦି କାନ୍ଦି ଯାଇ ପୋଖରୀରେ ପଶି
କେହୁ ବୃକ୍ଷମୂଳରେ ଶୀତଳ ପାଇ ବସି ।
କେଉଁ ନାରୀ ପଦାର୍ଥ ଲୋଭରେ ଘରେ ମଲା
କେଉଁ ନାରୀ ପୁଅ ମଲା ଦେଖି ମାରେ ଝୋଲା ।
କେଉଁ ନାରୀର ସ୍ୱାମୀ ମଲା ଦେଖି ମୁଣ୍ଡ ମାରି
କେଉଁ ନାରୀର ପୁତ୍ର ହାତ ଧରିଣ ଘୋଷାରି ।
କେଉଁ ନାରୀ ପଳାଏ କାଖରେ ଧରି ପେଡ଼ି
କେଉଁ ନାରୀ ସ୍ୱାମୀକୁ ଧରିଛି ଆଣ୍ଟେ ଭିଡ଼ି ।
କେବଣ ଦଇତ ତାଟକା ହୋଇ ମଲା
କେଉଁ ବାପୁଡ଼ା ଅଗ୍ନି ବେଢ଼ରେ ପ୍ରାଣ ଦେଲା ।

କେହୁ ପଥ ନ ପାଇ ବନ୍ଦିରେ ମଲା ପଡ଼ି
କେହୁ ଆରତରେ କୂପରେ ଗଲା ପଡ଼ି ।
କେବଣ ଦଇତ ବୃକ୍ଷରୁ ପଡ଼ି ମଲା
କେ ଧାଇଁ ଯାଉ ଯାଉ କୁକୁର କାମୁଡ଼ିଲା ।
କେହୁ ଅତି ଆରତରେ ବାମ୍ପୀକୁ ଡେଇଁପଡ଼ି
କେ ଡାକ ପକାଏ ପୁଅ ଭାରିଜାକୁ ଛାଡ଼ି ।
କେହୁ ପାଣି ପକାଇ ଛାଡ଼ନ୍ତି ସେ ଘର
କେ କହଇ ବାପ ଆରେ ମୋତେ ଧର ଧର ।
କେ କହଇ ରାବଣ ଏମନ୍ତ କର୍ମ କଲା
କେ କହେ ସୀତାଙ୍କୁ ଆଣି ସମ୍ପତ୍ତି ହରାଇଲା ।
କେ କହଇ ଆମ୍ଭର ମିଣିପେ କେଣେ ଗଲେ
କେ କହେ ଆଉ ଜୀବନ ନ ରହିବ ଭଲେ ।
କେ କହେ ମୋର ଶାଶୁ ନଣନ୍ଦ ଜଣେ ନାହିଁ
କେ କହଇ ଆହା ମୋର କାହିଁ ବାପ ଭାଇ ।
ବାଳକମାନେ ମେଳ ହୋଇ ଖେଳୁଥିଲେ
ତାତ ମାତ ଅଭେଟ ସେ କେଣେ ପଳାଇଲେ ।
ସ୍ନାନ କରିବାକୁ ଯେଉଁମାନେ ଯାଇଥିଲେ
କୁଟୁମ୍ବ ଏଣେ ମଲେ ସେ ତେଣେ ପଳାଇଲେ ।
କୃଷିକାରମାନେ କ୍ଷେତରୁ ଫେରି ଆସି
ଦେଖିଲେ ପୂରାବଂଶ ହେଲେଣି ଭସ୍ମରାଶି ।
ଦେବସ୍ଥଳରେ ପଣ୍ଡିତମାନେ ବସିଥିଲେ
ଭୟରେ ଧାଇଁ ଆସି ସଦନ ଦେଖିଲେ ।
ବହଇ ପବନ ଦହଇ ହୁତାଶନ
ପଳାଇ ଯିବାକୁ କେ ନୁହନ୍ତି ଭାଜନ ।
କେ କହେ ଚଉକତି ସାଗର କେଣେ ଯିବା
କେ କହେ ଏକାବେଳେ ସମସ୍ତେ ମରିବା ।
କେ କହଇ ଏକଥା ଆମ୍ଭର ନିଅ ତ
କେ କହେ ଅଛୁଇଁ ପୂର୍ବର କଲା କୃତ୍ୟ ।
କେ କହେ ପୂର୍ବରେ ଅର୍ଜିଥାଇଁ ଯାହା
କେ କହେ ଅନ୍ୟଥା କେ କରିବ ତାହା ।
କେ କହଇ ଏ ପୋଡ଼ିରେ ନିଶ୍ଚୟ ମରିବା
କେ କହଇ ଏ ଯୋଗକୁ କି ବୁଦ୍ଧି କରିବା ।
କେ କହଇ ଏକା ବାନର କଲା ଢକା
କେ କହଇ ରାମ ଅଇଲେ ରହିବ କି ଲଙ୍କା ।
କେ କହଇ ଏହି ମତେ କେତେ କପିଥିବେ
ସେମାନେ ଅଇଲେକି ଏ ରାଜ୍ୟକୁ ରଖିବେ ।
କେ କହେ ତହିଁକି ଆଉ କି ବୁଦ୍ଧି କରିବା
କେ କହଇ ରାଜା ଆଗେ ସମସ୍ତେ ମରିବା ।
କେ କହଇ ଏତେକାଳ ନିଶ୍ଚିନ୍ତେ ଥିଲେ ରହି
ଏବେ ଏକା ବେଳକେ ସମସ୍ତେ ମଲଇଁ ।

କେ କହେ ଅନଳ ସମ୍ପତ୍ତି ନାଶ କଲା
ପବନ ଯୋଗୁଁ ପୁଣି ଦ୍ୱିଗୁଣ ଧ୍ୱଂସ ହେଲା ।
କେ କହଇ ଏ ଅଗ୍ନି ଯେ କେଡ଼େ ବିକରାଳ
କେ କହେ ଧୂଆଁରେ ନ ଦିଶେ ଅନ୍ତରୀକ୍ଷ ।
କେ କହଇ ହନୁମାନ ରହିଛି ଆକାଶେ
ଲାଙ୍ଗୁଳ ବେଢ଼ାଇ ଅଛି ନଗର ଚଉପାଶେ ।
ଅନଳ ଗର୍ଜନ କରେ ଯେହ୍ନେ ଘଡ଼ ଘଡ଼ି
ଏଡ଼େ ବଡ଼ ନଗ୍ର ଗଲା ଏକାବେଳେ ପୋଡ଼ି ।
କେ କହେ ବିଶ୍ୱକର୍ମା ନିର୍ମାଣ କଲା ଏହା
ସୁକେଶୀ ମହାତମା ଏ ଦେଶର ନାହା ।
ଏତେବେଳେ ରାବଣ ସମ୍ଭଳେ ନାଶ ଗଲା
ସୁବର୍ଣ୍ଣ ମହିଲଙ୍କା ଅଙ୍ଗାର ହୋଇଲା ।
କହନ୍ତି ସଦାଶିବ ଶୁଣ ଗୋ ଗଉରୀ
ବଡ଼ ବିକଳ ହେଲା ଲଙ୍କାର ଦଣ୍ଡଧାରୀ ।
ଯେତେ ଯେତେ ଭାଷା ତା କହିଲେ ନ ସରି
ଆକୁଳ ହୋଇ କେହୁ କପାଳେ କରମାରି ।
ବିକଳ ହୋଇ କେହୁ ଦଇବ ସୁମରି
ପୁତ୍ର ନାତି ନାଶ ଦେଖି ହୋଇଣ ଆତୁରୀ ।
ଆକୁଳେ ଗଡ଼ି କରି କେ ହୁଅଇ ଦୁଃଖୀ
କେ ଅତି ଆକୁଳରେ ବୁଜଇ ବେନି ଆଖି ।
କେଉଁ ନାରୀ ଲୋଭରେ ପଦାର୍ଥ ଆଣି ଯାଇ
ତାତି ସହି ନ ପାରି ଆକୁଳେ ବୋବାଇ ।
ଅନଳ ଲାଗି ଅଛି କାହା ପଣନ୍ତରେ
ମଲି ମଲି ବାପ ବୋଉ ଡାକଇ ଆକୁଳେ ।
କେବଣ ଦଇତର ଯାଇଛି ପିଠି ପୋଡ଼ି
ପୋଖରୀ କୂଳକୁ କେ ପଳାଏ ଗଡ଼ି ଗଡ଼ି ।
କେ କଅଁଳା ପୁଅକୁ ଘେନିଣ ଶୋଇଥିଲା
ଅନଳ ଲାଗିବାରୁ ଆସି ନ ପାରିଲା ।
କେ ପଳାଇ କହଇ ଗୋ ଜିଇଥିଲେ ସବୁ
କେ ବୋଲଇ ମୁଁ ନ ମଲି ମଲା ମୋର ବାବୁ ।
ଏମନ୍ତେ ଅନେକ ମତେ ବିକଳ ହୁଅନ୍ତି
କୋପମନ ହୋଇଣ କେ ରାଜାଙ୍କୁ ଗାଳି ଦ୍ୟନ୍ତି ।
କେ କହେ ପାପୀ ପର ନାରୀକି ଅଛି ଆଣି
କପିମନ କଲେ ଘେନିଯିବ ଯାତରାଣୀ ।
କେ କହଇ ରଜାକୁ ବାଛିଲେ ହେବ କିସ
ଆମ୍ଭମାନଙ୍କର ତ ସବୁ ଗଲା ନାଶ ।
ପୋଡ଼ିହୋଇ କେତେ ସ୍ତିରୀ ପୁରୁଷ ତହିଁ ମଲେ
ଗାଭ ବିପ୍ର ପଶୁମାନେ ବିନାଶ ହୋଇଲେ ।
ଦେବତାଙ୍କ ଆଳୟ ହୋଇଲା ଭସ୍ମରାଶି
ପେଷ ଗଣ୍ଡିଆମାନେ କୁର କଲେ ପଶି ।

ନଗ୍ରେ ପଶି ନ ପୋଡ଼ିଲା ଘର ପୋଡ଼ିଦ୍ୟନ୍ତି
ଦ୍ରବ୍ୟମାନ ଘେନିଣ ଯାଇଁଣ ପଳାନ୍ତି ।
ଯାହାର ଯାହାଠାରେ ଅହଙ୍କା ଭାବ ଥିଲା
ବେଳକାଳ ଜାଣିଣ ସେ ମନ୍ଦଚିନ୍ତା କଲା ।
ସୁବର୍ଣ୍ଣର କାନ୍ଥ ଯେ ନବରତ୍ନେ କମ
ଲିପା ହୋଇଛି ତହିଁରେ କସ୍ତୁରୀ ଚନ୍ଦୁଃସମ ।
ସେ ଘରମାନ ସମସ୍ତ ହେଉ ଅଛି ଦହି
ସାଧୁଙ୍କର ବିକଳ କେ ପାରିବ କହି ।
କେହୁ ଧନ ଲୋଭରେ ଜୀବନ ହରାଇଲା
ସେତେବେଳେ କାହା ହାତୁ କିଏ ଝଡ଼ାଇଲା ।
ପୋଡ଼ିଗଲା ଯହୁଁ ହସ୍ତୀ [illegible]ାଙ୍କର ଶାଳ
ଫିଟିକରି ସେମାନେ ବୁଲ[illegible]ଳିମାଳି ।
ମାଳେ ଗଜଅଶ୍ୱ ଓଟଗଧ [illegible] ବହୁତ
ପକ୍ଷୀ ଜନ୍ତୁମାନେ ମ[illegible] ଯେ ବହୁତ ।
ପାଟେରୀକି ଡେଇଁ ଯେତି ନ ପାରନ୍ତି ଯାଇ
ଦ୍ୱାରୀମାନେ ଅଛନ୍ତି ଆହାର ନ ପାଇ ।
ଅଜାଣେ ଅନଳ ଲାଗିଲା ଚଉକତି
ଯାଇ ନ ପାରି ସର୍ବେ ହୋଇଲେ ନିପାତି ।
ପୋଡୁଅଛି ଚନ୍ଦନ ଅଗୁରୁ ଘନିଅର
ଯୁଆଦ ଶାଳେହା ଶଶା ମହିଷି ମୟୂର ।
ମୃଗ କୁରଙ୍ଗ ଖୁରୁଙ୍ଗ ଶୂକର ଯେ ଗଣ
କୋକିଳ ଶୁକପିକ ଶାରୀଶୁଆ ରଣ ଭଣ ।
ପୁଷ୍ପ ତୋଟାମାନ ଯେ ସମସ୍ତ ଗଲା ଜଳି
ସୁସ୍ୱାଦୁଫଳ ଯେ କେଉଁଠାରେ ଥିଲା ଫଳି ।
ସେମାନେ ସମସ୍ତେ ହୋଇଲେ ଭସ୍ମରାଶି
ମାନିତ ଗୌରବଜନ ହେଲେ ମିଶାମିଶି ।
ଜ୍ଞାନ ହରାଇଲେ ସବୁ ଲଙ୍କାର ନର ନାରୀ
କୋଳାହଳ ଶବଦରେ ତିନିପୁର ପୁରି ।
ଧୂମ୍ରମିତ ଗହଳରେ ନ ଦିଶଇ ବାଟ
ଅତି ଅମଙ୍ଗଳ ହେଲା ଏଡ଼େ ବଡ଼ ରାଷ୍ଟ୍ର ।
ରାବଣ ବୁଦ୍ଧି ବିଚାର ସରିଲା ସକଳ
ମନ ଆନନ୍ଦ ବାହାରେ ଭିତରେ ବିକଳ ।
ପୁଷ୍ପକ ବିମାନରେ ଉପରେ ଲଙ୍କପତି
ରାଣୀ ମାହାଦେଈଙ୍କି ସଙ୍ଗେ ଘେନିଛନ୍ତି ।
ପୁତ୍ରନାତି ଭାଇବନ୍ଧୁ ଘେନିଣ ସମସ୍ତ
ପୁଷ୍ପକ ବିମାନରେ ବିଜେ ଲଙ୍କନାଥ ।
ମନରେ ବିଚାର କରେ ବିଶ୍ରବାର ବାଳ
ମୋ ବିଚାରରୁ ବଳିଲା କପିର ବୁଦ୍ଧି ବଳ ।
ଅଜାଣେ ମାଇଲା ମୋର ନାନା ଜନ୍ତୁମାନ
କାହାକୁ କହିବି ଏ ମୋହର ଦୋଷ ଜାଣ ।

ନଗ୍ର ପୋଡ଼ି ଦେଲେକି ପାରିବ ମୋତେ ଜିଣି
ଦୂତ ହୋଇ କୁପାଞ୍ଚ କରୁଛି ମୋତେ ପୁଣି ।
ଏବେ ସେ ଜାଣିବା କିପରି ବଡ଼ ଜଣ
ମୋହର ଆଗେ ଆସି ଯେବେ କରିବ ରଣ ।
କାଲି ଯାଇ ଶ୍ରୀରାମଙ୍କୁ ଆଣିବି ମୁଁ ଧରି
ଦେବତାଙ୍କ ଆଗରେ ପକାଇବି ମାରି ।
ବାନର ଶତ୍ରୁ ଯେବେ ମୋହର ବଇରୀ
ଏତେ ବୋଲି ଖଡ଼ଗ ଝମକାଏ ଧରି ।
ପବନ ନନ୍ଦନ ଶୂନ୍ୟରେ ଶୁଣୁଥିଲା
ଶୂନ୍ୟରୁ ଆସି ବିମାନ ଉପରେ ବସିଲା ।
ରାବଣ ପିଠିକି ସେ ମାଇଲା ବିଧାଏ
ବୋଇଲା ନିଲ୍ଲଜରେ ଟାଣ କରୁରାଏ !
ଯେଉଁଦିନ ସୀତାଙ୍କୁ ଚୋରାଇ ଆଣିଲୁ
କାଳ ପାଶକୁ ନିଜ ଦେହରେ ବାନ୍ଧିଲୁ ।
କଥାଏ କେବଳ ତୋତେ ଅଛି ପାର
ଶ୍ରୀରାମଙ୍କ ହସ୍ତେ ମଲେ ଯିବୁ ବିଷ୍ଣୁଦ୍ୱାର ।
କ୍ଷୀର ସାଗର ବାସି ଅଟନ୍ତି ଦାଶରଥି
ଦାଶରଥି ଶରେ ବାଳି ହେଲା ସ୍ୱର୍ଗ ଗତି ।
ସମସ୍ତଙ୍କ ଆଗରେ ସ୍ୱର୍ଗକୁ ଚଳିଗଲା
ତାର ପାଟରାଣୀକି ସୁଗ୍ରୀବର ନେଲା ।
ପୂର୍ବରେ ତପ କଲେ ଲଙ୍କର ଅସୁର
ଶ୍ରୀରାମଙ୍କ ହସ୍ତେ ମଲେ ଯିବେ ସ୍ୱର୍ଗପୁର ।
ଶ୍ରୀରାମଙ୍କ ହସ୍ତେ ତୁ ଯେ ମରଣ ପାଇବୁ
ଅସୁର ଦେହ ତେଜି ସ୍ୱର୍ଗପୁର ଯିବୁ ।
ତୋହର ରାଣୀହଂସଙ୍କୁ ବିଭୀଷଣ ନେବ
ଏହି ଲଙ୍କାରେ ବିଭୀଷଣ ରାଜା ହେବ ।
ଶୁଣିଣ ରାବଣ ଯେ କ୍ରୋଧରେ ଜର ଜର
ମାରୁତିକି ଖଡ଼ଗ କଲାକ ପ୍ରହାର ।
ଭାଙ୍ଗିଲା ଖଡ଼ଗ ଯେ ନୋହିଲା କିଛି ତାର
ଦେଖିଣ ରାବଣ ଯେ ହେଲା ଚମତ୍କାର ।
ତେଣୁ ସେ ପବନ ସୁତ ଲାଞ୍ଜ ବେଢ଼ାଇଲା
ବ୍ରହ୍ମ ଅଗ୍ନି ତାପରେ ବିକଳ ସର୍ବେ ପରା ।
ମାରୁତିକି ଚାହିଁଣ ମନ୍ଦୋଦରୀ କହି
ଯାଅ ହୋ ରାମଦୂତ ନ ଦହ ଆଉ ତୁହି ।
ଜାନକୀଙ୍କି ଠାବ କରି ସୈନ୍ୟଙ୍କୁ ନାଶ କଲୁ
ଲଙ୍କା ପୋଡ଼ି ଦେବାରୁ ଏବେ ଯଶ ନେଲୁ ।
ରାମ ସିନା ରାବଣକୁ ମାରିବେ ଯୁଦ୍ଧ କରି
ରାମଙ୍କର ରାବଣ ଅଟଇ ଦାରା ବୈରୀ ।
ତୋତେ ପାଞ୍ଚିବାରୁ ତୁହି ପାଞ୍ଚ କଲୁ
ରଘୁନାଥଙ୍କର କାର୍ଯ୍ୟ ତୁହି ଆସି କଲୁ ।

ଶୁଣିଣ ହନୁମନ୍ତ ଓଳଗି ମେଲାଇଲା
ଧନ୍ୟରେ ସାଧବୀ ବୋଲି ତହୁଁ ବେଗେ ଗଲା ।
ଇନ୍ଦ୍ରଜିତ ରଥରେ ବସିଲା ଯାଇ କରି
ବୋଇଲା ଧରିବା ବାଗ ଅଛିକି ତୋହରି ।
ଏତେ ବୋଲି ମାରୁତି ମାଇଲା ଦୁଇମୁଥ
ଅଚେତା ହୋଇଲା ଯେ ରାବଣର ସୁତ ।
ଦେଖିଣ ମାରୁତି ମୁକୁଟ ଫିଟାଇଲା
ଲେଟିକରି କାଛଟାରେ ନେଇଣ ବାନ୍ଧିଲା ।
ଇନ୍ଦ୍ରଜିତ ରଥରୁ ଗଲା ବେଗ ହୋଇ
ମାରୁତି ଯାଆନ୍ତେ ଇନ୍ଦ୍ରଜିତ ଚେତାପାଇ ।
ଧନୁଶର ଧରିଣ କଲାକ ଟଙ୍କାର
ସେ କଥା ଦେଖି ପବନ ମିଳିଲା ଆଗର ।
ବୋଇଲା ଇନ୍ଦ୍ରଜିତରେ ନ ଧର ତୁ ଶର
ବାପର ପ୍ରାୟେ ଅଯୋଗ୍ୟ ହେବୁରେ କୁମର ।
ଯେତେ ଶର ମାରିବୁ ହନୁ ଦେବ ଗିଳି
ପୂର୍ବ ଦୋଷରୁ ତାକୁ ଆଣିଲୁ ବାନ୍ଧିକରି ।
ତେତିଶ କୋଟି ଦେବତାଙ୍କର ଯେତେ ବଳ
ଏକା ହନୁମନ୍ତର ସେତିକି ଯେ ବଳ ।
ଯେତେ ଶର ବିନ୍ଧିବୁ ସେ କରିବ ସଙ୍କୁଡ଼ି
ରାମାୟଣ ଯୁଦ୍ଧକୁ ତୋର ସଙ୍ଖାଳି ଯିବ ବୁଡ଼ି ।
ଯେତେ ଶର କଲେରେ ନ ଟଳିବ ତୋର
ଶୁଣିଣ ଇନ୍ଦ୍ରଜିତ ବିଚାରେ ମନର ।
ପବନଙ୍କୁ ବୋଇଲା ଦଣ୍ଡେ ତୁମ୍ଭେ ରହ
ଏକଶର ପରୀକ୍ଷାରେ ଯାଉ ମୋ ସନ୍ଦେଶ ।
ଏତେ କହି ଅଗ୍ନିଶର ଗୁଣରେ ବସାଇଲା
ହନୁକୁ ମାର ବୋଲି ଶରକୁ ଡିଆରିଲା ।
ଗର୍ଜନ କରି ଶର ହୋଇଲା ବାହାର
ଦେଖି ତୁଣ୍ଡ ବିସ୍ତାରିଲା ଅଞ୍ଜନା କୁମର ।
ଅଗ୍ନିଶର ଯେତେ ପ୍ରତାପେ ଯାଉଥିଲା
ସେ ଶରକୁ ମାରୁତି ଦନ୍ତରେ କାମୁଡ଼ିଲା ।
ସଙ୍କୁଡ଼ି କରିଣ ତାକୁ ତଳେ ପକାଇଲା
ଲେଉଟିଣ ଶର ଯେ ତୁଣିକି ନ ଆସିଲା ।
ଦେଖିଣ ଇନ୍ଦ୍ରଜିତ ଭାବିଲା କଥା ସତ
ହନୁକୁ ସେଠାରୁ ଡରିଲା ଇନ୍ଦ୍ରଜିତ ।
ପବନକୁ କହିଲା ପୁତ୍ରକୁ ତୋର କହ
ଯାଉ ସେ ଲଙ୍କାଗଡ଼ୁ ତୁଟୁ ସେ କଳହ ।
ଶୁଣିଣ ପବନ ଯେ ବେଗେ ଚଳିଗଲା
ହନୁମନ୍ତ କର୍ଣ୍ଣରେ ଯାଇଣ କହିଲା ।
ଯାଅ ବାବୁ ବେଗରେ ଏ ପୁରେ ନ ରହ
ବେଗେ କହ ଆସନ୍ତୁ ଦଶରଥଙ୍କ ପୁଅ ।

ଏତେ କହି ପବନ ଅନ୍ତର୍ଦ୍ଧ୍ୟାନ ହେଲା
ଶୁଣିଣ ହନୁମନ୍ତ ସନ୍ତୋଷ ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ପ୍ରଚଣ୍ଡ ଅଗ୍ନିର ଦ୍ୱିଗୁଣ ତେଜ ମୂର୍ତ୍ତି ।
ବିକରାଳ ହୋଇଣପବନ ବହଇ
ଲଙ୍କାର ସ୍ତ୍ରୀ ପୁରୁଷ ହୁଅନ୍ତି ବିନୋଇ ।
ପଶ୍ଚିମ ସମୁଦ୍ର କୂଳକୁ ରାବେଣେଶ୍ୱର ଚଳି
ପୁଷ୍ପକ ବିମାନର ଉପରେ ବିଜେ କରି ।
ଦୈତ୍ୟଙ୍କର ବିକଳ ରାବଣ ଦେଖିଲା
ନରାନ୍ତକ ସୁରାନ୍ତକ ଦୁହିଁଙ୍କି ଡାକିଲା ।
ଯାଅରେ ବେନି ପୁତ୍ର ଆଜ୍ଞା ଘେନି ମୋର
ଲଙ୍କାକୁ ଦହନ କରଇ ବଶ୍ୟାନର ।
ବେନି ଭାଇ ଯାଇଣ ଅଗ୍ନିକୁ ଲିଭାଅ
ଲୋକଙ୍କର ଅଭିମାନକୁ ତୁମ୍ଭେରେ ଛଡ଼ାଅ ।
ରାଜାର ବଚନରେ ଗଲେ ବେନି ଭାଇ
ପୂର୍ବପାଖ ସମୁଦ୍ରକୁ ପଡ଼ିଲେ ସେ ଡେଇଁ ।
ସାହେରେ ପଶି ତାଙ୍କୁ ହେଲା ଆଣ୍ଠୁ ଆଣି
କର ପ୍ରସାରି ସେ ବୁହାନ୍ତି ଦୁହେଁ ପାଣି ।
ଶତେ ଯୁଣ ପରିଯନ୍ତେ ଲଙ୍କାର ଅଗ୍ନି ଲିଭି
ଅନଳର ଶିଖା ଯେ ମଉଳି ଗଲା ବେଗି ।
ଅନଳ ଲିଭାବନ୍ତେ ଧୂର୍ମମୟ ହେଲା
ଆକାଶେ ଥାଇଣ ତାହା ମାରୁତି ଦେଖିଲା ।
ରାବଣର ବେନି ପୁଅ ଅନଳ ଲିଭାନ୍ତି
ଶୀଘ୍ର କରି ଆକାଶରୁ ଆସିଲା ମାରୁତି ।
ଯାଇଣ ବେନି ଭାଇଙ୍କି ଲାଞ୍ଜରେ ବାନ୍ଧିଲା
ସମୁଦ୍ର ଭିତରେ ନେଇଣ ପକାଇଲା ।
ସିନ୍ଧୁ ମଧ୍ୟେ ରହିଲେ ନରାନ୍ତକ ସୁରାନ୍ତକ
ଦେଖିଣ ଦଶାନନକୁ ନ ସ୍ଫୁରଇ ବାକ୍ୟ ।
ପାର୍ବତୀ ପଚାରନ୍ତି କହ ହେ ଈଶ୍ୱର
ଜାନକୀ ଜାଣିଲେଟିକି ଲଙ୍କା ପୋଡ଼ିବାର ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଲଙ୍କା ପୋଡ଼ି ବେଳେ ଅସୁରୀ ରହିଥିଲେ ସେଥି ।
ହନୁଲାଞ୍ଜେ ଅନଳ ଲଗାଇବାର ବେଳେ
ଅସୁରୀମାନେ ଥିଲେ ରାବଣ ନବରେ ।
ଜଗତି ଅଟାଳି ଯେ ପୋଡ଼ନ୍ତେ ହନୁମନ୍ତ
ଦେଖିଣ ଅସୁରୀମାନେ ଚଳିଲେ ତ୍ୱରିତ ।
ତ୍ରିଜଟା ଜାନକୀଙ୍କ ଆଗରେ ଜଣାନ୍ତି
ଯେଉଁ କପି ସଙ୍ଗରେ ତୁ ଭାଳୁଥିଲୁ ସ୍ୱତୀ ।
ସେ ବାନର ମଧୁବନ ତୋଟାକୁ ଭାଙ୍ଗିଲା
ଇନ୍ଦ୍ରଜିତ ନାଗପାଶେ ବାନ୍ଧିଣ ଆଣିଲା ।

ଅନେକ ଶାସ୍ତି ଦେଇଣ ମାଡ଼ ମରାଇଲା
ମଲାପ୍ରାୟ ହୋଇଣ ବାନର ପଡ଼ିଲା ।
କୂଟବହି ଏବେ ସେ ପୋଡୁଅଛି ଲଙ୍କା
ବହୁତ ଲୋକେ ମନେ ପାଇ ଅଗ୍ନି ଶିଖା ।
ଦଇତୁଣୀଠାରୁ ଶୁଣି ଜାନକୀ ଆନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣିବାର ଚାନ୍ଦ ।
ବିଚାରିଲେ ଏଥର ମରିବ ନିଶ୍ଚେ ଦୈତ୍ୟ
ଅଳ୍ପଦିନେ ଆସିବେ ମୋହର ପ୍ରାଣକାନ୍ତ ।
ଭଲା ଭଲା କପିରେ ଏଥିରେ ଯଶ କଲୁ
ଲଙ୍କାଗଡ଼ ପୋଡ଼ିଣ ଦନୁଜ ମାଇଲୁ ।
ମୋର ହୃଦରେ ବିଜେ କଉଶଲ୍ୟାର ବଳା
ଏମନ୍ତ ବିଚାରି ସତୀ ସନ୍ତୋଷ ହୋଇଲା ।
ଏଥୁଅନନ୍ତରେ ଯେ ପବନ ନନ୍ଦନ
ଲଙ୍କାପୋଡ଼ି ଦେଖଇ ଶୂନ୍ୟରେ ଥାଇଣ ।
ଦଇତ ଦଇତୁଣୀ ହୁଅନ୍ତି ବିକଳ
ଅସୁରଙ୍କ ଆରତ ଦେଖିଣ ଲଙ୍କପାଳ ।
ବେନି ପୁଅ ରହିଲେ ସିନ୍ଧୁର ଭିତରେ
ଇନ୍ଦ୍ରଙ୍କୁ ସୁମରଣା କଲା ସେ ମନରେ ।
ଜାଣିଣ ପ୍ରବେଶ ହୋଇଲେ ସୁନାଶୀର
ଦେଖିଣ ନିଘନେ କହଇ ଦଶଶିର ।
ମୋହର ବଚନକୁ ଶୁଣ ଶଚିନାଥ
ଚାରି ମେଘକୁ ଘେନି ବୃଷ୍ଟି କର ଏଥ ।
ଯେମନ୍ତେ ଲିଭିବ ଏ ପ୍ରଚଣ୍ଡ ଅନଳ
ମରୁତ ଦେବତା ଯେ ଦେଉ ତୋତେ ବଳ ।
ଚନ୍ଦ୍ରଦେବତା ଆହ୍ଲାଦ କରିବେ ଗଗନ
ଏମନ୍ତେ ଲଙ୍କାଗଡ଼ ସମ୍ଭାଳ ତୁ ପୁଣ ।
ଶୁଣିଣ ସୁରପତି ସନମତ କଲେ
ଆକାଶ ମଣ୍ଡଳକୁ ବହନ ଚଳିଲେ ।
ମେଘମାନଙ୍କୁ ଚାହିଁ ଇନ୍ଦ୍ର ଆଜ୍ଞା ଦେଲେ
ଶ୍ରୀରାମଙ୍କ କାର୍ଯ୍ୟ ଏବେ କର ହେ ବୋଇଲେ ।
ଘୃତ ସମୁଦ୍ରକୁ ଯାଅସି ବହନ
ଚଉଷଠି ମେଘ ସଙ୍ଗରେ ଯାନ୍ତୁ ପୁଣ ।
ଶୁଣିକରି ମେଘମାନେ କଲେକ ଗର୍ଜନ
ଲଙ୍କାଗଡ଼େ ବର୍ଷା କଲେ ଘୃତକୁ ନେଇଣ ।
ପବନ ସାହାପକ୍ଷ ଲଙ୍କାପୋଡ଼ି ବେଳୁଁ
ବରଷିଲା ବେଳେ ଯେ ପବନ ବହେ ବଳୁଁ ।
ଲାଗିଲା ବ୍ରହ୍ମ ଅଗ୍ନି ଘୃତ ବାସନାରେ
ଘଡ଼ଘଡ଼ି ଶବଦ ଯେ କରନ୍ତି ନିରନ୍ତରେ ।
ଝଟ ଝଟ ବିଜୁଳି ମାରଇ ଚଉଦିଗ
ଚାରିଦିଗ ଘୋଡ଼ାଇଲା ଆଛାଦିଲା ମେଘ ।

ପ୍ରଖର ତେଜରେ ଜଳିଲା ବହ୍ନି
ବ୍ରହ୍ମାଙ୍କୁ ସୁମରଣା କଲା ବିଂଶପାଣି ।
ଜାଣିଣ ବେଦବର ହଂସ ଚଢ଼ି ଆସି
ଦେଖିଣ ଦଶଗ୍ରୀବ ମନରେ ହେଲା ଖୁସି ।
ବ୍ରହ୍ମାଙ୍କୁ ଚାହିଁଣ ପୁଚ୍ଛେ ବିଂଶହସ୍ତ
ଅନଳର ତେଜ ତ ନୋହୁଛି ନିବର୍ତ୍ତ ।
କେବଣ ଚରିତ ଏ ନ ହୁଏ ଗୋଚର
ଅଧିକ ତେଜ ହୋଇ ଉଠେ ବୈଶ୍ୟାନର ।
ବରଷା ସଙ୍ଗେ ପବନ ବହେ ଅଣଚାଶ
କେବଣ ଚରିତ ଏ ଲାଗୁଛି ସନ୍ଦେଶ ।
ଜଳ ପକାଇଲେ ଅଗ୍ନି ଲିଭିଯାଏ ଜାଣ
ଏବେ କିମ୍ପା ପ୍ରଜ୍ୱଳିତ ହୁଅଇ ସେ ପୁଣ ।
ବେଦବର ବୋଇଲେ ଶୁଣ ଲଙ୍କନାଥ
ଏହିକ୍ଷଣି ଅଗ୍ନି ନେ ହୋଇବ ନିବର୍ତ୍ତ ।
ଆହୁରି ଘଡ଼ିକରେ ଅଗ୍ନି ଲିଭିଯିବ
ଏଥିକୁ ଭାବନା ନ କର ଦଶଗ୍ରୀବ ।
ବାନର ସଙ୍ଗରେ ଆଉ ବିବାଦ ନ କର
ମୋହର ବୋଲ କର ବେଳେକେ ସତାର ।
ପୁଷ୍ପକ ବିମାନ ତୁ ନ ତେଜିବୁ ରାୟ
ଏ ବିମାନେ ଥିଲେ ତୋତେ କିଛି ନାହିଁ ଭୟ ।
ସୁରଗଣ ଘେନି ମୁଁ ଯେ ଅଛି ସ୍ୱର୍ଗପୁର
ନ ପୁଣ କପି ତୋ ଘର କରେ ଚୁର ।
ସେ କଥାକୁ ଜାଣିବାର ଅଟଇ ବିହିତ
ବେଦବର ବଚନେ ବୋଲଇ ଦଶମାଥ ।
ଭୋ ପିତା ବାଟେ ଯେବେ ଦେଖିବୁ ବାନରକୁ
ପ୍ରବୋଧ କରିଣ ଫେରାଇ ଦେବୁ ତାକୁ ।
ବେଦବର ବୋଇଲେ ତୁ ରହ ହୋଇ ସ୍ଥିର
ପ୍ରତାପି ବାନର ସେ ଅଟଇ ବଳିଯାର ।
ତାର ସଙ୍ଗରେ ରଜା ନ କର କିଛି ଦ୍ୱନ୍ଦ୍ୱ
ମୁଁ ଯାଉଛି ବାଟେ ତାକୁ କରିବି ପ୍ରବୋଧ ।
ଲଙ୍କା ପୋଡ଼ିଗଲା କିଛି ବିଚାର ନ କର
କାଲି ବିଶ୍ୱକର୍ମା ଗଢ଼ିବ ଏହିପୁର ।
ଗତୁ ଶତେ ଗୁଣେ ଯେ ହୋଇବ ଉଜ୍ୱଳ
ଶୁଣିଣ ସନ୍ତୋଷ ହେଲା ଲଙ୍କପାଳ ।
ବେଦବରଙ୍କୁ ବୋଇଲା ଯାଅ ବେଗ ହୋଇ
କପିକି ପ୍ରବୋଧିଣ ଦିଅସି ପଠାଇ ।
ମୋହର ପୁର ଗୋଟି ହେଲା ଛାରଖାର
ଭୋ କୁଶକେତୁ ମୋତେ ପ୍ରତିକାର କର ।
ଗତୁ ଶତେ ଗୁଣ ଲଙ୍କା ହୋଇଲେ ଉଜ୍ଜଳ
ତେବେ ତୁ ପ୍ରଶଂସା ପାଇବୁ ଲୋକପାଳ ।

ଶୁଣିଣ ପିତାମହ ସନ୍ତୋଷ ହୋଇଲେ
ହଂସ ବାହନେ ବସି ଅନ୍ତରୀକ୍ଷେ ଗଲେ ।
ବାଟରେ ଯାନ୍ତେ ବିଧାତା ହନୁକୁ ଚାହିଲେ
ଲଙ୍କା ପୋଡ଼ିଲୁ ବାବୁ ଯାଅ ଏଥୁ ଭଲେ ।
ଯେତେ କର୍ମ ତିନିଦିନେ କଲୁରେ ମାରୁତି
ଦେଖି ଆମ୍ଭେ ସୁର ଦେବେ ହୋଇଲୁ ତୃପତି ।
ଏବେ ଏ ପୁରରେ ଆଉ ତୋତେ ଯଶ ନାହିଁ
ପ୍ରତାପି ଲଙ୍କେଶ୍ୱର ଏ ତ୍ରିପୁର ସାଧଇ ।
ବ୍ରହ୍ମଶର ମାରିଣ ନେବ ତୋର ପ୍ରାଣ
ଉତ୍ତର ମୁଖେ ଏବେ ଚଳ ହନୁମାନ ।
ଲଲାଟୁ ବ୍ରହ୍ମ ଅଗ୍ନି କରିଅଛୁ ଜାତ
ମସ୍ତକେ ନେଇ ସମ୍ଭାଳ ପବନର ସୁତ ।
ଶ୍ରୀରାମ ଆଗରେ ଯାଇ କହ ତୁ ବାରତା
ବେଗେ ଆସି ରାବଣକୁ ମାରନ୍ତୁ ଜଗଜ୍ଜିତା ।
ଦାଶରଥି ଆସିଲେ ଅସୁର ନାଶ ଯିବେ
ଅସୁରେ ନ ମଲେ ସ୍ୱର୍ଗେ ଦେବେ ନ ରହିବେ ।
ଶୁଣିଣ ହନୁମାନ ଯୋଡ଼ି ବେନି କର
ବୋଇଲେ ଅସୁରଙ୍କୁ ତୁମ୍ଭେ ବଡ଼ ଡର ।
ବୋଇଲ ଲଙ୍କାରୁ ଯାଅ ବେଗ ହୋଇ
ଶ୍ରୀରାମଙ୍କୁ କହିଲେ ଆସିବେ ବେଗ ହୋଇ ।
ତୁମ୍ଭ ବଚନରେ ମୁଁ ହୋଇଲି ନିବର୍ତ୍ତ
ଜାନକୀଙ୍କି ତ ମାରି ନ ପାରେ ଦଇତ ।
ଅଜ୍ଞାନ ରାବଣେଶ୍ୱର ସତୀଙ୍କି ରାଗ ହୋଇ
ଏଥି ପାଇଁକି ଦେବ ତୋତେ ମୁଁ କହଇ ।
ଶ୍ରୀରାମ ଆସିବାଯାଏ ରକ୍ଷା କରିଥିବ
ଅଜ୍ଞାନ ଯେମନ୍ତ ନୁହଇ ସେ ଦଶଗ୍ରୀବ ।
ହନୁମନ୍ତ ବଚନେ କହନ୍ତି କୁଶଧାରୀ
ରାବଣ ଛାରକି ସୀତାଙ୍କୁ ଚାହିଁପାରି ।
ଅନଳ ଉପରେ କାହିଁ ବସିବଟି ମାଛି
ଦେଖୁ ଦେଖୁ ମାରୁତି ତୁ ବଣା ହୋଇଲୁ କି ।
ବରୁଣର ନନ୍ଦିନୀ ଯେ ଅଟେ କମଳିନୀ
ଅବନୀ ଭାରା ଅର୍ଥେ ଜାତ ହେଲେ ପୁଣି ।
ଜଳଧି ନନ୍ଦିନୀର ଅଗ୍ନି ଯେ ଶରୀର
ଅଗ୍ନିରେ ସ୍ନାନ କରେ ପକ୍ଷକେ ଏକ ଥର ।
ସଚରାଚର ଦେବଙ୍କର ଅଟେ ସେ ଜନନୀ
ଲୀଳା କରିବାର ପାଇଁ ମାନବ ଜନ୍ମ ପୁଣି ।
ଦେଖିଲୁ ଅଗ୍ନିରୂପ ଯେ ହୋଇଛି ଜାନକୀ
ରାବଣ ମାରିବାକୁ ଇଚ୍ଛାଏ ଆସିଅଛି ।
ଅଗ୍ନିର ପ୍ରତାପରେ ରାବଣ ନ ଛୁଅଁଇ
ଭୟରେ ଦଶାନନ ଥରହର ହୋଇ ।

ଦେବକୁଟ ହେବାରୁ ଆଣିଲା ଯାଇ କରି
ରଥରେ ବିଜେ କରି ଅଇଲେ ରାମନାରୀ ।
ତଳ ପିଢ଼େ ରହି ରାବଣ ରଥ ବାହିଲା
ଛୁଇଁ ନ ପାରି ଅଶୋକ ବନରେ ରଖିଲା ।
ଛୁଇଁଥିଲେ ଆଉ କି ରାବଣେଶ୍ୱର ଥାନ୍ତା
ସେହିଠାରେ ସମୂଳେ ଭସ୍ମ ହୋଇଥାନ୍ତା ।
ଆରେ ମାରୁତି ବିଚାର କର ତୁ ଏହାକୁ
ବେଗେ ଯାଇ ବାରତା କହ ତୁ ରାମଙ୍କୁ ।
ଷଡ଼ମାସ ହେଲାଣି ଆସିଲେଣି ସୀତା
ରାମ ଦେବ ବିକଳ ନ ପାଇ ବାରତା ।
ଏତେ କହି ବିଧାତା ଗଲେ ସ୍ୱର୍ଗପୁର
ଲଙ୍କାର ଦହନ ଦେଖି ଦଶଶିର ।
ପୁତ୍ର ନାତି ମେଘନାଦ ପ୍ରଶସ୍ତଙ୍କୁ ରାଇ
ଆଜ୍ଞା ଦେଲା ତାଙ୍କୁ ଯେ ମନ୍ଦୋଦରୀ ସାଇଁ ।
ସକଳ ସୈନ୍ୟବଳ ଘେନି ବେଗେ ଯାଅ
ଯେମନ୍ତେ ପାର ବାବୁ ଅନଳ ଲିଭାଅ ।
ଶୁଣିଣ ଇନ୍ଦ୍ରଜିତ ପ୍ରଶସ୍ତ ବହନ
ସଙ୍ଗତରେ ଘେନିଣ ଅନେକ ଦୈତ୍ୟଗଣ ।
କୁମ୍ଭକର୍ଣ୍ଣର ପୁର ବିଭୀଷଣ ପୁର
ନିକୁମ୍ଭ ନଗର ତାରାର ଯେତେ ପୁର ।
ଘୃତ ଢାଳିବା ଦଇତୁଣୀ ସିଂହିକା ଦୂଳଣୀ
ଏତେ ଘର ଛାଡ଼ିଣ ଅଗ୍ନି ଯେ ପ୍ରଜ୍ୱଳି ।
ଆଉ ସବୁ ଦୈତ୍ୟଙ୍କର ଘର ପୋଡ଼ି ଜାଣ
ବନ୍ଧୁବାନ୍ଧବ ସେ ଯେ ସାଧୁଙ୍କର ଧନ ।
ଯେ ଯାହାର ଅନଳ ଲିଭାନ୍ତି ଯାଇ କରି
ବାମ୍ପୀ କୂପମାନଙ୍କରୁ ପାଣି ବୋହି କରି ।
ତାହା ଦେଖି ମେଘ ଯେ ବରଷିଲା ପାଣି
ଘୃତ ସମୁଦ୍ର ଛାଡ଼ି ଲବଣ ଜଳ ଆଣି ।
ଲିଭିଲା ଅନଳ ଯେ ଜଳଧାର ପାଇ
ବ୍ରହ୍ମ ଅଗ୍ନି ହନୁଠାରେ ପ୍ରବେଶ ହେଲା ଯାଇ ।
ପୁଷ୍ପକ ଯାନେ ଥାଇ ଦେଖେ ଦଶାନନ
ସଙ୍ଗତେ ମନ୍ଦୋଦରୀ ସହିତେ ନାରୀଗଣ ।
ବିଷାଦ ହୋଇଣ ଯାନରେ ଥିଲା ବସି
ଅନଳ ଲିଭିବାର ମନରେ ହେଲା ତୋଷି ।
ଏଥୁ ଅନନ୍ତରେ ସେ ପବନର ସୁତ
ଆନନ୍ଦ ମନରେ ବିଚାର କରେ ଚିତ୍ତ ।
ବେଦବର ବଚନ ଶୁଣିଲା ସେ ଯହୁଁ
ଶୂନ୍ୟେ ଥାଇ ଲଙ୍କାକୁ ଦୃଷ୍ଟି ଦେଲା ତହୁଁ ।
ଦେଖିଲା ଲଙ୍କାପୁର ଦିଶଇ ଅଙ୍ଗାର
ଅଗ୍ନିତେଜ କମିବାରୁ ଦିଶଇ ଛାରଖାର ।

ପୋଡ଼ିରୁ ଉବୁରିଣ ଯେତେକ ଦ୍ରବ୍ୟ ଥିଲା
ବରଷା ଜଳରେ ସେ ସବୁ ଭାସିଗଲା ।
ମେଢ଼ ମଣ୍ଡପ ଅଟ୍ଟାଳି ପବନେ ଗଲା ଭାଜି
ଅନେକ ସ୍ତ୍ରୀ ପୁରୁଷ ମଲେ ଗଳଗାଜି ।
ବଳରାମ ଦାସ ଯେ ସେ କଥା ବିଚାରିଣ
ଶ୍ରୀରାମଙ୍କ ଦାସ ହନୁ ଚରଣେ ଶରଣ ।
ଏଥୁ ଅନନ୍ତରେ ଯେ ପବନର ଶିଷ୍ୟ
ଦେଖିଣ ଏମନ୍ତ ମନର ହେଲା ତୋଷ ।
ଯିବା ବୋଲି ହନୁ ଯେ ବିଚାର କରେ ମନ
ଶ୍ରୀରାମଙ୍କ ପ୍ରସନ୍ନରେ କଲି ମୁଁ ଦହନ ।
ଯେଉଁ ଲଙ୍କାଗଡ଼ ଅଟେ ସମୁଦ୍ର ଭିତରେ
ଦେଖିଣ ଭୟ କରନ୍ତି ଦେବାସୁର ନରେ ।
ଶ୍ରୀରାମଙ୍କ ପ୍ରସନ୍ନେ ମୁଁ ଏଥକୁ ଅଇଲି
ବିଧାତାଙ୍କ ମୁଖରୁ ପ୍ରଶଂସା ପାଇଲି ।
ଯିବି ବାହୁଡ଼ି ମୁଁ କହିବି ରାମ କତି
ଅନେକ କୃପାଶ୍ରେ ଯେ ଜାଣଇ ଲଙ୍କପତି ।
ଜୟ କଲା ଭୂମିରେ ନ ରହି କଦାଚିତେ
ରହିଲେ ଶ୍ରୀରାମ କୋପ କରିବେ ଯେ ମୋତେ ।
ବାନର ଭାଲୁ ପଛନ୍ତେ ନିନ୍ଦା ଯେ କରିବେ
ଯଶ କଲୁ ଯେବେ ରହିଲୁ କିମ୍ପା ତେବେ ।
ଜାଣୁ ଜାଣୁ ମୁଁ କିମ୍ପା କରିବି ଏମନ୍ତ
ଷଡ଼ମାସ ହେଲା ଆମ୍ଭେ ଅଇଲୁଣି ଦୂତ ।
ଏତେ ମନେ ବିଚାରି ଲାଙ୍ଗୁଳ କରେ ଧରି
ଅନଳମାନଙ୍କୁ ସ୍ତୁତି ସେହୁ କରି ।
ଯେ ଯାହାସ୍ଥାନରେ ରଖିଲା ତାଙ୍କୁ ନେଇ
ଆପଣାର ଅନଳକୁ କପୋଳେ ସଂହରଇ ।
ପଛକୁ ଅନାଇଲା ଅନଳ ତହିଁ ନାହିଁ
ପୋଡ଼ିଲା ଉଗୁଳି ବସ୍ତ୍ର ପକାଇଲା ତହିଁ ।
ସାମାନ୍ୟ ରୂପ ଧରି ଅଶୋକବନେ ଗଲା
ଅଶୋକ ବନରେ ସେ ପ୍ରବେଶ ହୋଇଲା ।
ଜାନକୀଙ୍କୁ ଯେଉଁମାନେ କହିଥିଲେ ଖଳ
ଯାଇଣ ହନୁମନ୍ତ ଧଇଲା ତାଙ୍କ ବାଳ ।
ଶତେକ ଅସୁରଣୀଙ୍କି ଟେକି ଘେନିଗଲା
ଲବଣ ସମୁଦ୍ର ମଧ୍ୟରେ ପକାଇଲା ।
ଦଇତୁଣୀମାନେ ତହିଁ ପାଇଲେ ମରଣ
ସୀତାଙ୍କ ଶରଣ ଯେତେ ରହିଲେ ବଞ୍ଚିଣ ।
ସେଠାରୁ ହନୁମନ୍ତ ସୀତାଙ୍କ ପାଶେ ମିଳି
ଦେଖିଣ ଦଇତୁଣୀ ଉଭା କର ଯୋଡ଼ି ।
ହନୁକୁ ଦେଖିଣ ସେ ଅସୁରୀ ପାଇ ତ୍ରାସ
ପୁଣି ଶତେ ଦଇତୁଣୀ ହେଲେ ପରବେଶ ।

ଜାନକୀର ଶରଣେ ବୋଲି କହିଲେ ସକଳ
ତାହା ଦେଖି ହସିଲା ପବନ ଦୁଲାଳ ।
ଜାନକୀର ଶ୍ରୀଚରଣ କଲା ନମସ୍କାର
ଭୟରେ ରାକ୍ଷାସୁଣୀ ମାନେ ଯେ କିଙ୍କର ।
କରଯୋଡ଼ି ଜାନକୀଙ୍କି କହଇ ପାବନୀ
ଶୁଣ ଗୋ ଜନନୀ ଅଯୋଧ୍ୟା ଠାକୁରାଣୀ ।
ଆପଣଙ୍କ ପାଖରୁ ମୁଁ ଯେଉଁଦିନ ଗଲି
ମଧୁବନ ତୋଟାରେ ଯାଇଣ ପଶିଲି ।
ପାଚିଲା ଫଳ ଘେନି ଭୁଞ୍ଜି ହେଲି ତୋଷ
ଦ୍ରୋଣା ଖମ୍ଭେ ବସିଲି ମୁଁ ହୋଇଣ ହରଷ ।
ଦେଖିଣ ତୋଟାଳିଆମାନେ କଲେ ଗୋଳ
ସତର ସସ୍ର କିଙ୍କର ହୋଇଲେ ଯେ ଠୁଳ ।
ଗୋଳ ହେବାର ସେ କଥା ରାବଣ ଜାଣିଲା
ଯୁଦ୍ଧକୁ ଶାଳକଗଣଙ୍କୁ ପେଶି ଦେଲା ।
ତିନିଥର ରଣ କରି ମାରିଲି ମୁଁ ହେଳେ
ସେଦିନ ରଜନୀ ବଞ୍ଚିଲି ତୋଟାରେ ।
ରଜନୀର ଶେଷରେ ପେଶିଲା ପୁଣଦଳ
ପାଞ୍ଚ ସେନାପତି ଜମ୍ବୁମାଳି ଅକ୍ଷୟ ଦୁଲାଳ ।
ସେମାନେ ଯୁଦ୍ଧ କରି ଯମପୁରେ ଗଲେ
ସେଦିନ ରଜନୀରେ ରହିଲି ତୋଟାରେ ।
ଆରଦିନ ଇନ୍ଦ୍ରଜିତ ଆସି ଯୁଦ୍ଧ କଲା
ନାଗପାଶ ଶର କରି ମୋତେ ସେ ବାନ୍ଧିଲା ।
ହାଟବାଟ ଦାଣ୍ଡ କନ୍ଦି ବିକନ୍ଦି ବୁଲାଇ
ଅନେକ ମାଡ଼ ମରାଇଲା ଇନ୍ଦ୍ରଜିତ ତହିଁ ।
ନ ମରିବାରୁ ପୁଣ ଉପାୟ ସେ କଲା
ଲାଙ୍ଗୁରେ ବସ୍ତ୍ର ଗୁଡ଼ାଇ ତଇଳ ଢାଳିଲା ।
ଅଗ୍ନି ଆଣି ଲାଙ୍ଗୁରେ ଲଗାଇଲା ମୋର
ପୋଡ଼ିହୋଇ ମରିବି ମୁଁ ବୋଲିତା ବିଚାର ।
ବିକଳରେ ଏ ଚାଳୁ ସେ ଚାଳକୁ ଡେଇଁଗଲି
ବେନିଶତ ଯୁଣ ଲଙ୍କା ସବୁ ବୁଲିଗଲି ।
ଜଗତି ଅଟାଳି ଯେ ମଣ୍ଡପ ଯେତେ ମେଢ଼
ଏମାନଙ୍କରେ ବସିଲି ଜୀବନ ବିକଳ ।
କେଉଁଠାରେ ସ୍ଥାନ ଯେ ନ ମିଳିଲା ମୋତେ
ତେଣୁ ମୁଁ ସମୁଦ୍ରକୁ ଗଲି ଯେ ତ୍ୱରିତେ ।
ସମୁଦ୍ର ଭିତରେ ଯାଇଣ ସ୍ନାନ କଲି
ତେବେ ସେ ଦାବାନଳ ପୋଡ଼ିରୁ ଉବୁରିଲି ।
ଏମନ୍ତେ ତିନିଦିନ ଏଥିରେ ଗଲା ବହି
ତୁମ୍ଭ ପାଶକୁ ଅଇଲି କହି ଯିବାପାଇଁ ।
କହିଥିଲ ଗଲାବେଳେ ଯିବୁ ଦେଖା ହୋଇ
ତେଣୁ ତୁମ୍ଭ ଛାମୁକୁ ଅଇଲି ମହାମାୟୀ ।
ଏ ପୁରେ ତୁମ୍ଭେ ନିଶାଖା ମୁହିଁ ନିସାଥୀକି
କହିଗଲି ଗଲା ମୋର ସକଳ ଶୁଭ ଅଛି ।
ଏବେ ଗୋ ମହାସ୍ୱତୀ ଯାଉଅଛି ମୁହିଁ
ଶ୍ରୀରାମଙ୍କ ଆଗରେ ଏମାନ କହିବଇଁ ।
ଅପ୍ରତେ କରିଥିଲୁ ଏବେ ପ୍ରତେ ଗଲୁ
ମୋଠାରେ ଜନନୀ ଗୋ ସନ୍ତୋଷ ହୋଇଲୁ ।
ଦିଅ ଆଜ୍ଞା ମୋତେ ଯିବି ବେଗ ହୋଇ
ବହୁତ ତିଆରି କହିଛନ୍ତି ସାବିତ୍ରୀଙ୍କ ସାଇଁ ।
ବିଧାତାଙ୍କ ବଚନରେ ହେଲି ମୁହିଁ ତୋଷ
ରାବଣ ମରିବାକୁ ରହିଲା ଦେଢ଼ମାସ ।
ଶୁଣିଣ ଜାନକୀ ଯେ ଆନନ୍ଦିତ ମନ
ମୁଖ ବିକାଶିଲା ଯେହ୍ନେ ପୂର୍ଣ୍ଣମୀର ଜହ୍ନ ।
ଜାଣିଣ ହନୁମନ୍ତ ଶିରେ ଦେଲା କର
ରାକ୍ଷସୀଙ୍କି ଚାହିଁଣ ବୋଲେ ହନୁବୀର ।
ଦେଖ ତୁମ୍ଭ ସଙ୍ଗତରୁ ଶତେକ ଅସୁରୀ
ସମୁଦ୍ରେ ପକାଇଲି ଧରି ନେଇ କରି ।
ଅନେକ ଦୁଷ୍ଟକଥା କହୁଥିଲେ ସେହି
ଏବେ ସଞ୍ଜିବନୀପୁରେ ଗଲେ ସେହୁ ମୃତ୍ୟୁ ପାଇ ।
ସୀତାଠାରେ ଶରଣ ପଶିଲ ବୋଲି ଆଜି
ନୋହିଲେ ମୃତ୍ୟୁ ପାଇଥାନ୍ତ ଲୋ ନିର୍ଲ୍ଲଜୀ ।
ଏବେ ମୋର ବଚନ ପାଳିଣ ରହିଥିବ
ଏ ମହାସତୀଙ୍କି ଲୋ କିଛି ନ ବୋଲିବ ।
ଯେବେ ତୁକାର ଭାଷା ବୋଲିବ ଦଇତୁଣୀ
ଆରବେଳେ ତୁମ୍ଭଙ୍କୁ ଲୋ ମାରିବି ଥାଅ ଜାଣି ।
ତ୍ରିଜଟାକୁ ଚାହିଁଣ ବୋଲେ ହନୁମନ୍ତ
ମୋର ପାଇଁ ତୋର ପିତା କହିଲା ବହୁତ ।
ଏକଥା ଶ୍ରୀରାମଙ୍କ ଛାମୁରେ ଜଣାଇବି
ଏହି ଲଙ୍କାଗଡ଼େ ତାକୁ ରାଜା କରାଇବି ।
ତୁମ୍ଭେ ସମସ୍ତେ ଗୋ ସୀତାଙ୍କୁ ସେବୁଥିବ
ପକ୍ଷକରେ ବିଜେ ଏଥି କରିବେ ରାଘବ ।
ଏତେ କହି ମାରୁତି ସୀତାଙ୍କ ପାଦେ ପଡ଼ି
ଉଠି ଉଭା ହୋଇଲା ସେ ଶିରେ କରଯୋଡ଼ି ।
ଜାନକୀ ବୋଇଲେ ରେ ବାବୁ ହନୁମନ୍ତ
କହିଲେ ନ ସରେ ବାବୁ ମୋହର ଯେତେ କଷ୍ଟ ।
ଧର୍ମରେ ଅଇଲୁ ବାବୁ ଅଧର୍ମ ପୁରୁ ଯାଅ
ଏ ପାପ ପୁରରେ ବାବୁ ଦଣ୍ଡେ ହେଁ ନ ରହ ।
ତୁହି ମରିଥିଲେ ଯେ ମରିଥାନ୍ତି ମୁହିଁ
ବାରତା ନ ପାଇ ତେଣେ ମରନ୍ତେ ରଘୁସାଇଁ ।
ରାମଙ୍କ ନିଧନରେ ଲକ୍ଷ୍ମଣ ନ ବଞ୍ଚନ୍ତା
ସୂର୍ଯ୍ୟବଂଶରେ ବାବୁରେ କଳଙ୍କ ରହନ୍ତା ।

ଅଇଲୁ ଯଶ କଲୁ ଯାଅ ବେଗ ହୋଇ
ବାଟରେ ଦୟ କରନ୍ତୁ ସାବିତ୍ରୀର ସାଇଁ ।
ବିଘ୍ନରାଜ ଖଣ୍ଡନ୍ତୁ ତୋର ବିଘ୍ନମାନ
ଦୁର୍ଗାମାଧବ ହୁଅନ୍ତୁ ବାଟରେ ପ୍ରସନ୍ନ ।
ଯିବାକାଳେ ମାତା ମଙ୍ଗଳା କରୁ ଦୟା
ଲକ୍ଷ୍ମୀ ନରସିଂହ ରଖନ୍ତୁ ତୋର କାୟା ।
ଯେମନ୍ତେ ପାରରେ ବାବୁ ଶ୍ରୀରାମଙ୍କୁ ଘେନି ଆସ
ରାବଣ କଷ୍ଟ ମୋତେ କରିଛି ବେନିମାସ ।
ଯେବେ ରାମ ଲକ୍ଷ୍ମଣଙ୍କୁ ମୋତେ ଦେଖାଇପାରୁ
ତେବେ ସିନା ଜାଣିବି ତୁହି ହନ୍ତକାରୁ ।
ପାରିଲେ କାରଣ ବରନ୍ତୁ ମୋତେ ଆସି
ନୋହିଲେ ସେହି ହେବେ ସୂର୍ଯ୍ୟବଂଶେ ଦୋଷୀ ।
ଏଠାରେ ମୋର ଆଗ ପଛକୁ କେହି ନାହିଁ
ଧର୍ମ ମାତ୍ର ମୋତେ ଯେ ଅଛି ସାହା ହୋଇ ।
ଯେତେବେଳେ ରାବଣ କହିବ କଟୁବାଣୀ
ଏ ଲଙ୍କା ଭସ୍ମ କରି ବୈକୁଣ୍ଠେ ଯିବି ପୁଣି ।
ଏହି କଥା ନିଶ୍ଚେ ସତ୍ୟ ସତ୍ୟ ଅଟେ ମୋର
ବେଗେ ଯାଇ ଘେନିଆସ ତୁହି ରଘୁବୀର ।
ଦୈତ୍ୟପୁରୁ ମୋତେ ବେଗେ ମୁକୁଳାଇଦ୍ୟନ୍ତୁ
ଦୋଷ ବିଚାରି ପଛେ ମୋତେ ଦଣ୍ଡ ଦ୍ୟନ୍ତୁ ।
ଏକଥାମାନ ମୋର ପ୍ରଭୁଙ୍କୁ ଜଣାଇବୁ
ପ୍ରତିବୋଧ କରି ବାବୁ ସକଳ କହିବୁ ।
ମଥାମଣି ଗୋଟି ମୋର ଅଛଟିକି ଥୋଇ
ଦେଖୁଣି କାଳେ ମୋତେ ଶ୍ୱଶୁର ଥିଲେ ଦେଇ ।
ସେ ମଣିକୁ ଦେଖିଲେ ଶ୍ରୀରାମ ପ୍ରତେ ଯିବେ
ଯେତେ କଥା କହିବୁ ସବୁ ସମ୍ମତେ କରିବେ ।
ଜାନକୀର ବଚନ ହନୁମାନ ଶୁଣି
ବୋଲେ ବଜ୍ର କାଛଟାରେ ବାନ୍ଧିଅଛି ମଣି ।
ଫେଡ଼ିକରି ଦେଖାନ୍ତେ ଜାନକୀ ପ୍ରତେ ଗଲେ
ବୈଦେହୀଙ୍କୁ ଦେଖାଇଣ ହନୁ ସାଇତିଲେ ।
ଜାନକୀ ବୋଇଲେରେ ପବନର ଚାଟ
କାଛଟାରେ ବାନ୍ଧିଅଛୁ କିସ ବିଶେ ମୋଟ ।
ବୋଲେ ମାରୁତି ଏ ଅଟେ ରାବଣ ମୁକୁଟ
ଇନ୍ଦ୍ରଜିତ ମୁକୁଟ ତାହାର ସଙ୍ଗେ ଜୁଟ ।
ପିତା ପୁତ୍ର ଦୁହିଁଙ୍କି ମୁଁ ମାରି ମୋହ କରି
ମୁକୁଟକୁ ଶିରରୁ ଫିଟାଇ ଆଣିଲି ।
ତାହା ଦେଖି ସନ୍ତୋଷ ହୋଇଲେ ବଇଦେହୀ
ହନୁ ମେଲାଣି ମାଗିଲା ହୋଇଣ ବିନୟୀ ।
ଆଶୀର୍ବାଦ ଦେଇଣ ହନୁକୁ ବିଦା କଲେ
ବିଦାୟ ନେଇ ହନୁ ସୁବଳେ ମିଳିଲେ ।

ଦେଖିଲେ ଗିରିବର ଅତି ମନୋହର
ଭାବିଲେ ଏଠାରେ ରହିଲେ ଥାଟ ଯେ ଆମ୍ଭର ।
ଯେବେଣ ଦିନ ଶ୍ରୀରାମ ହେବେ ସିନ୍ଧୁ ପାରି
ମୁହିଁ ଜଣାଇବି ହେ କୋଦଣ୍ଡ କାଣ୍ଡଧାରୀ ।
ଏହି ଗିରି ଅଟଇ ଯେ ଅତ୍ୟନ୍ତ ସୁସଞ୍ଚ
ମର୍ତ୍ତ୍ୟକୁ ସ୍ୱର୍ଗ ଅଟଇ ସ୍ୱର୍ଗକୁ ଏ ଉଚ୍ଚ ।
ଏଥିରେ ରହି ଦେବ କରିବା ସମର
ତେବେ ଧ୍ୱଂସ ହୋଇଯିବ ଏହି ଲଙ୍କାପୁର ।
ପୂର୍ବେ ସକଳ ଦେବେ ଏଠାରେ ସ୍ଥାନ କଲେ
ଏ ନଦୀ ନାମ ତେଣୁ ଦେବ ନଦୀ ଦେଲେ ।
ସେ ନଦୀରେ ପଶିଣ ମାରୁତି ସ୍ନାନ କଲା
ରୁଧିର ଛଡ଼ାଇ ସେ ନିର୍ମଳ ତନୁ ହେଲା ।
ଫଳମୂଳ ଖାଇଣ ସେ ନଦୀଜଳ ପିଇ
ଏଥୁ ଅନନ୍ତରେ ଗାନ୍ଧାରୀ ଶୁଣ ତୁହି ।
ମାରୁତି ଗିରିବଟ ବୁଲିଲା ଯାଇକରି
ସକଳ ଜୀବଙ୍କୁ ସେ କହେ ବୋଧ କରି ।
ସମସ୍ତଙ୍କର ସ୍ୱାମୀ ଅଟନ୍ତି ନାରାୟଣ
ତାଙ୍କର ଘରଣୀ ସେ ସୀତା ସତୀ ଜାଣ ।
ରାବଣ ଯାଇଣ ଆସିଲା ସୀତାଙ୍କୁ
ତେଣୁ ସେ ନାରାୟଣ କ୍ରୋଧ ହେଲେ ତାକୁ ।
ତେଣୁ ସେ ବାସୁଦେବ ଆସିବେ ଏ ପୁର
ରାବଣକୁ ମାଇଲେ ଉଶ୍ୱାସ ହେବ ମହୀଭାର ।
ସେଥିର ସକାଶେ ମୁଁ ତୁମ୍ଭଙ୍କୁ କହି
ଏ ସ୍ଥାନକୁ ଛାଡ଼ିଣ ଯାଅ ବେଗ ହୋଇ ।
ଶ୍ରୀରାମ ଆସି ଏ ପର୍ବତେ କରିବେ ଠଣା
ଭାଲୁ ବାନର ଅନେକ ତାଙ୍କ ସଙ୍ଗେ କିନା ।
ସେତେବେଳେ ଆମ୍ଭଙ୍କୁ ହୋଇବ ଆରମ୍ଭ
ଆଜିଠାରୁ ତୁମ୍ଭେମାନେ ହୋଇଥାଅ ଦମ୍ଭ ।
ଶୁଣିକରି ଜୀବମାନେ ବାହାର ହୋଇଗଲେ
ପଶ୍ଚିମ ଦିଗ ପର୍ବତେ ଯାଇଣ ରହିଲେ ।
ଜୀବମାନେ ଯିବାର ସନ୍ତୋଷ ମନ ହୋଇ
ଏସନକ ସମୟେ ପ୍ରହରେ ବହିଯାଇ ।
ଏଥୁଅନନ୍ତରେ ଶୁଣ ଗୋ ମହାମାୟୀ
ମେଘ ଜଳ ବରଷିଲା ଲଙ୍କାପୁରେ ଯାଇ ।
ତେଣୁ କରି ଅନଳ ଲିଭିଲା ବହନ
ଧୀର ଧୀର ହୋଇ କରି ବହଇ ପବନ ।
ଚନ୍ଦ୍ର ଉଦୟ ହୁଅନ୍ତି ନିର୍ମଳ ଶୀତଳ
ଲଙ୍କାରେ ତୁଣ୍ଡରାବ ଶୁଭଇ ଚହଳ ।
ବିକଳ ହୁଅନ୍ତି ଯେ ଲଙ୍କାର ନରନାରୀ
ପୁରମାନ ତାଙ୍କର ଅନଳେ ଯାଏ ଜଳି ।

ଆକୁଳରେ ଦାନବ ବୁଲନ୍ତି ଚଉପାଶ
ମୂଖରାଦ ଶବଦରେ ପୂରଇ ଆକାଶ ।
କେ ବୋଲେ ଏତେକାଳ ଏଥି କଲୁ ଘର
ସଞ୍ଚିଲାର ଦ୍ରବ୍ୟମାନ ହେଲା ଚାରଖାର ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଏସନକ ସମୟରେ ଦେବେ ବିଚାରନ୍ତି ।
ବେଦବର ମୁଖ ଚାହିଁ ବୋଲନ୍ତି ବାସବ
ଶୁଣ ହେ ପିତାମହ ସଂସାର ଦଇବ ।
ସୁବର୍ଣ୍ଣମୟ ଲଙ୍କା ଦହିଲା ମାରୁତି
ଯଶ କରି ଚଳିଗଲା କଶ୍ୟପର ନାତି ।
ଶ୍ରୀରାମ ଅଇଲେ ଯେ ରାବଣ ଯିବ ନାଶ
ଆମ୍ଭେମାନେ ଆଉ ବୁଦ୍ଧି କରିବାକ କିସ ।
ରାବଣ ବସିବାକୁ ସ୍ଥାନ କାହିଁ ନାହିଁ
ପୁଷ୍ପକ ଯାନ ପରେ ରହିଛି ଲଙ୍କସାଇଁ ।
ସେ ପୁର ନିର୍ଭା ଥରେ କର ହେ କୁଶଧାରୀ
ଶୁଣିଣ ବିଧାତା ବିଶ୍ୱକର୍ମାକୁ ହକାରି ।
ଏହି ରାତ୍ରରେ ଲଙ୍କାକୁ ଆସ ତୁ ଭିଆଇ
ଚତୁ ଶତେ ଗୁଣେ ଯେ ଲଙ୍କାକୁ କର ଯାଇ ।
ସତର ଚାଳିଶଦିନ ରାବଣ ନାଶ ଯିବ
ଏ ଲଙ୍କାରେ ବିଭୀଷଣ ରାଜନ ହୋଇବ ।
ଲଙ୍କାଗଡ଼ ନିର୍ଭା ତୁମ୍ଭେ କର ତତ୍କ୍ଷଣ
ସେ ଲଙ୍କାକୁ ସଜ କଲେ ବହୁତ କାରଣ ।
ବିଷ୍ଣୁର ସେବକ ସେଥିରେ ରହିବ
ତୁମ୍ଭଙ୍କୁ ସର୍ବଦା ଭକତି ଭାବ ହେବ ।
ବିଭୀଷଣ ଭୋଗ ଯେ କରିବ ଲଙ୍କା ଭୂଇଁ
ଆଗେ ତାକୁ ବାସୁଦେବ ବର ଛନ୍ତି ଦେଇ ।
ତୁହୋ ବିଶ୍ୱକର୍ମା ଯାଅ ବେଗ ହୋଇ
ରାବଣକୁ ବୋଧକର ଶାନ୍ତି ହେଉ ସେହି ।
ଏତେ କହି ବିଧାତା ନିଜପୁରେ ଗଲେ
ଲଙ୍କାଗଡ଼େ ଯାଇକରି ବିଶ୍ୱକର୍ମା ମିଳେ ।
ରାତ୍ର ପାଞ୍ଚ ଘଡ଼ିରେ ଭେଟ ଲଙ୍କପତି
ପୁଷ୍ପକ ଯାନରେ ରାଣୀ ହଂସ ସଙ୍ଗେ ଛନ୍ତି ।
ଲକ୍ଷେକ କାମିନୀ ଦିହୁଡ଼ି ଧରିଛନ୍ତି
ଲକ୍ଷେକ କାମିନୀ ଯେ ଚାମର ଢାଳନ୍ତି ।
ଲକ୍ଷେକ କାମିନୀ ଖଡି ଧରିଛନ୍ତି
ଲକ୍ଷେକ କାମିନୀ ରଥକୁ ସାଇତନ୍ତି ।
ପେଡ଼ିରୁ ଉବୁରି ଯେତେ ଦ୍ରବ୍ୟ ଥିଲା
ସବୁ ଦଶଗ୍ରୀବ ବୁହାଇ ଘେନି ଗଲା ।
ପୁଷ୍ପକ ଯାନରେ ସାଇତେ ସବୁ ଆଣି
ଲେଖା କରନ୍ତି ଯେ ଯୁବତୀମାନେ ପୁଣି ।
ଦଣ୍ଡ ସିଂହାସନ ଯେ ଚାମର ପାଟ ଛତ୍ର
ଦେବାର୍ଚ୍ଚନା ଦେବତା ଯେ ଅମଳାଣ ବସ୍ତ୍ର ।
ପଦାର୍ଥକୁ ଦେଖିଣ ଆକୁଳ ଲଙ୍କନାଥ
ଏତେ ଦ୍ରବ୍ୟ ମୋର ଯେ ମାରୁତି କଲା ହତ ।
ଏକା କପି ଗୋଟାଏ କଲା ଛାରଖାର
ଅପୂର୍ବ ପଦାର୍ଥମାନ ନାଶ ଗଲା ମୋର ।
ପୁଣି ହିଁ ବିଚାରିଲା ଦ୍ରବ୍ୟ ଯାଉ ନାଶ
ମୁହିଁ ଜିଥିଲେ ଅର୍ଜିବି ବିଶେଷ ।
ଅକ୍ଷୟ କୁମରକୁ ପାଇବି ଆଉ କାହିଁ
ମନ୍ଦୋଦରୀ ବୋଲେ ଶୋକଭର ହୋଇ ।
ଭୋ ଲଙ୍କଦେବ ଏବେ ନ କୁହ ଏ କଥା
ଦେହ ନ ସହଇ ଯେ ଚିତ୍ତରେ ବଡ଼ ବ୍ୟଥା ।
ଗଳାର ମାଳା ଯେ ଅକ୍ଷୟ ପୁତ୍ର ଗୋଟି
ବାନର ଆସିଣ ଯେ ତାର ମୁଣ୍ଡ କାଟି ।
ତୁମ୍ଭେ ଯେ ଅକୀର୍ତ୍ତି ଅରଜିଲ ଲଙ୍କନାଥ
ମୋହର ଭାଳିବାର ଅଟଇ ବିଅର୍ଥ ।
ତୁମ୍ଭର ଅର୍ଜିବାର ଯେତେକ ବିଭୁତି
ରାଜାହୋଇ ଚୋରି କଲ ପରର ଯୁବତୀ ।
ତେଣୁ ସିନା ହେଲା ଏସନ ଚରିତ
ଏତେ କହି ମନ୍ଦୋଦରୀ ଶୋକରେ ଦୁଃଖିତ ।
ରାବଣ ବୋଇଲା ଶୁଣ ପ୍ରାଣସହି
ଯାହା ସେ କର୍ମରେ ମୋର ଲେଖିଅଛି ବିହି ।
ସେ କଥାମାନ ମୋର କେ କରିବ ଆନ
ନ ଯିବ ମେଣ୍ଟିଣ ଅବଶ୍ୟ ହେବ ପୁଣ୍ୟ ।
ଶ୍ରୀରାମ ହସ୍ତରେ ଯେବେ ଥିବ ମୃତ୍ୟୁ ଭେଦ
ତାହା ତ ହୋଇବ କି କାରଣେ କର ଖେଦ ।
ଏସନକ ସମୟରେ ବେନି ପୁତ୍ର ମିଳି
ନରାନ୍ତକ ସୁରାନ୍ତକ ହେଲେ ନିଉଛାଳି ।
ରାବଣ ବୋଇଲା ତୁମ୍ଭେ କେଉଁଠାରେ ଥିଲ
ନରାନ୍ତକ ବୋଇଲା ଆଜ୍ଞା ଦେଇଥିଲ ।
ଅଗ୍ନି ଲିଭାଇବାକୁ ଯାଇ ସମୁଦ୍ରେ ମିଳିଲୁଁ
ଜଳ ଫିଙ୍ଗିବା ବେଳରେ କପିକୁ ଦେଖିଲୁ ।
ଭୟ କରି ସାଗରେ ରହିଲୁଁ ଲୁଚିଣ
ରଜନୀ ହୋଇବାରୁ ଆସିଲୁଁ ଏଥେ ଜାଣ ।
ରାବଣ ବୋଇଲା ଏବେ ନିଜ ପୁରେ ଯାଅ
ଆପଣାର ଯାନ ପରେ ନିଶ୍ଚିନ୍ତରେ ରହ ।
ଶୁଣିଣ ବେନି ପୁତ୍ର ବେଗେ ଚଳିଗଲେ
ଘରଣୀମାନଙ୍କୁ ଘେନି ଯାନରେ ରହିଲେ ।
ଏହି ସମୟରେ ଆସି ମିଳିଲା ବିଶ୍ୱକର୍ମା
ଦେଖିଣ ରାବଣ ଯେ ବିଳାପ କରେ କିନା ।

ରାବଣେ ଲଙ୍କେଶ୍ୱର ଧଇଲା କୁଣ୍ଢାଇ
ପାଶରେ ବସାଇଲା ମନରେ ଶ୍ରଦ୍ଧା ବହି ।
ବୋଇଲା ଦଶଗ୍ରୀବ ଦୁଃଖ ମୋର ଦେଖ
କ୍ଷଣକେ ସରିଲା ମୋର ଛପନ ଘଣ୍ଟା ସୁଖ ।
ଏକା କପି ଗୋଟାଏ ମାରିଲା ମୋର ଶିରୀ
ଅଗ୍ନିରେ ଭସ୍ମକଲା ସୁବର୍ଣ୍ଣମୟ ପୁରୀ ।
ସଞ୍ଚିଲା ଦ୍ରବ୍ୟମାନ ସବୁ କଲା ନାଶ
ରଣରେ ପଡ଼ିଲା ମୋର ଅକ୍ଷୟ ନାମେ ଶିଷ୍ୟ ।
କି ବୁଦ୍ଧି କରିବି ମୁଁ ଯିବି କେଉଁ କତି
ବିଶ୍ୱକର୍ମା ବୋଇଲା ନ ଭାଳ ଲଙ୍କପତି ।
ଅକ୍ଷୟ କୁମାରକୁ ଯେ ପାଇବ ତୁମ୍ଭେ ଜାଣି
କୌଣସି ଯୁଗରେ ତ ଏହା ହୋଇନାହିଁ ।
ଲଙ୍କା ପୋଡ଼ିକି ତୁମ୍ଭେ ନ ଭାଳ ଲଙ୍କସାଇଁ
ଏହିକ୍ଷଣି କଟକ ଦେବି ମୁଁ ତିଆରି ।
ପୂର୍ବରେ ଯେସନେ ଅନେକ ଅଟେ ତୋର ପୁର
ତହୁଁ ଶତେଗୁଣରେ କରି କରିବି ତିଆର ।
ରଜନୀ ପାହିଲେ ଦେଖିବ ତୁମ୍ଭେ ଦେଶ
ଅପୂର୍ବ ହୋଇଥିବ ସବୁଙ୍କରି ବାସ ।
ଏତେ କହିଣ ଯେ ବିଶ୍ୱକର୍ମା ତୁନି
ବେଦବର ଆଦେଶ ଦେଇଛନ୍ତି ଭଣି ।
ପ୍ରବୋଧି କହିଛନ୍ତି ସକଳ ଦେବତା
ତୁମ୍ଭେ ଏବେ ଚିନ୍ତା ନ କର ଦଶମଥା ।
ସଂସାର ରଚନା ଯେ ଅଟଇ ଏମନ୍ତ
ଯେସନେକ ରାତ୍ର ଯେ ଦିବସ ଆତଜାତ ।
ଦୁଃଖ ସୁଖ ସିନା ହେ ପୂର୍ବର ଅଜାତ
ଯେ ଯାହାର କର୍ମ ଯେ ଭୁଞ୍ଜାଇ ନିୟତ ।
ଅଠରଘଣ୍ଟା କୁମର ତୋର ଲଙ୍କରାୟ
ତେରଶତ ନାତି ତୋର ଚରଣେ ବିନୟ ।
ଶାଖା ସୋଦର ତୋର ଅଛନ୍ତି ବହୁତ
କାହିଁକି ନୃପତି ଯେ ବିଷାଦ କରୁ ଚିତ୍ତ ।
ଯେଉଁ ମଣି ଆଗେ ଦେଇଛନ୍ତି ବେଦବ୍ରହ୍ମା
କଣ୍ଠରେ ଘେନିଥିଲେ ପ୍ରମାଦ ହୁଏ କ୍ଷମା ।
ମଣି ଦେଖନ୍ତେ ଶୋକ ବାଧା ନ ପୀଡ଼ଇ
ଆବର ପୁତ୍ର ଶୋକ ଛାଡ଼ନ୍ତୁ ଲଙ୍କସାଇଁ ।
ହେ ରାଜା ସେ ମଣି ବହୁତ ଫଳ ଦେଇ
ଦୁର୍ବୁଦ୍ଧି କ୍ଷୟ ଯାଇ ସୁବୁଦ୍ଧି ପ୍ରକାଶଇ ।
ଶୁଣିଣ ସନ୍ତୋଷ ଯେ ମନ୍ଦୋଦରୀ କାନ୍ତ
ଅମୋହ ମଣିକି ଚାହିଁଲା ବିଶ୍ରବାର ସୁତ ।
ତକ୍ଷଣେ ଅକ୍ଷୟ ମରିବା ପାସୋରିଲା
ମନରୁ ଚିନ୍ତା ତାର ସମସ୍ତ କେଣେ ଗଲା ।

ବୁଦ୍ଧି ପ୍ରସରିଲା ତାର ପ୍ରାକର୍ମ ବହୁତ
ଗଲା କଥା ସବୁ ପାସୋରିଲା ଲଙ୍କନାଥ ।
ବିଧାତାର ଉପାୟେ ଦୈତ୍ୟକୁ ବୋଧ କଲା
ଆଗେ ମଣି ଦେବାରୁ ଦେବଙ୍କୁ କୋପ କଲା ।
ଲଙ୍କାପୋଡ଼ି ଯିବାର ଭଳୁଥିଲା ମନେ
ଅମୋହ ମଣି ଗୋଟିକ ବନ୍ଧା କଲା ତେଣେ ।
ବିଶ୍ୱକର୍ମାକୁ ଚାହିଁ ବୋଲଇ ନୃପତି
ଶୀଘ୍ର ଚଳିଯାଅ ତୁମ୍ଭେ ଇନ୍ଦ୍ରଜିତ ଜତି ।
ମଲା ହଜିଲା ଦ୍ରବ୍ୟ ସଙ୍ଖୋଳେ ଇନ୍ଦ୍ରଜିତ
ସଙ୍ଗରେ ଅଛନ୍ତି ତାର ସୁମାଳିର ସୁତ ।
ପାତ୍ର ମନ୍ତ୍ରୀ ସାମନ୍ତ ତାର ସଙ୍ଗେ ରହି
ସୈନ୍ୟଗଣ ପୂରିଛନ୍ତି ଲଙ୍କାଗଡ଼େ ଯାଇ ।
ଆଗରେ ଲାଗିଅଛି ଦଶସହସ୍ର ହୁଳା
ଆସ୍ଥାନ କରି ବସିଛନ୍ତି ରାବଣର ବଳା ।
ପୋଡ଼ିଲା ଦ୍ରବ୍ୟମାନ ସଂଖୋଳା କରି ଆଣି
ନାମ ଧରିଣ କେତେ କହିବି ପରିମାଣି ।
ଏସନକ ସମୟରେ ବିଶ୍ୱକର୍ମା ମିଳି
ଦୂରୁ ଦେଖି ତାହାକୁ ମେଘନାଦ ଭାଳି ।
ଭଲ ହୋଇଲା ପୁଣି ଅଇଲା ବିଶ୍ୱକର୍ମା
ଜାଣିଣ ପଠିଆଇ ଦେଲେ ବେଦବ୍ରହ୍ମା ।
ଏତେ ଭାଳି ଇନ୍ଦ୍ରଜିତ ଆସନୁ ଉଠିଲା
କୋଡ଼ିଏ ପାହୁଣ୍ଡ ଯାଏ ପାଛୋଟିଣ ଗଲା ।
ଗଡ଼ରବ କହିଣ ବସାଇଲା ନେଇ
କହିଲା ସକଳ କଥା ଶୋକଭର ହୋଇ ।
ଶୁଣ ଆହେ ବିଶ୍ୱକର୍ମା ଭାଇ ମୋର ମଲା
ଅକଣ୍ଟକ ରାଜ୍ୟ ଲଙ୍କାଗଡ଼ ପୋଡ଼ିଗଲା ।
ପାଞ୍ଚ ସେନାପତି ସୈନ୍ୟ ମଲେକ ଅପାର
ଏକା ବାନର ଗୋଟାଏ କଲା ଛାରଖାର ।
ମେଘନାଦ ବଚନରେ ବୋଲେ ବିଶ୍ୱକର୍ମା
ତ୍ରିଦଶ ସହି ନ ପାରି ହନୁର ଗାରିମା ।
ବେଦବର ବଚନେ ବାନର ଶାନ୍ତି ହେଲା
ମୋତେ ରାଇ ପିତାମହ ବେଗେ ପଠାଇଲା ।
ଆଜଉ ରାତିରେ ମୁଁ ଗଢ଼ିବି ଲଙ୍କାପୁରୀ
ଗଡୁ ଶତେ ଗୁଣ ହୋଇ ଦିଶିବ ଉଜ୍ଜ୍ୱଳି ।
ରାବଣକୁ ଦେବତାଏ ଅନେକ ସମ୍ବର୍ଦ୍ଧିଲେ
କୁସୁମ ମାଳ ତୋ ପାଇଁ ମୋର ହସ୍ତେ ଦେଲେ ।
ସେ ଅକ୍ଷତ ଆଣିଣ ସନ୍ତୋଷ ନୃପତି
ମୋତେ ବୋଇଲା ଯାଅ ଇନ୍ଦ୍ରଜିତ କତି ।
ତେଣୁ କରି ତୋର ପାଶେ ଅଇଲି ମୁଁ ପୁଣି
ମୋତେ ଆଜ୍ଞା ଦିଅ ଲଙ୍କା ଗଢ଼ିବି ମୁଁ ଜାଣି ।

ଆଉ ଦ୍ରବ୍ୟମାନ ଏବେ ସଙ୍ଗୋଳା କର
ଆସ୍ଥାନ ଭାଙ୍ଗିଣ ତୁମ୍ଭେ ଯାଅ ନିଜପୁର ।
ଯେ ଯାହା ପୁରରେ ଯାଇ ସମସ୍ତେ ଶୁଅନ୍ତୁ
ନ ଜାଣିଲା ପରି ସର୍ବେ ତୁନି ହୋଇଥାନ୍ତୁ ।
ଦୋଷାଧୁ ନ ବୁଲିବ ନ ଜଗୁ ପ୍ରହରୀ
ମୁଖ ରାବ ଶବଦ ନ ଶୁଭୁ କାହାରି ।
ଶୁଣିଣ ଇନ୍ଦ୍ରଜିତ ହୋଇଲା ହରଷ
ଘୋଷଣା ଦିଆଇଲା ନଗର ଚଉପାଶ ।
ଯେ ଯାହାର ପୁରରେ ନିର୍ଶ୍ଚିନ୍ତେ ଥାଅ ଶୋଇ
ଉଜାଗର ହୋଇଣ ନ ବୁଲିବ କେହି ।
ଏକ ପୁରକୁ ଯେ ଆରେକ ନ ଯିବ
ଯେ ଯାହାର ମନ୍ଦିର ଜଗିଣ ଶୋଇଥିବ ।
ଦୋଷାଦୁ ଆଜରାତ୍ରେ ନ ବୁଲିବ ଜାଣ
ଜାଗ୍ରତ କଥା ଯେ ନୋହିବ ରାତ୍ରେ ପୁଣ ।
ଏସନକ ଘୋଷଣା ଦିଆଇ ଇନ୍ଦ୍ରଜିତ
ଆସ୍ଥାନ ଭାଙ୍ଗିଣ ସେ ହୋଇଲା ଗୁପତ ।
ପାର୍ବତୀ ବୋଇଲେ କହ ବିଶ୍ୱନାଥ
ସିନ୍ଧୁକୂଳେ ରହିଥିଲେ ରାମଙ୍କ ସାତଦୂତ ।
ହନୁମନ୍ତ ଯାଉ ଆସୁ ହେଲା ସାତଦିନ
କୂଳରେ ରହି କିସ ବିଚାରନ୍ତି ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
କୂଳରେ ସାତଜଣ ଅଙ୍ଗଦ ସଙ୍ଗେ ଛନ୍ତି ।
ସାତଦିନ ହେବାରୁ ସମସ୍ତେ ମନେ ଭାଳି
କେ ବୋଲେ ହନୁମନ୍ତ ମଲା ଜଳରେ ବୁଡ଼ି ।
କେ ବୋଲଇ ଥଳକୂଳ ସାଗର ଯେବେଥାନ୍ତା
ତେବେ ସିନା ଦମ୍ଭମାରି ହନୁମନ୍ତ ଯାନ୍ତା ।
କେ ବୋଲେ ଯିବାର ଯାଇଛି ହନୁମନ୍ତ
ଦୈତ୍ୟ ଦେଖି ତା ସଙ୍ଗେ କଲାକ ଅନର୍ଥ ।
କେ ବୋଲଇ ଜାନକୀକୁ ଭେଟି ନ ପାଇଲା
ତେଣୁ ଅବା ମାରୁତି ଲାଜରେ ନ ଆସିଲା ।
କେ ବୋଲଇ ବା ରାବଣ ସଙ୍ଗରେ କଳି କଲା
ଏକା ଦେଖି ହନୁକୁ ଯେ ରାବଣ ମାଇଲା ।
ଅଙ୍ଗଦ ବୋଇଲା ମୁଁ ଆଜ ରଜନୀରେ
ସ୍ୱପନ ଦେଖିଅଛି ସଫଳ ହନୁରେ ।
ସୀତାଙ୍କୁ ଠାବ କରି ସେ ରାଜ୍ୟେ ଗୋଳ କଲା
ସେ ଗୋଳରେ ଦୈତ୍ୟହସ୍ତେ ବନ୍ଧନେ ପଡ଼ିଲା ।
ବନ୍ଧନୁ ଫିଟିବାରୁ ଆସିବାକୁ ମନ
ଆଜିକାଲି ଭିତରେ ଆସିବ ହନୁମାନ ।
ଜମ୍ୱେବ ବୋଇଲେ ହନୁ ରାମଙ୍କ କାର୍ଯ୍ୟ କଲା
ତାହାକୁ ପ୍ରସନ୍ନ ଯେ ଦଶରଥ ବଳା ।

ଏମନ୍ତ ବିଚାର କରନ୍ତି ସାତଜଣ
ଦକ୍ଷିଣ ଦିଗକୁ ଚାହିଁଛନ୍ତି ସର୍ବେ ଜାଣ ।
ସେ ଦିଗ ଧୂମ୍ରମୟ ତାହାଙ୍କୁ ଦିଶିଲା
ଧୂମ୍ରର ପ୍ରତାପେ ପ୍ରକାଶ ନ ଦିଶିଲା ।
ଧୂମ୍ର ଦେଖି ସାତଜଣ ଭାବିଲେ ମନରେ
ହନୁକୁ ପ୍ରମାଦ ଯେ ପଡ଼ିଲା ଲଙ୍କାରେ ।
ଏତେ ଭାବି ସିନ୍ଧୁକୂଳେ ମନ ଦୁଃଖେ ଛନ୍ତି
ଶୂନ୍ୟରୁ ଶବଦ ଯେ ଶୁଭିଲା ଯେ ଘାନ୍ତି ।
ଚିନ୍ତା ନ କର ତୁମ୍ଭେ ଶ୍ରୀରାମଙ୍କ ଦୂତ
ସର୍ବ ଶୁଭେ ଅଛନ୍ତି ପବନର ସୁତ ।
ତୁମ୍ଭମାନଙ୍କୁ କାଲି ଭେଟିବ ଆସିଣ
ଶ୍ରୀରାମ କାର୍ଯ୍ୟ କଲା ପବନ ନନ୍ଦନ ।
ଏତେ କହି ଶବଦାଇ ଅନ୍ତର୍ଦ୍ଧାନ ହେଲା
ସାତଜଣଙ୍କ ମନରୁ ଚିନ୍ତା ଦୂର ହେଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଆଦେଶ ଦେଇ ଗଲା ବିଶ୍ରବାର ନାତି ।
ନିଶବଦ ରହିଲେ ଲଙ୍କାର ରାକ୍ଷସେ
ଯେ ଯାହାର ନବରେ ଶୋଇଲେ ବିରସେ ।
ବିନ୍ଧାଣୀଙ୍କୁ ସଙ୍ଗେ ଘେନି ବିଶ୍ୱକର୍ମା ଗଲା
ଅନ୍ଧାର ରଜନୀରେ ଲଙ୍କାକୁ ନିର୍ଭାକଲା ।
ଗତୁ ଶତେ ଗୁଣରେ ଲଙ୍କାକୁ ନିର୍ଭାକଲା
ପ୍ରତିପୁରେ ଅଷ୍ଟରତ୍ନ ସୁବର୍ଣ୍ଣ ଖଞ୍ଜିଲା ।
କେଉଁ ଘରକୁ ପକା ନିର୍ମାଣ କଲା ଗଢ଼ି
କେଉଁ ଘରକୁ କାଚ ତାଳରେ ସଜାଡ଼ି ।
କେଉଁ ଘର ଗୋ ଲେଖ ଘୋଡ଼ାପଟ କଲା
କେଉଁ ଘରକୁ ସେ ଯେ ରତ୍ନରେ ମଣ୍ଡିଲା ।
କେଉଁ ଘର ଗୋଟି ଯେ ବୈଦୁର୍ଯ୍ୟେ ମଣ୍ଡଣୀ
କେଉଁ ଘର ଗୋଟି ଯେ ମାଣିକ୍ୟ ଛନ୍ଦଣୀ ।
କେଉଁ ଘର ଗୋଟି ଯେ ମୋତିରେ ନିର୍ମାଣି
କେବଣ ଘରରେ ସେ ଖଞ୍ଜିଲା ନୀଳମଣି ।
କେଉଁ ନବରକୁ ହୀରାରେ ନିର୍ଭାକଲା
କେବଣ ଘର ଗୋଟି ଝିଙ୍କରେ ତିଆରିଲା ।
କେବଣ ଘର ଗୋଟି ଛପର ଛାଏଣୀ
କେବଣ ଘର ଗୋଟି ରଙ୍ଗରେ ନିର୍ମାଣୀ ।
କେବଣ ଘର ଗୋଟି ତମ୍ବାରେ ତିଆରିଲା
କେବଣ ଘରକୁ ସେ ଲୁହାରେ ନିର୍ଭାକଲା ।
କେବଣ ଘର କଲା ନବ ଯେ ଗୁଞ୍ଜର
କେବଣ ଘର କଲା ସାଗର ପ୍ରକାର ।
କେବଣ ଘର ଗୋଟି ଚୂନରେ ତିଆରି
କେବଣ ଘର ଗୋଟି କଡ଼ିରେ ନିର୍ଭା କରି ।

କେବଣ ଘର ଗୋଟି ସିଂହର ସଦୃଶ
ଶାର୍ଦ୍ଦୁଳର ପରାୟେ କେବଣ ଯେ ବାସ ।
କେବଣ ଘରଗୋଟି ହସ୍ତୀର ପରାୟ
କେବଣ ଘରଟି ଯେ ଅଟେ ଅଶ୍ୱ ପ୍ରାୟ ।
କେବଣ ଘର ଗୋଟି ହସ୍ତୀକୁମ୍ଭ ପରି
କେବଣ ଘରଟି ଯେ ସାରେଣୀ ପ୍ରାୟ କରି ।
ଏମନ୍ତେ ନାନାରୂପେ କରି ମନୋହର
ଲଙ୍କା କଟକକୁ କଲା ସେ ତିଆର ।
ପୂର୍ବରେ ଯେ ଯାହାର ଯାହା ସଞ୍ଚିଥିଲା
ଦଇବେ ସେହି ରୂପେ ସମସ୍ତ ହୋଇଲା ।
ସୁବର୍ଣ୍ଣରେ କାନ୍ଥବାଡ଼ ନବର କଲା କମ
ସୁବାଷିତ ହୋଇଲା କସ୍ତୁରୀ ଚତୁଃସମ ।
କଳସ ଧାଡ଼ି ଧାଡ଼ି ମୁକୁତାର ଝରା
ନେତର ଚିରାଳ ମାନ ଉଡ଼େ ଫର ଫରା ।
ଆଦରସ ଚାମର କୁସୁମଦିବ୍ୟ ବାସ
ମଣ୍ଡନର ସୁନ୍ଦର ଝଟକ ଚଉପାଶ ।
ଶୋଭା ଦିଶଇ ମେଢ଼ ମଣ୍ଡପ ଜଗତି
ଦେଉଳ ଅଟ୍ଟାଳି ଏ ଦିଶନ୍ତି ପନ୍ତି ପନ୍ତି ।
କୂପ ବାମ୍ପୀ ଆଦି ନଦୀ ପୁଷ୍କରିଣୀ
ହସ୍ତି ଅଶ୍ୱମାଳ ମାନ କେ ପାରିବ ଗଣି ।
ରାଜାର ନବର ପାତ୍ରମାନଙ୍କ ଉଆସ
ଏକସର ଦୋଷର ଯେ ଅନୁରୂପେ ବାସ ।
ତୋଟା ଉପବନ ସାଧୁଙ୍କ ବାସମାନ
ଯେ ଯାହାର ଯେଉଁରୂପେ ହୋଇଲା ବିଧାନ ।
ସୁବର୍ଣ୍ଣର ଚଉରା ଧାଡ଼ି ଧାଡ଼ି ଶୋଭା
ଚଉଷଠି ଦାଣ୍ଡକୁ ଦିଶଇ ତାର ପ୍ରଭା ।
କନ୍ଦି ବିକନ୍ଦିମାନ ଯଥାରୂପେ କରି
ପାଞ୍ଚଘଡ଼ି ଭିତରେ ହେଲାକ ତିଆରି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ରଜନୀ ଶେଷରେ ହନୁ ଉଠିଲା ବେଗ କରି ।
ଚକ୍ଷୁ ମଳିଣ ପୂର୍ବ ଦିଗକୁ ଚାହିଁଲା
ରବି ଉଦେ ହେବାର ରଙ୍ଗ ମା ଦେଖିଲା ।
ନିଃଶ୍ୱାସ ବାରିଣ ସେ ଜାଣିଲାକ ପୁଣ
ବେନି ଘଡ଼ି ରଜନୀ ଅଛଇଁ ପ୍ରମାଣ ।
ନିଶବଦ ହୋଇଣ ଅଛି ଲଙ୍କାପୁର
ବିଶ୍ୱକର୍ମା ଥିବାବେଳେ ଉଠି ହନୁବୀର ।
ଠୁକୁ ଠୁକୁ ଶବଦ ଲଙ୍କା ଗଡରେ ଶୁଭଇ
କିସ ବୋଲି ହନୁ ପର୍ବତ ପରେ ବାଉଇ ।
ମାରୁତି ମନରେ ବିଚାର କରଇ
ଲଙ୍କାଗଡ଼େ ଶବଦ ଶୁଭୁଛି ତ ଏହି ।
ରାତ୍ରରେ ଏହା ପୁଣି କେ କରେ ରଚନା
ସ୍ୱର୍ଗ ପୁରରୁ କି ଅଇଲେ ବିଶ୍ୱକର୍ମା ।
ଦଶାନନକୁ ବଶ୍ୟ ହୁଅନ୍ତି ଦେବଗଣ
ବିଶ୍ୱକର୍ମାକୁ କହି ପେଶିଲେ ଏଥି ପୁଣ ।
ଲଙ୍କାକୁ ଯାଇଣ ମୁଁ କାହାକୁ ପୁଛିବି
ନିଶି ଶେଷକୁ ପୁଣ ଏ ଗିରିକୁ ଆସିବି ।
ଏମନ୍ତ ବିଚାରି ହନୁ ଉପରେ ଗମିଲା
ଲଙ୍କା ଗଡ଼ରେ ଯାଇ ପ୍ରବେଶ ହୋଇଲା ।
ବିଶ୍ୱକର୍ମା ଆଗରେ ମିଳିଲା ମାରୁତି
ଦେଖିଣ ରୂପ ବ୍ରହ୍ମା ଉଠିଲା ତଡ଼ତି ।
ବୋଇଲା ପବନ ସୁତ ଶୁଣ ମୋର ଗୀର
ଦେବତାଏ ମୋତେ ପେଶିଛନ୍ତି ଲଙ୍କାପୁର ।
ତିନିପକ୍ଷ ଦୁଇଦିନେ ରାବଣ ମରିବ
ଏହିପୁରେ ବିଭୀଷଣ ରାଜନ ହୋଇବ ।
ବିଷ୍ଣୁର ସେବକ ସେ ବିଶ୍ରବା ନନ୍ଦନ
ତପରେ ବେଦବରଙ୍କୁ ମନାଇଛି ଜାଣ ।
ତେଣୁ ଯେ ପୁର ମୁଁ କରୁଛି ତିଆର
ମୋତେ ଆଦେଶ ଦେଲେ ସାବିତ୍ରୀଙ୍କ ବର ।
ରାମଚନ୍ଦ୍ର ଅଟନ୍ତି ସ୍ୱୟଂ ନାରାୟଣ
ବହୁତ ଦୈତ୍ୟଙ୍କୁ ସେ କରିବେ ନିଧନ ।
ଦୁଷ୍ଟ ଦୈତ୍ୟମାନେ ଯେ ହୋଇବେ ବିନାଶ
କପି ଭାଲୁଙ୍କ ହସ୍ତେ ସର୍ବେ ହେବେ ଧ୍ୱଂସ ।
ସୁବଳୟା ଗିରିରେ ରାମ କରିବେ ଠଣା
ସତଚନ୍ଦିନ ଯୁଦ୍ଧରେ ସର୍ବେ ହେବେ ହଣା ।
ଜୟ ତୁ କଲୁ ଲଙ୍କା ବେଗ ହୋଇ ଯାଅ
ଶ୍ରୀରାମଙ୍କ ଛାମୁରେ ବାରତା ଜଣାଅ ।
ଷଡ଼ମାଷ ହେଲା ଅଇଲ ତୁମ୍ଭେ ଜାଣ
ନ ଦେଖି ବ୍ୟାକୁଳ ତେଣେ ଶ୍ରୀରାମ ଲକ୍ଷ୍ମଣ ।
ସର୍ବ ଶୁଭେ ଯାଅ ହନୁ ମନୁ ଦ୍ୱନ୍ଦତେଜ
ତୁମ୍ଭ ମୁଖୁଁ ବାରତା ପାଆନ୍ତୁ ରାମରାଜ ।
ସପତ ଦୂତ ସଙ୍ଗ ବିକଳ ସିନ୍ଧୁ କୂଳେ
ଆହାର ନିଦ୍ରା ନାହିଁ ଦେଖ ଯାଇ ତୋଳେ ।
ବେଗହୋଇ ଚଳି ଯାଅ ହେଳା ତୁ ନ କର
ଦେବତାଏ ସନ୍ତୋଷ ଅଛନ୍ତି ତୋରଠାର ।
ଶୁଣିକରି ହନୁମାନ ମନରେ ସନ୍ତୋଷ
ବିଶ୍ୱକର୍ମା କହେ ଶୁଣ ପ୍ରଭଞ୍ଜନ ଶିଷ୍ୟ ।
ତୋହର ଭଣଜା ଯେ ଅଟଇ ନଳ ଜାଣ
ବାନରୀଠାରୁ ଜାତ ସେ ମୋହର ନନ୍ଦନ ।
ରାମାୟଣ ଯୁଦ୍ଧରେ ଷଡ଼ଜଣ ସାର
ଜମ୍ବେବ ଭାଲୁ ଅଟେ ଚନ୍ଦ୍ରଙ୍କ କୁମର ।

ବୃହସ୍ପତିଙ୍କ କୁମର ଅଟଇ ସୁଷେଣ
ସର୍ବଜ୍ଞ ପୁରୁଷ ସେ କହିବ ସବୁ ଜାଣ ।
ରବିଙ୍କର କୁମର ଅଟଇ ସୁଗ୍ରୀବର
ବାସବଙ୍କ ଅଂଶେ ଜାତ ଅଙ୍ଗଦ କୁମର ।
ଏ ଷଡ଼ଜଣ ତୁମ୍ଭେ ଅଟ ଭଲ ସାର
ତୋତେ ବଳରେ କେହି ନୁହନ୍ତି ପଟାନ୍ତର ।
ଶୁଣିର ସନ୍ତୋଷ ହନୁ ଓଳଗି ମେଲାଇଲା
ଯାଉଛି ବୋଲି ବିଶ୍ୱକର୍ମାଙ୍କୁ କହିଲା ।
ସୁବଳୟା ଗିରି ଶିଖେ ମିଳିଲା ତକ୍ଷଣି
ପ୍ରବେଶ ହୋଇଲା ଅଛି ଘଡ଼ିଏ ରଜନୀ ।
ହନୁକୁ କହି ବିଶ୍ୱକର୍ମା ଅନ୍ତର୍ଦ୍ଧାନ ହେଲା
ଛୟାଶୋଇ ସହସ୍ର ବିନ୍ଧାଣୀ ସଙ୍ଗରେ ସେ ନେଲା ।
ଇନ୍ଦ୍ରଙ୍କର ଆଗରେ ଯାଇ ଜଣାଇଲା
ଲଙ୍କାଗଡ଼ ନିର୍ଭା ଦଳି ବୋଲିଣ ବୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବେନିଦଣ୍ଡ ରାତ୍ର ଥାଉଁ ଉଠିଲେ ଅସୁର ଅସୁରୀ ।
ଦେଖିଲେ ଲଙ୍କାଗଡ଼ ଦିଶେ ବଡ଼ ଶୋଭା
ଗତୁ ଶତେ ଗୁଣରେ ପୁର ହେଲା ନିର୍ଭା ।
ପୋଡ଼ିଯିବାର ସଙ୍କେତ ତହିଁ କିଛି ନାହିଁ
ସୁବର୍ଣ୍ଣମୟ ଲଙ୍କାପୁର ଯେ ଦିଶଇ ।
ଦେଖିଣ ସମସ୍ତେ ହୋଇଲେ ଉସତ
ବିଚାରିଲେ ଆମ୍ଭ ରାଜା ଧନ୍ୟ ଅଟଇ ତ ।
ଏକା ରଜନୀରେ ପୁର କଲେ ପୂର୍ବବତ
କେ ବୋଲେ ଆସି କିସ କରିବେ ରଘୁସୁତ ।
କେ ବୋଲଇ ବାନର ହସ୍ତରେ କିସ ହେବ
କେ ବୋଲେ ଦେବତା ବଶ୍ୟ କଲା ଦଶଗ୍ରୀବ ।
ଏମନ୍ତେ କୁହାକୁହି ହେଲେ ସର୍ବଜନ
ଶର୍ବରୀ ଶେଷ ହେଲା ଉଇଁଲେ ତପନ ।
କାକ କୁକୁଟ ରାବିଲେ ଏହି ସମୟରେ
ହନୁମାନ ଥିଲା ସୁବଳୟା ଗିରିପରେ ।
ପୂର୍ବଦିଗେ ରବି ଉଦେ ହୋଇଲା ଦେଖିଲା
ଦିବସ ହୋଇବାରୁ ମନେ ବିଚାରିଲା ।
ସେଦିନ ଚଇତ୍ର ଶୁକ୍ଳ ନବମୀ ଶୁକ୍ରବାର
ପ୍ରଭାତୁ ଉଠି ସ୍ନାନ କଲା ସେ ନଦୀର ।
ନିତ୍ୟକର୍ମମାନ ହନୁ ତକ୍ଷଣେ ସାରିଲା
ପିତୃତର୍ପଣ କରି ଜଳ ଦାନ ଦେଲା ।
କୂଳରେ ଉଭା ହୋଇ ଦଶଦିଗ ଚାହିଁ
ସୂର୍ଯ୍ୟ ଦେବତାଙ୍କୁ ପ୍ରମାଣିତ ହୋଇ ।
ଖୁପ ରୂପ ଧରିଣ ଲଙ୍କାକୁ ଲେଉଟିଲା
ଅଶୋକବନ ମଧ୍ୟରେ ପରବେଶ ହେଲା ।

ଦେଖିଲା ଜାନକୀ ଛନ୍ତି ଜଗତିରେ ବସି
ଓଳଗ୍ର ମେଲାଇଲା ପବନର ଶିଷି ।
ଜାନକୀ ବୋଇଲେ ମୋର ପାଶୋର ଗଲା ମନୁ
ମାରୁତି ବୋଇଲେ ମୋର ପାଶୋର ଗଲା ମନୁ ।
ସୁବଳୟା ଗିରିରେ ଉବେଳ ଦେଖି ରହି
ରଜନୀରେ ମନରେ ପଡ଼ିଲା ମୋର ଆଇ ।
ଅଇଲାବେଳେ ଶ୍ରୀରାମ କହିଥିଲେ ମୋତେ
ପଦ୍ମପାଦ ଚିହ୍ନ ତୁ ଚିହ୍ନିବୁ ତ୍ୱରିତେ ।
ସେହିକଥା ପାଇଁ ମୁଁ ଅଇଲି ଲେଉଟି
ଦିଅ ମାତ ମୋତେ ପଦ୍ମପାଦ ଚିହ୍ନ ଗୋଟି ।
ଜାନକୀ ବୋଇଲେ ମୁଁ ନ ଜାଣଇ କିଛି
କେଉଁ କଥା ତୋତେ କହିଛନ୍ତି ରଘୁବଶି ।
ଏମନ୍ତ ଶୁଣି ହନୁ ବାଲି ଯେ ଆସିଲା
ଜଗତି ଉପରେ ନେଇଣ ରଖିଲା ।
ବୋଇଲା ମାରୁତି ଶୁଣ ଗୋ ଜନନୀ
ଅବେଷ୍ଟ ପଦ୍ମ କେମନ୍ତେ ତୋ ପାଶେ ଅଛି ପୁଣି ।
ସେହି କଥା ଶ୍ରୀରାମ କହିଛନ୍ତି ମୋତେ
ଏହି ବାଲିରେ ପାଦ ଦିଅ ଗୋ ତ୍ୱରିତେ ।
ଏମନ୍ତ ଶୁଣିଣ ଜନକ ଦୁହିତୀ
ବାଲି ଉପରେ ଠିଆ ହୋଇଲେ ଝଟତି ।
ଦେଖିଲେ ପାଦରେ ଅବେଷ୍ଟ ପୁଷ୍ପ ଫୁଟି
ଶ୍ୱେତପଦ୍ମ ବେନିଗୋଟି ଚରଣେ ଉକୁଟି ।
ଆପଣାର ପାଦକୁ ଜାନକୀ ଲୟ କଲେ
ମୋତେ ଏକଥା ଜଣା ନାହିଁ ସେ ବୋଇଲେ ।
କେଉଁଦିନ ସ୍ୱାମୀ ମୋର ଦେଖିଥିଲେ ଏହା
ସର୍ବଜ୍ଞ ପୁରୁଷ ଯେ ଅଟନ୍ତି ରଘୁନାହା ।
ଦେଖିକରି ମାରୁତି ପରମ ତୋଷ ହେଲା
ବଇଦେହୀଙ୍କ ଚରଣେ ଓଳଗୀ ହୋଇଲା ।
ଭ୍ରମର ରୂପ ଧରି ସେଠାରୁ ଉଡ଼ିଗଲା
ସୁବଳୟା ଗିରିପରେ ଯାଇ ଉଭା ହେଲା ।
ଦେଖିଣ ମନରେ ଭାବନ୍ତି ବଇଦେହୀ
ଭଲ ମାୟା ଦୂତ ହନୁ ଯେ ଅଟଇ ।
କେତେବେଳେ ପର୍ବତ କେତେବେଳେ ମାଛି
କେତେବେଳେ ଦୈତ୍ୟମାରେ କେତେବେଳେ ଘୁଞ୍ଚି ।
ଅସୁରଙ୍କ ମାୟାକୁ ହନୁର ମାୟାବଳି
ଏକା ହନୁ ଆସି ଲଙ୍କା ପକାଇଲା ଦଳି ।
ଏମନ୍ତ ବିଚାର ଜାନକୀ ମନେ କଲେ
ଅଳପ ଦିନେ ରାବଣ ମରିବ ବୋଇଲେ ।
ତ୍ରିଜଟା ବୋଇଲା ହନୁ ମାୟାବି ଅଟେ ବୀର
କେତେବେଳେ ଆକାଶରେ ଲାଗେ ଯାଇ ଶିର

କେତେବେଳେ ପତଙ୍ଗ ହୁଅଇ ବାନର
ଅସୁରଙ୍କ ମାୟାକୁ ବଳିଲା ମାୟା ତାର ।
ଦେଖିଣ ଅସୁରୀ ଯେ ଅନେକ ଭୟ କଲେ
ଚରଣେ ଅବେଣ୍ଟ ପୁଷ୍ପ ଫୁଟିଲା ଦେଖିଲେ ।
ସହଜେ ତ ଦୈତ୍ୟବଳ ମାଇଲା ବହୁତ
ଲଙ୍କାକୁ ପୋଡ଼ିଦେଲା ବୁଦ୍ଧିରେ ବଳବନ୍ତ ।
ଷିରୀ ବଧ କଲା ସେ ନ ଡରେ କାହାକୁ
ଦଶଗ୍ରୀବ ଡରିଲା ସେହି ମର୍କଟକୁ ।
ଏମନ୍ତ ବିଚାର ଯେ ଦଇତୁଣୀ କଲେ
ଜାନକୀଙ୍କି ସମସ୍ତେ କିଙ୍କର ମତ ଦେଲେ ।
ପାର୍ବତୀ ପଚାରିଲେ ଆହେ ତ୍ରିଲୋଚନ
ପଦ୍ମପାଦ ଚିହ୍ନ ଦେଖିଲା ହନୁମାନ ।
ହରଷ ହୋଇ ସେ ସୁବଳୟା ଗିରିକି ଗଲା
ସେଠାରୁ ହନୁମନ୍ତ କିସ ବୁଦ୍ଧି କଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଜାନକୀଙ୍କ ଛାମୁରୁ ଲେଉଟି ମାରୁତି ।
ଝଟକ ବିଜୁଳିର ପ୍ରାୟ ଚଳିଗଲା
ଯିବା ଆସିବାର ଯେ କେହି ନ ଦେଖିଲା ।
ସୁବଳୟା ଗିରିରେ ପ୍ରବେଶ ହେଲା ବୀର
ସେ ପାରିକୁ ଯିବାକୁ କଲାକ ବିଚାର ।
ଦଶ ଯୋଜନ ଦୀର୍ଘ ପ୍ରତି କଳେବର
ନେତର ଚିରାଳ ଯେ ଉଡ଼ଇ ଫରହର ।
ହୁଁକାର ଶବଦ ଯେ ମାରୁତି ସେଥିଦେଇ
ବତିଶି ଯୋଜନ ଯେ ଉଡ଼ିଲା ଉଘେଇ ।
ଲଙ୍କାର ଅସୁରେ ଯେ ଭୟ କଲେ ଦେଖି
ହୁଁକାର ଶବଦକୁ ଚାହିଁଲେ ନିରେଖି ।
କେ ବୋଲଇ ଦେଖ ଏହି ଯେ ହନୁମନ୍ତ
ଏହି ମର୍କଟ ଲଙ୍କାକୁ କଲା ଧୂମାକ୍ଷତ ।
ସୁବଳୟା ପର୍ବତରେ ଥିଲା ଏହି ରାତି
ଦେଖ ଦେଖ ବାନର ଯିବାର ଏହିଗତି ।
ଆକାଶ ମାର୍ଗରେ ସେ ଯାଉଅଛି ଉଡ଼ି
କେ ଅବା ଜିଇବଟି ଏହାର ମୁଖେ ପଡ଼ି ।
କେ ବୋଲଇ ନ ଚାହାଁ ସେ ବେଗେ ଏଥେଁ ଯାଉ
ଚାହିଁଲେ ନ ପୁଣ ଲେଉଟି ଆସେ ସେହୁ ।
ଏକର କହନ୍ତେ ଯେ ଜାଣିଲେ ଆରେକ
ଊର୍ଦ୍ଧ୍ୱକୁ ଚାହାନ୍ତି ସେ ଲଙ୍କାର ଦୈତ୍ୟ ତକ ।
ରାବଣ ଇନ୍ଦ୍ରଜିତ ସହିତେ ଅନାଇଲେ
ହନୁମନ୍ତ ଯିବାର ସମସ୍ତେ ଦେଖିଲେ ।
କାଗଜ ଚକି ପ୍ରାୟ ଚଳଇ ହନୁମନ୍ତ
ଦୁହିତା ବଧୂ ସହିତେ ଚାହିଁଲେ ସମସ୍ତ ।

ରାବଣ ବୋଇଲା ସେ କପିକୁ ଧରି ଆଣ
ପୁତ୍ରକଷ୍ଟ ପାସୋରିବି ତାହାକୁ ମାରିଣ ।
ବିଭୀଷଣ ବୋଇଲା ଯେ ନୁହଇ ଏମନ୍ତ
ବଡ଼ ନିରାପକ୍ଷ ଯେ ଅଟଇ ହନୁମନ୍ତ ।
ପାଞ୍ଚ ସେନାପତି ଜମ୍ବୁମାଳିକି ମାଇଲା
ଅକ୍ଷୟକୁ ମାରିଣ ଲଙ୍କାକୁ ପୋଡ଼ିଦେଲା ।
ଛାରଖାର କଲା ସେ ସକଳ ପଦାର୍ଥ
ବାନର ଯୋଗ୍ୟରେ କି ହୁଏ ଏଡ଼େ କୃତ୍ୟ ।
ଏକଥାକୁ ବିଚାର ନ କର ଦଶଶିର
ଏବେ ସେ ଦୁଷ୍ଟ ବୁଦ୍ଧିକୁ ମନରୁ ପାସୋର ।
ସ୍ୱଭାବ ସନମାନ ଜାଣେ ସେକଥା
ଶୁଣିଣ ପ୍ରବୋଧ ଯେ ହେଲା ଦଶମଥା ।
ଏଥୁ ଅନନ୍ତରେ ବୀରବର ହନୁ
ଆକାଶରେ ଝଟକେ ଯେସନକ ଭାନୁ ।
ଦେବେ ଯେ ପକ୍ଷ ବୃଷ୍ଟ କରନ୍ତି ଶୂନ୍ୟେ ଥାଇ
କୀନ୍ନରୀ ନୃତ୍ୟ କରନ୍ତି ପଞ୍ଚମସ୍ୱରେ ଗୀତ ଗାଇ ।
ମଳୟ ପବନ ଯେ ବହେ ଧୀର ଧୀର
ଅବହେଳେ ଚଳଇ ପବନ କୁମର ।
ପ୍ରଭାତ ସମୟରେ ଲଙ୍କାରୁ ଚଳିଗଲା
ଶତେଯୋଜନ ସମୁଦ୍ର ସାତ ଘଡ଼ିରେ ଲଙ୍ଘିଲା ।
ଅଙ୍ଗଦ ସୁଷେଣ ଯେ ଜାମ୍ବବ ନଳ ନୀଳ
ଗନ୍ଧମାଦନ ଯେ ତାରାକ୍ଷ ସାତବୀର ।
ସାତଦୂତ ଭାଳନ୍ତି ସିନ୍ଧୁକୂଳେ ଥାଇ
ହନୁମନ୍ତ ଗଲା କାହିଁ ଦିନ ନ ସରଇ ।
ଏସନକ ସମୟରେ ଗଗନେ ମାରୁତି
ଅରୁଣ ଉଦୟ ପ୍ରାୟ ଝଟକେ ତାର ଜ୍ୟୋତି ।
ଛଳଛଳ ହୋଇ ସେ ଦିଶେ ଆକାଶର
ରଙ୍ଗ ମେଘ ପ୍ରାୟେ ଯେ ବିରାଜେ ଶରୀର ।
ପୃଥିବୀ କମ୍ପିଲା ଯେ ସିନ୍ଧୁ ଉଛୁଳିଲା
ପ୍ରଳୟ କାଳରେ ରବି ଯେସନେ ଲୁଚିଲା ।
ବନଗିରି କମ୍ପିଲା ଉଲ୍କା ପାତ ହୋଇ
ସାତ ସେନାପତି ଯେ ବିଚାରନ୍ତି ତହିଁ ।
କେବଣ କାରଣେ ଏ କେବଣ ଚରିତ
କି ଅବା ସଂସାର ହୋଇବ ଆଜ ହତ ।
ରସାତଳେ ପଡ଼ିବକି ଦେବୀ ବସୁନ୍ଧରୀ
କି ଅବା ବାସୁକୀ ଛାଡ଼ିବ ମହିଆଳୀ ।
କି ଅବା ରାମ ବିଜେ କରିଲେ ଲଙ୍କାରେ
ରାବଣର ସଙ୍ଗେ ଦୈତ୍ୟଗଣ ମାରେ ।
କି ଅବା ହନୁମନ୍ତକୁ ମାରେ ନିଶାଚର
ଭୋ ମନ୍ତ୍ରୀ ଜାମ୍ବବ କହ ଏଥିର ବିଚାର ।

ସୁଷେଣ ବୋଇଲେ ଆଜି ମୁଁ ଦେଖିଲି ସ୍ୱପନ
ଲଙ୍କାରେ ଗୋଳ କଲା ପବନ ନନ୍ଦନ ।
ନଳ ବୋଇଲା ଯେ ଶକୁନ ମୋର ଅଛି
ଏହିକ୍ଷଣି ଆସିବ ଯେ ପବନର ବତ୍ସି ।
ଗନ୍ଧମାଦନ ଯେ ଉପରକୁ ଚାହିଁ
ବୋଇଲା ଶୂନ୍ୟକୁ ଚାହାଁ ହନୁମନ୍ତ ଏହି ।
ଜମ୍ବେବ ବୋଇଲା ଯେ କାର୍ଯ୍ୟ ସିଦ୍ଧ ହେଲା
ଦଇତଙ୍କ ସଙ୍ଗରେ ମାରୁତି ଯୁଦ୍ଧ କଲା ।
ନଳ ବୋଇଲା ଯେ ହନୁ ପୋଡ଼ିଦେଲା ଲଙ୍କା
ଦନୁଜ ଦେଖିଣ ମନରେ କଲେ ଶଙ୍କା ।
ଅଙ୍ଗଦ ବୋଇଲା ହନୁ ସୀତା ଠାବ କଲା
ନୋହିଲେ କିମ୍ପା ଏତେ ଉଛୁର ହୋଇଲା ।
ତାରାକ୍ଷ ବୋଇଲା ହନୁ ହୋଇଥିଲା ବଣା
ନଗ୍ରରେ ପଶିବାକୁ ଜଗିଥିଲେ ଠଣା ।
ତେଣୁ ହନୁମନ୍ତକୁ ହୋଇଲା ଉଛୁର
ଏହି କଥା ସାର ମନେ ସଂଶୟ ନ କର ।
ଶୁଣ ମୋର ବାଣୀ ବୋଇଲା ନଳବୀର
ମୁହିଁ ସେ ସଙ୍କେତ ଜାଣିଲି ଏଥର ।
ବିଳମ୍ବର କଥାରେ କାର୍ଯ୍ୟ ହୁଏ ସିଦ୍ଧି
କୁଶଳେ ଥାଇ ତାକୁ ପ୍ରମାଦ ନ ଭେଦି ।
ଅବଶ୍ୟ ହନୁମନ୍ତ ଶ୍ରୀରାମ କାର୍ଯ୍ୟ କରି
ଜମ୍ବେବ ବୋଇଲେ ପ୍ରାଣ ରଖିଲା ସବୁଙ୍କରି ।
ଆଜ ଗଲା ରାତ୍ରରେ ଦେଖିଲି ସ୍ୱପନ
ସମୁଦ୍ର ମଧ୍ୟରେ ଅଗ୍ନି ଉଦୟ ଯେ ପୁଣ ।
ଧୂମମୟ ଦିଶଇ ଯେ ଦକ୍ଷିଣ ଦିଗ ଗୋଟି
ତୁମ୍ଭେମାନେ ନିଦ୍ରାରେ ଅଚେତ ହୋଇଲଟି ।
ମୁଖରାବ ଶବଦଟି ଶୁଭୁଥିଲା ପୁଣି
ସେ ଶବଦ ରଜନୀରେ ମୁଁ ବାରିଲି ଜାଣି ।
ସେତେବେଳୁଁ ମନ ମୋର ହୋଇଲା ହରଷ
ଏହିକ୍ଷଣି ହନୁମନ୍ତ ହେବ ପରବେଶ ।
ଏସନକ ସମୟରେ ପବନ କୁମର
ହୁଙ୍କାର ଶବଦ ଯେ ଶୂନ୍ୟରୁ କଲା ଘୋର ।
କୋଟିଏ ସିଂହର ଯେ ରଡ଼ି ସେହି ଦେଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତା ରଡ଼ିରେ କମ୍ପିଲା ।
ଭୂମିକମ୍ପ ହେଲା ପ୍ରାୟ କମ୍ପିଲା ଧରଣୀ
ଦେବଲୋକ କମ୍ପିଲେ ତାର ରଡ଼ି ଶୁଣି ।
ପାତାଳରେ ବାସୁକୀ କମ୍ପିଲାକ ଜାଣ
ଶ୍ରୀରାମଙ୍କ ସୈନ୍ୟଯାକ ଭୂମିରେ ଶୁଏ ପୁଣ ।
ସୁଗ୍ରୀବର ଶ୍ରୀରାମଙ୍କ ପାଖରେ ବସିଥିଲା
ସେ ରଡ଼ି ଶବଦ ଶୁଣି ଗୁମାଇଁ ପଡ଼ିଲା ।

ଶ୍ରୀରାମଙ୍କ ମନେ ଯେ ହୋଇଲା ହରଷ
ଲକ୍ଷ୍ମଣକୁ ପୁଛିଲେ ଏ କେବଣ ସନ୍ଦେଶ ।
ସଉମିତ୍ରୀ ବୋଇଲେ ଯେ ଏ ନୁହେ ପ୍ରମାଦ
ଆମ୍ଭର ସବୁକଥା ଆଣି ହେଲା ଶୁଭ ।
ଶ୍ରୀରାମ ବୋଇଲେ କି ଶୁଭ ମୋତେ ହେବ
ସେହିକଥା ମୋର ଆଗେ କହ ଭାଇ ବେଗ ।
ସଉମିତ୍ରୀ ବୋଇଲେ ଶୁଣ ଦେବ ଭ୍ରାତ
ସଂସାରକୁ ଯେତେବେଳେ ଅସୁର କଲେ କୂଟ ।
ଦେବତାମାନଙ୍କୁ ଅସୁରେ କଲେ କୂଟ
ବାସୁକୀକୁ ଦାନବେ ଦେଲେ ବହୁ କଷ୍ଟ ।
ରାଜା ଯେତେବେଳେ ପ୍ରଜାଙ୍କୁ ନ ପାଳନ୍ତି
ପ୍ରଜା ଯେତେବେଳେ ରାଜାଙ୍କୁ ନ ମାନନ୍ତି ।
ନୀଚ ଲୋକ ଯେତେବେଳେ ହୁଅନ୍ତି ପ୍ରବଳ
ଉଚ୍ଚଲୋକ ଯେତେବେଳେ ହୁଅନ୍ତି ଦୁର୍ବଳ ।
ଯେତେବେଳେ ଦେବମାନେ ଏକମେଳ ହୁନ୍ତି
ନାଗଗଣ ଯେତେବେଳେ ଠୁଣ ଯେ ହୁଅନ୍ତି ।
ଯେତେବେଳେ ଦେବୀମାନେ ବିଚାର କରନ୍ତି
ମଦମାଂସ ଖାଇବାରେ ଦେବୀଙ୍କର ମତି ।
ଯେତେବେଳେ ବାସୁଦେବ ଯୋନିଜନ୍ମା ହୋନ୍ତି
ଯେତେବେଳେ ପାର୍ବତୀ ଶିବଙ୍କୁ କହନ୍ତି ।
ଯେତେବେଳେ ସିଂହ ତାର ରଡ଼ି ଦିଏ ପୁଣ
ସେ ସିଂହରଡ଼ି ଶୁଣାଏ ବାସୁଦେବଙ୍କ ବାହନ ।
ତେବେ ସେ ବାସୁଦେବ ଦୈତ୍ୟବଳ ମାରି
ଅସୁରଙ୍କୁ ମାରିବାକୁ ସିଂହରଡ଼ି କରି ।
ରାମ ବୋଇଲେ ଯେବେ ନାରାୟଣ ଜାତ
ସଙ୍ଗରେ ବାହନ ଯେ ଗରୁଡ଼ ସମ୍ଭୁତ ।
ଲକ୍ଷଣ ବୋଇଲେ ଯେବେ ବିନତା ନନ୍ଦନ
ସୁମରିଲେ ଆସଇ ତାଙ୍କପାଶେ ପୁଣ ।
ଯେଉଁ ଅବତାରେ ଯେଉଁ ସେ ବାହନ
ସିଂହରଡ଼ି ସେତେବେଳେ ଦିଏ ସେ ବାହନ ।
ଶ୍ରୀରାମ ବୋଇଲେ ଯେତେ ଅବତାର ହରି
କେଉଁ ଅବତାରରେ କେଉଁ ବାହନ କହ ତଥ୍ୟକରି ।
ଲକ୍ଷ୍ମଣ ବୋଇଲେ ଆଦ୍ୟେ ମୀନରୂପ ହେଲେ
ଦୈତ୍ୟବଳ ନାଶି ବେଦ ଚୋରକୁ ମାଇଲେ ।
ସେତେବେଳେ ସିଂହ ଦେଲା ଘୋର ରଡ଼ି
ସେତେବେଳେ ସେହି ଗରିଷ୍ଠ ଅସୁରକୁ ମାରି ।
ଯେତେବେଳେ ଦେବତା ସାଗର ମନ୍ଥିଲେ
କର୍ମଠ ରୂପରେ ହରି ଅବତାର ହେଲେ ।
ସେତେବେଳ ବାହନ ମନ୍ଦରଗିରି ଜାଣ
ସିଂହରଡ଼ି ଦିଅନ୍ତେ ଦୈତ୍ୟ ନିବର୍ତ୍ତିଲେ ପୁଣ ।

ତୃତୀୟ ଅବତାରେ ଶୁକର ରୂପ ଧରି
ଧରଣୀ ବାହନରେ କଶ୍ୟପକୁ ମାରି ।
ସେତେବେଳେ ଧରଣୀ ଦେଲା ସିଂହରଡ଼ି
ତେବେ ସେ କଶ୍ୟପକୁ ମାଇଲେକ ଭିଡ଼ି ।
ଯେତେବେଳେ ନୃସିଂହ ଅବତାର ହେଲେ
ହିରଣ୍ୟ ଗର୍ଭଶମ୍ଭୁକୁ ବାହନ ଦେବ କଲେ ।
ତେବେ ସେ ହିରଣ୍ୟକୁ ବିଦାରିଲେ ଜାଣ
ବାହନ ଅଟଇ ଗରୁଡ଼ ଅଂଶ ପୁଣ ।
ଯେତେବେଳେ ଶ୍ରୀହରି ବାମନ ରୂପ ହୋଇ
କୁଶ ତୃଣକୁ ଯେ ବାହନ କଲେ ସେହି ।
ଶୁକ୍ରମନ୍ତ୍ରୀର ଚକ୍ଷୁକୁ ଫୋଡ଼ିଲେ ସେଥିରେ
ସେ ତୃଣ ସିଂହରଡ଼ି ଦେଲା ସେ କାଳରେ ।
ତେବେ ସେ କଳିର ଦର୍ପ ହରିଲେ ଚକ୍ରଧର
ନେଇଣ ରଖିଲେ ତାକୁ ପାତାଳ ଯେ ପୁର ।
ଷଡ଼ ଅବତାରେ ପର୍ଶୁରାମ ହେଲେ
ସେ ଅବତାରେ ସହସ୍ରାର୍ଜୁନକୁ ବଧିଲେ ।
ସେତେବେଳେ ବାହନ ହୋଇଲା ବୃଷଭ
ସିଂହରଡ଼ି ଦେଇଣ ପର୍ଶୁଙ୍କୁ ଦେଲା ଶୁଭ ।
ସପ୍ତମ ଅବତାର କଉଶଲ୍ୟା ସୁତ
ରାବଣକୁ ମାରିବାକୁ ହୋଇଲେ ସେ ଜାତ ।
ତେଣୁଟି ଅରଣ୍ୟରେ ବନବାସ କଲେ
ଅର୍ଦ୍ଧଅଙ୍ଗ ଜାନକୀଙ୍କୁ ବନରେ ହରାଇଲେ ।
ତେଣୁ ସେ ହନୁମନ୍ତ ଦୂତପଣେ ଗଲା
ପଞ୍ଚଲଙ୍କା ବୁଲିଣ ସୀତାଙ୍କୁ ଠାବ କଲା ।
ରାବଣର ପୁତ୍ରକୁ ସେ ମାଇଲା ଲଙ୍କାରେ
ଦୈତ୍ୟବଳ ନାଶକଲା ତାର ଭୁଜବଳେ ।
ଲଙ୍କା ପୋଡ଼ି ଦେଇଣ ଅଇଲା ମାରୁତି
ଉପରେ ଥାଇ ସାତ ବୀରଙ୍କୁ ଦେଲା ଦୃଷ୍ଟି ।
ତେଣୁ ସେ ସିଂହରଡ଼ି ଦେଲା ହନୁମନ୍ତ
ତିନିପୁର କମ୍ପିଲା ଶଙ୍କିଲେ ସମସ୍ତ ।
ଭଇରବ ରଡ଼ିରେ ସମସ୍ତେ ମୋହ ଗଲେ
ଜଣାଗଲା ରାବଣକୁ ମାରିବେ ରାମ ହେଲେ ।
ସାତଘଡ଼ି ସମୟେ ଦକ୍ଷିଣଦିଗ ଦୂତ ଦେଖି
ଶୁଣିଣ ଶ୍ରୀରାମ ଯେ ହୋଇଲେ ମହାସୁଖୀ ।
ଏହି ସମୟରେ ଉଠିଲେ ସୁଗ୍ରୀବର
ଚେତା ପାଇ ଉଠିଲେ ସର୍ବ ସୈନ୍ୟବଳ ।
ବସନ୍ତ ପବନ ଯେ ଶୀତଳ ବହଇ
ସୁଗ୍ରୀବର ବୋଇଲା କିମ୍ପୁତ ଏ ହୋଇ ।
ଶ୍ରୀରାମ ବୋଇଲେ ଏ ଭଇରବ ରଡ଼ି
ସେତେବେଳକୁ ସମୟ ହୋଇଅଛି ପାଞ୍ଚଘଡ଼ି ।

ସୁଗ୍ରୀବରକୁ ଘେନି ଶ୍ରୀରାମ ଲକ୍ଷ୍ମଣ
ସ୍ନାହାନ ସାରି କଲେ ନିତ୍ୟକର୍ମମାନ ।
ଫଳମୂଳ ଭୁଞ୍ଜି ସର୍ବେ ସନ୍ତୋଷ ହୋଇଲେ
ଶ୍ରୀରାମ ବସି ମନରେ ବିଚାରକୁ କଲେ ।
ଏ ଜନ୍ମରେ ମୋହର ମାରୁତି ବାହନ
ଅନନ୍ତର ମନେ ଅଛି ପୂର୍ବକଥାମାନ ।
ପାର୍ବତୀ ପଚାରିଲେ କହ ତ୍ରିପୁରାରି
ସେଠାରୁ ହନୁମନ୍ତ କିସ ପୁଣି କରି ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଆକାଶରେ ଗର୍ଜନ କରିଣ ମାରୁତି ।
ଗଗନରୁ ଖସିଲା ଧୀର ଧୀର ହୋଇ
ଦେଖିଲା ସାତବୀର ଭୂମିରେ ଛନ୍ତି ଶୋଇ ।
ମାରୁତିର ଶବଦରେ ଚେତନା ପାଇଲେ
ଉଠିକରି ସାତବୀର ଊର୍ଦ୍ଧ୍ୱକୁ ଦୃଷ୍ଟି ଦେଲେ ।
ଶୂନ୍ୟରୁ ଶୂନ୍ୟ ପୁରୁଷ ଗୁପ୍ତେ ଯେହ୍ନେ ଆସି
ତେସନକ ପ୍ରାୟେ ଯେ ପବନର ଶିଷ୍ୟ ।
ସମ୍ପାତି ପର୍ବତରେ ବସିଲା ବୀର ଯାଇ
ଭାରା ପାଇ ତଳକୁ ଖସିଗଲା ମହୀ ।
ତେତେ଼ ଗିରିଗୋଟା ଯେ ଗୁପତ ହୋଇଲା
ହନୁମନ୍ତର ଭାରା ପାଇ ତଳକୁ ଖସିଗଲା ।
ଏକା ହୋଇ ସେଠାରେ ରହିଲା ହନୁମନ୍ତ
ଖର୍ପ ରୂପ ଧଇଲା ହୋଇଲା ଉଶ୍ୱାସତ ।
ସେଠାରୁ ହନୁମନ୍ତ ଭୂମିରେ ଉଭା ହେଲା
ଗିରି ଗୁପ୍ତ ହେବାରୁ ମନରେ ବିଚାରିଲା ।
ଝିଙ୍କିଣ ସାମାନ୍ୟରେ ରଖିଲା ଆଣି ପୁଣ
ଭଇରବା ମୂର୍ତ୍ତି ହନୁ ଗୋପ୍ୟ କଲା ଜାଣ ।
ସାମାନ୍ୟ ମୂର୍ତ୍ତି ଧରି ତହୁଁ ଚଳିଗଲା
ସାତବୀରଙ୍କ ପାଶେ ପ୍ରବେଶ ହୋଇଲା ।
ଦେଖି କରି ନଳ ନୀଳ ଉଠିଲେ ତକ୍ଷଣ
ତାରାକ୍ଷ ସୁଷେଣାଦି ଅଙ୍ଗଦ ଋଷିଗଣ ।
କୁଶଳ ବାରତା ଯେ ପଚାରନ୍ତି ବେଢ଼ି
ଜାମ୍ବେବ ପାଦତଳେ ହନୁମନ୍ତ ପଡ଼ି ।
ସୁଷେଣକୁ ଦେଖିଣ କଲା ନମସ୍କାର
ତାରାକ୍ଷର ପାଦତଳେ ଓଳଗେ ହନୁବୀର ।
ନଳନୀଳ ଦୁଇଜଣ ହନୁକୁ ଓଳଗିଲେ
ଗନ୍ଧମାଦନ ହନୁ ଓଳଗେ ପାଦତଳେ ।
ଅଙ୍ଗଦର ଛାମୁରେ ଥିଲାକ ମାରୁତି
ଧରିଣ କୋଳକଲା ଖଡ଼୍ଗଦର ନାତି ।
ସୀତାଙ୍କୁ ଦେଖିଲୁଟିକି ବୋଲିଣ ପଚାରି
କେ ବୋଲେ କେମନ୍ତେ ଦିଶଇ ଲଙ୍କାପୁରୀ ।

କେ ବୋଲେ ଲଙ୍କାଗଡ଼େ ଦେଖିଲୁକି ଲଙ୍କପତି
କେ ବୋଲେ ସମୁଦ୍ରକୁ ତରିଲୁ କେମିନ୍ତି ।
ବସିବା ଶୋଇବାର କହ ତୁ ସମସ୍ତ
କେ ବୋଲେ ଅବିଗୁଣ ନ ପାଅ ହେ ଶରୀର ସୁତ ।
ଯେବଣ କଥାକୁ ଅଇଲଇଁ ଆମ୍ଭେ
ସେ କଥା ସୁଫଳକି ହୋଇଲା ବାବୁ ଏବେ ।
ଅଙ୍ଗଦ ବଚନ ଶୁଣି ମାରୁତି ହସଇ
ଆଣିଛି ମୁହିଁ ସନ୍ଦେଶ ଦେଖ ଭାଇ ତୁହି ।
ଏମନ୍ତ କହନ୍ତେ ବସିଲେ ସ୍ଥିରେଣ
ମାରୁତି ବୋଇଲା ତୁମ୍ଭେମାନେ ଶୁଣ ।
ଯେବଣ ଦିନ ମୁହିଁ ଗଲି ଏଥୁଁ ଚଳି
ମଣିନାଗ ପର୍ବତକୁ ବାଟରେ ଦେଖିଲି ।
ସମୁଦ୍ର ଭିତରେ ସେ ମାନବରୂପ ଧରି
ମୋତେ ରଖାଇଲା ଗଉରବ କରି ।
ଫଳମୂଳ ଦେଇଣ ଗଉରବ କଲା
ଶୁଭେ ଯାଅ ବୋଲିଣ ଅନୁକୂଳ ଦେଲା ।
ସେଠାରୁ ଚଳିଗଲି ମୁହିଁ ଯେ ତଡ଼ତି
ଆଗରେ ଓଗାଳିଲା ଉଗ୍ରତାରା ମୂର୍ତ୍ତି ।
ତିନିଶତ ଯୋଜନ କାୟା ତାର ହୁଏ
ଦେଖିଣ ମନେ ତାକୁ ଉପୁଜିଲା ଭୟେ ।
ଖୁପ ରୂପ ଧରିଣ ମୁଁ ତାହାକୁ ଜିଣିଲି
ତାହାର ଆଗରୁ ମୁଁ ବେଗେ ଚଳିଗଲି ।
ବାଟରେ ଦେଖିଲି ଯେ ରାହୁର ମାତାକୁ
ସେହି ଦଇତୁଣୀ ଯେ ପ୍ରାକର୍ମ କଲା ମୁକୁ ।
ସହସ୍ର ଯୋଜନ ବିସ୍ତାର କଲା କାୟେ
ଦୁଇ ଭୁଜ ଧରିଣ ସେ ଗର୍ଭକୁ ଗିଳିଦିଏ ।
ଶ୍ରୀରାମଙ୍କୁ ସୁମରି ତା ପେଟ ଚିରିଦେଲି
ବୁକୁ ତାର ବିଦାରିଣ ବାହାର ହୋଇଲି ।
ଦେବେ କୁସୁମ ବୃଷ୍ଟି କଲେ ମୋର ଶିରେ
ଦୁନ୍ଦୁଭି ବଜାଇଲେ ଆନନ୍ଦେ ସ୍ୱର୍ଗପୁରେ ।
ଶ୍ରୀରାମଙ୍କୁ ସୁମରି ସେଠାରୁ ଚଳିଗଲି
ଦିଗ ବଣା ହୋଇଣ ବିଲଙ୍କାରେ ହେଲି ।
ପୌଲସ୍ତି ବିଶ୍ରବାର ସେ ମଧ୍ୟେରେ ବାସ
ମୋତେ ଦେଖି ତୁଟିଲା ତାଙ୍କର ସନ୍ଦେଶ ।
ସେହି ମୋତେ ଚିହ୍ନିକରି କଲେକ ଆଶ୍ୱାସ
ବୋଇଲେ ତୁହି ପରା ଶ୍ରୀରାମର ଦାସ ।
ଲଙ୍କା ଛାଡ଼ି ମାରୁତି ଅଇଲୁ ବିଲଙ୍କାଇ
ଏ ଗଡ଼ ଅଟଇ ଯେ ଦୈତ୍ୟଙ୍କର ଭୂଇଁ ।
ଏତେ କହି ମୋତେ ସେ କୁଶବଟୁ ଦେଲେ
ଏ ବଟରେ ଚଢ଼ିକରି ଯାଅରେ ବୋଇଲେ ।
ତାଙ୍କର ବଚନରେ ମୁଁ ବଟୁରେ ଚଢ଼ିଲି
ସ୍ଥୂଲଙ୍କା ଜ୍ୟୋତି ଲଙ୍କା ଯାଇଣ ଖୋଜିଲି ।
ସେଥିରେ ନ ଦେଖିଣ ଅଲଙ୍କାଗଡ଼ ଗଲି
ଅଲଙ୍କାରୁ ଆସିଣ ଲଙ୍କାରେ ମିଳିଲି ।
ଲଙ୍କାର ଚାରି ପାଶକୁ ବୁଲିଣ ଦେଖିଲି
ତିନିପାଖ ଗିରି କନ୍ଦର ସେଥିରେ ବୁଲିଲି ।
ସୁବଳୟା ଗିରିକୁ ଦେଖିଲି ଉଚ୍ଚ ସଞ୍ଚ
ଏଥିରେ ଦୁଇଦିନ ହୋଇଲା ମୋର ଶେଷ ।
ସେ ପର୍ବତେ ଚାହିଁଲେ ଦିଶେ ଲଙ୍କାପୁର
ରବି ଅସ୍ତ ହୋନ୍ତେ ସନ୍ଧ୍ୟା ଆସିଲା ସତ୍ୱର ।
ଗୋଧୂଳି ସମୟରେ ପଶିଲି ଲଙ୍କାପୁର
ଅସି କରି ଲଙ୍କାଦେବୀ ଚିହ୍ନିଲା ସତ୍ୱର ।
ବୋଇଲା ବାନରରେ କାହିଁକି ଯାଉ ତୁହି
ଏ ଲଙ୍କାଗଡ଼କୁ ତୁ ଅଇଲୁ କିମ୍ପାଇଁ ।
ତା ବଚନ ଶୁଣି ଯେ କମ୍ପିଲା ମୋର କାୟେ
ବିକ୍ରମ ରୂପ ଧରି ମାରିଲି ବିଧାଏ ।
ପଡ଼ି କରି ଲଙ୍କେଶ୍ୱରୀ ସେଠାରେ ମୋହ ଗଲା
ପୁଣି ସଚେତ ହୋଇଣ ମୋତେ ସେ କହିଲା ।
ଯାଅ ବାନରରେ ତୋ କାର୍ଯ୍ୟ ସିଦ୍ଧ କର
ଜଣାଗଲା ରାବଣ ଯେ ମରିବ ଏଥର ।
ପୂର୍ବରୁ ସାବିତ୍ରୀ ସାଇଁ କହିଅଛି ମୋତେ
ବାନର ଯେଉଁଦିନ ପ୍ରାଭବ ଦେବ ତୋତେ ।
ସେଠାରୁ ତିନି ପକ୍ଷେ ରାବଣ ନାଶଯିବ
ସେ କଥା ଏତେକାଳେ ଘୋଟିଲା ମୋତେ ଶୁଭ ।
ଏବେ ତୁ ଶୁଭେ ଯାଇଣ ସୀତା ଠାବ କର
ଏତେ କହି ଲଙ୍କା ଦେବୀ ଗଲା ନିଜ ପୁର ।
ସେଠାରୁ ଲଙ୍କାଗଡ଼ ଯାଇଣ ବୁଲିଲି
ପ୍ରତି ଘର ବୁଲି ମୁଁ ଭେଟ ନ ପାଇଲି ।
ଚଉଷଠି ଦାଣ୍ଡ କନ୍ଦି ବିକନ୍ଦି ସହିତେ
ଜଗତି ଅଟାଳି ମେଢ଼ ମଣ୍ଡପାଦି ଯେତେ ।
କେଉଁଠାରେ ରାମନାରୀ ନ ଦେଖିଲି ଜାଣ
ଦଇତୁଣୀଠାରୁ ଶୁଣିଲି ଭିନ୍ନ ଭିନ୍ନ ।
କେ କହଇ ରାମନାରୀ ରାବଣ ଆଣିଲା
କେ କହଇ ତାହାକୁ ଛୁଇଁ ନ ପାରିଲା ।
କେ କହଇ ଦାବାନଳ ଅଟେ ରାମନାରୀ
କେ କହଇ ନାରାୟଣ ବନିତା ସେ ନାରୀ ।
କେ କହଇ ଅଗ୍ନିରେ ସେ କରଇ ସ୍ନାହାନ
କେ କହଇ ତେରମାସ ନ କଲେ ଭୋଜନ ।
କେ କହେ ଏ ଲଙ୍କାଗଡ଼ ନିଶ୍ଚେ ନାଶ ଯିବ
କେ କହଇ ଶ୍ରୀରାମ ରାବଣ ପ୍ରାଣ ନେବ ।

ଏମନ୍ତ ବିଚାର ମୁହିଁ ଶୁଣିଲି ସେ ପୁରେ
ରଜନୀ ଶେଷରେ ମୁଁ ରହିଲି ଗୁପତରେ ।
ବିଭାବରୀ ହେବାରୁ ରାବଣ ପୁରେ ପଶି
ପୁତ୍ର ନାତିଙ୍କର ପୁର ଖୋଜିଲେ ବିଶେଷି ।
ଭାଇ ବନ୍ଧୁ କୁଟୁମ୍ବ ବିଭୀଷଣ ପୁର
କେଉଁଠାରେ ନ ଦେଖିଲି ଜାନକୀ ସଞ୍ଚାର ।
ରାବଣ ଶୋଇଥିଲା ରାଣୀକି ଘେନି ତାର
ବାଳଝିଙ୍କି ଘରଣୀକି ଚେତା କରି ତାର ।
ସେଠାରୁ କୁମ୍ଭକର୍ଣ୍ଣ ପୁରକୁ ମୁଁ ଗଲି
ପର୍ବତ ସମାନରେ ଦୈତ୍ୟକୁ ଦେଖିଲି ।
ତାହାକୁ ଉତ୍ତର ମୁଖେ କରି ଶୁଆଇଲି
ତାର ପୁରେ ଯାଇଣ ପ୍ରବେଶ ହୋଇଲି ।
ଦେଖିକରି ତାରାଦେବୀ ମୋତେ ଯେ ଚିହ୍ନିଲା
ଶ୍ରୀରାମ ଦୂତ ତୁ କି ଅଇଲୁ ବୋଇଲା ।
ମୁହିଁ ବୋଇଲି ତୁହି ଅଟୁ କିଏ ପୁଣ
ସେ ବୋଇଲା ବିଭୀଷଣ ସୁତା ତାରା ମୋର ନାମ ।
ମୁଁ ବୋଇଲି ଏକସ୍ତନ ଅଟଇ ତୋହର
ମୁଖ ତୋର ସୁନ୍ଦର ମୋହୁଛୁ ତିନିପୁର ।
ବୋଇଲା ରାମଙ୍କ ଭାଇ ଲକ୍ଷ୍ମଣ ନାମେ ବୀର
ତାଙ୍କୁ ଏକଘନି ଯେ ମାରିବ ଦଶଶିର ।
ସେତେବେଳେ ମୋର ସ୍ତନ କ୍ଷୀରରେ ଔଷଧି
ବାଟିକରି ଦେଲେ ଯେ ଜୀଇବ ଅବଧି ।
ସେତେବେଳେ ଶ୍ରୀରାମଙ୍କୁ ଦର୍ଶନ କରିବି
ମୁକତ ହୋଇଣ ସ୍ୱର୍ଗପୁରେ ଯିବି ।
ସେଥିର ସକାଶେ ମୁଁ ଅଛଇଁ ଦେହଧରି
ଏବେ ତ ନିକଟରେ ଯିବଇଁ ସ୍ୱର୍ଗପୁରି ।
ମୁଁ ବୋଇଲି ରାମନାରୀ କେଉଁଠରେ ଅଛି
କହିଲେ ଯେ ମାରିବ ବିଶ୍ରବାର ବସି ।
କହିଲା ଅଗ୍ନି ଯେ ହୋଇଛି ରାମନାରୀ
ପନ୍ଦରଦିନେ ଅଗ୍ନିରେ ଥରେ ସ୍ନାନ କରି ।
ତେରମାସ ହେଲା ସେ ନ କରେ ଭୋଜନ
ସକଳ ଅସୁର ଡରିଲେ ତାଙ୍କୁ ଜାଣ ।
ତୁ ଯାଇ ଜାନକୀଙ୍କୁ ଅଶୋକ ବନେ ଦେଖ
ଶ୍ରୀରାମ କହିଥିବାର ରୂପକୁ ନିରେଖ ।
ଅଭେଦ କଥାମାନ ତାଠାରୁ ଭେଦ ନେବୁ
ତୁନିହୋଇ ମାରୁତି ଲଙ୍କାରୁ ନ ଯିବୁ ।
ଅସୁରଙ୍କ ସଙ୍ଗରେ କରିବୁ ରଣଗୋଳ
ତୋତେ ଯଶ ଅଛିରେ ପବନ ଦୁଲାଳ ।
ମୁଁ ବୋଇଲି ସେ କଥା ତୁ କେମନ୍ତେ ଜାଣିଲୁ
ସେ ବୋଇଲା ମୁଁ ଯେ ଜ୍ଞାନୀ ଅଟେ ପୂର୍ବକାଳୁ

ଅକ୍ଷୟ ନାମରେ ରାବଣର ସାନ ପୁତ୍ର
ତୋର ହସ୍ତରେ ସେ ଯେ ମରିବ ନିୟତ ।
ବେନି ଲକ୍ଷ ସଇନ ଅନେକ ଅଶ୍ୱ ହସ୍ତୀ
ତୋର ହସ୍ତେ ମରିବ ଜମ୍ୱୋମାଳି ସେନାପତି ।
ଲଙ୍କା ପୋଡ଼ି ଦେଇଣ ଶ୍ରୀରାମ ପାଶେ ଯିବୁ
କହିଲେ ଶ୍ରୀରାମ ଯେ ଆସିବେ ଏଥେ ବାବୁ ।
ଚଳ ତୁ ଏହିକ୍ଷଣି ଅକ୍ଷୟର ପୁର
ରଜନୀ ଅଳପ ଅଛଇଁ ଶେଷର ।
ଅକ୍ଷୟର ନାରୀକୁ ତୁ କର ଯା ବିଧବା
ଶୁଣିଣ ସେଠାରୁ ଶୀଘ୍ର ଚଳିଗଲି ବାବା ।
ଯାଇଣ ଅକ୍ଷୟ ନାରୀମାନଙ୍କୁ ରାଣ୍ଡ କଲି
ଶର୍ବରୀ ଶେଷେ ଯାଇଣ ଗୁପତେ ରହିଲି ।
ରଜନୀରେ ଅଶୋକ ବନକୁ ଗଲି ପୁଣ
ଦେଖିଲି ରାମନାରୀ ଅଗ୍ନିରୁ ଦ୍ୱିଗୁଣ ।
ଏହି ସମୟରେ ସେ ରାବଣ ଯାଇଣ
ଦୂରେ ଥାଇ ସୀତାଙ୍କୁ କଲା ବିଡ଼ମ୍ବଣ ।
କ୍ରୋଧରେ ଜନନୀ ତାହାକୁ ଶାପ ଦେଲେ
ଲଙ୍କା ପୋଡ଼ିଯାଉ ତୋ ପୁତ୍ରମରୁ ବୋଇଲେ ।
ସୈନ୍ୟବଳ ଅଶ୍ୱ ଗଜ ହୁଅନ୍ତୁ ତୋର ହତ
ତିନିପକ୍ଷ ଦୁଇଦିନେ ମରିବୁରେ ଦୈତ୍ୟ ।
କାଲିଠାରୁ ଶ୍ରୀରାମ ଚିନ୍ତା ତୋତେ ହେଉ
ପ୍ରଥମରୁ ବାନର ପ୍ରାଭବ ତୋତେ ଦେଉ ।
ଶୁଣିଣ ରାବଣ ସୀତାଙ୍କୁ କ୍ରୋଧ ହେଲା
ବେନି ମାସରେ ତୋ ରାମ ଭେଟାଅ ବୋଇଲା ।
ନୋହିଲେ ତୋତେ ମୁହିଁ ପକାଇବି ମାରି
ନୋହିଲେ ଘରଣୀ ମୁଁ କରିବି ତୋତେ ଧରି ।
ଏତେ କହି ରାବଣ ନିଜ ପୁରେ ଗଲା
ମୁଁ ଯିବାର ଶାରୀପକ୍ଷୀ ଜାଣି ଯେ ପାରିଲା ।
ତ୍ରିଜଟାକୁ କହିଲା ଆସିଛି ରାମଦୂତ
ତାରଠାରୁ ଶୁଣି ତାକୁ ମାରିଲି ତ୍ୱରିତ ।
ରଜନୀ ଶେଷରେ ସେଠାରୁ ଚଳିଗଲି
ନଦୀ କୂଳେ ଶିଂଶୁପା ବୃକ୍ଷରେ ବସିଲି ।
ସ୍ନାନ ନିମନ୍ତେ ତହିଁ ଗଲେ ରାମନାରୀ
ବୃକ୍ଷରୁ ଓହ୍ଲାଇ ଯେ ଓଳଗ ମୁଁ କରି ।
ଶ୍ରୀରାମଙ୍କ ଚରିତ ସକଳ କହିଲି
ଅପ୍ରତେ କରିବାରୁ ମୁଦି ଗୋଟି ଦେଲି ।
ଚିହ୍ନିଣ ରାମନାରୀ ମଣି ମୋତେ ଦେଲେ
ଶ୍ରୀରାମଙ୍କୁ ବେଗେ ଆଣ ବୋଲିଣ କହିଲେ ।
ମୁଁ ବୋଇଲି ହୁଅ ଆସି ଗୋ ଛିଡ଼ା
ଶ୍ରୀରାମ ସଙ୍କେତ ଦେଖିଣ ଯିବ ପରା ।

ଶୁଣିଣ ଜନକ ସୁତା ବାଳିରେ ହେଲା ଛିଡ଼ା
ଅଲଗା ହୋଇବାରୁ ଦିଶିଲା ମୋତେ ପୁରା ।
ଅବେଣ୍ଟ ପଦ୍ମ ଯେ ଫୁଟିଛି ପାଦ ଚିହ୍ନ
ଦେଖିଣ ସନ୍ତୋଷ ମୁଁ ହୋଇଲି ବହନ ।
ସେଠାରୁ ମଧୁବନ ତୋଟାକୁ ଚଳିଗଲି
ମଧୁବନ ଭାଙ୍ଗି ତୋଟାଳକୁ ନାଶ କଲି ।
ଜାଣିଣ ରାବଣ କିଙ୍କରଗଣ ପେଷି
ସତର ସହସ୍ର କିଙ୍କର ମୁଁ ମାଇଲି ଖୋଜି ।
ପୁଣି ହିଁ ରାବଣ ପେଷିଲା ଶାଳକଗଣ
ସେମାନେ ମୋର ହସ୍ତେ ହୋଇଲେ ନିଧନ ।
ପୁଣି ହିଁ ପାଞ୍ଚସେନା ଜମ୍ବୋମାଳି ପେଷି
ସେମାନେ ମରିବାରୁ ରାବଣ ହେଲା କୋପି ।
ଆପଣାର କୁମର ଅକ୍ଷୟକୁ ପେଷିଲା
ବହୁତ ସୈନ୍ୟ ଘେନି ମୋ ସଙ୍ଗେ ରଣ କଲା ।
ସେହି କୁମର ମୋହର ହସ୍ତେ ନାଶ ଗଲା
ଅନେକ ଅଶ୍ୱ ଗଜ ସୈନ୍ୟ ମଲେ ଭଲା ।
ତହୁଁ ରାବଣ ଇନ୍ଦ୍ରଜିତକୁ ପଠାଇଲା
ନାଗପାଶେ ବାନ୍ଧିଣ ମୋତେ ଘେନିଗଲା ।
ନଗ୍ରରେ ବୁଲାଇ ମୋତେ ମାଡ଼ ମରାଇଲା
ଲାଙ୍ଗୁଳେ ବସ୍ତ୍ର ବେଢ଼ାଇ ଅଭଙ୍ଗ ଢାଳିଲା ।
ଅଗ୍ନି ଲଗାଇଣ ଦେଲା ମୋର ଲାଙ୍ଗୁଳରେ
ପୋଡ଼ିଲି ମୁଁ ଲଙ୍କାଗଡ଼ ମୋ ମନ ଇଚ୍ଛାରେ ।
ଲଙ୍କା ପୋଡ଼ିଯିବାରୁ ରାବଣର ବହି
ତେଣୁ ମୁଁ ରାବଣକୁ ମାଇଲି ଆକର୍ଷି ।
ରଥରେ ମୋହ ଯିବାରୁ ମୁକୁଟ କୁଣ୍ଡଳ
ଛଡ଼ାଇଣ ତାହା ମୁଁ ଆଣିଲି ତତକାଳ ।
ମନ୍ଦୋଦରୀ ମୋତେ ପ୍ରବୋଧ କରି କହି
ଶ୍ରୀରାମଙ୍କର ରାବଣ ବଇରୀ ଅଟଇ ।
ରାମ ସିନା ରାବଣ ସଙ୍ଗରେ କରି ରଣ
ତୁହି ରଣ କରିବାର ନୁହେ ଭଲ ପଣ ।
ଏକଥା ଶୁଣି ସେଠାରୁ ବେଗହୋଇ ଆସି
ଇନ୍ଦ୍ରଜିତ ରଥରେ ତକ୍ଷଣେ ମୁଁ ବସି ।
ମାଇଲି ଦୁଇ ମୁଥ ପଡ଼ିଲା ଇନ୍ଦ୍ରଜିତ
ମୁକୁଟ କୁଣ୍ଡଳ ତାର ଆସିଲି ତ୍ୱରିତ ।
ସେତେବେଳେ ବେଦବର ମୋତେ ଯାଇ କହି
ଆଉ ତୋତେ ଯଶ ନାହିଁ ଯାଅ ବେଗହୋଇ ।
ତାହାଙ୍କର ବଚନେ ମୁଁ ସୀତାଙ୍କ ପାଶେ ଗଲି
ତାଙ୍କୁ କହି ସେଠାରୁ ବିଦାୟ ହୋଇଲି ।
ସୁବଳୟା ନାମେ ଗିରି ରହିଲି ରାତ୍ରରେ
ରାବଣ ଆଜ୍ଞା ଦେଲା ବାସବ ଦେବତାରେ ।

ମେଘଙ୍କୁ କହିବାରୁ ସେ ଜଳ ବରଷିଲେ
ଅଗ୍ନି ଲିଭିବାରୁ ବିଶ୍ୱକର୍ମା ଯେ ଅଇଲେ ।
ରାବଣ ଅକ୍ଷତ ଦେଇ ଲଙ୍କା ନିର୍ମାକଲା
ଗତୁ ଶତେଗୁଣ କରି ପୁର ସଜ କଲା ।
ଶବଦ ବାରିର ମୁଁ ଲଙ୍କାଗଡ଼ ଗଲି
ବିଶ୍ୱକର୍ମାକୁ ଯାଇ ରାତ୍ରରେ ଭେଟିଲି ।
ସେ ବୋଇଲା ହନୁ କିମ୍ପା ନ ଗଲୁ ରାମ ପାଶ
ତିନିପକ୍ଷ ଦୁଇଦିନେ ମରିବ ଦଶଈଶ ।
ଏ ପୁରେ ନୃପତି ହୋଇବ ବିଭୀଷଣ
ତେଣୁ ମୁଁ ଏ ପୁରକୁ କରୁଛି ନିର୍ମାଣ ।
ଶୁଣିକରି ସୁବଳୟା ଗିରିରେ ପେରି ରହି
ରଜନୀ ଶେଷରେ ମୁଁ ଅଇଲି ତ୍ୱରାଇଁ ।
ଶୁଣି କରି ସନ୍ତୋଷ ହୋଇଲେ ସାତବୀର
ବହୁତ ପ୍ରଶଂସା କଲେ ବାଳିର କୁମର ।
ଧନ୍ୟ ଧନ୍ୟ ହନୁମନ୍ତ ଧନ୍ୟ ତୋର ପିତା
ଧନ୍ୟ ଧନ୍ୟ ପ୍ରଭଞ୍ଜନୀ ଗର୍ଭଧାରୀ ମାତା ।
ସାଧୁ ସାଧୁ ମହିମା ତୁ ଅର୍ଜିଲୁ ମାରୁତି
ତୁହି ପୁଣି ଠାବ କଲୁ ଶ୍ରୀରାମଙ୍କ ସତୀ ।
ଶତେଯୋଜନ ସମୁଦ୍ର ତୁ ହେଳେ ତରିଗଲୁ
ଲଜ୍ୟା ସମୁଦ୍ରରୁ ଆମ୍ଭଙ୍କୁ ଉଦ୍ଧାରିଲୁ ।
ଶ୍ରୀରାମଙ୍କର କାର୍ଯ୍ୟ ସାଧନ କଲୁ ଭାଇ
ମାଗ ମାଗ ହନୁ ମୋତେ ଦେବି ମୁଁ ବଧାଇ ।
ଶୁଣି କରି ପବନ କୁମର କହଇ
କି କାରଣେ ମୋତେ ଦେବୁ ତୁ ବଧାଇ ।
ଦଶଗ୍ରୀବକୁ ପ୍ରାଣରେ କଲିକି ମୁଁ ହତ
କିଅବା ଆଣିଦେଲି କି ଜନକ ଦୁହିତ ।
ଲଙ୍କାକୁ ଉପାଡ଼ି କି ଜମ୍ବୁଦ୍ୱୀପକୁ ଆଣିଲି
ଚାରି ରାବଣକୁ କି ଅବା ନାଶ କଲି ।
କେଉଁ କଥା କଲି ମୁହିଁ ମାଗିବି ବଧାଇ
ଶୁଣି କରି ଅଙ୍ଗଦ ବୋଲଇ ଶୁଣ ଭାଇ ।
ରାବଣକୁ ନାଶିଲା ପ୍ରାୟ ଲାଗିଲାକ ମୋତେ
ଯେବେ ତୁ ଏକାକି ମାଇଲୁ ଏତେ ଦୈତ୍ୟେ ।
ଜାନକୀ ଆଣିଲା ପ୍ରାୟ ହୋଇଲା ପ୍ରକାଶ
ଯେବେ ତୁ ସୀତା ତୁଲେ ହୋଇଲୁ ବିଶ୍ୱାସ ।
ଲଙ୍କାଗଡ଼ ଉପାଡ଼ି ଆଣିଲା ପ୍ରାୟ ଲାଗି
ଯେବେ ତୁ ଲଙ୍କାଗଡ଼ ପୋଡ଼ିଦେଲୁ ଫିଙ୍ଗି ।
ଯେବେ ତୁ ଦେବତାଙ୍କ ସଙ୍ଗରେ କଥା ହେଲୁ
ସ୍ୱର୍ଗକୁ ଜିଣିବା ପ୍ରାୟ ମୋ ଚିତ୍ତବୋଧ କଲୁ ।
ଏଥିର ସକାଶେ ପ୍ରସନ୍ନ ମନ ମୋର
ହନୁମନ୍ତ ବୋଲେ ଶୁଣ ବଚନ ମୋହର ।

କଥାଏ ମାଗିବି ନ କରିବୁ ନାହିଁ
ସେ କଥାରେ ମନ ଯେ ମୋହର ପ୍ରବର୍ତ୍ତଇ ।
ଷଡ଼ମାସ ହେଲା ଅଇଲଇଁ ପୁଣ
ସଙ୍ଗ ଛାଡ଼ି ଲଙ୍କାକୁ ଗଲି ମୁଁ ଦୁଃଖେଣ ।
ଲଙ୍କାଗଡ଼ ପୋଡ଼ିଲି ଦୈତ୍ୟ କଲି ନାଶ
ମାଡ଼ ଖାଇବାରେ ବ୍ୟଥା ପାଉଛି ବିଶେଷ ।
ସିନ୍ଧୁଲୁଣ ପାଣି ପିବା ଆସିବା ସୁସ୍ଥ ନାହିଁ
ମିଛ ହେଲେ ଲଙ୍କା ଗଲେ ଦେଖିବୁରେ ଭାଇ ।
କଥାଏ ମାଗିବି ମୋତେ ଦେବୁ କି ବଧାଇ
ରାମନାରୀ ମୋତେ ଯେ ଆଜ୍ଞା ଥିଲେ ଦେଇ ।
ତାଙ୍କ ସନ୍ତୋଷରେ ମୁହିଁ ଭୁଞ୍ଜିଲି ଦିବ୍ୟଫଳ
ତାହାଙ୍କର ଯୋଗୁଁ ଲଙ୍କାଗଡ଼େ ଯଶ ମୋର ।
ତେଣୁ କରି ତୋତେ ମୁହିଁ କହୁଛିରେ ଭାଇ
କିଷ୍କିନ୍ଧ୍ୟା ମଧୁବନକୁ ଦେବୁକି ବଧାଇ ।
ତୁମ୍ଭ ଦେହ ସୁସ୍ଥ ନାହିଁ ଆହାରରେ ଜାଣ
ସୁସ୍ୱାଦୁ ଫଳମାନ କରିବା ଭୋଜନ ।
ଏହିପରି ଆମ୍ଭେ ମୁଖ ଶୁଖାଇଣ ଗଲେ
ରାଜା ଯେ ବୋଲିବ କେଣେ ଲୁଚି ରହିଥିଲେ ।
ହରଷ ଦିଶୁନାହିଁ ବଦନ ଏହାଙ୍କରି
ଶ୍ରୀରାମଙ୍କ କାର୍ଯ୍ୟ ଅବା ନ ପାରିଲେ କରି ।
ଭୁଞ୍ଜି ସୁସ୍ଥହୋଇ ଯେବେ ପ୍ରସନ୍ନରେ ଯିବା
ବାଟରେ ଯାଉ ଯାଉ ପ୍ରଶଂସା ପାଇବା ।
ସୈନ୍ୟବଳ ଦେଖିଣ ବୋଲିବେ କାର୍ଯ୍ୟ କଲେ
ରାଜା ଯେ ସନ୍ତୋଷ ହେବେ ଆମ୍ଭଙ୍କୁ ଭଲେ ।
ଯେବେ ହୋ ଅଙ୍ଗଦ ଅଟୁ ମୋର ଭାଇ
ଦିଅ ଆଜ୍ଞା ମଧୁବନ ଯିବା ବେଗହୋଇ ।
ଅଙ୍ଗଦ ବୋଇଲା ନିଶ୍ଚେ କରିବା ତୋ କଥା
ମନକୁ ଆସିଲା ମୋର ତହିଁକି ନାହିଁ ବ୍ୟଥା ।
ଚାଲ ଯିବା ସମସ୍ତେ ଖାଇବା ସ୍ୱାଦୁଫଳ
ଅନେକ ସହିଥାଇଁ ପେଟର ବିକଳ ।
ଷଡ଼ମାସ ହୋଇଲା ଆମ୍ଭର ସୁସ୍ଥ ନାହିଁ
ପିଣ୍ଡକୁ ତୋଷିବା ଆମ୍ଭେ ଫଳ ମୂଳ ଖାଇ ।
ଆଜକୁ ଆଠଦିନ ହେଲା ଆମ୍ଭ ସଙ୍ଗୁ ଗଲୁ
ସେହି ଦିନଠାରୁ ଆମ୍ଭେ ଉପବାସ କଲୁ ।
ତୋତେ ଦେଖିବାକୁ ଆମ୍ଭେମାନେ ଚିନ୍ତା କରି
ଯଶ ଅର୍ଜି ଆସିଲୁ ତୁ ଆମ୍ଭ ହିତକାରୀ ।
ଏମନ୍ତ ବିଚାରି ଯେ ଉଠିଲେ ଆଠଜଣ
ଏକକୁ ଆରେକ ଯେ ଛଡ଼ା ଛଡ଼ି ଜାଣ ।
କେହୁ ଆଗେ ଧାଇଁ କେ ମଧ୍ୟେ ପଛେ ଯାଇ
ପବନରୁ ବେଗରେ ଗମନ କଲେ ସେହି ।

କିଷ୍କିନ୍ଧ୍ୟା ମଧୁବନରେ ମିଳିଲେ ତ୍ୱରିତ
ବା ଆନେ ଯୁଣ ଛଡ଼ା ସିନ୍ଧୁକୁ ଅଟେ ସେତ ।
ପାଞ୍ଚ ଘଡ଼ିରେ ଅଇଲେ ଏତେ ଦୂର ପଥ
ସମସ୍ତଙ୍କ ମନରେ ହେଲେ ହରଷିତ ।
ତୋଟାର ପାଚେରୀ ଉଠିଲେ ସେ ଯାଇ
ତେଇଁଣ ଫଳମୂଳ ଖାଆନ୍ତି ହର୍ଷହୋଇ ।
ଧନ୍ୟ ସେ ମଧୁବନ ବହଇ ବସନ୍ତ
ମଳୟ ଗନ୍ଧ ଘେନି ଆମୋଦର ଗୀତ ।
ପୁଷ୍ପମାନେ ଭ୍ରମିବାରୁ କ୍ରୀଡ଼ନ୍ତି ଭ୍ରମର
ମନରେ ଉନମତ ହୁଅନ୍ତି କୋକିଳ ।
ସେ ବନରେ ପଶିଲେ ଚିତ୍ତ ହୁଏ ମୋହି
କ୍ଷୁଧା ତୃଷା ନ ବାଧଇ ପୁଲକିତ ହୋଇ ।
କୁଶଭଦ୍ରା ନାମେ ନଦୀ ବହେ ତହୁଁ ଝରେ
ସୁସ୍ୱାଦୁ ଶୀତଳ ଅଟଇ ସେ ନୀର ।
ପୂର୍ବେ କୁଶଧର ଚିରିଲେ କୁଶେ ଗାର
ତେଣୁ ସେ କୁଶଭଦ୍ରା ନାମଟି ତାହାର ।
ସେ ସ୍ଥାନ ଦେଖି ଖଡ଼ଗଦ ରାଜା ତୋଟା କଲା
ବିବିଧ ବର୍ଣ୍ଣରେ ସେ ଲଗା ଲଗାଇଲା ।
ମଧୁଗଙ୍ଗା ବୋଲି ତହିଁ ଏକ ପୁଷ୍କରିଣୀ
ସେ ଜଳ ମଧୁର ଯେ ସୁବାସ ଅଟେ ପୁଣି ।
ସ୍ଫଟିକର ପାବଚ୍ଛ ବସିଛି ଚଉପାଶ
ମଧ୍ୟରେ ଦୀପଦଣ୍ଡି ମାଣିକ୍ୟ ସରସ ।
ଗ୍ରୀଷମ କାଳରେ ରାଜା ସେ ବନରେ ରହି
ବସନ୍ତ ଋତୁ ଲାଗନ୍ତେ ଭୋଗ ବିଳସଇ ।
ବିବିଧ କୁସୁମ ଯେ ରୋପିଛି ସେ ବନେ
ଭ୍ରମର ଲୀଳା କରନ୍ତି ମଧୁରସ ପାନେ ।
ଚମ୍ପା ବକୁଳ ଯେ ପୁଷ୍ପ ଜାତି ଅଟେ
କରୁଣା କେତକୀ ଫୁଲ ମାଳତୀ ବିଜ ଘୋଟେ ।
ତରାଟ କନିଅର ପାଟୁଳୀ ପାଳଧୂଆ
ତୁଳସୀ ସେବତୀ ଲଣ୍ଡାବଗୁଲି ଭାଲିଆ ।
ବିବିଧ ପୁଷ୍ପମାନ ଅଛି ସେ ବନରେ
ଫଳମାନଙ୍କର ନାମ ଶୁଣ ତଦୁତ୍ତାରେ ।
ଜାମ୍ବୁ ଜମ୍ବିଲ ଯେ କରୁଣା ବରକୋଳି
ଫଳଭରେ ବୃକ୍ଷମାନେ ତଳେ ଲୋଟଗାଳି ।
ଆମ୍ବ ପଣସ ସେଥିରେ କେନ୍ଦୁ ଗୁଆକୋଳି
ଜମ୍ବିର ଟଭା ଲେମ୍ବୁ ନାରଙ୍ଗ ତହିଁ ଫଳି ।
ଏ ରୂପେ ସ୍ୱାଦୁଫଳ ଅମୃତ ସଙ୍ଗେ ସରି
ଦେଖିକରି ଆଠବୀର ମନ ତୋଷ କରି ।
ସେ ବନରେ ପ୍ରବେଶି ବୁଲି ଆଠବୀରେ
କ୍ରୀଡ଼ନ୍ତି ଋକ୍ଷକପି ମହା କୁତୂହଳେ ।

ଏକ ଆରେକକରେ ଧରାଧରି ହୋଇ
ଆନନ୍ଦରେ ଫଳ ଖାଇ ନୃତ୍ୟ କଲେ ତହିଁ ।
ପୁଷ୍ପମାନ ତୋଳିଣ ଗୁନ୍ଥି ଲଗାଇଲେ
ଥୋକାଏ ଫୁଲ ସେଥିରୁ ଶିରରେ ଗଭା କଲେ ।
ସବୁଙ୍କରି ହସ୍ତରେ ଫଳ ଡାଳେ ଡାଳେ
ମଧୁପାନେ ଉନ୍ମତ୍ତ ହେଲେ କପିମାନେ ।
କେବଣ ବୃକ୍ଷଶିଳା ଡାଳରୁ ଫଳ ତୋଳି
କେବଣ ତରୁ ଡାଳ ଭାଙ୍ଗନ୍ତି ବେଗ କରି ।
କେବଣ ଡାଳ ଧରି ଓହଳନ୍ତି ତଳ
ପାଚିଲା କଞ୍ଚା ଯେତେ ତୋଳନ୍ତି ସକଳ ।
ଜ୍ଞାନ ହରାଇ କପି ଧାମନ୍ତି ଏଣେ ତେଣେ
ସଭିଏ ଦୋଡ଼ାନ୍ତି ଯେ ଜଣେ ଯାଇ ଜଣେ ।
ଗୋଲଠା ମାଚିର ସେ ଭାଙ୍ଗନ୍ତି ତରୁଲତା
ଫଳମୂଳ ଆହାର କରନ୍ତି ବଳବନ୍ତା ।
ଯହୁଁ ଉପଦ୍ରବ କଲେ ସେ ମଧୁବନେ
ଦେଖିଲେ ସେଠାରେ ଜଗୁଆଳିମାନେ ।
ଦଧିମୁଖ ବୋଲିଣ ରାଜାର ତୋଟାଳିଆ
ଦଶ ସହସ୍ର କପିଙ୍କ ପରେ ସେ ମେଳିଆ ।
ଆପେ ଧାଇଁ ଦେଖିଲା ସେ ଯେ ବନହତ
କୋପଭରେ ବୋଇଲା ଏକଥା କେମନ୍ତ ।
ରାଜା ପୁତ୍ର ଭଣଜା ହୋଇ ପାଚେରୀ ଡେଇଁପଶ
ବୃକ୍ଷ ପୁଷ୍ପମାନ ସବୁ କରୁଅଛ ନାଶ ।
ଏକଥା କେମନ୍ତେ ତୁମ୍ଭଙ୍କୁ ଯୋଗାଇଲା
କେତେ ଯତନେ ଯାକୁ ରାଜା ରୋପିଥିଲା ।
ଅଙ୍ଗଦ ରାଜପୁତ୍ର ସଙ୍ଗରେ ଅଛନ୍ତି
ଆପଣାର ଦ୍ରବ୍ୟ ସେ ଆପେ ଉଜାଡ଼ନ୍ତି ।
ପୁଷ୍ପତରୁ ନାଶ କଲ ମଧୁରସେ ପାନ
ଭୋଳ ହୋଇ ମନରେ ନାହିଁକି ତୁମ୍ଭ ଜ୍ଞାନ ।
ନୂଆ ରାଜା ସୁଗ୍ରୀବର ତାହାଙ୍କୁ ନ ଡର
କେଉଁ ଗରବରେ ତୁମ୍ଭେ ଏଡ଼େ କର୍ମ କର ।
ଆଜ ମୁଁ ତୁମ୍ଭଙ୍କୁ ଧରି ଘେନିଯିବି
ନୃପତିଙ୍କ ଛାମୁରେ ନେଇ ସମର୍ପିବି ।
ଦକ୍ଷିଣକୁ ପରା ପେଶିଥିଲେ ନୃପରାଣ
କେଉଁଠାରେ ଲୁଚି ରହିଥିଲ ଆଠଜଣ ।
ଷଡ଼ମାସ ହେଲା ଥିଲ ତୁମ୍ଭେ କାହିଁ
ଲାଜ ସଂକୋଚ ଯେ ତୁମ୍ଭ ମୁଖେ ନାହିଁ ।
ଅନେକ ଦୂର ଚାଲି ବୁଲିଣ ଅଇଲ
ମଧୁବନରେ ପଶି ଫଳ ଯେ ଖାଇଲ ।
ତାଳପୁଷ୍ପ ଭାଙ୍ଗିଲ କଲ ନାରଖାର
କେଉଁ ଭଲ ପଣ ଯେ ଅଟଇ ତୁମ୍ଭର ।

ଯହୁଁ ସେ ଦଧିମୁଖ କହିଲା ମର୍ମବାଣୀ
କୋପରେ ଆଠବୀର ଉଠିଲେ ତକ୍ଷଣି ।
ନିଳକୁ ବୋଇଲେ ଆଣରେ ତାକୁ ଧରି
ବହୁତ କହୁଛି ସେ ତୁଚ୍ଛାର ଭାଷା କରି ।
ଶୁଣି କରି କୋପରେ ଧାଇଁଲେ ନଳବୀର
ଧରିଣ ପିଙ୍ଗିଦେଲେ ପଥର ଉପର ।
ଦେଖିଣ ଦଧି ମୁଖ ଉଡି ପଳାଇଲା
ଧର୍ମରେ ମହାତମା ଜୀବନ ପାଇଲା ।
ପଥର ନ ବାଜିବାରୁ ଧାଏଁ ବେଗେ ନୀଳ
କ୍ରୋଧେ ଦଧି ମୁଖର ଧଇଲା ସେ ବାଳ ।
ବଣରୁ ବାହାର କରି ତାକୁ ଦେଲା ଛାଡ଼ି
ବୋଇଲା ଏଠାରେ ଥିଲେ ଖାଇବୁ ତୁ ବାଡ଼ି ।
କହ ରାଜା ଦାମ ସୁଗ୍ରୀବଙ୍କୁ ତୁ ଯାଇ
ତୋତେ ମାରିବାର ଉଚିତ ଧର୍ମ ନୁହଇ ।
ଶୁଣିକରି ଦଧି ମୁଖ ଅଙ୍ଗେ ଲୋଜ ଘେନି
ରାଗରେ ରକ୍ତ ବର୍ଣ୍ଣ ତା ନୟନ ଦେନି ।
ମାଲ୍ୟବନ୍ତ ପର୍ବତକୁ ବେଗ ହୋଇଗଲା
ରଜନୀ ମଧ୍ୟରେ ପ୍ରବେଶ ହୋଇଲା ।
ସେଦିନ ରାଜାଙ୍କୁ ସେ ନ କଲା ଦର୍ଶନ
ପର୍ବତର ତଳରେ ରହିଲେ ତାର ସୈନ୍ୟ ।
ସୈନ୍ୟଙ୍କର ସଙ୍ଗରେ ବଞ୍ଚିଲା ସର୍ବରୀ
ରଜନୀ ଶେଷରେ ସେ ନିତ୍ୟକର୍ମ କରି ।
ସୈନ୍ୟ ସଙ୍ଗେ ଘେନିଣ ପ୍ରବେଶ ରାଜକତି
ସନ୍ଧ୍ୟା କରୁଅଛି ଯେ କିଷ୍କିନ୍ଧ୍ୟା ନୃପତି ।
ପାଦେ ପଡ଼ି ଶୋଇଣ ମଥାରେ ହସ୍ତେ ଦେଲା
ଉଠିଣ ଉଭା ଦଶ ପଛକୁ ଘୁଞ୍ଚିଲା ।
ପୁଣି କର ଯୋଡ଼ିଣ ଆଗରେ ଉଭା ହୋଇ
ଶୁଣ ଦେବ କିଷ୍କିନ୍ଧ୍ୟା ଠାକୁର ନୃପସାଇଁ ।
ଦକ୍ଷିଣକୁ ଯାଇଥିଲେ ଯେଉଁ ଅଷ୍ଟବୀର
ମଧୁବନକୁ ସେହି ଭାଙ୍ଗି କଲେ ଚୂର ।
ପୁଷ୍ପ ତୋଳି ବନରୁ ଖାଇଲେ ସବୁ ଫଳ
ମଧୁବନକୁ ସେହି ଭାଙ୍ଗି କଲେ ଚୂର ।
ଫଳିଲା ଫୁଟିଲା ବୃକ୍ଷନ୍ତ ତୋଳି ଖାଇ
ରୁହାଇ ଚଲାରୁ ମୁଁ ନିକେ ମୋତେ ମାରଇ ।
ବୋଇଲା ତୋ ରଜା ବୋପାକୁ କହ ଯାଇ
ତାହାଙ୍କର ହୃଦରେ ଉପ୍ରୋଧ ଟିକେ ନାହିଁ ।
ନିଳ ସେନାପତି ମୋତେ ମାଇଲା ପଥର
ପଥର ନ ବାଜିବାରୁ କଲାକ ବିଚାର ।
ତୋଟାରୁ ବାହାର କରି ମୋତେ ଛାଡ଼ିଦେଲେ
ଏଥିରେ ରହିଲେ ତୋତେ ମାରିବୁ ବୋଇଲେ ।

ସେଠାରୁ ଅଭିମାନ ପାଇ ମୁଁ ଅଇଲି
ତୁମ୍ଭେ ମୋର ପ୍ରଭୁ ବୋଲି ଆସି ଜଣାଇଲି ।
ଜଗିବାକୁ ତୁମ୍ଭେ ଆଜ୍ଞା ଦେଇଛ ନୃପତି
ସେ ମୋତେ ମାରିବାର ଅଟେ କି ଯୁକତି ।
ନୋହିଲେ ତୋଟା ମୁଁ ରଖିବି କେମନ୍ତେ
ଏକଥା ସତ କି ମିଛ ବୁଝ କପିନାଥେ ।
ସେମାନଙ୍କୁ ଡକାଇ ଆଣ ତୁମ୍ଭ ପାଶ
ବିଚାର କରି କହ କାହାର ଏ ଦୋଷ ।
ଶୁଣିଣ ସୁଗ୍ରୀବର ସନ୍ତୋଷ ହୋଇଲା
ଶ୍ରୀରାମଙ୍କର କାର୍ଯ୍ୟ କଲେ ବିଚାରିଲା ।
ଦଧି ମୁଖ ତୋଟାଳିଆକୁ କରି ଗଉରବ
ବସ୍ତ୍ର ଅଳଙ୍କାର ଧନ ଦେଲେ ବହୁ ଭୋଗ ।
ବୋଇଲେ ସତେ କିରେ ଦେଖିଲୁ ଅଙ୍ଗଦକୁ
ହନୁମନ୍ତ ସଙ୍ଗରେ ସପତ ବୀରଙ୍କୁ ।
ଅଙ୍ଗଦ କୁମର ଅଟଇ ଯୁବରାଜ
ହନୁମନ୍ତ ଭଣଜା ଅଟଇ ତୁରେ ହେଜ ।
ନଳ ମୋର ନାତିରେ ଭଉଣୀ ଲେଖାରେ
ନିଳ ମୋର ଶଳା ଅଟେ ଜାଣିଅଛୁ ତୁରେ ।
ଜମ୍ବେବ ମଉଳା ଯେ ଅଟନ୍ତି ମୋହର
ତାରାକ୍ଷ ଅଟଇ ଯେ ତାରାର ସୋଦର ।
ବସନ୍ତ ଅଟଇ ଯେ ନିଳର ଶଳା ଜାଣ
ସମସ୍ତେ ଆପଣା ଭିନ୍ନ କେ ନାହିଁ ପୁଣ ।
ଅଇଲେ ଶୁଭ ହେଲାକଥା ସେ ମୋହର
ଶ୍ରୀରାମ କାର୍ଯ୍ୟ ନିଷ୍ଟେ କଲେ ସେ ନିକର ।
ତେଣୁ ସେ ମଧୁବନ ତୋଟାରେ ପଶିଲେ
ଫଳମୂଳ ଭୁଞ୍ଜିଲେ ତୋତେ ନ ମାନିଲେ ।
ମଧୁବନେ ପଶିଣ ହୋଇଛନ୍ତି ମତ୍ତ
ତେଣୁ ସବୁ ଚିନ୍ତା କଲା କାର୍ଯ୍ୟଟି ସିଦ୍ଧ ତ ।
ଏତେ କହି ସୁଗ୍ରୀବର ସେଠାରୁ ଚଳିଗଲା
ଦଧି ମୁଖ ତୋଟାଳିଆକୁ ସେଠାରେ ରହିଲା ।
ନିଜସ୍ଥାନେ ସୁଗ୍ରୀବର ହେଲା ପରବେଶ
ଦେବାର୍ଚ୍ଚନ ନିତି ସେ ସାରିଲା ହରଷ ।
ଶୁଣିଣ ପାର୍ବତୀ ବୋଲନ୍ତି ବଚନ
ଅଙ୍ଗଦର ମାତା ଯେ ତାର ଅଟେ ପୁଣ ।
ପୁତ୍ର ଆସିବାର ଜାଣିଲାଟିକି ରାଣୀ
ପୁତ୍ରର ନିମନ୍ତେ ସେ କରୁଥିଲା ଭାଳେଣୀ ।
ଶୁଣ ଗୋ ଭଗବତୀ କହନ୍ତି ଦେବ ଭୋଳା
ଷଡ଼ମାସ ହେଲା ଅଙ୍ଗଦ ସୀତା ଖୋଜିଲା ।
ତେଣୁ ସେ ତାରାର ମନରେ ଚିନ୍ତା ହେଲା
କେଣେ ଗଲା କୁମର ବୋଲିଣ ଭାଳିଲା ।

ବୋଇଲା ପିତା ନାଶ ଗଲା ଅକାରଣେ
ପିତାକୁ ସୁମରି ପୁତ୍ର ମଲା ଯାଇ ତେଣେ ।
ନୋହିଲେ ବିଚାରିଲା ମାତାକୁ କକା ନେଲା
ସେକଥା ଦୁର୍ଗୁଣେ ବା ପୁତ୍ର ନାଶ ଗଲା ।
ଏମନ୍ତ ବିଚାରି ଭାଳେ ତାରା ମହାସ୍ୱତୀ
ଷଡ଼ମାସ ଏହିପରି ଗଲାକ ଯେ ବିତି ।
ଅଙ୍ଗଦ ଆସି ମଧୁବନରେ ପଶିଲା
ଦଧି ମୁଖକୁ ସେ ନିଓପ୍ରୋଧ କଲା ।
ସେଠାରୁ ଦଧି ମୁଖ ସୁଗ୍ରୀବ ପାଶେ ଗଲା
ଦଧି ମୁଖ ଘରଣୀ ସତ୍ୱରେ ଚଳିଗଲା ।
ତାରାର ପାଶରେ ପ୍ରବେଶ ହେଲା ଯାଇ
ବୋଇଲା ତୁମ୍ଭ ପୁତ୍ର ଅଇଲେ ମହାଦେଈ ।
ସଙ୍ଗରେ ସାତଜଣ ଘେନି ତୋ କୁମର
ମଧୁବନରେ ପଶି ଫଳ କଲେ ଜୁର ।
ମୋର ସ୍ୱାମୀ କହିବାରୁ ମାଇଲେ ତାକୁ ଧରି
ତୋଟାରୁ ବାହାର କରିଦେଲେ ଗୋ ସୁନ୍ଦରୀ ।
ଶୁଣିଣ ତାରା ସ୍ୱତୀ ହରଷ ମନ ହେଲା
ଧନ ବସ୍ତ୍ର ଅଳଙ୍କାର ସେ ନାରୀକି ଦେଲା ।
ବୋଇଲା ବାଳୁତ ମୋ କୁମର ଅଟଇ
ତାରଠାରେ ଅସନ୍ତୁଷ୍ଟ ନ ହୁଅ ଗୋ ତୁହି ।
ଏତେ କହି ତାରା ସତୀ ପୁଲକେ ଶରୀର
ବୋଇଲା ରାମ କାର୍ଯ୍ୟ ହୋଇଲା ସଫଳ ।
ଶୁଣ ଗୋ ଭଗବତୀ ଏଥୁ ଅନନ୍ତରେ
ଦଧି ମୁଖ କହିଲା ସୁଗ୍ରୀବ ଆଗରେ ।
ଶୁଣି କରି ସୁଗ୍ରୀବର ରାଜା ବେଶ ହେଲା
ଶିରେ ପାଗ ବାନ୍ଧିଣ ହରଷ ହୋଇଲା ।
ଝଟ ଝଟ ମୁକୁଟ କର୍ଣ୍ଣରେ କୁଣ୍ଡଳ
ଚନ୍ଦ୍ରର ମଣ୍ଡଳ ପ୍ରାୟ ଦିଶେ କର୍ଣ୍ଣମୂଳ ।
ବିଦ ମୁଦି ବାହୁଟି ନାନା ରତ୍ନେ ସାଜେ
ଚରଣରେ ପାହୁଡ଼ି ଲଗାଇଲା ଖଞ୍ଜେ ।
ସଙ୍ଗରେ ସୈନ୍ୟବଳ ଅଛନ୍ତି ଅପାର
ସୁବର୍ଣ୍ଣ ବୃଷ୍ଟି କରି ବାହାରେ ସୁଗ୍ରୀବର ।
ଆଗରେ ବୀର ତୁର ବାଜଇ ବାଜଣା
ଆନନ୍ଦରେ ଚଳିଯାଏ କପିକୁଳ ରଣା ।
ଦେଖିଲା ବସି ଅଛନ୍ତି ରଘୁ କୁଳ ସାଇଁ
ଉଭା ହେଲା ଆଗରେ ମସ୍ତକେ କର ଦେଇ ।
ଦେଖିଣ ଶ୍ରୀରାମ ଆଗେ ଲକ୍ଷ୍ମଣ ଯୋଡ଼େ କର
ଥୋକାଏକ ଦୂରେ ଅଛି ତାରାର ପିଅର ।
ଉତ୍ତର ପାରୁଶରେ ଉଭା ଶତବାଳି
ଶଉରୀ ସେନାପତି ଚାମର ଧରି ଢାଳି ।

ଡାଳିମ୍ବ ଧୂମ୍ରାକ୍ଷ ଲକ୍ଷ୍ମଣ ପାଶେ ଛନ୍ତି
ମହିନ୍ଦ୍ର ଦ୍ବିବିନ୍ଦ ଯେ ଚନ୍ଦନ ଲେପନ୍ତି ।
ନିତ୍ୟକର୍ମ ସାରିଣ ବିଜୟେ ଦାଶରଥି
ଆଗରେ ପଡ଼ିଅଛି ଚନ୍ଦ୍ରମା ଭାରତୀ ।
ମର୍କତ ଶିଳାପରେ କରିଛନ୍ତି ବିଜେ
ସୈନ୍ୟଙ୍କ ଗହଳ ଯେହ୍ନେ ଆଷାଢ଼ ମେଘଗର୍ଜେ ।
ଛାମୁରେ ଋକ୍ଷ ବାନର ଅଛନ୍ତି ପଟୁଆରି
ଏକୁ ଆରେକ ପଟୁଆର କରିଛନ୍ତି ଭାରି ।
କେ ବୋଲନ୍ତି ଦୂତ ଛ'ମାସ ହେଲା ଗଲେ
ବାରତା ନ ମିଳିଲା କେବଣ କୃତ୍ୟ କଲେ ।
କେ ବୋଲେ ବନସ୍ତରେ ର୍ବା ମଲେ ବଣାହୋଇ
କେ ବେଲେ ଆଜଯାଏଁ ରହିଛନ୍ତି କାହିଁ ।
କେ ବୋଲନ୍ତି ଖୋଜି ଖୋଜି ସେ ନ ପାଇଲେ
କେ ବୋଲନ୍ତି ବର୍ତ୍ତି ନାହାନ୍ତି ସେ ଭଲେ ।
କଷ୍ଟକରି ଗଲା ଲୋକ ଅଇଲେ ବେଳଜାଣି
ସେ ଅବା ବୁଡ଼ିମଲେ ଲବଣ ସିନ୍ଧୁ ପାଣି ।
ଲୋକଙ୍କ ଭାଳେଣି ଶ୍ରୀରାମ ବିଚାରନ୍ତି
ସେନା ସେନାପତି ଯୂଥପତିଙ୍କି ପଚାରନ୍ତି ।
କି ଅବା ବାରତା ପାଇଛକି କେହି
ଷଡ଼ମାସ ହେଲା ମୋର ଦୂତ ଗଲେ କାହିଁ ।
ମାସକୁ କଣ୍ଟ କଲେ କହିବୁଁ ବାରତା
ଥିବା ନ ଥିବାର ନ ଜାଣେ ତଥ୍ୟ କଥା ।
ସବୁଙ୍କର ମୃତ୍ୟୁ କି ହେଲା ଏକାବେଳେ
ଜଣେ ହେଁ ସମସ୍ୟା ନ ଦେଲେ ଏତେ କାଳେ ।
କି ବୁଦ୍ଧି କରିବା ଜାଣିବା କେମନ୍ତ
କେବଣ ଦିଗେ ଗଲେ ମୋହର ଆଠଦୂତ ।
ଏମନ୍ତ ସମୟରେ ସୁଗ୍ରୀବର ରାୟେ
ଶ୍ରୀରାମଙ୍କ ଚରଣେ ଗଡ଼ଘାଲି ଶୁଏ ।
ତକ୍ଷଣେ ଉଠିଣ ଶିରେ କର ଦେଲା
ଭଡ଼ା ଦଶ ଯାଇଣ ଓଳଗ ହୋଇଲା ।
ପୁଣି ଉଭା ହୋଇଣ ଯୋଡ଼ି ବେନିକର
ହସ ହସ ହୋଇଣ କହଇ ସେ ଗୀର ।
ଅଙ୍ଗଦର ସଙ୍ଗରେ ଅଷ୍ଟସେନା ଗଲେ
ସେ ତୋହର ଘରଣୀ ସୀତାଙ୍କୁ ଠାବ କଲେ ।
ହନୁମନ୍ତ କାର୍ଯ୍ୟ କଲାକ ଗୋସାଇଁ
ଏହିକ୍ଷଣି କହିଲେ ଲୋକ ଆସି ଧାଇଁ ।
କିଷ୍କିନ୍ଧ୍ୟା ନଗର ଯେ ତୋଟା ମଧୁବନ
ସେ ବନରେ ପଶି ଫଳ କଲେକ ଭୋଜନ ।
ରକ୍ଷା ଲୋକଙ୍କୁ ମାରି ବୃକ୍ଷାନ୍ତ ଭାଙ୍ଗିଲେ
ଯାଇ ତୋ ବାପ ସୁଗ୍ରୀବକୁ କହରେ ବୋଇଲେ ।
ଏକଥା ଶୁଣିଣ ମୁଁ ବିଚାର କଲି ମନ
ନୋହିଲେ କେମନ୍ତେ ସେ ପଶନ୍ତେ ମଧୁବନ ।
ଏଣୁ କରି ସମ୍ପ୍ରତେ କଲି ଦେବ ମୁହିଁ
ଶକୁନ ବିଚାରିଣ ଛାମୁରେ କହିଲଇଁ ।
ଶୁଣି କରି ଶ୍ରୀରାମ ହୋଇଲେ ସନ୍ତୋଷ
ସୁଗ୍ରୀବରକୁ ବୋଇଲେ ପାଶକୁ ମୋର ଆସ ।
ଲକ୍ଷ୍ମଣର ମୁଖକୁ ଅନାଇଁ ରାମରାଣ
ବୋଇଲେ ତୋ କଥା ହେବକି ପ୍ରମାଣ ।
ସୁଗ୍ରୀବରକୁ ବୋଇଲେ ଅଇଲା ଯେବେ ପୁତ୍ର
ନିଶ୍ଚୟ ଜାଣିଲି କାର୍ଯ୍ୟ କଲା ହନୁମନ୍ତ ।
ଯେବେ ସେ ମଧୁବନ ଭାଙ୍ଗିଲେ ଆସିଣ
ଜାନକୀର ବାରତା ପାଇଛନ୍ତି ଜାଣ ।
ଏତେ କହି ରାମ ସୁଗ୍ରୀବକୁ କୋଳ କଲେ
ସତେ କି ମୋ କାର୍ଯ୍ୟ ମାରୁତି କଲା ଭଲେ ।
ଏକଥା ଶୁଣିବାରୁ ଲାଗିଲା ସେଥିଗୋଳ
କି ଜାଣି ମେଦିନୀ ଘୋଟିଲା ମେଘମାଳ ।
ହନୁମନ୍ତକୁ ଆଗ କରି ଅଇଲେ ଅଷ୍ଟସେନା
ଆସନ୍ତେ ବନଗିରି ହେଉଅଛି ଚୂନା ।
ସୈନ୍ୟବଳ ଆନନ୍ଦ ହେଲେ ତାଙ୍କୁ ଦେଖି
ବୋଲନ୍ତି ଦେଖିଲେ ଏ ଶ୍ରୀରାମର ସଖୀ ।
କେ ବୋଲଇ ଆସ ହେ ବାରତା ଶୁଣିବା
ଦୂତମାନେ ଅଇଲେ ଯେ ଏକଥା ଜାଣିବା ।
ଏମନ୍ତ ବିଚାରି ଋକ୍ଷ ମର୍କଟ ସଇନି
ଧାମନ୍ତେ ଛାଇ ଯେ ହୋଇଲା ମେଦିନୀ ।
ଧୂଳି ଉଡ଼ିବାରେ ନ ଦିଶେ ଦିଗ ପୁଣ
କୁରୁକି ଶବଦ ଯେ କରନ୍ତି ସର୍ବେ ଜାଣ ।
ପର୍ବତ ଶିଖକୁ ଉଠିଲେ ସୈନ୍ୟବଳ
ବନ ଜୀବମାନେ ଯେ ଭୟରେ ବିକଳ ।
ସୁଗ୍ରୀବରକୁ ଚାହିଁଣ ବୋଲନ୍ତି ରଘୁନାଥ
ସୈନ୍ୟଙ୍କର ଚହଳ ତ ଶୁଭେ ଅପ୍ରମିତ ।
କିମ୍ପାଇଁ ମର୍କଟ ଭାଲୁ ଆସୁଛନ୍ତି ଧାଇଁ
ସୁଗ୍ରୀବର ବୋଇଲେ ଶୁଣିବା ଗୋସାଇଁ ।
ଦକ୍ଷିଣ ଦିଗ ଦୂତ ମଧୁବନେ ରହିଥିଲେ
ମୁହିଁ ଜାଣୁଅଛି ସେ ଅବା ଅଇଲେ ।
ଆନନ୍ଦରେ ସଇନ ଗୋଡ଼ାଇ ଆସନ୍ତି
ଶୁଣିଣ ରଘୁନାଥ ମନରେ ହେଲେ ଶାନ୍ତି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଅଷ୍ଟସେନା ମିଳିଲେ ଶ୍ରୀରାମଙ୍କ କତି ।
ଦୂରରୁ ଅଷ୍ଟବୀର ଶୋଇଲେ ପାଏ ପଡ଼ି
ଦେଖୁ ଦେଖୁ ଶ୍ରୀରାମ ଉଠ ଉଠ ବୋଲି ।

ଆଜ୍ଞା ପାଇଣ ଯେ ଉଠିଲେ ଆଠବୀର
ଶିରେ କର ଦେଇଣ ଚାଲନ୍ତି ଧୀର ଧୀର ।
ସବୁଙ୍କରି ମୁଖ ଯେ ବସନ୍ତ ପୁଷ୍ପ ପ୍ରାୟ
ଆସ ଆସ ବୋଲିଣ ଡାକନ୍ତି ରାମରାୟ ।
ନିକଟକୁ ଯାଇଣ କରନ୍ତି ନମସ୍କାର
ଉଠିଣ ହସ୍ତ ଧରି ବସାନ୍ତି ରଘୁବୀର ।
ହନୁମନ୍ତକୁ ଚାହିଁ ବୋଲନ୍ତି ଦାଶରଥି
ତୁହି ପରା ଠାବ କରି ଅଇଲୁ ମୋ ସତୀ ।
ବେଗ କରିଣ କହ ନ କରି ଗୁପତ
କରଯୋଡ଼ି ବାରତା କହଇ ହନୁମନ୍ତ ।
ଦେଖିଲି ଭୋ ଦେବ ଜନକ ଦୁହିତା
ଲଙ୍କାଗଡ଼ ଭିତରେ ଅଛନ୍ତି ତୁମ୍ଭ ସତୀ ।
ତୁମ୍ଭରି ନାମ ଧରି ରଖିଛନ୍ତି ପ୍ରାଣ
ଶୁଣିକରି ସନ୍ତୋଷ ହେଲେ ରଘୁରାଣ ।
ଅପୁତ୍ରିକ ନାରୀକି ଜି ପୁତ୍ର ପରାପତ
ଅନ୍ଧକୁ ଚକ୍ଷୁଦାନ ମିଳଇ ଯେମନ୍ତ ।
ନିର୍ଦ୍ଧନୀ ଲୋକକୁ ଯେମନ୍ତେ ପ୍ରାପ୍ତି ଧନ
ସୀତାଙ୍କ ବାରତା ଶୁଣି ଶ୍ରୀରାମ ତେସନ ।
ଆନନ୍ଦେ ନୟନରୁ ବହେ ଅଶ୍ରୁଜଳ
ହରଷରେ ଗଦ ଗଦ ଦଶରଥ ବାଳ ।
ତୁହି ସେ ହନୁମନ୍ତ ମୋର ହିତକାରୀ
ଯେଉଁଦିନୁ ଯାଇଥିଲା ଜନକ କୁମାରୀ ।
ତାର ବିହୁନେ ମୁଁ ଅନଳେ ଜଳୁଥିଲି
ଶାନ୍ତିଜଳ ତୁ ଯେ ଦେବାରୁ ଶାନ୍ତ ହେଲି ।
ଲକ୍ଷ୍ମଣଠୁ ଅଧିକ ସୋହର ଗୁଣ କଲୁ
ଶତେ ଯୁଣ ସମୁଦ୍ର ତୁ କେମନ୍ତେ ତରିଲୁ ।
ହନୁମନ୍ତ କହଇ ଯୋଡ଼ିଣ ଦେନି କର
କିସ ଦୁର୍ଗମ କଥା ଅଟେ ରଘୁବୀର ।
ଯାର ନାମ ଧରି ମୁନି ଭବ ସିନ୍ଧୁ ତରି
ତୋହର ମୁଦିକ୍ରା ମୁହିଁ ଅଣ୍ଟାରେ ଥିଲି ଭରି ।
ନାରାୟଣ ଆଗରେ କମଳା ନାମ ଧରି
ଅବହେଳେ ସମୁଦ୍ର ଲଙ୍ଘିଲି ଚାପଧାରୀ ।
ସୀତାଙ୍କୁ ଦେଖିଲି ସେ ଅଶୋକ ବନେ ଛନ୍ତି
ଚିନ୍ତାଭରେ ମନରେ ବଡ଼ ଦୁଃଖୀ ସତୀ ।
ଶ୍ରୀରାମଚନ୍ଦ୍ର କହନ୍ତି କହରେ ପାବନି
କେମନ୍ତେ ଦେହ ଧରି ଅଛି ମୋ କାମିନୀ ।
ଆଉ କଥାମାନ ତୁ ପଛ କରି କହ
ସୀତା କଥା କହି ଶାନ୍ତି କର ମୋର ଦେହ ।
ଆନ ବଚନରେ ନାହିଁ ମୋର କିଛି
ସୀତା ଅଟେ ଚନ୍ଦ୍ରମୁଖୀ ଚକୋର ପକ୍ଷୀ ।

ସେ ଯେହ୍ନେ ଜଳ ଅନ୍ନ ନ କରେ ଆହାର
ସୀତାର ବାଣୀ ମୋତେ ଅମୃତ ସୁଧାଧାର ।
କରଯୋଡ଼ି କହଇ ପାବନର ସୁତ
ଶୁଣ ଦେବ ଶ୍ରୀରାମଚନ୍ଦ୍ର ଅଯୋଧ୍ୟାର ନାଥ ।
ଅଙ୍ଗଦ ସଙ୍ଗରେ ଆମ୍ଭେ ଗଲୁଁ ସାତଜଣ
ଆଶ୍ୱିନ ଶୁକ୍ଳପକ୍ଷ ଦଶମୀ ସେଦିନ ।
ଶୁକ୍ରଙ୍କର ବେଳରେ ପ୍ରସ୍ଥାନ ଯେ କଲୁ
ବନଗିରି କନ୍ଦର ଅନେକ ବୁଲିଲୁ ।
ଏକ ଅସୁର ଆସିଣ ବାଟ ଓଗାଳିଲା
ତାକୁ ମାରିବାରେ ଦେହେ ତା ପିଣ୍ଡଧୂଳି ହେଲା ।
ସେଠାରେ ଦାନବକୁ ମାରି ଆମ୍ଭେ ନାଶ
ଚତୁର୍ଦ୍ଦଶ ଯୋଜନ ବୁଲିଲୁ ନରାଶ ।
ଉତ୍ତମ ଜଳ ଦେଖି ସେଠାରେ ସ୍ନାନ କଲୁଁ
ବନଗିରି କନ୍ଦର ଅନେକ ବୁଲିଲୁ ।
ଦେଖିଲୁ ପାତାଳକୁ ଏକଇ ବିବର
ସେଥିରେ ପଶି ଆମ୍ଭେ ଦେଖିଲୁ ସେ ପୁର ।
ବିଚାରିଲୁ ଗୁପତ ସ୍ଥାନ ଗୋଟି ଏହି
ଏଥି ବା ରାବଣ ସୀତାଙ୍କୁ ଥିବ ଥୋଇ ।
ଏମନ୍ତ ବିଚାରି ମନରେ ଭ୍ରାନ୍ତି କଲୁ
ହସ୍ତ ଧରାଧରି ହୋଇ ଅନ୍ଧାର ପଥେ ଗଲୁ ।
ମନରେ ଭୟ ନିବାରି ସେ ସ୍ଥାନେ ମିଳିଲୁଁ
ସମସ୍ତ ସ୍ଥାନ ବୁଲି କରିଣ ଖୋଜିଲୁ ।
ସେଥିରେ ଦେଖିଲୁ ଦେବ ସତୀ ତୋର ନାହିଁ
ଲୁଚିଣ ଦେଖିଲୁ ସେ ସକଳ ସ୍ଥାନ ତହିଁ ।
ନର ବାନର ସେ ପୁରେ ନାହାନ୍ତି ଦେବ କହି
କୋଟିଏ ରବି ଯେ ସେ ପୁରେ ବିରାଜଇ ।
ସେ ପୁରେ ଖଣ୍ଡେ ଦୂର ବୁଲିଲୁଁ ରଘୁବଂଶି
ବୈଦୁର୍ଯ୍ୟ ମଣ୍ଡପରେ ସ୍ତିରୀଏ ବସିଅଛି ।
ସର୍ବଗୁଣେ ସୁନ୍ଦରୀ ରୂପରେ ଗଉରୀ
ତିନି ଭୁବନରେ ତାକୁ କେହି ନାହିଁ ସରି ।
ତାହାକୁ ପଚାରିଲୁଁ କେବଣ ଏ ପୁର
ସେ କହିଲା ଏହା ନାମ ଅଟେ ଜ୍ୟୋତିପୁର ।
ଏଥିରେ ବିଜୟେ ଆଗେ କଲେ ତ୍ରିପୁରାରି
ହରଷେ ପାର୍ବତୀଙ୍କୁ ସଙ୍ଗରେ ଘେନି କରି ।
ଆମ୍ଭେ ବୋଇଲୁ ତାଙ୍କର କପିଳାସେ ସ୍ଥାନ
ସେ କିମ୍ପା ଏ ସ୍ଥାନରେ କରନ୍ତି ବିଶ୍ରାମ ।
ସେ ନାରୀ ବୋଇଲା ପାତାଳ ଭ୍ରମଣରେ
ଏ ସ୍ଥାନରେ ବିଜୟ କରନ୍ତି ନିଶ୍ଚଳରେ ।
ଗଣ୍ଡାଏ ଯୁଗାଏ ଏ ପୁରେ ରହନ୍ତି
ପୁଣି ସପତପୁର ତ୍ରିଲୋଚନ ଭ୍ରମନ୍ତି ।

ଇଚ୍ଛା ହେଲେ ଏ ପୁରେ କରନ୍ତି ବିଶ୍ରାମ
ଆମ୍ଭେ ପଚାରିଲୁଁ ତୁମ୍ଭର କିସ ନାମ ।
ଶୁଣି କରି ସୁନ୍ଦରୀ ହୋଇଲା ହସ ହସ
ଆନନ୍ଦିତ ମନ ହୋଇ କହିଲାକ ଭାଷ ।
ବୋଇଲା ମୋର ନାମ ଅଟଇ ଧୀରାମତି
ଜ୍ୟେଷ୍ଠ ଭଗିନୀ ନାମ ଅଟଇ ବେଦମତି ।
ଆମ୍ଭେ ଦୁଇ ଭଉଣୀ ମେରୁର ଦୁହିତା
ସେହୁ ଅଟଇ ନାରାୟଣଙ୍କ ବନିତା ।
ମୁଁ ଅଟଇ ଗୋଲକ ବୃଷ୍ଟ ପ୍ରିୟବତୀ
ରାଧା ଅଂଶରେ ମୁହିଁ ହୋଇଛି ଉତ୍ପତ୍ତି ।
ଆମ୍ଭେ ବୋଇଲୁଁ ତୁମ୍ଭେ କିମ୍ପାଇଁ ଜନ୍ମ ହେଲ
ନାରାୟଣ ବନିତା ହୋଇ ଲୁଚିଣ ରହିଲ ।
ସେ ବୋଇଲା ଦୁଷ୍ଟ ଯେ ପ୍ରବଳ ହେବାରୁ
ଦେବତାଏ କହିଲେ କୃଷ୍ଣଙ୍କୁ ସେଠାରୁ ।
ଦେବତାଙ୍କ ଅଂଶରେ ଶ୍ରୀକୃଷ୍ଣ ଅଂଶ ଗଲା
ଯମଦଗ୍ନି ଋଷିଙ୍କ କୋଳରେ ଜନ୍ମ ହେଲା ।
ପର୍ଶୁରାମ ନାମ ଯେ ହୋଇଲା ତାହାଙ୍କର
ସପ୍ତପୁର ଦୁଷ୍ଟଙ୍କୁ କଲେ ସେ ନିବାର ।
ତାଙ୍କୁ ବିଭା ହେବାକୁ ରାଧାଅଂଶେ ଆସି
ମେରୁ ଘରଣୀ ଗର୍ଭରେ ଜନମ ହେଲେଟି ।
ସେ ମେରୁ ରାଜା ଆଣି ଏଠାରେ ରଖିଗଲା
ତପ କରି ନିଜ ଅଙ୍ଗ ଲଭିଲେ ବୋଇଲା ।
ଆମ୍ଭେ ବୋଇଲୁଁ ପର୍ଶୁରାମ ଯେବେ ଅଟନ୍ତି ସ୍ୱାମୀ
ତାଙ୍କୁ ନ ବରି କିମ୍ପା ହୋଇବୁଁ ଗୁପ୍ତଗାମୀ ।
ସେ ବୋଇଲେ ସ୍ୱୟଂ ନାରାୟଣ ରାମ
ଅସୁରଙ୍କୁ ମାରିବାକୁ ହେବେ ସେହି ଜନ୍ମ ।
ଜ୍ୟେଷ୍ଠ ବେଦମତୀଙ୍କୁ ବିଭା ସେ ହୋଇବେ
ତାର ଦିଗବିଜେ ବେଳେ ସ୍ୱାମୀଙ୍କୁ ଭେଟାଇବେ ।
ତେବେ ମୁଁ ଲଭିବି ସ୍ୱାମୀର ନିଜ ଅଂଶ
ଏବେ ବୋଲି ସ୍ୱତୀ ବହିଲେ ଅନୁରାଗ ।
ଆମ୍ଭେ ବୋଇଲୁଁ କେଣିକି ସେ ଗଲା
ସେ ବୋଇଲା ଜନକ ଘରେ ଜନ୍ମ ହେଲା ।
ନାରାୟଣ ଜାତ ହେଲେ ଦଶରଥ ଘରେ
ତେଣୁ ସେ ଜନ୍ମ ଲଭିଲେ କମଳା ଅଂଶରେ ।
ଅଯୋନି ରୂପେ ଜାତ ହୋଇଲେ ଧରଣୀ
ଅଳପ ଦିନରେ ଲଭିଲା ସେ ପୁଣି ।
ସ୍ୱାମୀଙ୍କ ସଙ୍ଗରେ ବନକୁ ସେ ଗଲେ
ଅସୁର ମାରିବାକୁ ଲଙ୍କାକୁ ଚଳିଲେ ।
ଏ ପୁରେ ନାହିଁ ସତୀ ଲଙ୍କାରେ ଅଛି ଜାଣ
ବିମ୍ୱାର ଦ୍ୱାରବାଟେ ବାହାର ହେଲୁଁ ପୁଣ ।

ଚନ୍ଦ୍ରଭାଗା ତୀର୍ଥଠାରୁ ବିନ୍ଧ୍ୟଗିରି ଯାଏ
ବନଗିରି କନ୍ଦର ଖୋଜିଲୁଁ ଆଳୟେ ।
କେଉଁଠାରେ ତୁମ୍ଭର ନାରୀଙ୍କୁ ନ ଦେଖିଲୁଁ
ଚକିତ ହୋଇଣ ଆମ୍ଭେ ସିନ୍ଧୁ କୂଳକୁ ଗଲୁଁ ।
ଏକଥା ଶୁଣି ଶ୍ରୀରାମ ପରମ ତୋଷ ହେଲେ
ପର୍ଶୁରାମ ଭେଟ ନାହିଁ ଧୀରାବତୀର ତୁଲେ ।
ଲଙ୍କାରୁ ଫେରିବାବେଳେ ତାଙ୍କୁ ହେବା ଭେଟ
ମୋର କଥା ଶୁଣି ସତୀ ହେବଣି ଉଚ୍ଚାଟ ।
ସେଠାରୁ କିସ କଲ କହ ହେ ମାରୁତି
ସେ କଥା ମୋର ଆଗେ କହ ତୁ ଝଟତି ।
ରାମଙ୍କ ବଚନ ଶୁଣି କହେ ହନୁମନ୍ତ
ଶୁଣ ହେ ରଘୁନାଥ ତଦନ୍ତେ ଚରିତ ।
ଆଠଜଣ ଯାଇ ସିନ୍ଧୁକୂଳରେ ରହିଲୁଁ
ସମ୍ପାତି ପର୍ବତକୁ ସେଠାରେ ଦେଖିଲୁ ।
ଦିନ ଲେଖା କହି ମରିବା ମନେ କଲୁ
ତୁମ୍ଭର ନାମ ଗୋଟି ହୃଦେ ବିଚାରିଲୁ ।
ଆନ ପରିତ୍ରାଣ ମନରେ ନ ରଖିଲୁଁ
କିପରି ଫେରିଯିବା ମନରେ ଚିନ୍ତା କଲୁଁ ।
ସମ୍ପାତିର ନାମେ ଯେ ଗରୁଡ଼ର ସୁତ
ଜଟାୟୁଷ ମହାତମା ଅଟେ ତାର ଭ୍ରାତ ।
ବେନିଭାଇ ପୂର୍ବେ ଯେ ବଳୀୟାର ଥିଲେ
ବିବାଦ କରିଣ ସେ ରବିଙ୍କୁ ଛୁଇଁଲେ ।
ତେଣୁ ସେ ସମ୍ପାତିର ପକ୍ଷୀଗଲା ପୋଡ଼ି
ସେ ପର୍ବତ ପରେ ଅଚଳ ଭାବେ ପଡ଼ି ।
ଆମ୍ଭଙ୍କୁ ଦେଖିବାରୁ ଖାଇବ ମନେ କଲା
ପ୍ରସନ୍ନ ମନରେ ସେ ଆମ୍ଭଙ୍କୁ କହିଲା ।
ବୋଇଲା ରାବଣ ଲଙ୍କାକୁ ନେଲା ସୀତା
ପକ୍ଷଥିଲେ ମୁଁ ତାର ଛେଦିଥାନ୍ତି ମଥା ।
ରଥରେ ନେବାର ସେ ଦେଖିଅଛି ମୁହିଁ
ଆକାଶରେ ରଥ ନେଉଥିଲା ବାହି ।
ଧ୍ୱଜର ଚିରାଳ ଦିଶୁଥିଲା ମୋତେ
ପକ୍ଷ ନ ଥିଲା ମୋର ଯୁଦ୍ଧନ୍ତି କେମନ୍ତେ ।
ଏମନ୍ତେ ବଚନ କହି ପୁତ୍ରକୁ ସୁମରିଲା
ହେମବନ୍ତ ପର୍ବତରୁ ତା ପୁତ୍ର ଅଇଲା ।
ପିଠିରେ ବସାଇ ଦେଖାଇଲା ଲଙ୍କାପୁର
ବୋଇଲା ଯିବାକୁ ମାନ କରିଛି ପିତା ମୋର ।
ଏତେ କହି ସମ୍ପାତି ପୁତ୍ରକୁ ସଙ୍ଗେ ଘେନି
ହିମବନ୍ତ ଚଳିଗଲା ହୋଇଲା ରଜନୀ ।
ସେ ଯିବାରୁ ଆଠବୀର ବିଚାରିଲୁଁ ବସି
ଏକକୁ ଆରେକ ବଚନ ସମ୍ଭାଷି ।

ସବୁଙ୍କୁ ପ୍ରବୋଧି ଚଳିଗଲି ମୁହିଁ
ଲଙ୍କାକୁ ଗମନ ମୁଁ କଲି ହେ ଗୋସାଇଁ ।
ଆପଣଙ୍କ ପାଦପଦ୍ମ ଧ୍ୟାନ ପରସାଦେ
ଲବଣ ଜଳଧି ମୁଁ ତରିଲି ଅପ୍ରମାଦେ ।
ମଣିନାଗ ପର୍ବତକୁ ବରୁଣ ଭେଦି ଦେଲା
ତୁମ୍ଭର ଦୂତ ବୋଲି ଗଉରବ କଲା ।
ସେଠାରୁ ଯାନ୍ତେ ବାଟେ ଭେଟିଲି ଉଗ୍ରତାରା
ଦେବଙ୍କର ମାତା ସେ ଅଟଇ ତ୍ରିପୁରା ।
ବଳ କଷିବାକୁ ମୋର ପେଷିଲା ପୁରନ୍ଦର
ଘୋଟିଲା ସେ ମାହେଶ୍ୱରୀ ସ୍ୱର୍ଗମର୍ତ୍ତ୍ୟ ପୁର ।
ଓଗାଳିଲା ମୋତେ ବଢ଼ାଇଲା କାୟେ
ମୁହିଁ ତାକୁ ବଳିଲି ଅଧିକ ଯୁଣ ଶହେ ।
ଜାଣିକରି ବେଦମାତା ବାହୁଡ଼ିଣ ଗଲା
ସେ ଯିବାରୁ ରାହୁମାତା ଆସି ଓଗାଳିଲା ।
ସହସ୍ର ଯୋଜନକାୟା ବଢ଼ାଇଲା ନାରୀ
ମୋତେ ଗିଳି ଦେଲା ସେ ପକ୍ୱ ଫଳ ପରି ।
ପେଟେ ଥାଇ ତାର ମୁଁ ବିଦାରିଲି ବୁକୁ
ଅନ୍ତନାଡ଼ ଛିଣ୍ଡାଇ ଅଇଲି ବାହାରକୁ ।
ପ୍ରାଣ ହରାଇଣ ଯେ ପଡ଼ିଲା ଦଇତୁଣୀ
ହାନ୍ଦୋଳି ହୋଇଲା ସେ ସିନ୍ଧୁର ଯେ ପାଣି ।
ଦେବେ ପୁଷ୍ପ ବୃଷ୍ଟି କଲେ ମୋର ଶିରେ
ମଳୟ ବସନ୍ତ ବହିଲା ଧୀରେ ଧୀରେ ।
ସେଠାରୁ ଚଳିଗଲି ମୁହିଁ ଦେବ ହେଳେ
ଶତେଯୁଣ ସିନ୍ଧୁକୁ ତରିଲି ଭୁଜବଳେ ।
ଦିଗବଣା ହୋଇଣ ମୁଁ ଗଲି ଯେ ବିଲଙ୍କା
ସେ ଗଡ଼ ଅସୁର ମନେ କଲେ ଶଙ୍କା ।
ସେ ଗଡ଼ ଖୋଜିଣ ମୁଁ ଲୋଡ଼ିଲି ପ୍ରତି ଘର
ପାତ୍ରଙ୍କର ଉଆସ ରାଜାଙ୍କ ନବର ।
କେଉଁଠାରେ ତୁମ୍ଭର ସତୀଙ୍କି ନ ଦେଖିଲି
ନଗରବାସୀଙ୍କଠାରୁ ଶବଦ ଶୁଣିଲି ।
ସହସ୍ରମୁଖା ଅଟେ ସେ ଦେଶ ଈଶ୍ୱର
ନ ଦେଖି ସତୀଙ୍କି ମୁଁ ହୋଇଲି ବାହାର ।
ସେ ଗଡ଼ ଭିତରେ ସହସ୍ରେ ଯୁଣ ବନ
ପର୍ବତ କନ୍ଦର ତହିଁ ଅନେକ ଅଛି ଜାଣ ।
ତହିଁ ଖୋଜି ନ ପାହିଲି ରାତିରେ ରହିଲି
ଆରଦିନ ପ୍ରଭାତୁ ସେଠାରୁ ଚଳିଗଲି ।
ସୁଲଙ୍କା ବୋଲି ଗଡ଼ ସେ ସିନ୍ଧୁ ମଧ୍ୟରେ
ସେଠାରେ ମିଳିଲି ସନ୍ଧ୍ୟା ସମୟରେ ।
ରଜନୀରେ ସେ ପୁର ପ୍ରତି ଘର ବୁଲି
ରାଜାର ନଅର ସହିତେ ଖୋଜିଲି ।

ସେ ଗଡ଼ ଦେବୀଙ୍କୁ ସେ ପୁରେ ଦେଖିଲି
ସୀତା ଥିବା ସନ୍ଦେଶ ତାଙ୍କୁ ପଚାରିଲି ।
ସେ ବୋଇଲା ସ୍ୱାମୀଙ୍କର ଅଇଲୁ କିରେ ଦୂତ
ଏତେକାଳେ ସ୍ୱାମୀଙ୍କର ଦୟା ମୋଠାରେ ତ ।
ମୁଁ ବୋଇଲି ତୁହି କିଏ ସ୍ୱାମୀ ତୋର କିଏ
ସେ ବୋଇଲା ଏ ଗଡ଼ର ଦେବୀ ଅଟେ ଆହେ ।
ମୋହର ସ୍ୱାମୀ ଅଟନ୍ତି ସୁମିତ୍ରା ନନ୍ଦନ
ନାରାୟଣ ସଙ୍ଗରେ ହୋଇଛନ୍ତି ଜନ୍ମ ।
ସ୍ୱୟଂ ନାରାୟଣଙ୍କର ଘରଣୀ କମଳା
ସେହି ଜନ୍ମ ହେଲେ ଜନକ ଘରେ ପରା ।
ତାହାର ସ୍ୱାମୀ ଅଟନ୍ତି ଦଶରଥ ସୁତ
ବିଶ୍ୱାମିତ୍ର ସଙ୍ଗେ ଯାଇ ଜାନକୀ ଲଭିଲେ ତ ।
ଜନକ ଦୁହିତା ଆମ୍ଭ ସାମନ୍ତାଣୀ
ତାହାଙ୍କର ଦାସୀ ଆମ୍ଭେ ସର୍ବ ଦେବୀ ପୁଣି ।
ଦେବଙ୍କର ବଚନରେ ସ୍ୱୟଂ ନାରାୟଣ
ସେହି ଅବତାର ହେଲେ ଅସୁର ଲାଗି ଜାଣ ।
ଅସୁରଙ୍କୁ ମାରିବାକୁ ବନକୁ ଅଇଲେ
ପଞ୍ଚବଟୀ ବନରେ ଘରଣୀ ହରାଇଲେ ।
ସ୍ୱର୍ଣ୍ଣ ଲଙ୍କା ରାଜା ଅଟେ ଦଶଗ୍ରୀବ
ଜାନକୀ ଆଣିବାରୁ ମରିବ ତାର ଯୋଗ ।
ମୁଁ ବୋଇଲି ଏ ପୁର ନାମ ଅଟେ କିସ
ସେ ଦେବୀ ବୋଇଲା ଏ ସୁଲଙ୍କା ଦେଶ ।
ରାବଣର ନାତି ଯେ ଇନ୍ଦ୍ରଜିତ ସୁତ
ଏହି ଗଡ଼ରେ ସେ ହୋଇଛି ନୃପନାଥ ।
ଏ ପୁରରେ ଜାନକୀ ନାହିଁଟି ମାରୁତି
ସୁବର୍ଣ୍ଣ ଲଙ୍କାରେ ଅଛି ଜନକ ଦୁହିତୀ ।
ତାହାଠାରୁ ଶୁଣିଣ ସେ ପୁରରୁ ଗଲି
ବାଟରେ ଏକପୁର ଭେଟ ମୁଁ ପାଇଲି ।
ସେ ପୁରରେ ପଶିଣ ଖୋଜିଲି ସବୁ ଘର
ନ ଦେଖି ସତୀଙ୍କି ମନରେ ଗୁରୁତର ।
ସେ ପୁର ଦେବୀ ଆସି ମୋ ସଙ୍ଗେ କଥା ହେଲା
ଏ ପୁରରେ ରାମନାରୀ ନାହାନ୍ତି ବୋଇଲା ।
ଯେହୁ ଜାନକୀଙ୍କି ଆଣିଲା ଚୋରି କରି
ତାହାର ନାତି ଏଥିରେ ପ୍ରଭୁ ପଣ କରି ।
ମୁଁ ବୋଇଲି ଏ ପୁର ନାମ ଅଟେ କିସ
ଦେବୀ ବୋଲେ ଜ୍ୟୋତିଲଙ୍କା ଏ ପୁର ବିଶେଷ ।
ଯାଅ ତୁ ସୁବର୍ଣ୍ଣଲଙ୍କା ଏଥି ନାହିଁ ସତୀ
ଜ୍ୟୋତି ଲଙ୍କାରେ ମହିରାବଣ ନୃପତି ।
ଏ ରାଜାକୁ ଆମ୍ଭର ସ୍ୱାମୀ ଯେ ମାରିବେ
ଆମ୍ଭେମାନେ ସ୍ୱାମୀଙ୍କୁ ଦେଖିବୁ ନେତ୍ରଭାଗେ ।

ତାହାଠାରୁ ଶୁଣି ମୁଁ ସେ ପୁର ଚଳିଗଲି
ବୁଲିଣ ଅଲଙ୍କା ଗଡ଼ରେ ମିଳିଲି ।
ସେ ଗଡ଼ର ଚତ୍ୱପାଶେ ଅଗ୍ନି ନଦୀ ଘେରି
ପନ୍ଦର ଯୁଣ ପର୍ଯ୍ୟନ୍ତ ତା ତେଜ ପ୍ରଜ୍ୱଳି ।
ଦେଖିଣ ସତୁରୀ ଶିଖାକୁ ଗମିଲି
ତେବେ ମୁଁ ସେ ଗଡ଼କୁ ଯାଇ ଠାବ କଲି ।
ପ୍ରତି ଘର ପାତ୍ରମନ୍ତ୍ରୀମାନଙ୍କ ଉଆସ
ରାଜାର ନବର ମୁଁ ଖୋଜିଲି ବିଶେଷ ।
ତୁମ୍ଭ ସତୀ କେଉଁଠାରେ ନ ପାଇଲି ଭେଟ
ତେଣୁ କରି ମୋର ମନ ଲାଗିଲା ଉଚାଟ ।
ସେ ରାଜାକୁ ଯାଇ ଦେଖିଲି ନିରୋଳେ
ଶତେ ଶିର ଅଛଇଁ ତାହାର କନ୍ଧରେ ।
ସେହିଠାରୁ ବାହୁଡ଼ିଲି ନାହିଁ ବୋଲି କରି
ସେ ଦେବୀଙ୍କି ଦେଖିଲି ମନ୍ଦିରେ ଯାଇ କରି ।
ସେ ବୋଇଲା ଏ ଗଡ଼ ନାମ ଯେ ଅଲଙ୍କା
ଶତେ ମୁଖା ରାବଣ ଏ ଗଡ଼େ ନିଶଙ୍କା ।
ତାରଠାରୁ ଶୁଣିଣ ତହୁଁ ଚଳିଗଲି
ତିନିଦିନେ ଚାରିଶତ ଯୋଜନ ବୁଲିଲି ।
ସେଠାରୁ ସୁବର୍ଣ୍ଣ ଲଙ୍କାଗଡ଼େ ପରବେଶ
ସୁବଳୟା ନାମେ ଗିରି ଅଛଇଁ ସେ ଦେଶ ।
ସେ ଗିରି ଉପରେ ସେଦିନ ରହିଲି
ସମୁଦ୍ର ଚାରିଦିଗ ତହିଁରେ ଦେଖିଲି ।
ବନଗିରି ଲତା ଦେଖିଲି ଚାରିଦିଗ
ଗଡ଼କୁ ବେଢ଼ିଣ ଅଛଇଁ ସେହି ଶୁଭ ।
ଚାରିଦ୍ୱାର ଗଡ଼ରେ ଫେରିଣ ଦେଖିଲି
ସିଂହ ଶାର୍ଦ୍ଦୁଳ ହସ୍ତୀ ଘୋଡ଼ା ସୁବର୍ଣ୍ଣେ ତିଆରି ।
ଚାରିଦ୍ୱାର ପଥରେ ରଖିଛି ସେ ପୁଣ
ସେମାନେ ମୋତେ ଦେଖି ଶବଦ କଲେ ଜାଣ ।
ତାଙ୍କର ଶବଦରେ ନିର୍ବିକାର ହେଲି
କିମ୍ଭୁତ କଥା ବୋଲି ମନରେ ବିଚାରିଲି ।
ରତ୍ନପିତୁଳାମାନେ କଥା କହନ୍ତି ତ
ସେ ପୁରକୁ ଆମ୍ଭେମାନେ ନୋହିବୁ ସମର୍ଥ ।
ବାନର ଭାଲୁ ଆମ୍ଭେ ଅଟୁ ବନ ଜୀବ
କେମନ୍ତେ ଏଥିରେ କରିବୁ ବିବାଦ ।
ଏମନ୍ତ ଚିନ୍ତା କରି ରହିଲି ଅକିଣ
ପବନ କହିଲା ଆସି ମୋ କର୍ଣ୍ଣେଣ ।
ବୋଇଲା ବେଦବର ଯାଙ୍କୁ ଜୀବ ଦେଲା
ତେଣୁ ଏମାନଙ୍କର ଚେତା ହୁଏ ଭଲା ।
କିଛି ଚିନ୍ତା ନ କରି ଏ ଗଡ଼କୁ ଯାଅ
ଜାନକୀଙ୍କୁ ଠାବ କରି ଶ୍ରୀରାମ ଆଗେ କହ ।

ଶ୍ରୀରାମ ଅଇଲେ ମରିବେ ନିଶାଚର
ଦେବଙ୍କର କଷ୍ଟ ଯେ ହୋଇଯିବ ଦୂର ।
ଏତେ କହି ପିତା ମୋର ହେଲେ ଅନ୍ତର୍ଦ୍ଧାନ
ତେଣୁ ସେ ପ୍ରଫୁଲ୍ଲିତ ହେଲା ମୋର ମନ ।
ସେଠାରୁ ସୁବଳୟା ଗିରିରେ ଆସି ରହି
ଫଳମୂଳ ଭୁଞ୍ଜିଣ ରହିଲି ଜଳ ପିଇ ।
ସେ ପର୍ବତ ଉପରେ ଦିବସ ଶେଷ କଲି
ଗିରି ଉପରେ ଉଠି କାହାକୁ ନ ଦେଖିଲି ।
ସନ୍ଧ୍ୟା ସମୟରେ ଗଲି ଲଙ୍କାପୁରୀ
ମୋତେ ଦେଖି ଚିହ୍ନିଲା ଲଙ୍କାର ଈଶ୍ୱରୀ ।
ମୋତେ ଦେଖି ବୋଇଲା ବାନର କେଣେ ଯାଉ
ଏ ଦଶାନନଟି ନୃପତି କୁଳ ରାହୁ ।
ଯେଉଁ ଲଙ୍କାଗଡ଼କୁ ଦେବତା ଭୟ କରି
ତୁହି ରାତ୍ରକାଳରେ ପଶିଲୁ ସେହି ପୁରୀ ।
ସେ ଦେବୀର ବଚନରେ ମୁହିଁ କୋପ ହେଲି
ରାଗରେ ଚାପୋଡ଼ାଏ ଦେବୀକୁ ମାଇଲି ।
ପଡ଼ି କରି ଈଶ୍ୱରୀ ଜ୍ଞାନ ହରାଇଲା
ଘଡ଼ିକରେ ସେ ଦେବୀ ଚେତନା ପାଇଲା ।
ବୋଇଲା ଲଙ୍କାଗଡ଼ ଆଜହୁଁ ହେଲା ନାଶ
ନିଶ୍ଚୟ ମରିବେ ରାବଣର ବଂଶ ।
ମୁଁ ପଚାରିଲି ତୁହି କିଏ ସେ କହତ
ରାବଣର ମରିବାର ଜାଣିଲୁ କେମନ୍ତ ।
ସେ ବୋଇଲା ଏ ଲଙ୍କାର ଦେବୀ ଅଟେ ମୁହିଁ
ଯେତେବେଳେ ଲଙ୍କାଗଡ଼ ନିର୍ମାଣିଲା ବିହି ।
ସେତେବେଳେ ମୋତେ ଏ ପୁରରେ ରଖିଗଲା
ଏକା ବରଷକେ ପାଞ୍ଚଗଡ଼ ଲଙ୍କା କଲା ।
ପ୍ରଥମେ ସୁବର୍ଣ୍ଣଲଙ୍କା ଦ୍ୱିତୀୟେ ନୀଳଲଙ୍କା
ତୃତୀୟେ ହୀରାଲଙ୍କା ଗଢ଼ିଲା ବିଧାତା ।
ଚତୁର୍ଥରେ ଜ୍ୟୋତିଲଙ୍କା ଜ୍ୟୋତିମୟ କଲା
ପଞ୍ଚମରେ ମାଣିକ୍ୟ ଲଙ୍କା ଯେ ଗଢ଼ିଲା ।
ନିଳାଲଙ୍କା ନାମ ଯେ ବିଲଙ୍କା ନାମ ଦେଲା
ବିଲଙ୍କାଶ୍ୱରୀ ବୋଲି ଦେବୀଏ ରଖିଲା ।
ଜ୍ୟୋତି ଲଙ୍କାରେ ରଖିଲା ଜ୍ୟୋତିର୍ମୟୀ ଦେବୀ
ମାଣିକ୍ୟ ଲଙ୍କାରେ ରଖିଲା ଅଗ୍ନି ଦେବୀ ।
ଏମନ୍ତେ ପାଞ୍ଚଲଙ୍କା ଧାତା ନିର୍ମାଣିଲା
ଆଗେ ମୁନିମାନଙ୍କୁ ରାଜା ଏଥି କଲା ।
ଦ୍ୱିତୀୟେ ଦୈତ୍ୟବଳ ଋଷିଙ୍କୁ ଘଉଡ଼ିଲେ
ଋଷିମାନେ ଯାଇଣ ଦେବଙ୍କୁ କହିଲେ ।
ଦେବତାମାନେ ସବୁ ବସି ବିଚାରିଲେ
ଅସୁରଙ୍କ ନ୍ୟାୟ ଧର୍ମ ଜାଣିଛ କି ଭଲେ ।

ମଦ ମାଂସରେ ତାଙ୍କ ମନ ଯେ ତୃପତି
ତାଙ୍କ ଆଗେ ନ୍ୟାୟ କଲେ ହୋଇବ ଅନୀତି ।
ଚାଲ ଆମ୍ଭେ ଯିବା ବିଷ୍ଣୁଙ୍କ ପାଶକୁ
ବିଷ୍ଣୁଙ୍କର ଯେଉଁ ନ୍ୟାୟ ହୋଇବ ତାହାଙ୍କୁ ।
ସେମାନଙ୍କୁ ବୈକୁଣ୍ଠ ବାସୀ ଯେ କହିବୁ
ତାଙ୍କଠାରୁ ଜାଣିଲେ ନିବର୍ତ୍ତ ହୋଇବୁ ।
ଦୈତ୍ୟଙ୍କୁ ଦେଖିଣ ପୁଚ୍ଛିଲେ ଭଗବାନ
ତୁମ୍ଭେ ଏଡ଼େ ଅନୀତି କଲ କିମ୍ପା ପୁଣ ।
ଦେବଋଷିମାନଙ୍କର ଏ ସୃଷ୍ଟିର ଧର୍ମ
ତାଙ୍କସଙ୍ଗେ ତୁମ୍ଭର କାହିଁକି ନୀଚକର୍ମ ।
ତୁମ୍ଭେମାନେ ଗଡ଼ରେ ଏବେ ରାଜା ହୁଅ
ନାନା ଅନ୍ୟାୟ କଲେ ହୋଇବ ସେ କ୍ଷୟ ।
ତେଣୁ ଯେ ଦେବତାଙ୍କଠୁ ଅସୁର ବଡ଼ ହେଲେ
ଦେବଙ୍କୁ ଜିଣି ଅସୁର ପାଦେ ଖଟାଇଲେ ।
ଦେବତାଙ୍କର ତେଣୁ ନାରାୟଣେ ଦେଖା
ଅବତାର କରାଇ ମାରିବେ ଦୈତ୍ୟ ଲଙ୍କା ।
ବାସୁଦେବଙ୍କ ହସ୍ତରେ ମରିବେ ଅସୁର
ତେଣୁ ସେ ଦେବତାଏ ହୋଇବେ ନିସ୍ତାର ।
ଏ ରାବଣ ଦେବତାଙ୍କୁ ଅନେକ କଷ୍ଟ ଦେଲା
ତେଣୁ ନାରାୟଣ ଅବତାର ହେଲେ ଭଲା ।
ରାବଣ ମାରିବାର କାଳ ହେଲା ଜାଣ
ଏ ଦେଶକୁ କମଳା ଦେବୀଙ୍କୁ ଆଣିଣ ।
ତେଣୁ ସେ ଶ୍ରୀରାମ କ୍ରୋଧରେ ଜର୍ଜର
ଦାରା ବଇରାକି ମାରିବେ ତାଙ୍କର ।
ମୁଁ ବୋଇଲି ପାଞ୍ଚ ଲଙ୍କାରେ କେଉଁ ଦୈତ୍ୟରାଜ
ସେ ବୋଇଲା ଏ ଗଡ଼ରେ ବିଶ୍ରବା ତନୁଜ ।
ବିଲଙ୍କାରେ ସହସ୍ର ମୁଖା ଯେ ନୃପତି
ଅଲଙ୍କାରେ ଶତମୁଖା ଶୁଣ ହୋ ମାରୁତି ।
ସୁଲଙ୍କାରେ ଏକମୁଖା ଅଟଇ ରାଜନ
ମହୀରାବଣ ତା ନାମ ଇନ୍ଦ୍ରଜିତ ନନ୍ଦନ ।
ଚାରିରାବଣକୁ ତିନିଭାଇ ସୀତା ମାରି
ଅନେକ ଦୈତ୍ୟବଳ ଦେବେ କ୍ଷୟ କରି ।
ତେବେ ସେ ଶ୍ରୀରାମ ଯିବେ ନିଜ ସ୍ଥାନ
ଆଗ କରି ବିଧାତା ଗଲା ଯେ କହିଣ ।
ବୋଇଲା ଯେତେବେଳେ ବାନର ତୋତେ ମାରି
ଜାଣିବୁ ପାଞ୍ଚ ଲଙ୍କା ଶିରୀ ଯିବ ସରି ।
ସେଠାରୁ ପାଞ୍ଚ ଗଡ଼ରେ ପାଞ୍ଚ ରାଜା ହେବେ
ମାସେ ବିଂଶଦିନରେ ସମସ୍ତେ କ୍ଷୟ ଯିବେ ।
ଏତେ କହି ଲଙ୍କାଦେବୀ ଅନ୍ତର୍ଦ୍ଧାନ ହେଲା
ସୀତା ଠାବ କର ବୋଲି ମୋତେ ସେ କହିଲା ।

ସେ ଦେବୀ ଯିବାରୁ ମୁଁ ସେଠାରୁ ଚଳିଗଲି
ପ୍ରତିଘର ଅସୁରଙ୍କର ନିରେଖି ଦେଖିଲି ।
ପୁତ୍ର ଭାଇ ବନ୍ଧୁ ପାତ୍ର ମନ୍ତ୍ରୀପୁର ଖୋଜି
ବିଭୀଷଣ ଇନ୍ଦ୍ରଜିତ ପ୍ରତିଘର ବୁଝି ।
କେବଳ ଏ ପୁରେ ମୁଁ ପାଇଲି ବାରତା
ଦଇତ ଦଇତୁଣୀ ହୁଅନ୍ତି ଏହି କଥା ।
ସେ ବୋଲଇ ରାବଣ ଆଣିଛି ଯେଉଁ ନାରୀ
ଅଗ୍ନିପରି ଦେହ ତାର ଛୁଇଁ ତ ନ ପାରି ।
କେ ବୋଲଇ ସେ ନାରୀ ଅଇଲାଦିନୁଁ ଜାଣ
ଉତ୍ପାତ ଜାତ ହେଲା ଏ ଲଙ୍କା ଭୁବନ ।
କେ ବୋଲଇ ପକ୍ଷକେ ସେ ଅଗ୍ନି ସ୍ନାନ କରି
କେ ବୋଲଇ ତେରମାସ ଭୋଜନ ନ କରି ।
କେ ବୋଇଲେ ଦୈତ୍ୟମାନେ ହେଲେ ଶୁଷ୍କ କାଷ୍ଠ
ସେ ନାରୀ ଦାବାନଳ ଦହିବ ଲଙ୍କା ରାଷ୍ଟ୍ର ।
ଏମନ୍ତ କୁହାକୁହି ହୁଅନ୍ତି ସର୍ବଜନ
ଲଙ୍କା ଗଡ଼ଯାକରେ ଚମକ ପଡ଼େ ପୁଣ ।
ସେକଥା ଶୁଣିବାରୁ ମୁହିଁ ହେଲି ଖୁସି
ବିଚାରିଲି ଜାନକୀ ନିଶ୍ଚେ ଏଥି ଅଛି ।
ସେ କଥା ଶୁଣିଣ ମୁଁ ରାବଣ ପୁରେ ଗଲି
ରାବଣ କୋଳେ ମନ୍ଦୋଦରୀକି ଦେଖିଲି ।
ଚାପୋଡ଼େ ମାରି ତାକୁ ଝିଙ୍କିଦେଲି ବାଳ
ଚେତିଣ ମନ୍ଦୋଦରୀ ଉଠିଲା ତତ୍‌କାଳ ।
ସେ ପୁରରୁ ଯାଇଣ ତାରାକୁ ଭେଟ ହୋଇ
ମୋତେ ଦେଖି ସେ ଚିହ୍ନିଣ ବଚନ ବୋଲଇ ।
ଶ୍ରୀରାମଙ୍କ ଦୂତ ତୁ ଅଇଲୁ ଏତେକାଳେ
ରାବଣ ମରିବାର ନିକଟ ହେଲା ହେଲେ ।
ତେରମାସ ହେଲା ଅଇଲେ ସୀତା ସତୀ
ମନରେ ଦୁଃଖ ନାହିଁ ବିଚଳିତ ମତି ।
ମୁଁ ବୋଇଲି ତାହାଙ୍କୁ ଖୋଜିଲି ସର୍ବ ପୁର
ଭେଟ ନ ପାଇଲି ଅଛନ୍ତି କେଉଁଠାର ।
ତାରା ସତୀ ବୋଇଲା ଶୁଣ ହେ ମାରୁତି
ଶ୍ରୀରାମଙ୍କୁ ଦେଖିଲେ ମୁଁ ହେବି ମୁକ୍ତଗତି ।
ଏକସ୍ତନ ନାମ ଯେ ଅଟଇ ମୋହର
ଏକସ୍ତନ ବହିଣ ଅଛି ମୁଁ ଶରୀର ।
ରାମ ଭାଇଙ୍କି ରାବଣ ମାରିବ ଶକତି
ତେଣୁ ପ୍ରାଣ ହାରି ସୁମିତ୍ରା ସନ୍ତତି ।
ସେତେବେଳେ ସୁଷେଣ ବୈଦ୍ୟପଣ କରି
ରାମଙ୍କୁ ବୋଧ ଦେବେ ଜିଆଇ ଦେବେ ବୋଲି ।
ବୈଦ୍ୟଶାସ୍ତ୍ର ଦେଖିଣ ତୋତେ ସେ ପେଶିଦେବ
ଗନ୍ଧମାର୍ଦ୍ଦନ ପର୍ବତକୁ ତୁହି ଯିବୁ ବେଗ ।

ଔଷଧ ନ ଚିହ୍ନିଣ ପର୍ବତ ଆଣିବୁ
ଅଇଲାବେଳେ ରାମ ଭାଇ ଭ୍ରତଙ୍କୁ ଭେଟିବୁ ।
ଗିରି ଥୋଇ ସେଠାରେ ଉଭା ତୁ ହୋଇବୁ
ସୁବଳୟା ପର୍ବତରେ ଆସି ପ୍ରବେଶିବୁ ।
ସେତେବେଳେ ଜମ୍ବେବ କହିବେ ମୋର କଥା
ମୋତେ ତୁହି ଭେଟିଯିବୁ ହୋଇଣ ସମର୍ଥା ।
ମଣିଶୀଳ ମୋହର ନେବି ଯେ ସଙ୍ଗର
ଔଷଧ ଦେବିବେ ମୋ କ୍ଷୀରରେ ସୁଷେଣ ନାମେ ବୀର ।
ଶକତି ଘାଆରେ ଔଷଧ ଲେପ ଦେବେ
ସେତେବେଳେ ଲକ୍ଷ୍ମଣ ଉଠିଣ ବସିବେ ।
ଏତେ କହି ମୋତେ କହିଲାକ ପୁଣ
ଅଶୋକ ବନେ ଜାନକୀ ଅଛନ୍ତିଟି ଜାଣ ।
ଲୁଚିକରି ଯିବୁ ଯାବୁ ପବନର ସୁତ
ଜାନକୀ ସଙ୍ଗେ କଥା ହୋଇବୁ ତ୍ୱରିତ ।
ଦୈତ୍ୟଙ୍କର ସଙ୍ଗରେ କରିବୁ ରଣଗୋଳ
ଲଙ୍କା ପୋଡ଼ିଦେବୁ ଯଶ ହେବ ତୋର ।
ଶୁଣି କରି ସେଠାରୁ ତ୍ୱରିତେ ଚଳିଗଲି
କୁମର ଅକ୍ଷୟ ଘରେ ଯାଇଣ ମିଳିଲି ।
ରାବଣ ବଧୂମାନଙ୍କୁ ମୁହିଁ କଲି ରାଣ୍ଡ
କୁମ୍ଭକର୍ଣ୍ଣ ମନ୍ଦରେ ଦେଖିଲି ସ୍ଥିରୀ ଗୁଣ୍ଡ ।
ସବୁଠାରୁ ବଡ଼ କୁମ୍ଭକର୍ଣ୍ଣ ଯେ ଅସୁର
ପନ୍ଦର ଯୁଣ ଲମ୍ବରେ ଶୋଇଛି ଦୈତ୍ୟ ବୀର ।
ଦେଖିଲି ଭୟଙ୍କର କ୍ଷୟ ନୁହେଁ ପୁଣ
ଏ ଦୈତ୍ୟ କପି ଭାଲୁଙ୍କୁ କରିବ ଭକ୍ଷଣ ।
ଏମନ୍ତ ବିଚାର ମୁଁ ମନରେ ପାଞ୍ଚିଲି
ଦିହୁଡ଼ି ହୁଳା ଲିଭାଇ ତାହାକୁ ଦେଖିଲି ।
ଚେକିଣ ଦକ୍ଷିଣ ଦିଗୁ ଉତ୍ତର ଦିଗେ ଶୁଆଇ
ବିଚାରିଲି ନିଶ୍ଚୟ ମରିବ ଦୈତ୍ୟସାଇଁ ।
ସେଠାରୁ ବେଗହୋଇ ମୁହିଁ ଚଳିଗଲି
ଅଶୋକ ବନରେ ପ୍ରବେଶ ହୋଇଲି ।
ବୈଡୁର୍ଯ୍ୟ ମଣ୍ଡପରେ ବସିଛନ୍ତି ସୀତା
ହେଠ ବଦନ କରିଣ ପୋତିଛନ୍ତି ମଥା ।
ଦାବାନଳ ଅଗ୍ନିପ୍ରାୟ ଜଳେ ତାଙ୍କ ଦେହୀ
ନର ଅସୁର ସୁର ନ ପାରେ ପାଶେ ଯାଇ ।
ସହସ୍ରେ ଦଇତୁଣୀ ଜଗିଛନ୍ତି ଜାଣ
ପାଶକୁ ଯିବାକୁ କେ ନୁହନ୍ତି ଭାଜନ ।
ମୋହର ସଖ୍ୟ ଯେ ନୋହିଲା ଯିବାକୁ
ଭ୍ରମର ରୂପ ଧରି ଗଲି ମୁଁ ଓରାକୁ ।
ଓରାର ଉପରେ ଯାଇଣ ବସିଲି
ଗୁପତ କଥାମାନ ସବୁ ମୁଁ ଶୁଣିଲି ।

ଏହି ସମୟରେ ରାବଣ ପ୍ରବେଶ
ଖଣ୍ଡେ ଦୂରେ ଥାଇ ସେ କଲାକ ସମ୍ଭାଷ ।
ବୋଇଲା ମୋରଠାରେ ସୁବଦନା ନାରୀ କର
କାମଜ୍ୱର ବାଧାରୁ ଉଦ୍ଧରି କରେ ଧର ।
ତାହା ଶୁଣି ଜାନକୀ ବଡ଼ କ୍ରୋଧ ହେଲେ
ତୋପୁତ୍ର ମରୁ ଲଙ୍କା ପୋଡ଼ିଯାଉରେ ବୋଇଲେ ।
ସୈନ୍ୟବଳ ମରନ୍ତୁ ଲାଗୁ ଉତପାତ
ଆଜ ଦିନଠାରୁଁ ହେଉ ଲଙ୍କାରେ ଅନର୍ଥ ।
ଦୁଇପକ୍ଷ ତିନିଦିନେ ତୁମ୍ଭେରେ ମରିବ
ବାନର ଭାଲୁଙ୍କ ହସ୍ତେ ପ୍ରାଭବ ପାଇବ ।
ଅଗ୍ନିକୁ ଛୁଇଁବାକୁ କରୁଛ ଭରସା
ଗଲାବେଳେ ତୋର ନ ରହୁ କିଛି ଆଶା ।
ଶୁଣିଣ ରାକ୍ଷସ କୋପେ କହିଲା ବଚନ
ବେନିମାସେ ଦେଖାଅ ଶ୍ରୀରାମ ଲକ୍ଷ୍ମଣ ।
ନୋହିଲେ ବଳାତ୍କାର କରିବିଟି ମୁହିଁ
ତ୍ରିଜଟା କହିବାରୁ ଗଲା ବୋଧ ହୋଇ ।
ରାବଣ ଯିବାରୁ ଅସୁରୀମାନେ କହି
କୋପମନ କିମ୍ପା ତୁ ନ ତେଜୁ ବଇଦେହୀ ।
ଏହି ସମୟରେ ସାରୀ ଡାକ ଦେଲା
ଚଢ଼ାଇ ଭିତରେ ମୂଷା ପଶିଲା ବୋଇଲା ।
ଶ୍ରୀରାମର ଦୂତ ଯେ ଅଇଲାଣି ଜାଣ
ତାହାର କଥା ଶୁଣି ହେଲି ମୁଁ କ୍ରୋଧମନ ।
ପଞ୍ଜରୀରେ ପଶି ମୁଁ ସାରୀକି ନାଶ କଲି
ଓରାର ଉପରେ ଯାଇଣ ବସିଲି ।
ଏଥୁ ଅନନ୍ତରେ ଭୋଦେବ ତୁମ୍ଭେ ଶୁଣ
ବିଭୀଷଣ ଦୁହିତା ଭାବେ କହେ ପୁଣ ।
ବୋଇଲା ଠାକୁରାଣୀ କ୍ରୋଧ ଶାନ୍ତି କର
ଆଜି କାଲି ମିଳିବ ସ୍ୱାମୀଙ୍କ ଖବର ।
ଅଳପ ଦିନରେ ରାବଣ ଯିବ ନାଶ
ମୋର ପିତା ଲଙ୍କାଗଡ଼େ ହୋଇବେ ଯେ ଈଶ ।
ଆଜିର ନିଶିରେ ମୁଁ ଦେଖିଲି ସ୍ୱପନ
ଲଙ୍କାକୁ ଦୂତପଣେ ବାନର ଆସେ ଜାଣ ।
ତୁମ୍ଭସଙ୍ଗେ କଥା ହୋଇ ସଙ୍କେତ କହିଲା
ମଧୁବନ ଭାଙ୍ଗି ସୈନ୍ୟବଳ ନାଶ କଲା ।
ଲଙ୍କାକୁ ପୋଡ଼ିଦେଇ ଗଲା ଯେ ବାନର
ବାନରର ପ୍ରତାପରେ ଡରିଲେ ଅସୁର ।
ଶୁଣି କରି ତୁମ୍ଭ ନାରୀ କହିଲେ ବଚନ
କାଲି ରଜନୀରେ ଅନର୍ଥ ହେବ ଜାଣ ।
ଲଙ୍କାପୋଡ଼ି ଯିବ ଯେ ରାବଣ ପୁତ୍ର ମରି
ଅନେକ ଅସୁର ତିନିଦିନରେ ଯିବେ ମରି ।

ସେକଥା ସ୍ୱପ୍ନବତୀ ସ୍ୱପ୍ନେ ମୋତେ କହି
ତେଣୁ ସେ ରାବଣକୁ କହିଅଛି ମୁହିଁ ।
ଏମନ୍ତ ସମୟରେ ରଜନୀ ଶେଷ ହେଲା
ଦିନକର ଉଦେ ହେଲେ ତିମିର ତୁଟିଲା ।
ସେହି ମଣ୍ଡପରୁ ଚଳିଗଲି ମୁହିଁ
ଗନ୍ଧକା ନଦୀ କୂଳରେ ପ୍ରବେଶିଲି ଯାଇ ।
ସେ ନଦୀ କୂଳରେ ଶିଶୁପା ବୃକ୍ଷ ପରେ
ଗୁପତେ ରହିଲି ମୁଁ ପତର ଭିତରେ ।
ଏହି ସମୟରେ ଆସିଲେ ମୈଥିଳୀ
ତୁମ୍ଭ ନାମ ସୁମରି ବୃକ୍ଷ ମୂଳେ ମିଳି ।
ଏମନ୍ତ ସମୟେ ମୁଁ କହିଲି ବଚନ
ମୋ କଥା ଶୁଣି କହିଲେ କିଏରେ ତୁ ପୁଣ ।
ମୁଁ କହିଲି ଶ୍ରୀରାମ ମୋ ଦଶରଥ ଶିଷ୍ୟ
ତୁମ୍ଭଙ୍କୁ ହରାଇ ସେ କିଷ୍କିନ୍ଧ୍ୟାରେ ପ୍ରବେଶ ।
ସୁଗ୍ରୀବ ସଙ୍ଗରେ ସେ ମଇତ୍ର ହୋଇଲେ
ମଇତ୍ର ଛଳେ ଶ୍ରୀରାମ ବାଳିକି ନାଶ କଲେ ।
ସୁଗ୍ରୀବକୁ କିଷ୍କିନ୍ଧ୍ୟାରେ କଲେକ ରାଜନ
ସୈନ୍ୟବଳ ସାଧିଣ ଯେ ଆଣିଲେ ବହନ ।
ନଉସାଗର କପି ଭାଲୁ ଠୁଳ କଲେ
ଚାରି ଦିଗକୁ ଦୂତ ଖୋଜିବାକୁ ଗଲେ ।
ଦକ୍ଷିଣେ ଅଇଲୁଁ ଆମ୍ଭେ ଆଠଜଣ
ତେଣେ ସିନ୍ଧୁକୂଳରେ ଅଛନ୍ତି ସାତଜଣ ।
ଏକାକେ ସାତ ସିନ୍ଧୁ ପାରି ମୁଁ ହୋଇଲି
ଚାରିଲଙ୍କା ବୁଲି ପଥେ ତୁମ୍ଭଙ୍କୁ ଦେଖିଲି ।
ଏ ଲଙ୍କାରେ ଖୋଜିଲି ଆସିଣ ମୁଁ ଜାଣ
ବିଭୀଷଣ ଦୁହିତା କହିଲା ଯେ ପୁଣ ।
ସେ ମୋତେ ବୋଇଲା ଅଶୋକ ବନେ ଛନ୍ତି
ତୋତେ ମୁଁ ଦେଖିଲଇଁ ମାଗୋ ମହାସତୀ ।
ତିନିପୁରେ ସୁନ୍ଦରୀ ତୋର ସମନାହିଁ
ରାମଙ୍କୁ ସୁମରିଣ ଅଛୁ ତୁ ଯେ ରହି ।
ଏ ସକାଶେ ଜାଣିଲି ଶ୍ରୀରାମଙ୍କ ନାରୀ
ସେଥିର ସକାଶରେ ଓଁକାର ନାଦ କରି ।
ତେଣୁ ସେ ତୁମ୍ଭଙ୍କୁ ପଚାରୁଅଛି ଏବେ
ଦଶରଥଙ୍କ ବଧୂ ଅଟକି ଗୋ ତୁମ୍ଭେ ।
ଶୁଣି କରି ବୋଇଲେ ଜନକ ଦୁହିତା
ଅସୁରଙ୍କୁ ମାରିବାକୁ ଶ୍ରୀରାମ କରତା ।
ଦେବଙ୍କର ଛଳରେ ଜାତ ସେ ହୋଇଲେ
ମୋତେ ଅସୁରଙ୍କୁ ଦେଇ ନିଶ୍ଚିନ୍ତେ ରହିଲେ ।
ଦେବତାଙ୍କର କଥା କି ପାସୋରି ଦେଲେ ରାମ
କେମନ୍ତେ ଦେବତାଏ ପାଇବେ ଆରାମ ।

ବଡ଼ ପ୍ରଭୁ ବୋଲିଣ ଦେବେ ଆଶ୍ରେ କଲେ
ତାଙ୍କୁ ବୋଧ ଦେଇଣ ମାନବ ଜନ୍ମ ହେଲେ ।
ଏବେ କିମ୍ପା ଦୈତ୍ୟଙ୍କୁ ନ କରନ୍ତି ନିଧନତ
ଅସୁରଙ୍କୁ ଡରିଲେକି ପ୍ରଭୁ ରଘୁନାଥ ।
ମୁଁ ଭାବିଲି ଚିନ୍ତା କରିଥିବେ ଚାପଧାରୀ
ମୁଁ ରହିଲି ଘନକୁ ଚାତକ ଆଶାପରି ।
ପୁଣି ହିଁ ବୋଇଲେ କିସ ଆଣିଛୁ ସନ୍ତକ
ମୁଁ ବୋଇଲି ରତ୍ନମୁଦି ଦେଇଛନ୍ତି ଦେଖ ।
ଏତେ କହି ରତ୍ନମୁଦି ଅଣ୍ଟାରୁ କାଢ଼ି ଦେଲି
ମୁଦି ଦେଖି ସନ୍ତୋଷ ହୋଇଲେ ମୈଥିଳୀ ।
ବୋଇଲେ ଗୁପ୍ତକଥା କି କହିଛନ୍ତି ତୋତେ
ମୁଁ ଗୁପ୍ତକଥା କଥା କହିଲି ତାଙ୍କର ଅଗ୍ରତେ ।
ଶୁଣିଣ ସଂପ୍ରତେ କଲେ ତୁମ୍ଭ ନାରୀ
ତାଙ୍କର ଗୁପତ କଥା କହିଲେ ଫେଡ଼ି କରି ।
ବୋଇଲେ ମଧୁଶଯ୍ୟାରେ କରିଛି ନିୟମ
ଶ୍ରୀରାମ ବିନୁ ଆଉ ନ ଭଜିବି ଆନ ।
ପ୍ରମାଣ କରି କହି ଅଛନ୍ତି ରାଘବ
ଅନ୍ୟ ନାରୀ ନ ଛୁଇଁବି ତୋ ସଙ୍ଗେ ଦିନ ଯିବ ।
ଦୁର୍ଯ୍ୟୋଗେ ତୁମ୍ଭେ ଯେବେ ହୋଇବ ଅନ୍ତର
ସୁବର୍ଣ୍ଣର ସୀତା ଗଢ଼ାଇଣ ନେବି କାଳ ।
ଏକଥା ତାଙ୍କ ଆଗେ କହିବୁ ହନୁମନ୍ତ
ସଂପ୍ରତେ କରନ୍ତୁ ପ୍ରଭୁ ରଘୁନାଥ ।
ଏତେ କହି ମଥାମଣି କାଢ଼ି ମୋତେ ଦେଲେ
ଶ୍ୱଶୁର ଦେଖୁଣି କାଳେ ଏ ମଣି ଦେଇଥିଲେ ।
ସେ ମଣିକି ଧରି ମୁହିଁ କହିଲି ବଚନତ
ଆହୁରି ସଂକେତ କହିଥିଲେ ରଘୁନାଥ ।
ମୃତ୍ତିକା ଉପରେ ଉଭା ହୁଅ ଯାଇ
ପାଦପଦ୍ମ ଫୁଟିବ ଦେଖିଯିବି ମୁହିଁ ।
ସେଠାରୁ ବଇଦେହୀ ମୃତ୍ତିକା ପରେ ଉଭା
ପାଦପଦ୍ମ ଫୁଟିଣ ଅଲଗା ହେଲା ଶୋଭା ।
ଦେଖିଲି ପାଦପଦ୍ମରେ ଅବେଷ୍ଟ ପୁଷ୍ପ ଫୁଟି
କରଯୋଡ଼ି ଚରଣ ତଳରେ ମୁଁ ଲୋଟି ।
ଉଠିଣ ଉଭା ହେଲି ଯୋଡ଼ି କର ପଦ୍ମ
ବୋଇଲେ ମୋ ବଚନ ଶୁଣ ହେତୁ ତତ୍ତ୍ୱ ।
ଶ୍ରୀରାମ ନାରାୟଣ ଆୟୁଧ ଅଟେ ଚାରି
ଶଙ୍ଖ ଚକ୍ର ଦୁହିଁଙ୍କୁ ସଙ୍ଗରେ ଜାତ କରି ।
ତେଣୁ କରି ବେନିଭୁଜ ହେଲେ ନାରାୟଣ
ବେନିଭୁଜ ରଖିଲେ ନିଜର ଦେହେଣ ।
ଗଦା ପଦ୍ମ ବେନି କରେ ଅଛି ଯେ ତାଙ୍କର
ସେକଥା ସଂପ୍ରତେ ନେଜ୍ଜ ପବନ କୁମର ।

**ବଳରାମ ଦାସ ଯେ ମନରେ ବିଚାରିଲେ**
ଶ୍ରୀରାମ ସୀତା ଚରଣେ ଶରଣ ପଶିଲେ ।
ଶିବଙ୍କୁ ପଚାରନ୍ତି ଦେବୀ ମହାମାୟୀ
ଶ୍ରୀରାମ ହନୁଙ୍କର କିସ କଥା ହୋଇ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଜାନକୀଙ୍କ କଥା ଯେ କହିଲେ ମାରୁତି ।
ଶୁଣିଣ ଶ୍ରୀରାମଚନ୍ଦ୍ର କହିଲେକ ଗୋ ସତ
ସେ କଥା ମିଛ ନୁହେ ପବନର ସୁତ ।
ସେଠାରୁ କିସ ହେଲା କହ ହନୁମାନ
ମଣିଟି ଦେଖିବା ଦିଅ ତୁ ବହନ ।
ଶୁଣିଣ ମାରୁତି ସମର୍ପିଲା ମଣି
ଦେଖିଣ ହରଷ ହେଲେ ପ୍ରଭୁ ରଘୁମଣି ।
ବୋଇଲେ ମାରୁତିରେ ଧନ୍ୟ ତୋ ଜୀବନ
ସିନ୍ଧୁପାରି ହୋଇଣ ରଖିଲୁ ମୋର ପ୍ରାଣ ।
ବିଶ୍ୱାମିତ୍ର ମୁନି ଯେ ମାଗି ନେଲେ ମୋତେ
ତାଡ଼କୀ ବଧିବାର ଜାଣ ସମାପତେ ।
ଅହଲ୍ୟା ବାଟରେ ପାଷାଣ ହୋଇଥିଲା
ମୋ ପାଦ ଲାଗିବାରୁ ମୁକତ ହୋଇଲା ।
ସେଠାରୁ ବିଶ୍ୱାମିତ୍ର ମିଥିଳାକୁ ନେଲେ
ଜନକ ଦୁହିତାକୁ ମୋତେ ବିଭା କଲେ ।
ସେ ଜନକ କୁମାରୀକୁ ପୁଣ କେହୁ ନେଲା
ଯେବେ ତୁ ଦେଖିଲୁ ମୋର ଜୀବନ ରହିଲା ।
ଏପରି କହିଣ ମଥାମଣି ଗୁଞ୍ଜି
ଗଳାକୁ ହକାରିଲେ ପ୍ରଭୁ ଦାଶରଥି ।
ବୋଇଲେ ମାରୁତିରେ ଯେତେକ ଗୁପତ
ଯେ ଯାହାର ଅର୍ଦ୍ଧଅଙ୍ଗ ଜାଣଇ ନିୟତ ।
ସେଠାରୁ କିସ ପୁଣି କଲୁରେ ମାରୁତି
କି କଥା କହିଛନ୍ତି ଜନକ ଦୁହିତୀ ।
କରଯୋଡ଼ି ହନୁମନ୍ତ କହଇ ବିଚାରି
କହିଛନ୍ତି ଜାନକୀ ଗୁପତ ଫେଡ଼ି କରି ।
ବୋଇଲେ ଶ୍ରୀରାମଙ୍କୁ ଆଣ ତୁ ସତ୍ୱର
ମୋଠାରେ ଦୟା ଯେବେ ଅଛି ପ୍ରଭୁଙ୍କର ।
ବେନିମାସେ ନ ଆସିଲେ ଲଙ୍କାକୁ ଭସ୍ମ କରି
ନିଶ୍ଚୟ ଯିବି ମୁହିଁ ବଇକୁଣ୍ଠ ପୁରୀ ।
ମୋହର କଣ୍ଠ ସରିଲେ ଆସି କି କରିବେ
ମୁହିଁ ବୈକୁଣ୍ଠକୁ ଗଲେ ଦେଖି ନ ପାରିବେ ।
ଏତେ କହି ନିତ୍ୟକର୍ମ ସାରିଲେ ନଦୀରେ
ବୋଇଲେ ତୁ ମଧୁବନ ଯାଅରେ ସତ୍ୱରେ ।
ଫଳମୂଳ ଭୁଞ୍ଜିକରି ରାମ ଆଗେ କହ
ଏତେ କହି ଚଳିଗଲେ ଜନକର ଝିଅ ।
ତାଙ୍କଠାରୁ ଶୁଣି ମୁହିଁ ମଧୁବନେ ଗଲି
ପକ୍ୱଫଳ ଖାଇ କରି ସେ ବନ ଭାଙ୍ଗିଲି ।
ତୋଟା ଭଗ୍ନ ଦେଖି ତୋଟାଳିଆ କଲେ ଗୋଳ
ମୋହର ହସ୍ତେ ମଲେ ଚଉଦ ସସ୍ତ୍ରବଳ ।
ଜାଣିକରି ରାବଣ କିଙ୍କର ଗଣ ପେଶି
ପନ୍ଦର ସହସ୍ର ବଳ ମୁଁ ପକାଇଲି ଧ୍ୱଂସି ।
ସେ କଥା ଶୁଣି ରାବଣ ମହାକ୍ରୋଧ ହେଲା
ଶାଳକଗଣ ଷୋଳ ସହସ୍ର ପେଶିଲା ।
ସେହି ଯେ ନାଶ ଗଲେ କର୍ମର ଅବଳେ
ତାହାଙ୍କୁ ମୁହିଁ ଧରିଣ ଧ୍ୱଂସ କଲି ହେଳେ ।
ଶୁଣି କରି ରାବଣ ଜମ୍ବୁମାଳିକି ପେଶି
ଅନେକ ରଣ କଲା ମୋ ସଙ୍ଗେ ସେ ଆସି ।
କର୍ମର ଅବଳେ ସେହି ନାଶ ଗଲା
ତା ସଙ୍ଗରୁ ପ୍ରଶସ୍ତ ବୀର ପଳାଇଲା ।
ପୁଣି ପାଞ୍ଚ ସେନାପତି ଆସି ବଳ ଘେନି
ରଣ ରଙ୍ଗ କରି ଗଲେ ମୃତ ସଞ୍ଜିବନୀ ।
ରାବଣ ସୁତ ଅକ୍ଷୟ ଆସିକଲା ରଣ
ସୀତାଙ୍କ କ୍ରୋଧରେ ସେ ମଲା ମୋ ହସ୍ତେଣ ।
ଲକ୍ଷେ ଷାଠିଏ ସହସ୍ର ସୈନ୍ୟବଳ ମଲେ
ଲଙ୍କାରେ ହାଲହୋଳି ପଡ଼ିଲା ସେତେବେଳେ ।
ରାବଣର ଜ୍ୟେଷ୍ଠପୁତ୍ର ଇନ୍ଦ୍ରଜିତ ବୀର
ମୋତେ ସେ ବାନ୍ଧିନେଲା ପେଶି ଅହିଶର ।
ହାଟବାଟ ଦାଣ୍ଡ କନ୍ଦିବିକନ୍ଦି ବୁଲାଇଲା
ସେ ମଧ୍ୟରେ ମୋତେ ବହୁ ମାଡ଼ ମରାଇଲା ।
ରାବଣର ଆଗରେ ଦେଲା ନେଇ କରି
ଦେଖିଣ ରାବଣ ମାରବାକୁ ମନ କରି ।
ବେଦବର ପିତା ମୋର କହିଲେ ବହୁତ
ତାଙ୍କର ବୋଲ ନ କଲା ପାପିଷ୍ଠ ଦଇତ ।
ବିଭୀଷଣ ବହୁତ ବୁଝାଇ କହିଲା
ତାହା ନ ମାନି ତାକୁ ଧିକକାରି ଗାଳିଦେଲା ।
ମୋତେ ବୋଇଲା ମରିବାର ତୁ ନିୟତ
ନୋହିଲେ କୁପରେ ପୋତି ମାରିବଟି ସତ୍ୟ ।
ମୁଁ ବୋଇଲି କୌଣସି ମତେ ମୁଁ ମରେ ନାହିଁ
କଥାଏ ଅଛି ମୋର ଶୁଣ ଲଙ୍କସାଇଁ ।
ମୋହର ଲାଙ୍ଗୁଳରେ ବସ୍ତ୍ରକୁ ଗୁଡ଼ାଇ
ଅଭଙ୍ଗ ଢାଳି ଯେବେ ଲଗାଇବ ଜୁଇ ।
ତେବେ ମୁଁ ପୋଡ଼ିହୋଇ ମରିବି ଦଶାନନ
ଏକଥା ଶୁଣି ରାବଣ କଲା ତତକ୍ଷଣ ।
ବସ୍ତ୍ର ଗୁଡ଼ାଇ ଅଭଙ୍ଗ ଲାଞ୍ଜେ ଢାଳି ଦେଲା
ନାଗଫାଶ ଫିଟାଇ ଅଗ୍ନି ଜାଳି ଦେଲା ।

ତେଣୁ ସେ ଲଙ୍କାଗଡ଼ ପୋଡ଼ିଲି ମୁଁ ହେଳେ
ବେନି ଶତଯୁଣ ଲଙ୍କା ପୋଡ଼ି ଗଲା ଖରେ ।
ରାବଣକୁ ବେନି ମୁଥ ମାରି ମୋହ କଲି
ମୁକୁଟ କୁଣ୍ଡଳ ତାର ଫିଟାଇ ଆଣିଲି ।
ଇନ୍ଦ୍ରଜିତକୁ ଧରିଣ ଖୋବିଲି ଦିଆ ମୁଥ
ଅଚେତ ହୋଇ ପଡ଼ିଲା ରାବଣର ସୁତ ।
ମୁକୁଟ କୁଣ୍ଡଳ ତାର ଆଣିଲି ଫିଟାଇ
ଚେତାପାଇ କ୍ରୋଧ ହେଲା ରାବଣ ତନୟୀ ।
ପବନର କଥାକୁ କେବେ ହେଁ ନ ମାନିଲା
ଅଗ୍ନିଶର ଧନୁରେ ଯୋଡି ଛାଡ଼ି ଦେଲା ।
ଦାନ୍ତରେ କାମୁଡ଼ିଲି ସେ ଶର ପଡ଼ିଲାହି
ଜାଣିଣ ରାବଣ ଧାତାଙ୍କୁ ସେ କହି ।
ବାନରକୁ ବୋଧ କରି ପଠାଅ ବୋଇଲା
ବିଧାତା ଆସିଣ ମୋତେ ପ୍ରବୋଧିଲା ।
ବୋଇଲେ ବେଗେ ଏଥୁ ଯାଅରେ ମାରୁତି
ରହିବାରେ ଆଉ ଯଶ ନ ମିଳିବ ଏଥି ।
ଜାଣୁ ତୁ ରାବଣକୁ ଡରନ୍ତି ଦେବତାଏ
ଶ୍ରୀରାମଙ୍କ ବାଣରେ ମରିବ ଦୈତ୍ୟରାୟେ ।
ଏହା ଶୁଣି ସେଠାରୁ ସୀତାଙ୍କ ପାଶେ ଗଲି
ମେଲାଣି ମାଗି ଆସି ସୁବଳେ ରହିଲି ।
ରାତ୍ରରେ ବିଶ୍ୱକର୍ମା ସେ ପୁର ନିର୍ମା କଲା
ଶବଦ ଶୁଣିବାରୁ ଗଲି ମୁଁ ହୋଇତ୍ୱରା ।
ଦେଖିକରି ବିଶ୍ୱକର୍ମା ମୋତେ ପ୍ରବୋଧିଲା
ଯଶ କଲୁ କିମ୍ପା ତୁ ରହିଲୁ ବୋଇଲା ।
ମୁଁ ବୋଇଲି ତୁ କିମ୍ପା ଗଢୁ ଏ ନବର
ସେ ବୋଇଲା ବିଷ୍ଣୁଭକ୍ତ ବିଭୀଷଣ ବୀର ।
ବେଦବର ବୋଇଲେ ସେ ଏଥି ରାଜା ହେବ
ସେଥି ସକାଶେ ଏ ପୁର ସଜାଡୁଛି ସର୍ବ ।
ଶୁଣିକରି ତାରଠାରୁ ବେଗେ ମୁଁ ଅଇଲି
ରଜନୀର ଶେଷରେ ସାଗର ତରିଲି ।
ସାତଜଣଙ୍କୁ ମୁଁ କହିଲି ସମାଚାର
ମଧୁବନେ ଫଳମୂଳ କଲୁ ଯେ ଆହାର ।
ପେଟ ସୁସ୍ଥ କରିଣ ଦର୍ଶନ ଆସି କଲୁଁ
ପୂର୍ବଜନ୍ମ ଦୋଷରୁ ମୁକତି ଲଭିଲୁଁ ।
ଶ୍ରୀରାମ ବୋଇଲେ ତୁ ଏକା ଏହା କଲୁ
ତିନିପୁରରେ ବାବୁ ଯଶ ବିସ୍ତାରିଲୁ ।
ରାବଣ ଇନ୍ଦ୍ରଜିତର ଆଣରେ ମୁକୁଟ
ଦେଖିବାକୁ ସରଧା ବଳିଲା ମୋର ଚିତ୍ତ ।
ଶୁଣିକରି ମାରୁତି କାଛଟା ଫେଡ଼ିଦେଲା
ରାବଣ କିରିଟୀ କୁଣ୍ଡଳ ଥୋଇଲା ।

ଇନ୍ଦ୍ରଜିତ କିରିଟୀ କୁଣ୍ଡଳ ଦେଲା ଥୋଇ
ଦେଖିକରି ହସ ହସ ହେଲେ ରଘୁସାଇଁ ।
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ
ସୈନ୍ୟବଳ ସହିତେ ଦେଖିଲେ ସକଳ ।
ଧନ୍ୟ ଧନ୍ୟ ପଦ ଯେ ଶବଦ ତହିଁ କଲେ
ଭଲଯୋଗେ ଜନମ ତୁ ହେଲୁ ଶୁଭବେଳେ ।
ରାମତାଳି ହରିବୋଲ ଜୟ ଜୟ ହୁଡି
ଶବଦରେ ଚମକି ପଡ଼ିଲା ମେରୁଗିରି ।
ଶ୍ରୀରାମ ବୋଇଲେ ସଜମିତ୍ରୀ ଶୁଣ
ତୋର କହିବା କଥା ହେଲା ଏବେ ଜାଣ ।
ସୁଗ୍ରୀବରକୁ ଚାହିଁ କହିଲେ ରାମରାଣ
ସତୀର ବାରତା ମିଳିଲା ଏବେ ଜାଣ ।
ବେନି ମାସକୁ କଷ୍ଟ କହିଛି ରାବଣ
ଆମ୍ଭେ ନ ଗଲେ ବଳାତ୍କାର କରିବ ସେ ପୁଣ ।
ବଳାତ୍କାର କରିଲେ ସୀତା ହେବେ ନାଶ
ପଛେ ଗଲେ ଆମ୍ଭର କି କହିବ ଯଶ ।
ଶୁଣି କରି ସୁଗ୍ରୀବ କରଯୋଡ଼ି କହି
ତୁମ୍ଭର ବିଚାରକୁ ଯେମନ୍ତ ଯୋଗାଇ ।
ଶ୍ରୀରାମ ବୋଇଲେ ତୁହି ଶୁଣ ହନୁମନ୍ତ
ଯିବାକୁ ସମୁଦ୍ରରେ ଅଛିଟି କି ପଥ ।
କରଯୋଡ଼ି କହଇ ପବନ ତନୟ
ବଡ଼ ଦୁର୍ଗମ ପଥ ଅଟେ ରଘୁରାୟ ।
ସମୁଦ୍ର ବାରାନିଧି ମଧ୍ୟରେ ଲଙ୍କାଗଡ଼
ଦେବତାଙ୍କୁ ଅଭେଦ ମାନବଙ୍କୁ ଅଗୋଚର ।
ପକ୍ଷୀ ଉଡ଼ି ଯିବାକୁ ବୃକ୍ଷ ପଦ ନାହିଁ
ଏହିପରି ଅଗମ୍ୟ ପଥ ସେ ଅଟଇ ।
ସବୁପାକ ପଥ ଯେ ଅଟେ ଖାଲି ପାଣି
ଛଳକୂଳ ତହିଁ ନାହିଁ ଯିବାକୁ ପୁଣି ।
ଗଡ଼ର ଚାରି ପାଶରେ ପାଚେରୀ ମେଘନାଦ
ଉଚ୍ଚ ଅଟେ ଶୁଣ ସେ ଚାରି ଯୂଣ ଭେଦ ।
ବିଧାତା ବିଚାରିଲେ ସେ ସିନ୍ଧୁକୁ ତରି
ଚିନ୍ତାକୁଳ ଚିତ୍ତ ହେଲେ ଶୁଣି ଚାପଧାରୀ ।
ସୀତାଙ୍କର ଗୁଣମାନ ଶ୍ରୀରାମ ସୁମରନ୍ତି
ଜାନକୀ ପ୍ରାପ୍ତ ହେବା କଥାକୁ ଚିନ୍ତନ୍ତି ।
ରକ୍ଷକପି ଘେନି ମୁହିଁ ଯିବଇଁ ଅବଶ୍ୟ
ରାବଣକୁ ମାରିଲେ ମୋର ମନ ତୋଷ ।
ନିଶ୍ଚୟ ମୋତେ ତ ଲାଗିଲା ଖିନ ବଳ
ଏତେ ବୋଲି ଶ୍ରୀରାମ ନିଶତେ ଦେଲେ କର ।
ମନରେ ବିଚାର କରନ୍ତି ଦୟାନିଧି
ଅବଶ୍ୟ କେଉଁରୂପେ ଯିବାର ମୋର ବିଧି ।

ଏମନ୍ତ ବିଚାରି ସେ ଲକ୍ଷ୍ମଣ ମୁଖ ଚାହି
କେମନ୍ତେ ଯିବା ଭାଇ ବିଚାର କର ତୁହି ।
ଲକ୍ଷ୍ମଣ ବୋଇଲେ ଦେବ କିଛି ନ ବିଚାର
ନିଶ୍ଚୟ ରାବଣକୁ ମାରିବାଟି ସାର ।
ଲକ୍ଷ୍ମଣଠାରୁ ଶୁଣି ସୁଗ୍ରୀବକୁ ଅନାଇଲେ
ମୃଦୁ ମୃଦୁ କରିଣ ବଚନ ପ୍ରକାଶିଲେ ।
ଶୁଣ ହେ ମଇତ୍ର ମୋର କ୍ରୋଧ ଜାତ ହେଲା
ଜାନକୀର କଥା ଶୁଣି ରିପୁ ମୋର ହେଲା ।
ବିପରୀତ କାଳେ ମୁଁ ଘରଣୀ ନ ଦେଖିଲି
ଅର୍ଦ୍ଧଅଙ୍ଗକୁ ମୋର ତେଜିଣ ବସିଲି ।
ସେ ଘରଣୀର ଗୁଣ କହିଲେ ନ ସରି
ହୃଦରହାର ସେହି ମୋର ହିତକାରୀ ।
ଏତେ ସ୍ନେହ କରିଣ ସଙ୍ଗରେ ମୋର ଥିଲା
ବନ ପର୍ବତ ଛାଡ଼ି ସାହେର ଜିଣିଗଲା ।
ଏତେ କହି ଶ୍ରୀରାମ କୋଦଣ୍ଡ କରୁ ଥୋଇ
ବସିଲେ ଖେଦ ହୋଇ ବିସ୍ମୟ ମୁଖ ହୋଇ ।
ହନୁମନ୍ତ ଜାଣିଲା ଶ୍ରୀରାମଙ୍କ ମନ
ବୋଇଲା ଅଭରସା କଲେ ରାମରାଣ ।
ଏତେ ଭାବି କରଯୋଡ଼ି କହେ ହନୁବୀର
ତୁମ୍ଭେ କିମ୍ପା କୋଦଣ୍ଡ ଛାଡ଼ ରଘୁବୀର ।
ପଚାଶ କୋଟି ଯେ ଅଟେ ବସୁନ୍ଧରୀ
ସପତ ସାଗର ଅଛଇଁ ତହିଁ ପୁରି ।
ତିନିପୁର ମଧ୍ୟରେ ଚଉଦ ଭୁବନ
ବାରଲକ୍ଷ ଯୋଜନ ସ୍ୱର୍ଗ ଅଟେ ଜାଣ ।
ପଚିଶି ଲକ୍ଷ ଯୋଜନ ଅଟେ ମର୍ତ୍ତ୍ୟପୁର
ଚବିଶି ଲକ୍ଷ ଯୋଜନ ଅଟଇ ପାତାଳ ।
ସୁତଳ ଅଟଇ ଯେ ଅଠର ଲକ୍ଷ ଯୁଣ
ବେତାଳ ଅଟଇ ଯେ ଛତିଶ ଲକ୍ଷ ଯୁଣ ।
ରସାତଳ ପୁର ଚଉଦ ଲକ୍ଷ ଯୁଣ
ଅନ୍ତରାଳ ପୁର ଯେ ଅଠରଲକ୍ଷ ଯୁଣ ।
ସକଳ ପୁରରେ ଯେ ଅଛି ସିନ୍ଧୁ ଘୋଟି
ଦୀର୍ଘ ସଂସାର ପ୍ରତି ଅଟଇ ସାହେରଟି ।
ଏକାକି ନାରାୟଣ ଯେ ସଂସାର ଘୋଟି ରହି
ଏକାକି ସଦାଶିବ ଦାନୀ ଯେ ଅଟଇ ।
ଏକା ଧନପତି ଯେ ଭଣ୍ଡାର ସମ୍ଭାଳଇ
ଏକା ଚନ୍ଦ୍ର ଗୋଟି ଯେ ସପ୍ତପୁର ମୋହି ।
ଏକା ରବି ଗୋଟି ଯେ କରଇ ଆଲୋକ
ତେଜର କିରଣରେ ସଂସାର ରହି ଲୋକ ।
ଏକା ଅଗ୍ନି ଗୋଟି ଯେ ସପ୍ତପୁର ଘୋଟି
ଏକା ଅନ୍ଧାର ରଜନୀ ସଂସାର ଘୋଟଇଟି ।

ଏକା ଦେବୀଠାରୁ ସକଳ ଦେବ ଜାତ
ଏକଇ ବିଧାତା ଯେ କରଇ ଆତ ଜାତ ।
ଏକ ଜୀବ ପରମ ସବୁ ଦେହେ ଘୋଟେ
ଏ କଥାକୁ ବିଚାର କର ହେ ରଘୁଚାଟେ ।
ଏକଇ ଓଁକାର ଯେ ପ୍ରକୃତି ଭିନ୍ନ ଭିନ୍ନ
ସକଳ ଦେବତା ଯେ ଏକଠାରୁ ଜନ୍ମ ।
ଏକଇ ନାରାୟଣ ସକଳଠାରେ ପୁରି
ସେହି ନାରାୟଣ ଯେ ମାୟାରେ ବିହରି ।
ତୁମ୍ଭେ କିମ୍ପା ଚିନ୍ତା କର ହେ ରଘୁନାଥ
ଏ ଲଙ୍କାଗଡ଼ ଅଛି ତୁମ୍ଭର ହୃଦରେ ତ ।
ଏଥିର ବାହାରେ ସୀତା ଅଛି କି ଅନ୍ୟସ୍ଥାନ
ମାନବ ତନୁ ହେବାରୁ ବିଚଳିତ ମନ ।
କହିଲେ ଉପାଡ଼ି ମୁଁ ଆଣିବି ଲଙ୍କାପୁର
ଏହିଠାରେ ଯୁଦ୍ଧ କରି ରାବଣକୁ ମାର ।
ତୁମ୍ଭେ କିମ୍ପା ଧନୁ ଛାଡ଼ି ବିସ୍ମୟ ମନ କର
ଫେଡ଼ିଣ କହ ଦେବ କିସ ଯେ ବିଚାର ।
କହିଲେ ରାବଣକୁ ପକାଇବି ମାରି
ପିଇଣ ଶୁଖାଇବି ସମୁଦ୍ରର ବାରି ।
ବିନ୍ଧ୍ୟଗିରି ହିମଗିରି କୈଳାସ ପର୍ବତ
ଏମାନ ଆଣିଦେବି ତୁମ୍ଭର ଅଗ୍ରତ ।
କି ଅବା ସ୍ୱର୍ଗପୁର ପାତାଳକୁ ନେବି
ପାତାଳ ପୁରକୁ କି ମର୍ତ୍ତ୍ୟକୁ ଆଣିବି ।
ପିଠିରେ ବସାଇବି ଭାଲୁ କପିକୁଳ
ତୁମ୍ଭେ ଆଜ୍ଞା ଦେଲେ ତରିବୁ ସିନ୍ଧୁଜଳ ।
ଏ ଛାର କଥାକୁ ଦେବ କିମ୍ପା ଚିନ୍ତା କର
ପ୍ରସନ୍ନ ହୋଇ ମୋତେ ଆଜ୍ଞା ଦାନ କର ।
କୂଳରେ ଦୁଇପାଦ ଲଙ୍କାରେ ଦୁଇହାତ
ବନ୍ଧ ପଡ଼ିଲା ପ୍ରାୟେ ହେବି ରଘୁନାଥ ।
ଏପରି କହି ହନୁମନ୍ତ ଶ୍ରୀରାମ ସୁମରିଲା
ଦୁଇଶତ ଯୁଣ ଯେ ଉସର୍ଗ ବଢ଼ିଗଲା ।
ସ୍ୱର୍ଗ ମଣ୍ଡଳରେ ଲାଗିଲା ତାର ଶିର
ବୋଇଲା ସବୁ ବଳ ବସ ମୋ ପିଠିର ।
ଉଠ ସକଳ ସୈନ୍ୟ ଲଙ୍କାଗଡ଼ ନେବି
ଲଙ୍କାପୁର ଗଡ଼ର ନିକଟେ ଛାଡ଼ିବି ।
ତୁମ୍ଭ ଦୁଇ ଭାଇଙ୍କି ନେବି ମୁଁ ତ୍ୱରିତ
ଏମନ୍ତ ବଚନ ବୋଇଲା ହନୁମନ୍ତ ।
ସକଳ ବଳ ଶୁଣି ହୋଇଲେ ଚକିତ
ବୋଇଲେ ଧନ୍ୟ ଧନ୍ୟ ପବନର ସୁତ ।
ଦେଖିଣ ସନ୍ତୋଷ ହେଲେ ରଘୁନାଥ
ତୋ କଥା ଜାଣିବା ପାଇଁ ହେଲି ବିହ୍ୱଳିତ ।

ଲକ୍ଷେ ଷାଠିଏ ସହସ୍ର ଦୈତ୍ୟ ନାଶ କଲୁ
ସେନାପତି ଜମ୍ବୁମାଳି ଅକ୍ଷୟକୁ ମାଇଲୁ ।
ଲଙ୍କା ପୋଡ଼ିଦେଇ ଦୈତ୍ୟଙ୍କୁ ଦେଲୁ ଭୟ
ସମୁଦ୍ର ତରି ଅଇଲୁ ପବନ ତନୟ ।
ଏକଥା ଶୁଣି ମୋତେ ଅସମ୍ଭବ ହେଲା
ତୋ କଥାକୁ ବିଚିତ୍ର ମଣିଲି ସତ୍ୟପରା ।
ଏବେ ଜଣାଗଲା ଯେ କରିବୁ କାର୍ଯ୍ୟ ମୋର
ସୈନ୍ୟବଳ ଜାଣିଲେ ଅଟ ତୁ ବୀରବର ।
ଯେତେକ କଥା କହୁ ସକଳ ତୋର ସତ୍ୟ
ପୂର୍ବରୁ ପିତା ତୋର ଅଟେ କି ଦଶରଥ ।
ଆଜ କି ଭରସା ମୋତେ କେହୁ ଦେଇପାରେ
ଏତେ କହି ଶ୍ରୀରାମ ହନୁକୁ କୋଳ କଲେ ।
ରାମ କୋଳ କରିବାରୁ ହନୁ ସାମାନ୍ୟରୂପ ହୋଇ
ଦେଖିଣ ସୈନ୍ୟବଳ ହରଷ ମନ ତହିଁ ।
ଏହି ହନୁ ସଙ୍ଗେ ଥିଲେ ନାହିଁ ଅଭରଷା
ଅନେକ କାର୍ଯ୍ୟ କରିବ ପବନର ବତ୍ସା ।
ଏଥୁ ଅନନ୍ତରେ ପୁଣି ପୁଚ୍ଛନ୍ତି ରଘୁନାଥ
କହ କହ ହନୁମନ୍ତ ଲଙ୍କାର ଚରିତ ।
ଲଙ୍କାର ଅସୁରମାନେ କି କର୍ମ ଆଚରନ୍ତି
ସେକଥା ମୋର ଆଗେ କହରେ ମାରୁତି ।
ସ୍ୱରୂପ କରିଣ କହରେ ବଚନ
କରଯୋଡ଼ି କହଇ ପବନ ନନ୍ଦନ ।
ଭୋ ଦେବ ଶ୍ରୀରାମ ହେ ଦଇତ ଶାସ୍ତ୍ରାଭ୍ୟାସି
ଦିନକରେ ପାରନ୍ତି ସେ ଚାରିବେଦ ଘୋଷି ।
ଅନଳେ ଘୃତ ଦେଇଣ ପୂଜନ୍ତି ବଶ୍ୟାନରେ
ଦୋହରା ଅଗ୍ନି ଅଛି ସବୁଙ୍କରି ଘରେ ।
ଶୁଣିକରି ରଘୁନାଥ ହୋଇଲେ ସ୍ତବଦ
ସେ ପୁରେ ଯାଇ କେହ୍ନେ କରିବି ପ୍ରମାଦ ।
ଚାରିବେଦ ପଢ଼ି ଯେବେ ଅଗ୍ନିରେ ଦ୍ୟନ୍ତ ଘୃତ
ପାପ ମୋତେ ବଳିବ ନା ତାଙ୍କୁ କଲେ ହତ ।
ହନୁମନ୍ତ ବୋଇଲା ପଢ଼ନ୍ତି ଚାରିବେଦ
ଉଚ୍ଛିଷ୍ଟ ପକାନ୍ତି ସେ ହୁତାଶନ ମଧ୍ୟ ।
ସୁରା ପାନ କରନ୍ତି ଆଚାର ସେଠି ନାହିଁ
ଦେବା ଦୟାପଦ ଯେ ହୃଦରେ ନ ଥାଇ ।
ସ୍ନାନ ନ କରନ୍ତ ନ ପାଳଟନ୍ତି ବସ୍ତ୍ର
ନୁହନ୍ତି ଶୁଚିବନ୍ତ ଦୁରାଚାରେ ରତ ।
ମାଗନ୍ତା ଜନଙ୍କୁ ନିରାଶ କରନ୍ତି
ସର୍ବଦା ସ୍ୱେଚ୍ଛାଚାର ହୃଦରେ ବହନ୍ତି ।
ଦିବସରେ ନାରୀଙ୍କ ସଙ୍ଗରେ ଅଙ୍ଗ ସଙ୍ଗ
ମାନିତ ଗଉରବ ନାହିଁ ତାଙ୍କ ଅଙ୍ଗ ।

ଶୁଣିଣ ଶ୍ରୀରାମ ଯେ ହରଷ ମନ ହେଲେ
ମାରିବାର ମରମ ଯେ ପାଇଲି ବୋଇଲେ ।
ଦୟା ଧର୍ମ ଆଚାର ତାଙ୍କର ଯେବେ ନାହିଁ
ବେଦ ପଢ଼ିଲେ କି ହେବ ନିଶ୍ଚେ ମାରିବାଇଁ ।
ଏମନ୍ତ ବୋଲି ଶ୍ରୀରାମ ସୁଗ୍ରୀବକୁ ଚାହିଁ
ମଇତ୍ର ମୋତେ ପ୍ରାପତ କରାଅ ବଇଦେହୀ ।
ତୁମ୍ଭର ପ୍ରସାଦରେ ପାଇଲି ବାରତା
କୁଶଳେ ବର୍ତ୍ତିଛନ୍ତି ଜନକ ଦୁହିତା ।
ଯେତେଦିନ ଯାଏଁ ତଥ୍ୟ ଶୁଣି ମୁଁ ନ ଥିଲି
ମଳା ହଜିଲାର ପ୍ରାୟ ମନେ ଭାବୁଥିଲି ।
ଏବେ ହନୁମନ୍ତ ଯେ ଦେଖିଣ ଅଇଲା
ଶୁଣିଲା ବେଳୁଁ ମନ ଉଛ୍ଵାସ ହୋଇଲା ।
ଜାନକୀଙ୍କୁ ଦେଖିବାକୁ ବଳିଲା ମୋର ମତି
ମୋତେ ଆଶ କରି ଯେ ରହିଛି ମୋର ସତୀ ।
ଆହେ ମଇତ୍ର ମୋତେ ପ୍ରତିକାର କର
ସମୁଦ୍ର ତରିବାକୁ ବୁଦ୍ଧି ଯେ ବିଚାର ।
ଗଡ଼ କରିଣ ଆମ୍ଭେ ରହିବା ଯେ କାହିଁ
ଯୁଦ୍ଧରେ ପ୍ରୟୋଜନ ଆନରେ କାର୍ଯ୍ୟ ନାହିଁ ।
କେଉଁଠାରେ ରହିବା ସେ ବିଚାର କରିବା
ଯୁଦ୍ଧ ନ କଲେ ଆମ୍ଭେ କାର୍ଯ୍ୟ ନ ପାଇବା ।
ଶ୍ରୀରାମଙ୍କ ବଚନେ ବୋଇଲେ ସୁଗ୍ରୀବର
ତୁମ୍ଭେ ସିନା ଜାଣ ଦେବ ସକଳ ବିଚାର ।
ତୁମ୍ଭର ଆଜ୍ଞାରେ ଯେ ଆମ୍ଭେମାନେ ଥିବୁଁ
ତୁମ୍ଭେ ଯେଣିକି ପେଶିବ ତେଣିକି ଯେ ଯିବୁଁ ।
ଶ୍ରୀରାମ ବୋଇଲେ ଶୁଣ କିଷ୍କିନ୍ଧାର ସାଇଁ
ସକଳ ସେନାପତିଙ୍କି ଆଣ ହକାରାଇ ।
ଯୂଥପତି କପିକୁଳ ରାଜାମାନେ ଜାଣ
ମଲ୍ଲ ମହାମଲ୍ଲ ଯେତେ କରୁଛନ୍ତି ଟାଣ ।
ଶ୍ରୀରାମ ବଚନ ଶୁଣି ସୁଗ୍ରୀବର ରାୟେ
ତତକ୍ଷଣେ ଜାମ୍ବେବକୁ ସନ୍ନିଧକୁ ଆୟେ ।
ଭୋ ମନ୍ତ୍ରୀ ଯାହା ମୋତେ କହିଲେ ରଘୁନାଥ
ବିଚାରି ଛାମୁରେ ଯାଇ ଜଣାଅ ବହନତ ।
ଜାମ୍ବେବ ବୋଇଲେ ହେ ଶୁଣ ରାମରାଜ
ଗଡ଼ କରିବାରେ ଆମ୍ଭର କିସ କାର୍ଯ୍ୟ ।
ଧର୍ମକୁ ଆଶ୍ରେ କରି ମାରି ଦୈତ୍ୟ ବଳ
ଉତ୍ତରା ଫାଲ୍‌ଗୁନୀ ଆଜି କରିବା ଅନୁକୂଳ ।
ଶୁଣିଣ ଋକ୍ଷ ମନ୍ତ୍ରୀ ଜାମ୍ବେବଙ୍କ ବାଣୀ
ଖଡ଼ି ଘେନି ମଣ୍ଡଳ କାଟିଲେ ରଘୁମଣି ।
ମଣ୍ଡଳ ଭିତରେ ଆପଣା ନାମ ଲେଖି
ଶୂନ୍ୟମାନ କାଟିଣ ବେଢ଼ି କଲେ ରଖି ।

ଗୋଟିଏ ଛାଡ଼ିଣ କାଟିଲେ ତହିଁ ଯାର
ମନେ ମନେ ଶ୍ରୀରାମ କରନ୍ତି ବିଚାର ।
ଏ ଶକୁନ ଯେବେ ହୋଇବ ସମତୁଲ
ଜାଣିବା ଯେ ଅନୁକୂଳ ଅଟିହିଁ ଅମୂଲ ।
କାଟନ୍ତେଣ ଗାର ପଡ଼ିଲା ଭଲେ ଯାଇ
ମନେ ମନେ ଆନନ୍ଦ ହୋଇଲେ ରଘୁସାଇଁ ।
ବିଚାରିଲେ ଏତେ ମତେ ପ୍ରାପତ ହୋଇବ
ମୋହର ନାରାଚରେ ମରିବ ଦଶଗ୍ରୀବ ।
ଏତେ ବୋଲି ଶ୍ରୀରାମ ସୀତାଙ୍କୁ ସୁମରି
ମଙ୍ଗଳ ଆରୋପଣ ଆପଣେ ବେଗେ ସାରି ।
ସନ୍ତୋଷ ହୋଇଣ ଶ୍ରୀରାମ ବୋଲନ୍ତି
ଜାନକୀଙ୍କୁ ଭେଟ ଯେ ହୋଇଲୁ ମାରୁତି ।
ମଥାମଣି ଦେଇଣ କହିଲା ସତୀ ତୋତେ
କେହୁ ତାଙ୍କୁ ସାହା ହେବ କହ ମୋ ଅଗ୍ରତେ ।
କାହାର ଆଶ୍ରିତରେ ବଞ୍ଚେ ମୋର ନାରୀ
ମନ ମୋର ଶାନ୍ତି ହେବ କହ ସତ୍ୟ କରି ।
ଶୁଣିର ହନୁମନ୍ତ ଯୋଡ଼େ ବେନି କର
ମୋହଠାରୁ ଶୁଣ ହେ ତ୍ରୈଲୋକ୍ୟ ଠାକୁର ।
ଯେବେଣ ଦିନ ମୁଁ ସତୀଙ୍କୁ ଭେଟ ହେଲି
ବାରତା କହିଣ ମୁଁ ଚେରଷ୍ଟା ଦେଖିଲି ।
ରଜନୀରେ ମଣ୍ଡପ ଓରାପରେ ରହି
ତୁମ୍ଭନାରୀ ନେତ୍ରକରେ ମୁଁ ପାଶକୁ ନ ଯାଇ ।
ଦୂରରେ ଥାଇ ରାବଣ କହିଗଲା ଚାଲି
ଦୈତ୍ୟବାଣୀ ଶୁଣି କ୍ରୋଧ ହୋଇଲେ ମୈଥିଳୀ ।
କୋପାନଳେ ଦେବୀ ଯେ ଅଗ୍ନିରୂପ ହୋଇ
ରାବଣକୁ ବୋଇଲେ ପାମର ମନ୍ଦ ତୁହି ।
ବୋଇଲେ ଲଙ୍କାକୁ ମୁଁ ଦେବୀ ଭସ୍ମ କରି
ସମସ୍ତେ ମରିବ ତୁମ୍ଭେ ଅଗ୍ନିରେ ପଡ଼ି କରି ।
ଏତେ କହିଣ ଦେବୀ କ୍ରୋଧେ ଜର୍ଜରିତା
ତାହା ଦେଖୁଥିଲା ବିଭୀଷଣର ଦୁହିତା ।
କରପତ୍ର ଯୋଡ଼ିଣ ଯେ ଚରଣେ ନମିଲା
ଦନ୍ତରେ ତିରଣ ଧରି ଛାମୁରେ ଉଭା ହେଲା ।
ବୋଇଲା ଜାନକୀ ଗୋ ନିୟମ ଲଙ୍ଘ କିମ୍ପା
ପାପକୁ ଭୟ କରିଣ ମନେ କର ଶଙ୍କା ।
ଆଗତ ପ୍ରମାଣ ଯେ କରିଅଛନ୍ତି ଚିତ୍ତେ
ସ୍ୱାମୀର ହସ୍ତେ ଦୈତ୍ୟ ମାରିବା ନିମନ୍ତେ ।
ରାବଣର ଆଗରେ କରିଅଛନ୍ତି ସତ୍ୟ
ତାର ବଂଶ ମାରିବେ ଆସି ରଘୁସୁତ ।
ସେ କଥାକୁ ରାବଣ ସୁଉକାର କଲା
ତେଣୁ ତୁ ଲଙ୍କାକୁ ଅଇଲୁ ଦେବୀ ଭଲା ।

ଏବେ ସେ କଥାକୁ କରୁଛ ପୁଣ ଆନ
କେମନ୍ତେ ଧରଣୀ ଧରିବ ନାଗନାନ ।
ଶ୍ରୀରାମ ଆସିବାର ନିକଟ ହେଲାଣି
ଶାନ୍ତଶିଳ ହୁଅଗୋ ଜନକ ଦୁଲଣୀ ।
ଆସିବାବେଳେ ତୁ ଯେ କହିଅଛୁ ଜାଣ
ଚଉଦ ମାସ ଦି'ଦିନେ ମରିବ ରାବଣ ।
ଏବେ ତ ତେରମାସ ଏଥିରେ ବହିଗଲା
ମାସେ ନବଦିନ ଆଉ କଣ୍ଟକ ରହିଲା ।
ମାସେ ନବଦିନ ପୂରିବାଯାଏଁ ରହ
ନ ଆସିଲେ ସ୍ୱାମୀ ଲଙ୍କା ଭସ୍ମ କରିଦିଅ ।
ଶୁଣିଣ ତୁମ୍ଭ ନାରୀ ସନ୍ତୋଷ ହୋଇଲେ
ତୃପତି କଲା ବୋଲି ପ୍ରଶଂସା ତାକୁ କଲେ ।
ପୂର୍ବର କଥାକୁ ମୋତେ ଦେଲୁ ଗୋ ଚେତାଇ
ତପିଜନ ଭାବି ହୁଅ ଦୁହିତା ଗୋ ତୁହି ।
ପିତାର ସମନରେ ରାଜ୍ୟ ଭୋଗ କର
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ହୁଅ ତୁ ଅମର ।
ରାବଣ ଦୁଷ୍ଟ ଭାଷାରେ କ୍ରୋଧ ମୋର ଚିତ୍ତ
ଆଜିଠାରୁ ଏ ଲଙ୍କାରେ ଲାଗୁ ଉତପାତ ।
ସୈନ୍ୟବଳ ଅଶ୍ୱରଥି ମରନ୍ତୁ ବହୁତ
ରାବଣର ପୁତ୍ର ମୁଣ୍ଡ ଆଉ ଯେ ତ୍ୱରିତ ।
ଏହି ଲଙ୍କା ପୋଡ଼ିଯାଉ ମୋହର ବଚନେ
ଏତେ କହି ସତୀ ଯେ ପ୍ରତିଜ୍ଞା କଲେ ମନେ ।
ବୋଇଲେ ତିନିଦିନେ କଥା ମୋର ଘଟୁ
ରାବଣର ସୈନ୍ୟବଳ ପୁତ୍ର ମୁଣ୍ଡ କଟୁ ।
ଏକଥାକୁ ଶୁଣି ମୁଁ ମନେ ବିଚାରୁଛି
ସ୍ୱତୀକି ସାହା ଅଛି ବିଭୀଷଣ ବସି ।
ଏଥୁଅନନ୍ତରେ ରହି ସମସ୍ତେ ନିର୍ଜନ
ନିଦ୍ରାରେ ସକଳେ ହେଲେ ଅଚେତନ ।
ସେତେବେଳେ ପବନ ଅଗ୍ନି ଦେବତା ମିଳି
ଅମୃତ ରଖି ପାଶେ ଅଲଗେ ଗଲେ ଚଳି ।
ଅମୃତ ଭୋଜନ କରି ଦଶରଥ ବଧୂ
ବାସିପାଣି ପିଇଣ ବୋଇଲେ ସାଧୁ ସାଧୁ ।
ଭୋଜନ ସାରିଣ ସେ ଆଚ୍ଛାମନ କଲେ
ସେ ଉଚ୍ଛିଷ୍ଟ ଅଗ୍ନିଦେବତା ଘେନିଗଲେ ।
ପବନ ଦେବତା ପାରି ଦେଲେ ଶଯ୍ୟା
ତହିଁ ଶୟନ କଲେ ଜନକ ଆତ୍ମଜା ।
ସେଥିରୁ ଜଣାଗଲା ଦେବେ ଯେ ସପକ୍ଷ
ଚାରିଦିନ ସଙ୍କୋଳିଯାଏ ସହସ୍ରାକ୍ଷ ।
ସକଳ ଦେବତାଏ ନିଉନ ହୋଇ କହି
ସ୍ୱର୍ଗରେ ଆମ୍ଭେମାନେ ରହିବୁ କର ତ୍ରାହି ।

ବିଭୀଷଣ ଦୁହିତା ରଖିଛି ତୁମ୍ଭ ନାରୀ
ସକଳ କଥା ବୁଝାଏ ନିଉନ ରୂପ ଧରି ।
ବିଭୀଷଣ ଦୁହିତା ଅଟଇ ତୁମ୍ଭ ମାତ
ତାକୁ ବଳି ତୁମ୍ଭ ମାତ ନ କର ଏତେ ହିତ ।
ନିତି ସେ ତ୍ରିଜଟା ଧୁଆଇ ପାଳଟା
ଚରଣ ଦୁଇ ଧୋଇ ଉଦକ ପାଇ ତୁଷ୍ଟ ।
କ୍ରୋଧ ଶାନ୍ତି କରାଏ ବିନତି ହୋଇଣ
ବୋଧ ଦିଏ ସ୍ୱାମୀ ତୋର ଆସିବେ ନିକଟେଣ ।
ତାହାକୁ ମଣିଲି ମୁଁ ଜନକ ଘରଣୀ
ଅସୁରୁଣୀ ନୁହେ ବିଭୀଷଣର ଦୁଲଣୀ ।
ଶୁଣିକରି ଶ୍ରୀରାମ ଯେ ପରମ ତୋଷ ହେଲେ
ଧର୍ମରେ ଜନନୀ ସେ ମୋର ଅଟେ ଭଲେ ।
ଆହୁରି କଥାଏ ତୁମ୍ଭେ ଶୁଣ ଚାପଧାରୀ
ପବନ ଅଗ୍ନି ଦେବତା ତୋ ନାରୀ ବୋଲିଦାରି ।
ଜଗିଣ ରହିଛନ୍ତି ସୁରରାଜା ବୋଲେ
ତୁମ୍ଭ ନାରୀ ଯାହା କହେ କରନ୍ତି ତତ୍‌କାଳେ ।
ଗୁପତ ହୋଇଣ ସେ ଅଛନ୍ତି ସେଠାରେ
ସତୀଙ୍କୁ ପ୍ରତି ବୋଧ କରନ୍ତି ଥରେ ଥରେ ।
ତୁମ୍ଭ ନାରୀ ଲଙ୍କରେ ରହିଲା ଦିନୁ ଯାଇ
ତୁମ କଥା ପିତା ମୋହର ମଣାଇ ।
ଯେଉଁଦିନ ବାଳି ମଲା ସୁଗ୍ରୀବ ରାଜନ
ସୈନ୍ୟ ଠୁଳ ହେବାର କହିଲେ ଯାଇଣ ।
ଚାରି ଦିଗକୁ ଦୂତ ଯିବାର କହିଲେ
ମୋର ପୁତ୍ର ଲଙ୍କା ଅଇଲା ବୋଇଲେ ।
ଏହିପରି ପ୍ରତିଦିନ କହି କଥା ତୋର
ଶୁଣିଣ ସନ୍ତୋଷ ହେଲେ ରଘୁକୁଳ ବୀର ।
ବୋଇଲେ ଏକଥା ତୋର ଜାଣିବା ହନୁମନ୍ତ
ଦେବତାଏ ଯଦି ସାହାପକ୍ଷ ଅଛନ୍ତି ତ ।
ତେବେ ତ ବାରାନିଧି ମୋତେ ବାଟ ଦେବ
ବରୁଣ ଦେବତା ଆସିଣ କହିବ ।
ଶୁଣିଣ ପାର୍ବତୀ ବୋଲନ୍ତି ବଚନ
କହ ସେଠାରୁ କି କଲେ ରଘୁନାଥ ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ହନୁଠାରୁ ଶୁଣି ଶ୍ରୀରାମ ହରଷ କଲେ ମତି ।
ଦେବତାଙ୍କର ସାହାଯ୍ୟ ଦେବତାଙ୍କର କଥା
ଶୁଣିଣ ସନ୍ତୋଷ ହେଲେ ରଘୁକୁଳ କର୍ତ୍ତା ।
ପ୍ରସନ୍ନ ବଦନ ହୋଇଲେ ଚାପଧାରୀ
ବିଚାରିଲେ ଅସୁର ମଲେ ଦେବଙ୍କ ଇଷ୍ଟ ସରି ।
ମୁଖ ଦଧି ଭାଣ୍ଡ ଯେ ନୟନ ରୋହି ମତ୍ସ୍ୟ
କେଶବୃତ ପୁତ୍ରରେ ଅଟଇ ସଞ୍ଚିତ ।

ନାସାତିଳ ପୁଷ୍ପ ଯେ ଝଟକ ରତ୍ନ ଜାଣି
ପିନ୍ଧିବାର ବସନ ଶୋଭା ଦିଶି ପୁଣି ।
ଅଣ୍ଟିର କୋକିଳ ବାଣି ଶ୍ରୀରାମଙ୍କ ଭାଷ
ଉଠିଲେ ଅନୁକୂଳ ଘେନି ରଘୁ ଶିଷ୍ୟ ।
ବୋଇଲେ ପଥ ତୁହି କଢ଼ାଅ ପାବନୀ
ଏହି ଅନୁକୂଳେ ଲଙ୍କାଗଡ଼େ ଯିବା ପୁଣି ।
ଏତେ କହି କାଣ୍ଡ କୋଦଣ୍ଡ ଧରି ବେନି ଭାଇ
ବଇଦେହୀ ରୂପ ଚିନ୍ତି ଚରଣ ବଢ଼ାଇ ।
ତିନି ପାଦ ଯହୁଁ ଶ୍ରୀରାମ ଉଠାଇଲେ
ସୁଗ୍ରୀବର ସହିତରେ ସମସ୍ତେ ଉଠିଲେ ।
ଦେଖିକରି ସ୍ୱର୍ଗେ ଦେବ ବେଦ ଧ୍ୱନି କଲେ
ଶ୍ରୀରାମଙ୍କ ଶିରରେ କୁସୁମ ବୃଷ୍ଟି କଲେ ।
ଦେବଗୁରୁ ମଙ୍ଗଳ ବେଦ ପଢ଼େ ପୁଣ
ଅପସରୀ କିନ୍ନରୀ କରନ୍ତି ଗାୟନ ।
ବିଦ୍ୟାଧରୀମାନେ ଯେ ମଜ୍ଜିଲେ ନୃତ୍ୟ ରସେ
ରମ୍ଭା ମେନକା ନାଚନ୍ତି ମନର ହରଷେ ।
ନାରଦ ତାଙ୍କ ସଙ୍ଗେ ବଜାନ୍ତି ବୀଣା ଯନ୍ତ୍ର
ତ୍ରିଲୋଚନ ସୁମରନ୍ତି ସଞ୍ଜିବନୀ ମନ୍ତ୍ର ।
ଏକାଦଶୀ କରଣ ନବଗ୍ରହଠୁଳ
ମଳୟ ବସନ୍ତ ବହେ ହୋଇ ଧୀର ଧୀର ।
ଚଣ୍ଡିପାଠ ସୁମରଣା କଲେ ବେଦପତି
ଶୁଭ ଯୋଗକଥା ଯେ କହିଲେ ବୃହସ୍ପତି ।
ବିଘ୍ନରାଜ ଖଣ୍ଡନ୍ତି ବିଘ୍ନମାନ ତହିଁ
ଗଙ୍ଗାଉଭା ହୋଇଛନ୍ତି ବାସଜଳ ନେଇ ।
ଶୂନ୍ୟରେ ଚାରିମେଘ ଛାୟା କଲେ ଆସି
ଗ୍ରୀଷ୍ମ ଋତୁରେ ଶୀତଳ ପାଇ ରଘୁବଂଶି ।
ଚାଲି ଯିବାକୁ ଶ୍ରୀରାମ ମନେ କଲେ ଇଚ୍ଛା
କରଯୋଡ଼ି ଜଣାଇଲେ ଖଡ୍‌ଗଦର ବତ୍ସ୍ୟ ।
ଭୋଦେବ ଶ୍ରୀରାମ ରଘୁକୁଳ ସାଇଁ
ଚାଲିଯିବା ଉଚିତ ନୁହେଁ ବେନି ଭାଇ ।
ଅକଳିତ ବଳିଛନ୍ତି ଭାଲୁ ଯେ ବାନର
ବାରଣ ନ ଯିବ ପ୍ରଭୁ ତୁମ୍ଭର ଯିବାର ।
ଅପରଚେ ଲୋକମାନେ ଚିହ୍ନି ନ ପାରିବେ
ଗହଳ ବେଳରେ ଶ୍ରୀଅଙ୍ଗେ ଛୁଇଁବେ ।
ଶ୍ରୀଅଙ୍ଗକୁ ଘଞ୍ଚାଳ ଲାଗିବ ଗୋସାଇଁ
ହନୁମନ୍ତ କନ୍ଧରେ ବିଜୟ କର ଯାଇ ।
ଶ୍ରୀରାମ ବୋଇଲେ ସେ ଯେ ନୁହଇ ବାହନ
ନୁହଇ ଯାନ ପୁଣି ମର୍କଟ ହନୁମାନ ।
ସୁଗ୍ରୀବ ବୋଇଲେ ଖଗପତି ଯେ ବାହନ
ଗରୁଡ଼ ଆସନ ତୋର ସବୁଦିନେ ଜାଣ ।

ଏ ଅବତାରରେ ମର୍କଟ ବାହନତ
ମର୍କଟ ବାହାନେ ବିଜେ କର ରଘୁନାଥ ।
ବାହାନ ନ ଚଢ଼ିଲେ ନମରେ ଦୈତ୍ୟବଳ
ବାହନ ପରେ ବସିଲେ ହେବ ବୁଦ୍ଧି ବଳ ।
ଶୁଣି କରି ରାମଚନ୍ଦ୍ର ହରଷ ହୋଇଲେ
ଜନ୍ମେ ଜନ୍ମେ ବାହନ ହନୁ ହେବ ଭଲେ ।
ଶ୍ରୀରାମ ବୋଇଲେ ଏ ଉତ୍ତମ କଥା ନୋହି
କିଷ୍କିନ୍ଧ୍ୟା ରାଜା କୁମର ସେ ପରା ଅଟଇ ।
ସୁଗ୍ରୀବ ବୋଇଲେ ତାଙ୍କର ବୃଷଭ ବାହାନ
ତାଙ୍କର ତାଳଧ୍ୱଜ ଅଟେ ଯାନ ଜାଣ ।
ଦାରୁକ ସାରଥି ନାମକୁ ଯେ ବହି
ତାର ଅଂଶେ ଅଙ୍ଗଦ ଅଛି ଜାତ ହୋଇ ।
ଶୁଣିକରି ରାମ ଯେ ହରଷ ମନ ହେଲେ
ଜମ୍ବେବଙ୍କ ମୁଖକୁ ଶ୍ରୀରାମ ଚାହିଁଲେ ।
ବୋଇଲେ ମନ୍ତ୍ରୀବର କେମନ୍ତ କଥା ଏହୁ
କରଯୋଡ଼ି ଜମ୍ବେବ ବୋଲନ୍ତି ଶୁଣ ପ୍ରଭୁ ।
ତୁମ୍ଭେ ଯେବେ ଯାନ ଉପରେ ନ ଚଢ଼ିବ
ତୁମ୍ଭଙ୍କୁ ସ୍ୱତୀ ଯେ ପ୍ରାପତ ନୋହିବ ।
ହନୁର କନ୍ଧେ ଆପଣ ବେଗେ ବିଜେ କର
ପଛେ ଯାନ ତୁମ୍ଭଙ୍କୁ ମିଳିବ ରଘୁବୀର ।
ରାଜାର କୁମର ଦେବଯାନ ପରେ ବସ
ବାହାନ ଚଢ଼ିବାର ଅଟଇ ବିଶେଷ ।
ସୁଗ୍ରୀବର ଜଣାଏଁ ଶୁଣ ଚାପଧାରୀ
ପ୍ରାନ୍ତରେ ଅନେକ ସୁଖ ପାଇବ ଦେବ ହରି ।
ଆମ୍ଭେ ସମସ୍ତେ ସେବକ ତୁମ୍ଭେ ଆମ୍ଭ ସ୍ୱାମୀ
ପଦ୍ମପାଦେ ନ ଚାଲ ଏ ଶାଳଶିଳ ଭୂମି ।
ମନରେ କିମ୍ପା ଅନ୍ତର ଧର ରଘୁନାଥ
ଆମ୍ଭେମାନେ ଆଶା ଯେ କରିଛୁ ତୁମ୍ଭ ଦୂତ ।
ଅନେକ ପ୍ରକାରେ ସେବା କରିଥିବୁ
ଯେଉଁ ଆଜ୍ଞା ଦେବ ପ୍ରଭୁ ସେ କଥା କରିବୁଁ ।
ଗୁପତ କଥାମାନ ପ୍ରଘଟ ହେଲା ତ
ଲୁଚାଇଲେ ଲୁଚିବ ନାହିଁ ରଘୁନାଥ ।
ନର ବାନର ଦେବତା ଜାଣନ୍ତି ସମସ୍ତେ
ନାରାୟଣ ଅବତାର ମାନବରୂପେ ମର୍ତ୍ତ୍ୟେ ।
ତିନିପୁରେ ହୁରି ଏବେ ହୋଇଲାଣି ଦେବ
ଦଶରଥ ଘରେ ଜାତ ହେଲେଣ ବାସୁଦେବ ।
ଅବୋଧ ମର୍କଟ ଭାଲୁ ତୁମ୍ଭଙ୍କୁ ବୋଧ ଦେଲେ
ତୁମ୍ଭର ବୋଲରେ ହନୁ ସମୁଦ୍ରତରେ ଭଲେ ।
ତୁମ୍ଭର ପ୍ରସନ୍ନେ ହନୁ ଲଙ୍କା ପୋଡ଼ିଦେଲା
ତୁମ୍ଭ ନାମ ସୁମରି ସେ ସୈନ୍ୟଙ୍କୁ ନାଶିଲା ।

ତୁମ୍ଭଙ୍କୁ ସୁମରନ୍ତେ ଡରିଲେ ଅସୁର
ଏକାକି ଲଙ୍କାକୁ ଦଳିଲା ହନୁବୀର ।
ମୋର ବୋଲ ମାନି ଏବେ ହନୁ କନ୍ଧେ ବସ
ଆମ୍ଭେମାନେ ସମସ୍ତେ ଅଟୁଁ ତୁମ୍ଭ ଦାସ ।
ହେ ସ୍ୱାମୀ ଏହି କଥାକୁ ଆନ ନ ବିଚାର
ଏ ଜନ୍ମରେ ଆମ୍ଭେମାନେ ଅଟୁଁ ଯେ କିଙ୍କର ।
ସିନ୍ଧୁକୂଳେ ପାଇବ ଯାଇ ଏହିକ୍ଷଣି
ଶୁଣିଣ ସନ୍ତୋଷ ମନ ହେଲେ ରଘୁମଣି ।
ହନୁମନ୍ତ କନ୍ଧରେ ବିଜୟ କଲେ ଯାଇ
ଗରୁଡ଼ପିଠିରେ ଯେହ୍ନେ କମଳାଦେବୀ ସାଇଁ ।
ଅଙ୍ଗଦର କନ୍ଧରେ ବସିଲେ ଲକ୍ଷ୍ମଣ
ଦେଖିକରି ସମସ୍ତେ ହେଲେ ତୋଷ ମନ ।
ଆନନ୍ଦେ ଋକ୍ଷ ମର୍କଟ ଚାଲନ୍ତି ଗେଲ ଗେଲ
କେ ବୋଲେ ଧାଆଁରେ କେ ବୋଲଇ ଚାଲ ।
କେବଣ ବାନର ଚାଲନ୍ତି ଥାଣ ସରି
କେହୁ ତରୁ ଡାଳ ଯେ କରେ ଛନ୍ତି ଧରି ।
କେହୁ ହୁଳହୁଳି ଦିଅନ୍ତି ଯାଉ ଯାଉ
କେହୁ ବୃକ୍ଷରୁ ଫଳ ଖାଆନ୍ତି ଧାଉଁ ଧାଉଁ ।
କେହୁ ଚିରା ମାରିଣ ଧରନ୍ତି ତରୁ ଡାଳ
କେ ବୋଲଇ କିମ୍ପାଇଁ ହେ କରୁଛ ଗହଳ ।
କେ ବୋଲେ ଚାଲ ଚାଲ କେ ବୋଲେ ରହ ରହ
କେ ବୋଲେ ଝାଳରେ ଯେ କର୍ଦ୍ଦନ ମୋର ଦେହ ।
ଚହଳ କରି ଥାଟ ଚାଲନ୍ତି ଧୀରେ ଧୀରେ
ରାମ ଲକ୍ଷ୍ମଣ ବେନି ବିଜୟେ ମଧ୍ୟରେ ।
ଅଙ୍ଗଦ ହନୁମନ୍ତ କନ୍ଧରେ ଛନ୍ତି ବସି
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ରମା ବିକାଶି ।
ଶ୍ରୀରାମ ବୋଇଲେ ଶୁଣ ହନୁମନ୍ତ
ଅଙ୍ଗଦ ଥାଉ ଏବେ ଲକ୍ଷ୍ମଣ ସଙ୍ଗତ ।
ସୁଗ୍ରୀବର ରହନ୍ତୁ ରହନ୍ତୁ ସେନାପତି
ଏତେ ବୋଲି ଆଜ୍ଞା ଦେଲେ ଦାଶରଥି ।
ରହିଲେ ସେନାପତି ରାଜାଙ୍କ ସଙ୍ଗତରେ
ଶ୍ରୀରାମ ରହିଲେ ପୁଣି ଯେ ସେଠାରେ ।
ସୁଗ୍ରୀବର ରାଜନ ଆସିବାର ଚାଳି
ଦେବ ମାନବରେ ଅକୀର୍ତ୍ତି ହେବ ବୋଲି ।
ସେନାପତି ଆସିଣ ରାମଙ୍କୁ ଓଳଗିଲେ
ସୁଗ୍ରୀବର ଆସିଣ ଛାମୁରେ ମିଳିଲେ ।
କିମ୍ପାଇଁ ରଘୁନାଥ କରୁଛ ବିଳମ୍ବ
ଗହଳରେ ବାଟ ଯେ କର୍ଦ୍ଦନ ହୁଏ ଦେବ ।
ଶ୍ରୀରାମ ବୋଇଲେ ଶୁଣ ହେ ମଇତ୍ର
ସଂସାରେ ଅପଖ୍ୟାତି ହୋଇବ ବହୁତ ।

ଆମ୍ଭେ ବେନି ଅଙ୍ଗଦ ହନୁ କନ୍ଧେ ବସି
ତୁମ୍ଭେ ଚାଲି ଆସିବାର ଶୋଭା ଯେ ନ ଦିଶି ।
ରାଜାମାନେ ଶୁଣିଲେ ନିନ୍ଦା ଯେ କରିବେ
ପରଜାମାନେ ଦେଖିଣ କିସ ବିଚାରିବେ ।
ବୋଲିବେ ରଘୁନାଥ ଆଛା କର୍ମ କଲେ
ଦୂତମାନଙ୍କ ଉପରେ କିପରି ବସିଲେ ।
ରାବଣ ଦେଖି ଆମ୍ଭଙ୍କୁ କରିବ ଅପସନ୍ଦ
ଏମନ୍ତ ବଚନ କହିଲେ ରାମଚନ୍ଦ୍ର ।
ଶୁଣିଣ ସୁଗ୍ରୀବର ସନ୍ତୋଷ ହୋଇଲେ
ଶ୍ରୀରାମଙ୍କ ଚରଣେ ଓଳଗି ଶୋଇଲେ ।
ତାରା ରୋମାର ମାତୁଳ ସୁରସେନ ଜପି
ତାହାକୁ ଡକାଇ ଆଜ୍ଞା ଦେଲେ ରାମତପି ।
ତାହାର କନ୍ଧରେ ବିଜୟ ସୁଗ୍ରୀବର
ଦେଖିକରି ସନ୍ତୋଷ ହୋଇଲେ ରଘୁବୀର ।
ଧୀର ଧୀର ହୋଇଣ କରନ୍ତି ଗମନ
ଯେମନ୍ତେ ଗୁଣ୍ଡିଚାରେ ବିଜୟ ଭଗବାନ ।
ଆଗରେ ଦାଶରଥି ପଛରେ ଲକ୍ଷ୍ମଣ
ତାଙ୍କପଛେ ସୁଗ୍ରୀବର କରଇ ଗମନ ।
ସେନାପତିମାନେ ସଙ୍ଗରେ ଛନ୍ତି ଜାଣ
ହରିବୋଲ ରାମ ତାଳି କରନ୍ତି ଗାୟନ ।
ତାଙ୍କର ପଛରେ ଯେ ଚଳନ୍ତି ଯୁଥପତି
ମଲ୍ଲ ମହାମଲ୍ଲ ତାଙ୍କ ପଛରେ ଚାଲନ୍ତି ।
ତାଙ୍କ ପଛରେ ଚାଲନ୍ତି ସୈନ୍ୟବଳ
ତୁଣ୍ଡର ଶବଦ ଯେ ଶୁଭଇ ଗହଳ ।
ବନପର୍ବତମାନଙ୍କୁ ଲଙ୍ଘିଯାନ୍ତି ଜାଣ
ଯାଇଣ ମିଳିଲେ କୁମାର ପଦା ପୁଣ ।
ଦ୍ୱାଦଶ ଯୋଜନ ଭୂମିରେ ଅଟେ ସେହି ପଦ
ଶ୍ରୀରାମ ବୋଇଲେ ରହିବା ଏହି କୁଦ ।
ଏପଦା ନିର୍ମଳ ଖାଲ ଡିଙ୍ଗର ତ ନାହିଁ
ସବୁ ଠାବ ଏକା ପ୍ରାୟ ଅଟେ ସମଭୂଇଁ ।
ସ୍ଥାନ ସୁସ୍ଥ ଦେଖିଣ ରହିଲେ ସକଳ
ମୁଖ ରାବ ଶବଦରେ ସିନ୍ଧୁ ହୁଏ ଗୋଳ ।
ମୁଖ ରାବ ଶୁଣିଣ ବାହାର ଷଡ଼ାନନ
କରରେ ତୀକ୍ଷ୍ଣ ଶର ମୟୁର ବାହନ ।
ବାହାନ ଚଢ଼ିଣ ବାହାରି ଶିବସୁତ
ଏ କାହାବଳ ବୋଲି ପଚାରି ତ୍ୱରିତ ।
ମର୍କଟ ବୋଇଲେ ଆମ୍ଭେ ଶ୍ରୀରାମଙ୍କ ସୈନ୍ୟ
ଲଙ୍କାକୁ ଯିବାକୁ କରିଛୁ ଆଗମ ।
ଲଙ୍କାର ରାବଣ ଶ୍ରୀରାମେ ବିବାଦୀ
ତାକୁ ମାରିବାକୁ ଏବେ ଯିବେ ଦୟାନିଧି ।
ଷଡ଼ାନନ ବୋଇଲେ କିମ୍ପାଇଁ ହେଲା କଳି
ଶ୍ରୀରାମ କିମ୍ପାଇଁ ଯେ ଅସୁରକୁଳ ଦଳି ।
ବାନର କହିଲେ ସେ ଦୈତ୍ୟ ଅନ୍ୟାୟ କଲା
ଶ୍ରୀରାମ ଘରଣୀଙ୍କୁ ଚୋରାଇ ଘେନିଗଲା ।
ତେଣୁ କରି ତାର ବୈରୀ ଅଟେ ଶ୍ରୀରାମର
ଘରଣୀ ଛଳେ ଶ୍ରୀରାମ ମାରିବେ ଅସୁର ।
କାର୍ତ୍ତିକ ବୋଇଲେ ତୁମ୍ଭେ ଅଟ କପିରକ୍ଷ
ସମୁଦ୍ରର ଭିତରେ ଯେ ଲଙ୍କାଟି ପ୍ରତ୍ୟକ୍ଷ ।
କେମନ୍ତେ ଲବଣ ସମୁଦ୍ରକୁ ତୁମ୍ଭେ ତରିବ
ଅକ୍ରାମର ଅସୁର ଅଟଇ ଦଶଗ୍ରୀବ ।
ଦେବତାଏ ତାହାର ଅଟନ୍ତି କିଙ୍କର
ତାହାକୁ ମାରିବାକୁ କି ସମର୍ଥ ତୁମ୍ଭର ।
ଲବଣ ସିନ୍ଧୁ ତୁମ୍ଭେ କିପରି ତରିବ
ଲଙ୍କାକୁ ଗଲେ ସିନା ତା ସଙ୍ଗେ ଯୁଝିବ ।
ବନର ବାନର ପୁଣି ଅସୁର ସଙ୍ଗେ ଯୁଝି
ଏ ବୁଦ୍ଧି ମନରେ ତୁମ୍ଭେ କେଉଁଠାରୁ ହେଜି ।
ଶ୍ରୀରାମ ପରା ଅଟନ୍ତି ଦଶରଥ ପୁଅ
ମାନବ ହୋଇକିରେ ଏଡ଼େକ ହୃଦୟ ।
ଆପଣାର ଘରଣୀକି ରଖି ନ ପାରିଲା
ପରକୁ ଦେଇ ଏବେ ଅନର୍ଥ ଭିଆଇଲା ।
ମର୍କଟ ବୋଇଲେ ଶୁଣ ଆହେ ଷଡ଼ାନନ
ଶ୍ରୀରାମ ଅଟନ୍ତି ତ ସାକ୍ଷାତ ନାରାୟଣ ।
ଅସୁରଙ୍କୁ ମାରିବାକୁ ଜାତ ହୋଇଛନ୍ତି
ନିଶ୍ଚୟ ରାବଣକୁ ମାରିବେ ଦାଶରଥି ।
ତୁମ୍ଭେ ବୋଇଲ ସମୁଦ୍ର କେମନ୍ତେ ତରିବ
ତହିଁକି ଉପାୟ ଜାଣନ୍ତି ରାମ ଦେବ ।
ସେ ଯେବେ କହିବେ ଆମ୍ଭେ ସିନ୍ଧୁ ଯିବୁ ଡେଇଁ
କିସ ସମୁଦ୍ର ପାଣି ଏ ଶୁଖାଇଦେବୁ ପିଇ ।
ଯେଉଁ ରାମ ବିଚାରିଲେ ମାରିବେ ଦେବଗଣ
ଇନ୍ଦ୍ର ବ୍ରହ୍ମା ରୁଦ୍ରଙ୍କୁ ସେ କରିପାରେ ଆନ ।
ଶୁଣିଣ ଷଡ଼ାନନର କମ୍ପିଲା ଶରୀର
ବୋଇଲା ବାନରରେ ବଡ଼ାଇ କଥା ତୋର ।
ଏତେ କହି ଷଡ଼ାନନ ଧରି ତୀକ୍ଷଣ ଶର
ମୟୂରୁ ବାହାନ ଉପରେ ବିଜେ ତାର ।
କ୍ରୋଧରେ କୁମର କହଇ ବଚନ
କେମନ୍ତେ ତୁମ୍ଭଙ୍କୁରେ ରଖିବ ରାମରାଣ ।
କୋପ ମୁଖ ହୋଇଣ ସୈନ୍ୟଙ୍କୁ ଓଗାଳିଲା
ତୀକ୍ଷ୍ଣ ନାରାଚ ସେହୁ ଅନେକ ମାଇଲା ।
ବିକଳରେ ବାନରେ ପଶନ୍ତି ଏଣି ତେଣି
ବନ୍ଧ ବାଙ୍ଗିଲେ ଯେହ୍ନେ ଯାଏ ନଦୀପାଣି ।

କୋପରେ ଗର୍ଜନ କରେ ଷଡ଼ାନନ
ସତେ ସିଂହ ଗର୍ଜେ କି ଗିରିର ଶିଖେଣ ।
ଯେ ଗର୍ଜନ ଶୁଣିକରି ଡରଛେ ବାନର
ଷଡ଼ାନନ ଆଗରୁ ପଳାନ୍ତି ସତ୍ୱର ।
ଏକର ଉପରେ ଆରେକ ପଡ଼ନ୍ତି
ଦେଖିଣ ଏମନ୍ତ ଲୟ କଲେ ଦାଶରଥି ।
ଜମ୍ବେବ ମୁଖ ଚାହିଁ ବୋଲନ୍ତି ଶ୍ରୀରାମ
କାହାର ଭୟେ ପଳାଉଛନ୍ତି ମୋର ସୈନ୍ୟ ।
କେବଣ ଦାନବ ଆସିଣ ଦେଲା ଧାଡ଼ି
ବିକଳରେ ପଳାନ୍ତି ପଦା ଛାଡ଼ି ।
ଜମ୍ବେବ ବୋଇଲେ ଦେବ ନୁହଇ ଅସୁର
ଈଶ୍ୱରଙ୍କ ନନ୍ଦନ ଅଟେ କାର୍ତ୍ତିକେଶ୍ୱର ।
ଜନମ କାଳର ସେ ଏଥିରେ ଅଛି ରହି
ଈଶ୍ୱରଙ୍କ ଜ୍ୟେଷ୍ଠ ପୁତ୍ର ଅଛି ଯୋଗଧ୍ୟାଇ ।
ପ୍ରତକ୍ଷରେ ଜନ୍ମ ସେ ଯେ ଅଯୋନି ସମ୍ଭୁତ
ଶ୍ରୀରାମ ବୋଇଲେ ମୁଁ ତପନ କୁଳେ ଜାତ ।
ଈଶ୍ୱର କୁମର ମୋର କି କରିବ ସେହି
ତାହାର ଆମ୍ଭର ତ ପ୍ରତିବାଦ ନାହିଁ ।
ଯୋଗ ଯେବେ ସାଧଇ ଈଶ୍ୱର କୁମର
ଧନୁଶର କିମ୍ପାଇ ସେ ଧରିଅଛି କର ।
ଜାଣିଲି ସେହୁ ଅଟେ ଦୁଷ୍ଟ ଦୁରାଗମ
ପ୍ରଥମରୁ ମୋର ସଙ୍ଗେ କଲା ଆସି ରଣ ।
ବାପର ବଳରେ କି ପେଟର ପୁଅ ଦମ୍ଭ
ଦେଖିବା ତାର ଯେ ବଳ ପରାକ୍ରମ ଭାବ ।
ଏତେ କହି ରାମ ଲକ୍ଷ୍ମଣଙ୍କୁ ଯେ ରାଇଲେ
ଲକ୍ଷ୍ମଣ ଆସି ରାମଙ୍କୁ ଓଳଗିଲେ ।
ଶ୍ରୀରାମ ବୋଇଲେ ଶୁଣ ସଉମିତ୍ରୀ
ଈଶ୍ୱରଙ୍କ ନନ୍ଦନ କାର୍ତ୍ତିକେଶ୍ୱର ଯତି ।
ସେ କୁମର ଏ ପଦାରେ କରିଅଛି ବାସ
ଆମ୍ଭ ସୈନ୍ୟଙ୍କୁ ଓଗାଳୁଅଛି ହୋଇ ରୋଷ ।
ତୁ ଯାଇ ତାହାକୁରେ ଘେନିଆସ ଧରି
ଚରଣ କର ତାର ଦୃଢ଼େ ବାନ୍ଧିକରି ।
ପ୍ରାଣରେ ନ ମାରିବୁ ବେଳରେ ଆମ୍ଭ ସୁତ
ମାତା ପିତା ଆସି ତାର ହୋଇବେ ଦୁଃଖିତ ।
ଶୁଣିକରି ଲକ୍ଷ୍ମଣ ଧନୁଶର ଧରି
ଗୁଣ ଟଙ୍କାର କରି ମନରେ କ୍ରୋଧ ଭରି ।
ବୋଇଲେ ତୁହି ପରାରେ ଆମ୍ଭ ସୈନ୍ୟ ଜଗୁ
ସଞ୍ଜିବନୀ ଯିବାକୁ ମନରେ କିମ୍ପା ପାଞ୍ଚୁ ।
ପ୍ରପଞ୍ଚ ପନ୍ତିମୁଖାରେ କେଉଁ ଦେଶେ ଘର
ବାରଗୋଟି ହସ୍ତ ତୋର ଷଡ଼ଗୋଟି ଶିର ।
ଏଡ଼େ ପରପଞ୍ଚରେ କିପରି ହେଲୁ ଜାତ
ଅସତୀ ଅଟେ କିରେ ତୋର ମାତା ତାତ ।
କାର୍ତ୍ତିକେଶ୍ୱର ବୋଇଲା ଜାଣିବା ବଳ ତୋର
କେହୁ ଜାର ଜାତକାରେ ପରୀକ୍ଷା ତୋର ମୋର ।
ସଞ୍ଜିବନୀ ପୁରକୁ କିଏ ସେ ଯିବ ଆଜ
ମୁଖରେ କହୁ ଟାଣ ଦେହରେ ରଖ ତେଜ ।
ମୋର ସଙ୍ଗେ ରଣ ତୁ କରିବୁ ଆଜ ଯେବେ
ଜାଣିଲେ ଜାଣିବା ତ ରାବଣ ମାରୁ ତେବେ ।
ନୋହିଲେ ଏଠାରେ ସଞ୍ଜିବନୀ ପୁର ଯିବୁ
ପିତା ମାତା ଯାଇଥିଲେ ତାହାଙ୍କୁ ଭେଟିବୁ ।
କାର୍ତ୍ତିକେଶ୍ୱରଠାରୁ ଶୁଣିଣ ଏମନ୍ତ
କୋଦଣ୍ଡେ ଶର ଯୋଚିଲେ ସଉମିତ୍ରାସୁତ ।
ମନଭେଦି ଶରକୁ ବାଛିଣ ଭେଦି ଦେଲେ
ସମ୍ଭାଳ ବୋଲି ଶର ଓଟାରି ଆଣିଲେ ।
ଶରକୁ ତିଆରିଲେ କର ତୁ ଅଚେତ
ଜାଣିବା କେତେଦିନର କ୍ଷତ୍ରୀ ଅଟୁ ତୁତ ।
ଏତେ କହି ଶରକୁ ବେଗେ ଛାଡ଼ିଦେଲେ
ମୟୁର ପରୁ କାର୍ତ୍ତିକ ପଡ଼ିଲା ଗଡ଼ି ତଳେ ।
ମୟୁର ପଳାଇଗଲା କପିଳାସ ପୁରେ
ଦେଖି ବାନର ଭାଲୁ ହୁଳହୁଳି ଦେଲେ ।
ରାମତାଳି ଗାଲତୁରୀ କୁରୁଳି ବୋଇଲେ
ଦେଖିକରି ଲକ୍ଷ୍ମଣ ବେଗେ ଚଳିଗଲେ ।
ତାର ବାରହସ୍ତ ବେନି ଚରଣ ବାନ୍ଧିଲେ
ବାନର ଭାଲୁଙ୍କୁ ଚାହିଁ ସଉମିତ୍ରୀ ବୋଲେ ।
ଫଳମୂଳ ଖାଅ ତୁମ୍ଭେ ପଶି ଏ ବନରେ
ଶୁଣିଣ ରକ୍ଷ କପି ବନ ଯୂର କଲେ ।
ସେ ବନରୁ ଖାଇଲେ ଅନେକ ଫଳମୂଳ
ଅସରନ୍ତି ବନ ସେ ନ ସରେ ମୂଳ ଫଳ ।
ସେ ବନ ଅଟଇ ଯେ ଶିବଙ୍କ ଭଣ୍ଡାର
କେତେ ଅବା ଖାଇବେ ରକ୍ଷ ଯେ ବାନର ।
ରକ୍ଷ ବାନର ସମସ୍ତେ ଫଳମୂଳ ଖାଇ
ଅମୃତ ସମାନେ ଫଳ ସ୍ୱାଦୁ ଯେ ଅଟଇ ।
ସେ ଫଳମୂଳ ଖାଆନ୍ତେ କପି ବଳବନ୍ତ
ଗତୁ ଶତେ ଗୁଣରେ ହୋଇଲେ ତେଜବନ୍ତ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଲକ୍ଷ୍ମଣ ଯାଇ ରାମଙ୍କ ପାଦେ ଓଳଗନ୍ତି ।
ଶ୍ରୀରାମ ବୋଇଲେ କିସ କଲୁ ତୁରେ ଭାଇ
ଲକ୍ଷ୍ମଣ ବୋଇଲେ ତାକୁ ଧରି ବାନ୍ଧିଲଇଁ ।
ଅନେକ ପ୍ରତିଜ୍ଞା ସେ ଈଶ୍ୱର ସୁତ କଲା
ସଂସାର ଦହିବା ପ୍ରାୟ ମୋତେ ସେ ଲାଗିଲା ।

ଏକା କାଣ୍ଡକରେ ସେ ଯେ ପଡ଼ିଲା ଧରଣୀ
ମୟୁର ପଳାଇ ଗଲା ତାକୁ ଛାଡ଼ି ପୁଣି ।
ପ୍ରଥମ ଯୁଦ୍ଧରେ ଦେବ ଆଜ ହେଲା ଯଶ
ଶୁଣିକରି ବୋଲନ୍ତି ଦଶରଥ ଶିଷ୍ୟ ।
ଈଶ୍ୱର ଆସିଲେ ଏବେ କରିବ ଅନର୍ଥ
ଯେଣୁ ତା ଜ୍ୟେଷ୍ଠପୁତ୍ର ହୋଇଛି ଅସମର୍ଥ ।
ଲକ୍ଷ୍ମଣ ବୋଇଲେ ଆସନ୍ତୁ କିନା ଏବେ
ପ୍ରଭାବ ପାଇଲେ ସେ ଜାଣିବେ ସୁର ଦେବେ ।
ଈଶ୍ୱର ଜାଣିବେ ଶ୍ରୀରାମ ଜାଣେ ରଣ
ଦେବଙ୍କୁ ନ ଜିଣିଲେ କରିବେ ଛନ୍ଦ ପୁଣ ।
ଶ୍ରୀରାମ ବୋଇଲେ ପ୍ରଥମ ଆଜ ରଣ
ଅସୁରଙ୍କୁ ଈଶ୍ୱର ଦିଅନ୍ତି ବର ପୁଣ ।
ତାହାଙ୍କର ବରରେ ଅମର ଅସୁର
ଜାଣିବା କେତେବଳ ଅଛି ତାହାଙ୍କର ।
ଏତେ କହି ଶ୍ରୀରାମ କୋଦଣ୍ଡ ସଜ କଲେ
ଲକ୍ଷ୍ମଣ ଯେ ଧନୁ ଧରି ଦ୍ରୋଣକୁ ସାଜିଲେ ।
ଏଥୁ ଅନନ୍ତରେ ଆଗୋ ଶାକମ୍ଭରୀ ଶୁଣ
ମୟୁର ବାହନ ଆସିଲା ପଳାଇଣ ।
ଆମ୍ଭର ଆଗରେ କହିଲା ଶବର
ତୁମ୍ଭର ସୁତକୁ ଯେ ମାରେ ଲକ୍ଷ୍ମଣ ବୀର ।
ମୁଁ ବୋଇଲି କାହିଁର ଅଟେ ସେ ଲକ୍ଷ୍ମଣ
ମୟୁର ବୋଇଲା ଦଶରଥଙ୍କ ନନ୍ଦନ ।
ଶ୍ରୀରାମ ଲକ୍ଷ୍ମଣ ଭରତ ଶତ୍ରୁଘନ
ଚାରିଗୋଟି ପୁତ୍ର ଦଶରଥଙ୍କର ଜାଣ ।
ଅସୁର ପ୍ରବଳ ହେବାରୁ ଦେବତାଗଣ
ନାରାୟଣଙ୍କୁ କହି ଜାତ କଲେ ଜାଣ ।
ପିତା ସତ୍ୟପାଳି ରାମ ବନବାସ ଗଲେ
ଭାଇ ଭାରିଯାଙ୍କୁ ସଙ୍ଗରେ ଆଣିଥିଲେ ।
ଦେବକୂଟ କରିବାରୁ ଲଙ୍କାର ରାବଣ
ଶ୍ରୀରାମଙ୍କର ନାରୀଙ୍କି ନେଇଅଛି ପୁଣ ।
ରାବଣକୁ ବଧ କରିବାକୁ ରାମରାଣ
କିଷ୍କିନ୍ଧ୍ୟାରେ ବାଳିକି କଲେକ ନିଧନ ।
ସୁଗ୍ରୀକି ରାଜା କରିଣ ସୈନ୍ୟବଳ ସାଧି
ଲଙ୍କା ଅଭିମୁଖରେ ବାହାର ସର୍ବଯୋଦ୍ଧୀ ।
କୁମାର ପଦାରେ ପ୍ରବେଶ ହୋଇଲେ
ତୁମ୍ଭ କୁମର ଯାଇ ତାହାଙ୍କୁ ନିରୋଧିଲେ ।
ଅନେକ ଭର୍ତ୍ସନା କରି କହିଲେ ରାମଙ୍କୁ
ବୋଇଲେ ଘରଣୀକି ଦେଲୁ ଅସୁରଙ୍କୁ ।
ଶୁଣିଣ ଭାଇ ଲକ୍ଷ୍ମଣ ଏଇ କାଣ୍ଡ ମାରି
ତୁମ୍ଭର କୁମର ପଡ଼ିଲେ ଯେ ଢଳି ।

ତେଣୁ ସେ ସଉମିତ୍ରୀ ତାହାଙ୍କୁ ବାନ୍ଧି ନେଲା
ଆସିଣ ତୁମ୍ଭଙ୍କୁ ଯେ କହିଲି ମୁଁ ଭଲା ।
ମୟୁରଠାରୁ ଶୁଣି ତୁହି କୋପ କଲୁ
ରାମ ବିବାଦୀ ହେବାଫଳ ପାଇଲା ବୋଇଲୁ ।
ମୁଁ ବୋଇଲି କିମ୍ପାଇଁ କହିଲ ଏଡ଼େ କଥା
ଜ୍ୟେଷ୍ଠ କୁମର ସେ ମୋର ଅଟଇ ସମର୍ଥା ।
ତୁ ବୋଇଲୁ ସମର୍ଥକି ଏପରି କରଇ
ଶ୍ରୀରାମ ଘରଣୀ ତାର ଜନନୀ ଅଟଇ ।
ଆପଣା ଗର୍ଭଧାରୀକି କରେ ପରିହାସ
ସେ ପୁତ୍ର ଜିଇଥିଲେ କରିବ ମୋର କିସ ।
ଶୁଣିଣ ତୋରଠାରୁ କ୍ରୋଧ ମୁହିଁ ହେଲି
ରାମକୁ ମାରିବି ବୋଲି ବୃଷଭ ଚଢ଼ି ଗଲି ।
ନବକୋଟି ଉମ୍ୱରୁ ଚଉଦ କୋଟି ଶିବ
ନନ୍ଦି ଭୃକୁଟି ଘେନିଗଲି ମୁହିଁ ବେଗ ।
ସେତେବେଳେ ତୁହି ମୋତେ କହିଲୁ ବଚନ
ପୁତ୍ରର ସଙ୍ଗେ ଆଜ ରହିବ ତ୍ରିଲୋଚନ ।
ମୁଁ ବୋଇଲି ଏକଥା କହୁଛ କିସ ପାଇଁ
ତୁ ବୋଇଲୁ ଧର୍ମକୁ ଲଙ୍ଘୁଛ ଦେବ ହୋଇ ।
ତୋ କଥା ନ ମାନି ମୁହିଁ କୁମାରପଦା ଗଲି
ଲକ୍ଷ୍ମଣ ସଙ୍ଗରେ ସମର ମୁଁ କଲି ।
ଏକ ଶର ସଉମିତ୍ରୀ କଲେକ ପ୍ରହାର
ବଳ ସହିତରେ ମୁଁ ପଡ଼ିଲି ଭୂମିର ।
ମୁହିଁ ପଡ଼ିବାରୁ ଅଇଲେ ବେଦବର
ସକଳ ଦେବତା ଛନ୍ତି ତାଙ୍କର ସଙ୍ଗର ।
ବେଦବରଙ୍କୁ ଦେଖି ଲକ୍ଷ୍ମଣ କ୍ରୋଧ ହେଲା
ଦେବକୂଟ କରିଅଛ ବୋଲିଣ କହିଲା ।
ମନଭେଦୀ ଶରକୁ ପେଶିଲା ସଉମିତ୍ରୀ
ତେଣୁ ଅଚେତା ହେଲେ ସାବିତ୍ରୀଙ୍କ ପତି ।
ସେହି ମୋର ସଙ୍ଗରେ ଲୋଟିଲେ ଧରଣୀ
ଦେଖିଣ ଦେବତାଏ ପଳାଇଲେ ପୁଣି ।
ପରମହଂସ ଯାଇଣ ସାବିତ୍ରୀଙ୍କି କହି
ବ୍ରହ୍ମାଙ୍କୁ ନାଶ କଲେ ସୁମିତ୍ରା ତନୟୀ ।
ଶୁଣିକରି ସାବିତ୍ରୀ ସନ୍ତାପ ମନେ କଲେ
ମଗର ବାହାନ ଚଢ଼ି ବେଗେ ସେ ଅଇଲେ ।
କୁମାର ପଦାରେ ଆସି ହେଲେ ପରବେଶ
ଦେଖିଲେ ଭାଲୁ ମର୍କଟ ଅଛନ୍ତି ବିଶେଷ ।
ଏଥୁ ଅନନ୍ତରେ ଗୋ ଶାକମ୍ଭରୀ ଶୁଣ
ତୋତେ ଖବର ଦେଲା ବୃଷଭ ଆସିଣ ।
ସିଂହପରେ ବସିଣ ତୁହି ଚଳିଗଲୁ
ବିଘ୍ନରାଜ କୁମରକୁ ସଙ୍ଗତରେ ନେଲୁ ।

କୁମାର ପଦାରେ ହେଲୁ ପରବେଶ
ରାମ ଲକ୍ଷ୍ମଣଙ୍କୁ ଦେଖି ହୋଇଲୁ ହରଷ ।
ଲମ୍ବୋଦରକୁ କହିଲୁ କର ନମସ୍କାର
ଏ ଦୁଇଜଣ ଅଟନ୍ତି ପିଅର ତୋହର ।
ଶୁଣିଣ ବିଘ୍ନରାଜ ଓଳଗି ମେଲାଇଲା
ରାମଙ୍କ ଶ୍ରୀଚରଣେ ଲୋଟଗାଳି ଦେଲା ।
ଶ୍ରୀରାମ ବୋଇଲେ ତୁହି ଶୁଣରେ ଲକ୍ଷ୍ମଣ
ବ୍ରହ୍ମାନାରୀ ଶିବନାରୀ କଲଇଁ ଦର୍ଶନ ।
କୁମର ଆମ୍ଭମାନଙ୍କୁ କଲା ମାନ୍ୟ ଧର୍ମ
ତେଣୁ ଯେ ସନ୍ତୋଷ ହେଲା ମୋର ମନ ।
ପେଶ ତୁ ଜିବନ୍ୟାସ ଶରକୁ ବହନ
ସକଳ ଦେବତାଏ ପାଆନ୍ତୁ ଜୀବନ ।
ଶୁଣିଣ ସଉମିତ୍ରୀ ହରଷ ହୋଇଲେ
ଜିବନ୍ୟାସ ଶରକୁ ବେଗେ ପେଶିଦେଲେ ।
ପେସନ୍ତେ ଶର ସର୍ବେ ଛାଡ଼ିଲେ ମୋହମାନ
ସଚେତ ହୋଇଲେ ବ୍ରହ୍ମା ପଞ୍ଚାନନ ।
ଯେତେକ ଦେବତା ମୋହ ଯାଇଥିଲେ
ତାହାଙ୍କର ସଙ୍ଗତେ ସମସ୍ତେ ଚେତା ହେଲେ ।
ଦେଖିଣ ଶ୍ରୀରାମ ଲକ୍ଷ୍ମଣ ବେନି ଭାଇ
କୋଦଣ୍ଡମାନ ଥୋଇ କରଯୋଡ଼ି ରହି ।
ନମସ୍କାର କରିଣ କଲେ ସ୍ତୁତି ପୁଣ
ନମସ୍ତେ ବ୍ରହ୍ମା ରୁଦ୍ରତ୍ରୟ ନାରାୟଣ ।
ସଦାକାଳେ ହରବ୍ରହ୍ମା ବିଷ୍ଣୁ ତିନିଜଣ
ସଂସାରର କାରଣ ଅଟ ତୁମ୍ଭେ ପୁଣ ।
ଅସୁରଙ୍କୁ ବରଦେଇ ବଳବାନ କଲ
ନିଉନରୂପେ ଅସୁର ସେବାରେ ରହିଲ ।
ଏବେ ମୋର ଘରଣୀକୁ ସେ ଅସୁର ନେଲା
ତାଙ୍କୁ ମାରିବାକୁ ମୋର ମନେ ରିପୁ ହେଲା ।
ତୁମ୍ଭେ ତ ମୋର ସଙ୍ଗରେ କର ଆସି ଗୋଳ
କେଉଁ ଭଲପଣ ଯେ ଅଟଇ ତୁମ୍ଭର ।
ବେଦବର ବୋଇଲେ ଶୁଣ ଚାପଧାରୀ
ଦେବଙ୍କର ଦୁଃଖ ଦେଖି ତୁହି ଦୟା କରି ।
ଶୟନ ତେଜି ଦେବ ହୋଇଲ ଯେ ଜାତ
ଅସୁର ମାରିବାକୁ କରିଛି ଆଗେ ସତ୍ୟ ।
ତୋ ଘରଣୀକି ଯେବେ ଦୈତ୍ୟ ନ ନିଅନ୍ତା
କାହିଁକି ଅସୁରଙ୍କୁ ତୁ କରନ୍ତୁ ଅହନ୍ତା ।
ଆମ୍ଭଙ୍କୁ ମୋହ କଲୁ ଏ କଥା ବଡ଼ ସୁଖ
ଅସୁର ମାରିଲେ ଆମ୍ଭର ଗଲା ସବୁ ଦୁଃଖ ।
ପଶ୍ଚାନ୍ତରେ ଅସୁର କହନ୍ତା ଆମ୍ଭଙ୍କୁ
ଦେବକୂଟ କରିଅଛ ମୋତେ ମାରିବାକୁ ।

ଅସୁର ରିପୁ ଆମ୍ଭେ ପାଇଲୁ କାରଣ
ମାର ଅସୁର କୁଳକୁ ଲଙ୍କା ଯାଇ ପୁଣ ।
ତୋହର ଘରଣୀ ଅଛି ଯେ କୁଶଳରେ
ପବନ ଅଗ୍ନି ଜଗିଅଛନ୍ତି ପାଶରେ ।
ଏକେତ କ୍ରୋଧଅଗ୍ନି ହୋଇଛି ଜାତ ତୋର
ଛୁଇଁବାକୁ ଯୋଗ୍ୟ କି ଅଟଇ ଅସୁର ।
ତେଣୁ ସେ ରାବଣେଶ୍ୱର କଲା ସତ୍ୟ
ମରିବାକୁ ମାନିଲା ଯେ ବିଶ୍ରବାର ସୁତ ।
ତେଣୁ ସେ ତୋର ନାରୀ ଇଚ୍ଛାରେ ଗମନ
ମନରେ ଆନ ତୁମ୍ଭେ ନ ଘେନ ରଘୁନାନ ।
ପ୍ରତିଦିନ ମୁଁ ଯେ ତୋ ନାରୀକି କହି
ଦେବଙ୍କ ସକାଶେ ଦୁଃଖ ପାଇଲା ବୈଦେହୀ ।
ଅଳପ ଦିନରେ ଦେବଙ୍କ କଷ୍ଟ ଯିବ
ଏକଥାରେ ଅଭାବ ନୁହ ଦୁଃଖ ଭାବ ।
ଏମନ୍ତ ପ୍ରକାରେ ଦେବୀ ଦେବକୂଟ ହୋଇ
ସେ କଥାକୁ ଅବିଗୁଣ ନ ପାଅ ଗୋ ତୁହି ।
ଅସୁର ମାରିବାକୁ କହିଛି ତୋ ନାରୀ
ମରାଇ ମାରିବ ଦୈତ୍ୟ ଲଙ୍କାରେ ରହିକରି ।
ବେଳହୁଁ ସେ କଥା ହେଉଛି ପ୍ରମାଣ
ଏବେ ଶ୍ରୀରାମ କିମ୍ପା ପାଉଛ ଅବିଗୁଣ ।
ଶୁଣିକରି ଶ୍ରୀରାମ ହରଷ ମନ ହେଲେ
ବୁଝାଇଣ ବେଦବର ନିଜପୁରେ ଗଲେ ।
ସାବିତ୍ରୀଙ୍କି ସଙ୍ଗେ ଘେନି ବିଜେ ବେଦପତି
ପୁଣି ବିଘ୍ନରାଜକୁ କହିଲୁ ତୁ ସତୀ ।
କହିଲୁ ଭାଇକି ତୋର ମୁକୁଳାଇ ଆଣ
ଶୁଣିଣ ଶ୍ରୀରାମଙ୍କୁ କହିଲେ ଗଜାନନ ।
ଶ୍ରୀରାମ ବୋଇଲେ ଶୁଣରେ ନନ୍ଦନ
ତୋହର ପିତା ଯେ ନିର୍ଲ୍ଲଜ ଅଟେ ଜାଣ ।
ମାଇଲେ ଡରେଇଲେ କହିଲେ ବର ଦେଇ
ଭୟରେ ଅସୁରଙ୍କ ବୋଲ ସେ କରଇ ।
ଦଣ୍ଡକେ ରିପୁ ତାର ଦଣ୍ଡକେ ହୁଏ ଶାନ୍ତି
ସକଳ ଜନ୍ତୁଙ୍କର ଅଟଇ ସେ ପତି ।
ବିଘ୍ନରାଜ ବୋଇଲେ ସେ କଥା ଛାଡ଼ିଦିଅ
ମୋହର ଅବିଗୁଣ ନ କହି ଦୟା ବହ ।
ଶ୍ରୀରାମ ବୋଇଲେ ସେ କଥା ଛାଡ଼ିଲି
କେଉଁକଥା କହିବୁ ସେକଥା ଏବେ କଲି ।
ଲମ୍ବୋଦର ବୋଇଲେ ଭାଇ କଷ୍ଟ ଫେଡ଼
ଶ୍ରୀରାମ ବୋଇଲେ ଲକ୍ଷ୍ମଣ ତାକୁ ଛାଡ଼ ।
ଶୁଣିଣ ସଉମିତ୍ରୀ ବେଗେ ଚଳିଗଲେ
କାର୍ତ୍ତିକେଶ୍ୱରଙ୍କର ବନ୍ଧନ ଫେଡ଼ିଦେଲେ ।

ବନ୍ଧନ ଫେଡ଼ିବାରୁ କାର୍ତ୍ତିକେଶ୍ୱର ଯାଇ
ପିତାମାତା ଦୁହିଁଙ୍କୁ ଓଳଗି ସେ ହୋଇ ।
ଜନକ ବୋଇଲେ ଶୁଣରେ ନନ୍ଦନ
ପିତାର ସଙ୍ଗତେ ତୁ ହେଲୁ ଅବିଗୁଣ ।
ଶ୍ରୀରାମ ନାରାୟଣ ଈଶ୍ୱର ଲକ୍ଷ୍ମଣ
କୁଳ କଣ୍ଟକ ତୁହି ହେତୁ କରି ଜାଣ ।
ବେଗେ ଯାଇ କୁମର ତାହାଙ୍କୁ ମାନ୍ୟ କର
ତୋଠାରୁ କ୍ରୋଧ ତେଜ୍ୟା କରିବେ ରଘୁବୀର ।
ଶୁଣିଣ କାର୍ତ୍ତିକେଶ୍ୱର ନମସ୍କାର କଲେ
ଦେଖିକରି ସଉମିତ୍ରୀ ହସିଣ କହିଲେ ।
ବୃଥାରେ ପରିହାସ କରିଣ କହିଲ
ଏବେ କେଉଁ ପଉରୁଷ ତୁମ୍ଭେ ଯେ ପାଇଲ ।
ତେଣୁ ସେ ସଉମିତ୍ରୀର ସେ କଥାକୁ ମାନି
ଆପଣାର କଥା ସେ ହୋଇଲା ବଖାଣି ।
ଶୁଣିଣ ଶ୍ରୀରାମ ବୋଇଲେ ବେଗେ ଯାଅ
ଆପଣାର କଥାକୁ କେତେ କହି ହୁଅ ।
ଶୁଣିଣ ମୁହିଁ ଯେ ବୃଷଭ ଆରୋହିଲି
ଚୌଦକୋଟି ଶିବଗଣ ଘେନି ବାହାରିଲି ।
ତହୁଁ ସିଂହ ଉପରେ ବସିଲୁ ତୁ ସତୀ
ଲମ୍ବୋଦରକୁ ଘେନିଣ ବାହାର ଝଟତି ।
କାର୍ତ୍ତିକେଶ୍ୱରକୁ ବୋଇଲେ ଏଥି ଥାଅ
ଶ୍ରୀରାମଙ୍କ ସୈନ୍ୟଙ୍କୁ ଫଳମୂଳ ଦିଅ ।
ଏତେ କହି ଦେବୀ ସେଠାରୁ ଅଇଲେ ପୁଣି
ତୁମ୍ଭର ସଙ୍ଗରେ ଅଇଲି ମୁଁ ଜାଣି ।
ନିଜସ୍ଥାନେ କପିଳାସେ ପ୍ରବେଶ ହେଲେ ଯାଇ
ଶ୍ରୀରାମ କଥା ଶୁଣି ମନ ତୋଷ ହୋଇ ।
ପାର୍ବତୀ ବୋଇଲେ ଆହେ ତ୍ରିଲୋଚନ
ଏଥି ଉତ୍ତାରେ କିସ କଲେ ରଘୁନାନ ।
ଈଶ୍ୱର ବୋଇଲେ ଶୁଣ ଗୋ ପ୍ରାଣ ସହି
କାର୍ତ୍ତିକେଶ୍ୱର ଯେ କୁମାର ପଦ୍ୟରେ ରହି ।
ଶ୍ରୀରାମଙ୍କର ସୈନ୍ୟକୁ ଦେଲା ଫଳମୂଳ
ସନମାନ ପାଇ ରହିଲା ତୋହର ଦୁଲାଳ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଈଶ୍ୱର ବୋଇଲେ ଶୁଣ ଗୋ ଶୈଳବାଳା ।
ଜମ୍ବେବକୁ ଚାହିଁଣ ବୋଇଲେ ରଘୁବୀର
କାର୍ତ୍ତିକେଶ୍ୱର ଜନ୍ମ କହ ମୋ ଆଗର ।
କେଉଁରୂପେ ଜାତ ହେଲେ ଈଶ୍ୱର ନନ୍ଦନ
ଜମ୍ବେବ ବୋଇଲେ ତାହା ଶୁଣ ରଘୁନାନ ।
ଏକଥାରେ କ୍ରୀଡ଼ା କଲେ ଗଉରୀ ତ୍ରିଶୂଳି
ଶିବଙ୍କ ବୀର୍ଯ୍ୟ ଭୂମିରେ ପଡ଼ିଲା ଉଛୁଳି ।

ବାମ କରେ ତାହା ଯେ ଘେନି ଦେବରାଣୀ
ପାର୍ବତୀଙ୍କି ଚାହିଁଣ ପଚାରନ୍ତି ହସି ।
ଏ ବୀର୍ଯ୍ୟକୁ ତୁହି କାହିଁ ନ ଦେଲୁ ଠାବ
ଅକ୍ଷୟ ବୀର୍ଯ୍ୟ ତ ହେଉଛି ଅଭୋଗ ।
କାହିଁରେ ଥୋଇବା ବୋଲି ମନେ ମନେ ଭାବି
ଅଗ୍ନିରେ ପକାଇବା ସ୍ଥିର ଦଲେ ଶୂଳି ।
ସେଠାରୁ ଚଳିଣ ଗଲେ ଶଙ୍କର ଗଉରୀ
ଆଗରେ ଭେଟ ହେଲେ ଆସି ଷଡ଼ ନାରୀ ।
ସ୍ନାହାନ ସାରିଣ ଶୁଚି ହେଲେ ନାରୀ
ସଦାଶିବ ଅଙ୍ଗ ସଙ୍ଗ ଇଚ୍ଛା କରି ।
ତେଣୁ ସେ ସଦାଶିବ ବୀର୍ଯ୍ୟ ଘେନି ଗଲେ
ଦାବାନଳ ଅଗ୍ନିରେ ନେଇଣ ପକାଇଲେ ।
ସେ ବୀର୍ଯ୍ୟ ଭସ୍ମ ନୋହି ଅଗ୍ନିର ଭିତରେ
କୁରାଳ ଚକ୍ର ପରି ବୁଲିଲା ସେଥିରେ ।
ଅଗ୍ନିରେ ପଡ଼ିଣ ସେ ଦିଶେ ଜ୍ୟୋତିମାନ
ମହାବୀର୍ଯ୍ୟ ରହିଲା ଅଗ୍ନିର ମଧ୍ୟେଣ ।
ସେ ଅଗ୍ନି ପାଶକୁ ଗଲେ ଷଡ଼ନାରୀ
ଅଗ୍ନିକୁ ଚାହିଁଣ କାମ ବାଧା କରି ।
କାମତାପେ ନାରୀ ହୋଇଲେ ଆତୁର
ଅଗ୍ନିରେ ଦିଶିଲା ଈଶ୍ୱର ତେଜ ଘୋର ।
ଦେଖିକରି ଷଡ଼ନାରୀ ଅଗ୍ନିରେ ପଶିଲେ
ଷଡ଼ଭାଗ କରିର ସେ ବୀର୍ଯ୍ୟକୁ ଧରିଲେ ।
ଯେ ଯାହାର ଗର୍ଭକୁ ବୀର୍ଯ୍ୟ କ୍ଷେପି ଦେଲେ
ତେଣୁ ସେ ଷଡ଼ନାରୀ ଗର୍ଭବାସ ହେଲେ ।
ଗର୍ଭରେ ସଂଯୋଗ ହେଲେ ଈଶ୍ୱରଙ୍କ ରେତ
ଦେଖିଣ ଷଡ଼ନାରୀ ହେଲେ ତୋଷଚିତ୍ତ ।
ତେଣୁ ସେହି ଷଡ଼ ପ୍ରସବ ଯେ କଲେ
ଈଶ୍ୱର ପୁରୁଷଙ୍କୁ ମନରେ ସୁମରିଲେ ।
କାହାର ଗର୍ଭରୁ ଏକ ଅଙ୍ଗ ହେଲା ଜାତ
କାହାର ଗର୍ଭରୁ ଷଡ଼ଆନନ ସମ୍ଭୁତ ।
କାହାର ଗର୍ଭରୁ ଷଡ଼ଭୁଜ ଜାତ ହୋଇ
ନାସାକର୍ଣ୍ଣ ଚକ୍ଷୁ କାହା ଗର୍ଭୁ ସମ୍ଭବଇ ।
ଏମନ୍ତ ଅସମ୍ଭବ ଦେଖି ଷଡ଼ନାରୀ
ପ୍ରସବ କରିଣ ଗଲେ ସ୍ୱର୍ଗପୁରୀ ।
ଏହି ସମୟରେ ଘୋଟିଲା ତିମିରି
ରାତ୍ରରେ ଭ୍ରମି ଅଇଲା ତାଡ଼କା ଅସୁରୀ ।
ରୂପବର୍ଣ୍ଣ ଚିହ୍ନିଣ କଲା ଏକ ଠାବ
ଯୋଡ଼ିଲା ବାରଭୁଜ ହୃଦରେ ପ୍ରାଣସର୍ବ ।
ଷଡ଼ମୁଣ୍ଡ ଚରଣ ଯୋଡ଼ିଲା ନେଇ କରି
ପେଟ ମୁଖ ଜାନୁ ଯେ ଦିଶଇ ଏକାପରି ।

ଯୋଡ଼ନ୍ତେ ଏକ ଦେହ ହେଲା ଏକ ଅଙ୍ଗ
ଈଶ୍ୱରଙ୍କ ବୀର୍ଯ୍ୟ ସେ ହୋଇଥିଲା ଭାଗ ।
ଯୋଡ଼ିଣ ମେଳକରି ଚଳିଲା ନଇତୁଣୀ
ଆସିଣ ଜୀବଦାନ ଦେଲେ କୁଶପାଣି ।
ଜୀବ ପାଇ କୁମର କାନ୍ଦଇ ଏକସ୍ୱରେ
ବ୍ରହ୍ମାଣ୍ଡ କମ୍ପିଲା ସେ କାନ୍ଦଣା ଶବଦରେ ।
ରୋଦନ ଶୁଣିକରି ତାଡ଼କୀ ଗଲା ଧାଇଁ
ଦେଖିଲା ବାଳକ କାନ୍ଦୁଛି ଏକାହୋଇ ।
ଗର୍ଜନ ନାଦ କରିଣ ଆବୋରିଲା ଯାଇ
ଚରଣ ହଲାଇ ସେ କୁମର କାନ୍ଦୁଥାଇ ।
ଅସୁରୀର ଦେହରେ ବାଜିଲା ଚରଣ
ଏଡ଼େ ଅସୁରୀ ଗୋଟା ହେଲା ଅଚେତନ ।
ଚେତାପାଇ ତାଡ଼କୀ ଭୟରେ ପଳାଇଲା
ଯାହାର ବନରେ ଯାଇ ଅସୁରୀ ଲୁଚିଲା ।
ବିଶ୍ୱାମିତ୍ରଙ୍କ ଯୋଗେ ତାହାକୁ ତୁମ୍ଭେ ମାରି
ସେହି ତାଡ଼କୀ କାର୍ତ୍ତିକେଶ୍ୱରଙ୍କୁ ସଞ୍ଚାରି ।
ତାହାର ବଲ୍ଲଭ ତାଡ଼କାସୁର ଜାଣ
କାଳେ ସେ ପ୍ରବଳ ରାଜ୍ୟରେ ଯେ ପୁଣ ।
ତେଣୁ ସେ ଚନ୍ଦ୍ର କୁମର ପାସେ ମିଳି
ତାଡ଼କାକୁ ଏ ମାରିବ ବୋଲି ମନେ ଭାଳି ।
କୁମରର ହସ୍ତରେ ଧନୁଶର ଦେଲା
ବଜ୍ରବାଟୁଳି ଦିଅନ୍ତେ କୁମର ଧରିଲା ।
ବିନ୍ଧନ୍ତେ ତାଡ଼କାସୁର ହେଲା ନାଶ
ଜାଣିକରି ସେଠାରେ ମିଳିଲେ ତ୍ରିଦଶ ।
ନାରଦ କହିବାରୁ ଈଶ୍ୱର ଅଇଲେ
ପୁତ୍ରକୁ ତୋଳିଧରି ଈଶ୍ୱର କୋଳ କଲେ ।
ପାର୍ବତୀ ବୋଇଲେ କାହାର ଏ ସୁତ
ଈଶ୍ୱର ବୋଇଲେ ବିଦ୍ୟାଧରୀଙ୍କ ସମ୍ଭୁତ ।
ପାର୍ବତୀ ବୋଇଲେ ତୁମ୍ଭେ ଏହାଙ୍କୁ କିମ୍ପା ଆଣ
ଶିବ ବୋଇଲେ ତୋରସଙ୍ଗେ ଲୀଳା କଲି ଜାଣ ।
କାମଲୀଳା ବେଳେ ଆସିଲା ମୋର ବୀର୍ଯ୍ୟ
ତେଜବନ୍ତ ହେବାରୁ ନୋହିଲା ତୋତେ ଯୋଗ ।
ଅନଳରେ ପକାନ୍ତେ ମୁଁ ନୋହିଲା ସେ ଭସ୍ମ
ଦେଖିଣ ବିଦ୍ୟାଧରୀ ତାହାକୁ କଲେ ଗ୍ରାସ ।
ଷଡ଼ରୂପ ଦେଖି ବିଦ୍ୟାଧରୀ ସ୍ୱର୍ଗ ଗଲେ
ଷଡ଼ରୂପ ଗୋଟି ସେଠି ପଡ଼ିଣ ରହିଲେ ।
ତାଡ଼କା ଅସୁରୀ ତାଙ୍କୁ ଏକଠାବ କଲା
ବିଧାତା ଆସି ତାକୁ ଜୀବଦାନ ଦେଲା ।
ଚନ୍ଦ୍ରଧନୁ ଦିଅନ୍ତେ ସେ ମାରିଲା ଅସୁର
ତେଣୁ ଦେବତାଏ ସନ୍ତୁଷ୍ଟ ଏହାଠାର ।

ଶୁଣିଣ ପାର୍ବତୀ ବୋଲନ୍ତି ବଚନ
କୁମାର ପୂର୍ଣ୍ଣିମା ଦିନ ହେଲା ଏହି ଜନ୍ମ ।
କୁମାର ପଦାରେ ଏହୁ ଯାଇକରି ରହୁ
ଲୋଡ଼ିଲେ ଆମ୍ଭପାସେ ପ୍ରବେଶ ଆସି ହେଉ ।
ଏମନ୍ତ ବୋଲି ହରପାର୍ବତୀ ଚଳିଗଲେ
ତ୍ରିଦଶ ଦେବତାଏ ଅମର ବର ଦେଲେ ।
ମାତାଙ୍କର ବଚନେ କୁମାର ଚଳିଗଲା
କୁମାର ପଦାରେ ଯାଇ ନିଶ୍ଚିନ୍ତେ ରହିଲା ।
ତେଣୁ ସେ କାର୍ତ୍ତିକେଶ୍ୱର ସମାନ ତୁମ୍ଭରି
ସେ ମାଇଲେ ତାଡ଼କା ତୁମ୍ଭେ ମାଇଲ ତା ନାରୀ ।
ଶୁଣିକରି ଶ୍ରୀରାମ ଯେ ହୋଇଲେ ହରଷ
ଏ ସମୟେ ଓଳଗିଲା ଆସି କପି ଈଶ ।
ବୋଇଲା ଭୋଦେବ ଚାଲ ଖଣ୍ଡେ ଦୂର
ସାଗର କୂଳରେ କରିବା ବିଚାର ।
ସୈନ୍ୟ ସିନ୍ଧୁକୂଳଯାଏଁ ଏଠାରୁ ଲାଗିଛନ୍ତି
ଦିବ୍ୟସ୍ଥାନ ଦେଖି ତହିଁ ରହିବା ରଘୁପତି ।
ଶୁଣିଣ ଉଠିଲେ ଯେ ଦଶରଥ ସୁତ
ସଙ୍ଗରେ ହନୁ ଲକ୍ଷ୍ମଣ ବାଳିର ଯେ ସୁତ ।
ଲୀଳା ଗତି କରିଣ ଚାଲନ୍ତି ଧୀରେ ଧୀରେ
ପ୍ରବେଶ କୁମାରପଦା ଦକ୍ଷିଣ ପାର୍ଶ୍ୱରେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
କୁମାର ପଦାରେ ସବୁ ସୈନ୍ୟ ରହିଛନ୍ତି ।
ଗହଳେ ଋକ୍ଷକପି ରହିଲେ ସକଳ
ଘନ ଘନ ଲହରୀ ମାରଇ ସିନ୍ଧୁଜଳ ।
ଦିଗ ନ ଦିଶଇ ଯେ ଲବଣ ସିନ୍ଧୁପାଣି
ଦେଖିଣ ମନରେ ତ୍ରାସ କଲେ ରଘୁମଣି ।
ମନେ ବିଚାରିଲେ ଲଙ୍କା ଏଥିର ମଧ୍ୟରେ
ଦୂରୁ ଦେଖି ଯାହାକୁ ଡରନ୍ତି ସିନ୍ଧୁ ସୁରେ ।
ଋକ୍ଷ କପି ଘେନି ମୁଁ କେମନ୍ତେ ଏଥୁ ଯିବ
ନ ଗଲେ ତିନିପୁରେ ଲଜ୍ଜା ମୁଁ ପାଇବି ।
ଏତେ ବୋଲି ଶ୍ରୀରାମ ଯେ ସିନ୍ଧୁକୂଳେ ଯାନ୍ତି
ଦୁଇଭାଇ ଘଡ଼ଘାଳି ତହିଁ ଯେ ଶୁଅନ୍ତି ।
ଭୋ ତୀର୍ଥରାଜ ମୋତେ କରିବକି ଦୟା
ଘରଣୀ ବିହୁନେ ମୋର ବିଫଳିତ କାୟା ।
ଅସମୟ କାଳେ ଆଶ୍ରୟ କଲି ତୋତେ
ଏଦୁଃସହ ସଙ୍କଟରୁ ଉଦ୍ଧରି ଧର ମୋତେ ।
ଏତେ ବୋଲି ଶ୍ରୀରାମ ଉଠିଲେ ତଡ଼ତି
ସମୁଦ୍ର କୂଳରେ ସୈନ୍ୟ ଘେରି ରହିଛନ୍ତି ।
ସେନାପତିମାନଙ୍କୁ ଗଉରବ କଲେ
ଯେହୁଁ ସେ ଦାଶରଥି ରହିଲେ ସିନ୍ଧୁକୂଳେ ।

ମର୍କଟ ଭାଲୁ ଯେ ବହୁତ ସେଠାରେ
ଗହ ଗହ ଶବଦ ସିନ୍ଧୁର ତଟରେ ।
ଏକର ଉପରେ ଆରେକ ପଡ଼ନ୍ତି
ଏକର ଫଳମୂଳ ଆରେକ ଘେନିଯାନ୍ତି ।
ଦେଖିଣ ଶ୍ରୀରାମ ମନେ ବିରସ ହୋଇଲେ
ସୁଗ୍ରୀବକୁ ଚାହିଁଣ ବଚନ ପ୍ରକାଶିଲେ ।
ଦେଖ ଦେଖ ମଇତ୍ରହେ କପିଙ୍କ ଚରିତ୍ର
ଏକରେ ଆରେକ ଯେ କରନ୍ତି ଅନର୍ଥ ।
ଏହାଙ୍କୁ ଘେନି କିପରି ମୁଁ ମାରବି ଦଶାନନ
ଶତ୍ରୁର ପୁରକୁ ମୁଁ କରୁଛି ଗମନ ।
ଏକ ଫଳ ଗୋଟାକୁ ବେଢ଼ନ୍ତି ଦଶବିଂଶ
ଗଡ଼ନ୍ତି ପଡ଼ନ୍ତି ନୁଅନ୍ତି ଜିତ ତିସ ।
ଏମାନଙ୍କୁ ଘେନି ମୁଁ କରିବି କିସ କାର୍ଯ୍ୟ
ତୁମ୍ଭେ ମଇତ୍ର ହେ ସାବଧାନେ ବୁଝ ।
ମୋହଲାଗି ତୁମ୍ଭେ ଦୁଃଖ ପାଇଲ ବହୁତ
ମୁହିଁ ଯିବି ବନକୁ ଏ ମୋହର ସତ୍ୟ ।
ଆବର ଜାନକୀ ପ୍ରାପତ ମୋତେ ନାହିଁ
ସୂର୍ଯ୍ୟବଂଶେ ଅନାସ୍ତ ହୋଇଲି ଯେ ମୁହିଁ ।
ଏତେ ବୋଲି ଶ୍ରୀରାମ ବିସ୍ମୟ ମନ ହୋଇ
ଜମ୍ବେବ ବୋଇଲେ ଶ୍ରୀରାମଙ୍କ ମୁଖ ଚାହିଁ ।
ମୋହର ବଚନକୁ ଶୁଣ ରଘୁରାଣ
ଏଥକୁ ଉପାୟ ଅଛି ମୋର ଜାଣ ।
ଯେବଣ ଦିନ ଆମ୍ଭେ ବିମ୍ବରକୁ ଗଲୁ
ମେରୁର ଦୁହିତାକୁ ସେଠାରେ ଦେଖିଲୁ ।
ତୁମ୍ଭର ଦୂତ ବୋଲି ଆମ୍ଭଙ୍କୁ ଦୟା କଲା
ପ୍ରସନ୍ନେ ଚନ୍ଦ୍ରରେଖା ମଣି ଆଣି ଦେଲା ।
ସେ ମଣିଣ ପ୍ରସାଦେ ପ୍ରମାଦ କିଛି ନାହିଁ
ବୁଦ୍ଧି ପଶଇ ଯେ ଜ୍ଞାନ ଜାତ ହୋଇ ।
ଅବୋଧ ହେବେ ଯେ ହେବେ ସେ ସୁଜନ
ଧାର୍ମିକି ହୋଇବେ ଯେ ସମସ୍ତ ପୁରଜନ ।
ସେ ମଣି ଶ୍ରୀରାମ ଅଛି ବିଶେଷ ଗୁଣ
ମଣିର ଜଳ ପିଇଲେ ବୃଦ୍ଧ ଯେ ତରୁଣ ।
ଲବଣ ଜଳରେ ତାକୁ ବୁଡ଼ାଇଲେ ନେଇ
ହୋଇବ ଅମୃତ କହିଲେ ଗୋସାଇଁ ।
ହନୁମନ୍ତଠାରେ ଯେ ଅଛଇଁ ସେହି ମଣି
ପରୀକ୍ଷା କଲେ ସିନା ସେ କଥାକୁ ଜାଣି ।
ଏ କପିମାନଙ୍କୁ ଦେବ ନ ଭାବ ତୁମ୍ଭେ ସାନ
ଏ କପି ଭାଲୁ ସର୍ବେ ମାରୁତି ସମାନ ।
ଚାରିଦିନେ ଦେଖିବ ଏହାଙ୍କ ରିପୁବଳ
ଧରାରେ ଯେତେବେଳେ କହିବେ କୁଶଳ ।
ଶୁଣିଣ ରଘୁନାଥ ହରଷ ହୋଇଲେ
ଲବଣ ଜଳରେ ମଣି ବୁଡ଼ାଅ ବୋଇଲେ ।
ଆଜ୍ଞା ପାଇ ମାରୁତି ଚଳିଲା ତକ୍ଷଣ
ଜଳରେ ବୁଡ଼ାଇଲା ମଣିରତ୍ନ ଜାଣ ।
ଜଳରେ ବୁଡ଼ାଇ ସେ ପାଣି ସିଞ୍ଚେ କର ।
ଧଇର୍ଯ୍ୟ ବୁଦ୍ଧିବଳ ହେଲା କପିଙ୍କର ।
ଶ୍ରୀରାମ ନାମକୁ ସୁମରନ୍ତି ସର୍ବେ
କରେ ମାଳା ଧରିଣ ଜପନ୍ତି କେ ଭବେ ।
କେହୁ ନାକ କାନ ଯେ ଛୁଇଁଣ ଜପନ୍ତି
ଜ୍ଞାନ ଉଦେ ହେଲା ଯେ ଦୁବୁଦ୍ଧି ହେଲା ଶାନ୍ତି ।
ଛାଡ଼ିଲେ ଦୁର୍ବୁଦ୍ଧିମାନ ହୋଇଲେ ସନ୍ତୋଷ
ଦେଖିଣ ରଘୁନାଥ ହୋଇଲେ ହରଷ ।
ମନରୁ ଭ୍ରାନ୍ତି ଯେ ଛାଡ଼ିଲେ ରଘୁନାଥ
ଜମ୍ବେବକୁ ଚାହିଁଣ ପ୍ରଶଂସା କଲେ ସେ ତ ।
ଏ ସମ୍ପଦ ସୁଗ୍ରୀବର ଅଟେ ସବୁ ଜାଣ
ତୋହର ବୁଦ୍ଧିରେ ମୋତେ ଯଶଅଛି ପୁଣ ।
ଏସନେକ ପ୍ରବୋଧ କରନ୍ତି ଦାଶରଥି
ରହିଲେ ସୈନ୍ୟବଳ ମହୋଦଧି ଘୋଟି ।
ଶୁଣ ଗୋ ପାର୍ବତୀ ଏଥୁ ଅନନ୍ତରେ
ରାବଣ ଚାର ପେଶିଥିଲା ସିନ୍ଧୁକୂଳେ ।
ଲଙ୍କାକୁ ଯାଇ ଚାର ରାବଣକୁ କହି
ଜମ୍ବୁ ଦ୍ୱୀପକୁ ଦେବ ଯାଇଥିଲି ମୁହିଁ ।
ଶୁଣ ଦେବ ଠାକୁର ଲଙ୍କାର ଅଧିପତି
ଶ୍ରୀରାମ ଲକ୍ଷ୍ମଣ ଯେ ଅଟନ୍ତି ବେନି ଯତି ।
ସିନ୍ଧୁର ଉତ୍ତର କୂଳେ ଆସି ରହି
ଋକ୍ଷବାନର ସୈନ୍ୟ କଳନା ନ ଯାଇ ।
ଶୁଣି କରି ରାବଣ ନାସିକା ଡିଆଇଁ
କିସ କିସ କଥା କହୁଛ ବୀର ହୋଇ ।
ମହୋଦର ପୁତ୍ରକୁ ବୋଇଲା ଆଗ ହସି
କି ବାରତା ଆଣିଛରେ ଆଗରେ କହ ହସି ।
ଏତେ ବୋଲି ଚାର ହାନ୍ଦୋଳିଲା ପିଠି
ବାହା ଦୁଇ ଧରିଣ ଆଗକୁ ଦେଲା ଛାଟି ।
ବିଭୀଷଣ ବୋଲେ ତା ତୁ ନ କର ତରସ୍ତା
ସଚେତ ହୋଇଣ କହୁ ସେ ବାରତା ।
ଚାର ବୋଇଲା ଦେବ ଶୁଣ ଲଙ୍କସାଇଁ
ଜମ୍ବୁଦ୍ୱୀପକୁ ଯେ ଯାଇଥିଲି ମୁହିଁ ।
ଭୂତଖଣ୍ଡ ମଣ୍ଡଳରେ ଅଯୋଧ୍ୟା କଟକ
ସୂର୍ଯ୍ୟବଂଶୀ ଦଶରଥ ସେଥିରେ ନାୟକ ।
ତାର କୋଳେ ଜାତ ଚାରି ଯେ ତନୟେ
ତେଜବନ୍ତରେ ତାକୁ ସମ କେହି ନୁହେଁ ।

ଜ୍ୟେଷ୍ଠ ପୁତ୍ର ଶ୍ରୀରାମ କନିଷ୍ଠ ଶତ୍ରୁଘନ
ଭରତ ଲକ୍ଷ୍ମଣ ଯେ ଅଟନ୍ତି ମଧ୍ୟମାନ ।
ମିଥିଳା ରାଜାର ଯେ ଅଟଇ ଦୁହିତା
ସେହି କନ୍ୟାର ନାମ ଅଟଇ ଦେବୀ ସୀତା ।
ସେ କନ୍ୟାକୁ ଶ୍ରୀରାମ ହୋଇଲେ ଯେ ବିଭା
ଲକ୍ଷ୍ମୀ ନାରାୟଣଙ୍କ ପରାଏ ଦିଶେ ଶୋଭା ।
କେତେଦିନ ଅନ୍ତେ ଦଶରଥ ଦଣ୍ଡଧାରୀ
ମନ୍ତ୍ରୀଗଣଙ୍କୁ ଘେନି ବିଚାର ସେହୁ କରି ।
ଶ୍ରୀରାମଙ୍କୁ ରାଜ୍ୟ ଦେବାକୁ କଲେ ସିଦ୍ଧି
କୈକେୟୀ ରାଣୀ ତାଙ୍କୁ ହୋଇଲେ ବିରୋଧି ।
ସତ୍ୟ କରାଇଣ ସେ ମାଗିଲା ରାଜାଙ୍କୁ
ବୋଇଲା ଶ୍ରୀରାମ ଯାଉ ଯେ ବନକୁ ।
ଚଉଦ ବରଷ ରାମ ବନେ ଯାଉ
ଭରତ ମୋହର ଏ ରାଜ୍ୟରେ ରାଜା ହେଉ ।
ତେଣୁ ରାମ ଲକ୍ଷ୍ମଣ ସୀତା ସଙ୍ଗେ ଘେନି
ଅରଣ୍ୟରେ ବାସ ଆସି କଲେ ଭାଇ ବେନି ।
ଗୋଦାବରୀ କୂଳରେ ଘରଣୀ ହରାଇଲେ
ସୁଗ୍ରୀବକୁ ଭେଟିଣ ମଇତ୍ର ହୋଇଲେ ।
ଦୁଃଖ କୁହାକୁହି ହେଲେ ବେନିଜଣ
ସୁଗ୍ରୀବର ସଙ୍ଗରେ ପ୍ରୀତି ରାମରାଣ ।
ମଇତ୍ର ଛଳେ ଶ୍ରୀରାମ ବାଳୀକି ବଧ କଲେ
ସପତ ଶାଳତରୁ ହେଳେ ନିବାରିଲେ ।
ସୁଗ୍ରୀବକୁ କିଷ୍କିନ୍ଧ୍ୟା ରାଜ୍ୟରେ ରାଜା କଲେ
ମାଲ୍ୟବନ୍ତ ପର୍ବତରେ ଚତୁର୍ମାସ୍ୟା ଥିଲେ ।
ଶରତରତୁ ସାରି ଅଇଲେ ସୁଗ୍ରୀବର
ସଙ୍ଗରେ ସୈନ୍ୟବଳ ଭାଲୁ ଯେ ବାନର ।
ସେଠାରେ ଥାଇ ଚାରିଦିଗକୁ ଦୂତ ପେଶି
ଦକ୍ଷିଣକୁ ପବନ ତନୟ ଥିଲା ଆସି ।
ସାଗର ଲଙ୍ଘିଣ ସେ ପଶିଲା ଲଙ୍କାଗଡ଼େ
ଅଶୋକବନେ ସୀତାଙ୍କୁ ଦେଖିଲା ଶୁଭବେଳେ ।
ସୈନ୍ୟବଳଙ୍କୁ ମାରି ଲଙ୍କା ପୋଡ଼ିଦେଲା
ଶୁଭଯୋଗେ ହନୁ ଯେ ଏଠାରୁ ଚଳିଗଲା ।
ଯାଇଣ ଶ୍ରୀରାମଙ୍କୁ କହିଲା ବାରତା
ଶୁଣିଣ ଜଟାଧାରୀ ହୋଇଲା ସଚେତା ।
ରକ୍ଷ ମର୍କଟବଳ ସଙ୍ଗତରେ ଘେନି
କୁମାର ପଦାରେ ପ୍ରବେଶ ହେଲେ ପୁଣି ।
ଦେଖିଣ ଈଶ୍ୱରଙ୍କ ନନ୍ଦନ ରଣ କଲା
ତାହାଙ୍କୁ ରାମ ଭାଇ ଲକ୍ଷ୍ମଣ ଜିଣିଲା ।
ବାନ୍ଧିକରି ପଦାରେ ପକାଇଲା ନେଇ
ଈଶ୍ୱର ଶୁଣିକରି ଅଇଲେକ ଧାଇଁ ।

ଚଉଦ ଗୋଟି ଶିବ ସଙ୍ଗରେ ଘେନିଣ
ଶ୍ରୀରାମଙ୍କ ସଙ୍ଗରେ କଲେ ଯାଇ ରଣ ।
ଏକା ନାରାଚରେ ଲକ୍ଷ୍ମଣ-ମୋହ କଲା
ଦେଖିକରି ବେଦବର ସେ ଠାବକୁ ଗଲା ।
ବେଦବରକୁ ଦେଖି ଲକ୍ଷ୍ମଣ କ୍ରୋଧ ହେଲା
ଏକା ଶରକରେ ବ୍ରହ୍ମାଙ୍କୁ ମୋହ କଲା ।
ଦେଖିକରି ତ୍ରିଦଶ ଦେବତା ପଳାଇଲେ
ସାବିତ୍ରୀ ପାର୍ବତୀ ଯେ ଯାଇଣ ମିଳିଲେ ।
ଦୁଇ ନାରୀ କହିବାରୁ ହର ବ୍ରହ୍ମା ଜୀଇ
ଶ୍ରୀରାମଙ୍କୁ ଡରିଣ ପଳାଇଲେ ସେହି ।
ତୋହର ହେତୁରୁ ସେ ପାଇଲା ପ୍ରଭାବ
ଶୁଣିକରି ରାବଣ ହେଲା କ୍ରୋଧ ଭାବ ।
ଏହି ସମୟରେ ମିଳିଲେ କୁଶଧାରୀ
ଚାହିଁଣ ଦଶଗ୍ରୀବ ବ୍ରହ୍ମାଙ୍କୁ ପଚାରି ।
ଶ୍ରୀରାମ ସଙ୍ଗରେ କି ତୁମ୍ଭର ହେଲା କଳି
ସବୁକଥା ବୁଝାଇ କହିଲେ କୁଶଧାରୀ ।
ଈଶ୍ୱର ଶ୍ରୀରାମର ହୋଇଲା କଳିଦ୍ୱନ୍ଦ
ଶାନ୍ତି କରି ଯାଇଣ ମୁଁ ହୋଇଲି ଯେ ମନ୍ଦ ।
ଶ୍ରୀରାମର ଭାଇ ଯେ ଲକ୍ଷ୍ମଣ ମହାବୀର
ଏକା ଶରକେ ମୋତେ ଶୁଆଇଲା ଭୂମିର ।
ପାର୍ବତୀ ଆସିବାରୁ ସମସ୍ତେ ପ୍ରାଣ ପାଇ
ବୋଇଲେ ଅସୁରଙ୍କୁ ବର ଦେଲୁ ତୁହି ।
ହରବ୍ରହ୍ମାଙ୍କୁ ମାଇଲେ ସକଳ ସଲଜାଇ
କ୍ରୋଧେ ଏମନ୍ତ ବୋଇଲା ଶ୍ରୀରାମର ଭାଇ ।
ସେହି କ୍ରୋଧ ହେବାରୁ ଆମ୍ଭେ ପଳାଇଲୁଁ
ଲକ୍ଷ୍ମଣର ବାଣୀ ଯେ ସହି ନ ପାରିଲୁ ।
ଶୁଣିକରି ରାବଣ ସେ କଥା ମିଛ ମଣି
ବୋଇଲା ମୋତେ ତୁମ୍ଭେ ଡରାଉଛ ଜାଣି ।
ଚାରକୁ ବୋଇଲା ତୁ କହୁଛୁ ମିଛ
ଅତି କ୍ରୋଧଭର ହେଲା ବିସ୍ରବାର ବତ୍ସ ।
ବୋଇଲା କେଉଁ କଥା ଜାଣିଛୁରେ ତୁହି
ଚାର ବୋଇଲା ଦେବ ଶୁଣ ଲଙ୍କସାଇଁ ।
ଲଙ୍କା କଟକାଇ ବୋଲିଣ ଶୁଣିଲି
ଆସିବା ନ ଆସିବା ତଥ୍ୟ ମୁଁ ନ ଜାଣିଲି ।
ବନଗିରି ପୂରିଣ ଅଛନ୍ତି ତାର ବଳ
କେବଣ ଉପାୟରେ ତରିବେ ସିନ୍ଧୁଜଳ ।
କେଉଁରୂପେ ଆସିବେ ସେ ନ ଜାଣଇଁ ମୁହିଁ
ଥାଟ ଦେଖିଣ ବେଗେ ଅଇଲି ମୁଁ କହି ।
ଏମନ୍ତ କହି ଚାର ପଛକୁ ଘୁଞ୍ଚିଗଲା
ପୁଣି ହିଁ ରାବଣ ଚାରକୁ ପଚାରିଲା ।

ଏତେକରେ ବାଳୀକି ମାରିଲା ତପସ୍ୱୀ
ଏ କଥା ସତ ନୁହଁ ବୋଲି ଦେଲା ହସି ।
ଝାଡ଼ ଜାବ କିରେ ମନୁଷ୍ୟର ହେବ ବଶ
ଏକଥା ମିଛରେ କହିଲୁ ମୋର ପାଶ ।
ସମୁଦ୍ର କୂଳରେ ରହିବା କଥା ଭଣ
ନଗ୍ର ବାହାରେ ନେଇରେ କାଟଯାର ମୁଣ୍ଡ ।
ଏସନକ ଶୁଣିଣ ବିଭୀଷଣ ଯାଇ
ଆଗରେ କରଯୋଡ଼ି କହଇ ବୁଝାଇ ।
ହୋଦେବ ଦଶଗ୍ରୀବ ଲଙ୍କାର ଅଧିପତି
ତିନି ଭୁବନରେ ତୁହି ଅଟୁ ଚକ୍ରବର୍ତ୍ତୀ ।
ଦୂତକୁ କୋପ କିମ୍ପା ଅନିୟମେ କରୁ
ଅସୁରେଶ୍ୱର ହୋଇଣ କଥା ନ ବିଚାରୁ ।
ଦେଖିଲା ବୋଲି ସେ କହିଲା ସିନା ଆସି
ଆପଣାର ସେବକକୁ ଆପଣେ ବିନାଶି ।
ଦଶରଥଙ୍କ ତନୟ ଶ୍ରୀରାମ ଅଟଇ
ବଳ ପ୍ରାକର୍ମରେ ତାଙ୍କୁ ସରି ନୁହେଁ କେହି ।
ଆପଣ ଜାଣନ୍ତି ତ କହିବି ମୁଁ କିସ
ଯେବଣ କାଳେ ରାମଙ୍କୁ ବାର ଯେ ବରଷ ।
ଅଗମ୍ୟବନେ ଥିଲା ତାଡ଼କୀ ଦଇତୁଣୀ
ଏକା ବାଣ କରେ ରାମ ମକାଇଲେ ହାଣି ।
ବିଶ୍ୱାମିତ୍ର ମୁନିଙ୍କର ଯାଗକୁ ରଖିଲେ
ସେଠାରେ ରାମ ଅନେକ ଦୈତ୍ୟଙ୍କୁ ନାଶିଲେ ।
ଗଙ୍ଗାର କୂଳରେ ଗଉତମ ନାରୀ
ଶ୍ୟାପରେ ଥିଲା ସେହି ପାଷାଣ ରୂପ ଧରି ।
ଶ୍ରୀରାମ ପଦଲାଗି ପାଇଲା ନିଜ ରୂପ
ଗତୁ ଶତେଗୁଣେ ଉଜ୍ଜଳ ତେଜ ରୂପ ।
ତହୁଁ ଯାଇ ମିଥିଳା ଜନକ ରଷି ପୁରେ
ତୁମ୍ଭେ ତ ଯାଇଥିଲ ଧନୁ ସ୍ୱୟମ୍ବରେ ।
ଅନେକ ବଳ ଧନୁ ରାମ ଆମଞ୍ଚିଲେ
ଭୁଜବଳେ ସୀତାଙ୍କୁ ବିଭା ସେ ହୋଇଲେ ।
ପର୍ଶୁରାମର ବଳ ହରିଲେ ବାଟେ ଦେଖି
ଅରଣ୍ୟକୁ ଅଇଲେ ରାଜ୍ୟଭାର ଉପେକ୍ଷି ।
ପିତାଙ୍କର ସତ୍ୟ ସେ ରଖିବା ନିମନ୍ତେ
ବନବାସ କଲେ ଭାଇ ଭାରିଯା ସହିତେ ।
ତୁମ୍ଭେ ତାଙ୍କ ଘରଣୀକି ଆଣିଲ ଚୋରାଇ
ପର ଘରଣୀକି ଆଣିଲ ଲଙ୍କସାଇଁ ।
ଏହି କଥାରେ ତ ମିଥ୍ୟା କିଛି ନାହିଁ
କହିବାରେ ଲୋକକୁ ଦଣ୍ଡୁଛ କିମ୍ପାଇଁ ।
ଶ୍ରୀରାମଙ୍କୁ ଦେଖିଣ ବାନର ଭାଲୁ ମେଳ
ଏ କଥାକି ତୁମ୍ଭେ ନ ଜାଣ ଲଙ୍କପାଳ ।
ବାଳିକି ମାରିବା ତ ଜାଣିଛ ଆପଣ
ଚାର କଥାକୁ କିମ୍ପା ମିଛ ବୋଲି ମଣ ।
ଚାର ଦେଖି ଆସିଲା କହିବାରୁ ଦଣ୍ଡୁ
ତିଆରିଲା ଲୋକର ବୋଲକୁ ତୁ ଖଣ୍ଡୁ ।
ଶ୍ରୀରାମ ଯେବେ ବାନର ସାହା ନ ପାଆନ୍ତା
ହନୁମନ୍ତ କିମ୍ପାଇଁ ଲଙ୍କାକୁ ଆସିଥାନ୍ତା ।
ବାଳୀକି ମାରିବା କଥା ସତ୍ୟ ଯେ ଅଟଇ
ରଘୁନାଥ ଚରଣରେ ସୁଗ୍ରୀବ ଖଟଇ ।
ପରୀକ୍ଷା ନିମନ୍ତେ ରାମ ଛେଦିଲେ ସପ୍ତଶାଳ
ଏଠାରେ କହିଲା ତ ପବନର ବଳ ।
ଦୁନ୍ଦୁଭି ହାଡ଼କୁ ଚରଣେ ଫିଙ୍ଗିଦେଲେ
ତେଣୁକରି ବାଳୀକି ଶ୍ରୀରାମ ମାଇଲେ ।
ଦଶାନନ ବୋଇଲା କିମ୍ପା ସେ ଏହା କଲା
ବାଳୀ ରାଜାକୁ ଶ୍ରୀରାମ କିମ୍ପା ରଣେ ମାଇଲା ।
ବିଭୀଷଣ ବୋଇଲା ହରିଲା ଭାଇ ବୋହୂ
ତେଣୁ ସେ ରଘୁନାଥ ମାରିଲେ କପିରାହୁ ।
ସେହିରୂପେ ଅଧର୍ମ ଆଚରିଲୁ ତୁହି
କୁରଙ୍ଗୀ କରି ମାରିଚକୁ ଦେଖାଇଲୁ ନେଇ ।
ପରର ଘରଣୀ ଯେ ସତୀକି ଦ୍ରୋହ କଲୁ
ଯୁଗରାଜା ହୋଇଣ ଅଧର୍ମକୁ ଗଲୁ ।
ବେଦ ପୁରାଣ ତୁହି ଆଗମ ବଖାଣୁ
ଧର୍ମ ଶାସ୍ତ୍ର ବିଦ୍ୟମାନ ତୁହି ପରିମାଣୁ ।
ପରକୁ ବୁଦ୍ଧି ବଳରେ ତିଆରୁ ଅନେକ
ତୋଠାରୁ ତିନିପୁରେ କେ ନ ଥିଲେ ବିବେକ ।
ଏକା ବାନର ଗୋଟି ଏବେ ପୋଡ଼ିଲା ଲଙ୍କପୁରୀ
ଅକ୍ଷୟ ପୁତ୍ର ତୁଲେ ଅନେକ ସୈନ୍ୟମାରି ।
ନନ୍ଦିକେଶ୍ୱର ଶ୍ୟାପକୁ ନ କଲ ତୁମ୍ଭେ ଭୟ
ରମ୍ଭାର ଶ୍ୟାପକୁ କି ନାହିଁ ତୁମ୍ଭ ଲୟ ।
ଶ୍ରୀରାମ ଉପରେ ବଂଶ କଥା ନାହିଁକି ମନେ
ରାଜାମାନଙ୍କ ସଙ୍ଗତେ ରାମକୁ ମଣୁ ଏଣେ ।
ରାମଦୂତ ହନୁକୁ ପାଞ୍ଚେ ନ ପାରିଲ
ପ୍ରଭାବ ଦେଇ ମୁକୁଟ ନେଲା ତ ଦେଖିଲ ।
ନଉ ସାଗର ବଳ ଲଙ୍କାରେ ତୋର ଠୁଳ
ସବୁଙ୍କୁ ଡରାଇଣ ଗଲା ବାୟୁ ବାଳ ।
ମରମ କଥା ଯେଣୁ ବିଭୀଷଣ କହିଲା
ଶୁଣିଣ ରାବଣେଶ୍ୱର ମହା କୋପ କଲା ।
ବୋଇଲା ବାତୁଳ ତୁରେ ହୋଇଲୁକି ଭାଇ
ଅସୁର ଖାଦ୍ୟ ରାମ ମନୁଷ୍ୟ ଅଟଇ ।
ଆମ୍ଭେ ଯେ ରାକ୍ଷସ ସର୍ବଜୀବ ଖାଉଁ
ଦେବାସୁର ନରଙ୍କୁ ଡରିଣ ନ ରହୁ ।

ବିଭୀଷଣ ବୋଇଲା ନ ଡର କାହାକୁ
ବାନର ଆସିଣ ଯେ ମାଇଲା ଯାହାକୁ ।
ବଳରେ ଦେଖିବାରେ ତୋହର ପୁରୁଷାର୍ଥ
ଶ୍ରୀରାମକୁ ଯେବେ ଜିଣିବୁ ନିୟତ ।
ରାବଣ ବୋଇଲାରେ ତୋର ଯେବେ ଡର
ନ ମରି ଜିଇଣ ଯେବେ କରିବୁ ତୁ ଘର ।
ତୁ ଯେବେ ଡରିବୁରେ ଶରଣ ପଶ ଯାଇ
କେବେ ହେଁ ସୀତାକୁରେ ନ ଦିଅଇ ମୁହିଁ ।
ଶୁଦ୍ଧ ସୁବର୍ଣ୍ଣ ପରାଏ ରୂପ ଯାର ଦିଶେ
ସାକ୍ଷାତେ ଅଗ୍ନିତେଜ ସ୍ୱରୂପ ପ୍ରକାଶେ ।
ସେ ନାରୀକି ମୂର୍ଚ୍ଛିରେ ନୁହେଁ ମୋର ଚିତ୍ତ
ମଲେ ପଛେ ମରିବି ନ ତେଜିବି ତାକୁ ତ ।
ଯେ ତାର ଅଧରେ ଦେବଟରେ ଚୁମ୍ବନ
ସେହି ସେ ସଂସାରେ ଅଟେ ସାଧୁଜନ ।
ଚତୁର ଯୁବତୀ ସେ ଶୃଙ୍ଗାରେ ସିହାଣୀ
ନୋହିଲେ କି ଶ୍ରୀରାମ ବନକୁ ଆସେ ଘେନି ।
ଗୁଣମାନ ତାର ଯେ ନ ପାରିଲା ମୂର୍ଚ୍ଛି
ବନସ୍ତେ ବୁଲିବାକୁରେ ସଙ୍ଗତେ ଆଣିଅଛି ।
କୁଳବଧୂ ହୋଇଣ ସେ ନ କଲା ପୁଣ ଲାଜ
ଘର ବାସ ଛାଡ଼ିଣ ରମଣେ ତାର କାର୍ଯ୍ୟ ।
କର୍ମରେ ପ୍ରାପତ ଅଛି ସେହୁ ମୋତେ
ମୁହିଁ ତାର ସଙ୍ଗରେ ଥିବି ଅନୁବ୍ରତେ ।
ବିଭୀଷଣ ବୋଇଲା ମରିବା ହେତୁ ତୋର
ତ୍ରୈଲୋକ୍ୟ ଠାକୁରାଣୀ ଅଟେ ସଂସାରର ।
ଅଗ୍ନିର ସ୍ୱରୂପ ଯେ ଅଟେ ରାମ ନାରୀ
ତୋତେ ମାରିବାକୁ ସତ୍ୟ ମନେ ଅଛି ଧରି ।
ନୋହିଲେ ତୁହି ତାକୁ କି ଆଣନ୍ତୁ ସେଠାରୁ
ପଞ୍ଚବଟି ବନେ ଭସ୍ମ କରିଥାନ୍ତା ଦେଖିବାରୁ ।
ରାବଣ ବୋଇଲା ମୋର କଣ୍ଟଅଛି ପୁଣ
ଚଉଦମାସ ଗଲେ ଘରଣୀ ହେବ ଜାଣ ।
ଏହା ଶୁଣି ବିଭୀଷଣ କହଇ ବଚନ
ରାଜା ହୋଇ ଅଜ୍ଞାନରେ କହ କଥାମାନ ।
ତୁଣ୍ଡରେ ଏକଥା ଯେ ବସାଇ ନ ଯୋଗାଇ
ପ୍ରତ୍ୟେକ୍ଷରେ କମଳା ଅଟନ୍ତି ବଇଦେହୀ ।
ରାମ ନାରାୟଣ ଯେ ଅନ୍ୟରେ ନାହିଁ ଚିତ୍ତ
ଶୁଣିକରି କୋପାନଳ ଇନ୍ଦ୍ରଜିତ ତାତ ।
ବୋଇଲା ସୀତାକୁରେ ନ ପାରଇ ମୂର୍ଚ୍ଛି
ତୁହିରେ ବିଭୀଷଣ ନ କହ ମୋତେ କିଛି ।
ଅବଶ୍ୟ ଜାନକୀ କିରେ କରିବି ମୁଁ ଭୋଗ
ପ୍ରାପତ ମୋତେ ଅଛି ଏସନକ ଯୋଗ ।

ନୋହିଲେ ଶ୍ରୀରାମରେ ମୋତେ ଅବା ମାରୁ
ରାମ ହସ୍ତରେ ମଲେ ଅସୁର ଜନ୍ମ ସରୁ ।
ସେତେବେଳେ ତାହାର ନେଉ କୁଳବଧୂ
ପୁତ୍ର ନାତି ମାରି ପଛେ ପକାଉ ସେ ସିନ୍ଧୁ ।
ଏହି କଥା ଅଟଇ ମୋହର ନିୟତ
କେବେ ଫେରାଇ ନ ଦେବି ଏକଥାଟି ସତ୍ୟ ।
ନ କହଇ ଆନ କଥା ନ ଦିଅଇ ସୀତା
ଏମନ୍ତ ବଚନ ଯହୁଁ କହିଲା ଦଶମଥା ।
ଶୁଣିଣ ଦୈତ୍ୟମାନେ ପ୍ରତିଜ୍ଞା କରନ୍ତି
ଏକକୁ ଆରେକ ଯେ ଗର୍ଜିଣ ଉଠନ୍ତି ।
ବୋଲନ୍ତି ହୋ ରାଜନ ଶୁଣ ଦଶଶିରି
ତୋର ନା ଧରିଲେ ଡରନ୍ତି ତିନିପୁରୀ ।
ଚଉଦ ଭୁବନରେ ଇନ୍ଦ୍ର ଯେ ଅଧିପତି
ତୋହର ଚରଣରେ ଖଟନ୍ତି ବଶ୍ୟବୃତ୍ତି ।
ତୁମ୍ଭେ କାହାକୁ ଭୟ କର ହେ ଗୋସାଇଁ
କେ ତୋର ହସ୍ତରେ ପ୍ରଭାବ ପାଇନାହିଁ ।
ଏବେ ତୁମ୍ଭେ ଯେବେ ଆଜ୍ଞା ଦେବ ନୃପମଣି
ରାମ ଲକ୍ଷ୍ମଣଙ୍କୁ ଆମ୍ଭେ ପକାଇବୁ ହାଣି ।
ସୁଗ୍ରୀବର ଅଙ୍ଗଦ ମାରୁତି ନଳ ନୀଳ
ହେଳେ ବିନାଶିବୁଁ ଆମ୍ଭେ ରାଘ କପିବଳ ।
ଶୁଣିଣ ବିଭୀଷଣ ବୋଲଇ ବଚନ
ବଡ଼ ପ୍ରତାପ କରରେ ଦୈତ୍ୟଗଣ ପୁଣ ।
ରାମ ଲକ୍ଷ୍ମଣଙ୍କୁ ଜିଣିବାକୁ କେ ସମର୍ଥ
ଏ କଥାକି ହୋଇବରେ ସତ ।
ଏକା କାଣ୍ଡକରେ ଯାର ମଲା ବୀର ବାଳି
ତାଙ୍କର ସଙ୍ଗେ ତୁମ୍ଭେ କରୁଛରେ କଳି ।
ମାରୁତି ଅଇଲାରେ ସଙ୍ଗରେ କେହି ନାହିଁ
ଅକ୍ଷୟକୁ ହତ କରି ଲଙ୍କା ପୋଡ଼ିଦେଇ ।
ତାହାକୁ ତୁମ୍ଭେ କିଛି କରି ନ ପାରିଲ
ସକଳ ସୈନ୍ୟମାନେ ତ ଏ ସ୍ଥାନରେ ଥିଲ ।
ମୋହର ବଚନ ଯେବେ ନ କରିବ ରାୟେ
ନିଶ୍ଚୟ ଲଙ୍କାଗଡ଼ ଅଭୋଗ ତୋତେ ହୁଏ ।
ସକଳ ସମ୍ପଦ ତୋର ପୁଣି ନାଶ ଯିବ
ଜୀବନକୁ ଆଶା ଯଦି ଅଛି ଦଶଗ୍ରୀବ ।
ସବୁ ସମ୍ପଦ ରହିବ ସମର୍ପିଲେ ସୀତା
ରଣ ରକ୍ଷକ ସେ ଦଶରଥ ପୁତା ।
ନୋହିଲେ ହତ ଯେ ହେବ ଦୈତ୍ୟବଳ
କାଲି ପାରି ହୋଇଣ ଆସିବେ ସିନ୍ଧୁଜଳ ।
ଅଜୟ ପୁରଗୋଟି କରିବ ଅମଙ୍ଗଳ
ପୁତ୍ର ବନ୍ଧୁ ନାତି ଯେ ମାରିବେ ସକଳ ।

ଏ ବଚନ ଶୁଣିଣ ରାବଣ କୋପ କଲା
ନାସା ଫୁଲାଇ ବିଂଶଲୋଚନେ ଚାହିଁଲା ।
ବୋଇଲା ପାପିଷ୍ଠରେ ଅଟୁ ବିଭୀଷଣ
ଯେତେ କଥା କହୁଛୁ ସବୁ ଅକାରଣ ।
ଜ୍ଞାତିକି ଜ୍ଞାତି ଯେହ୍ନେ କର ଅଭରସା
ମୋତେ ତ ସେହି ପ୍ରାୟେ ଲାଗୁଛି ତୋର ଭାଷା ।
ଶ୍ରୀରାମର ବଳବୀର୍ଯ୍ୟ କହୁ ବଡ଼ କରି
ମୋ କଥାକୁ ତୁହିରେ ସାମାନ୍ୟ ବିଚାରି ।
ମାନବ ଦୁଇଜଣ ଭାଲୁ ମାଙ୍କଡ଼ ସାହା
ତୋହର ବଚନରେ କି ଡରେ ବିଂଶବାହା ।
ସେ ରଘୁନାଥ ଠାରେ ଶରଣ ତୁରେ ପଶ
ମୋପାଶେ ଥିଲେ ତୋତେ କରିବି ପ୍ରାଣେ ନାଶ ।
ଶୁଣିଣ ବିଭୀଷଣ ବୋଲଇ ବଚନ
ମୋହର କଥାକୁ ମଣିଲୁ ସଲପୁଣ ।
ଶୁଣିଣ ଆସ୍ଥାନରୁ ଉଠିଲା ଲଙ୍କପତି
ଖଡ଼ଗ କରେ ଧରି ପ୍ରଚଣ୍ଡ କୋପମୂର୍ତ୍ତି ।
ମାରିବ ବୋଲିଣ ଧାଇଁଗଲା ବେଗେ
ଇନ୍ଦ୍ରଜିତ ପ୍ରଶସ୍ତ ଓଗାଳିଲେ ଆଗେ ।
ଭୋ ଦେବ ଠାକୁର ଲଙ୍କାର ଶିରୋମଣି
କାହାକୁ ଏତେ କୋପ କରୁଛ ବିଂଶପାଣି ।
ସେହି ତୋର ସୋଦର ଅଟନ୍ତି କନିଷ୍ଠ
ତାରଠାରେ କୋପ ଯେ ନୁହଇ ଉଚିତ ।
ରାବଣ ବୋଇଲା ସେ ମୋହର ବଇରୀ
ନିଶ୍ଚୟ ତାର ଯୋଗୁଁ ସରିବ ମୋର ଶିରୀ ।
ଏ ପୁରେ ଥିଲେ ତାକୁ କରିବି ପ୍ରାଣେ ନାଶ
ଏତେ ବୋଲି ନାତେ ଯେ ମାଇଲା ଦଶଈଶ ।
ବୋଇଲା ଏହିକ୍ଷଣି ଗଡ଼ରୁ ତୁ ଯା ଯା
ଶ୍ରୀରାମ ଚରଣେ ଶରଣ ପଶ ଯା ।
ଏତେ କହି ସେ ଯେ ତାକୁ ମାରି ମନ କଲା
ଆଗେ ଓଗାଳି ଇନ୍ଦ୍ରଜିତ ଯେ ଧଇଲା ।
ରାବଣ ବୋଇଲା ନ ଧର ମୋତେ ଛାଡ଼
ଏ ମୂଢ଼ ପାପିଷ୍ଠରେ ଅଟେ ବଡ଼ ମୂଢ଼ ।
ଯେଉଁ ଯେଉଁ କଥାରେ ମୋହର ହୁଏ ଶ୍ରଦ୍ଧା
ଏ ପାପିଷ୍ଠ ସେଥିରେ ଦେଉଅଛି ବାଧା ।
ଯେତେବେଳେ ହନୁମନ୍ତ ପୋଡ଼ିଲା ଲଙ୍କାପୁର
ସେ ବୁଦ୍ଧିମାନ ହାଦେ ଅଟଇ ଏହାର ।
ସୀତାକୁ ଭେଟିଣ ସେ ବାରତା ଘେନିଗଲା
ଏହାର ବୋଲେ ତପସ୍ୱୀ ସୀତାଙ୍କୁ ଠାବକଲା ।
ଆଜହୁଁ ମୋହର ଏ ଲଙ୍କାରେ ନ ଥାଉ
ମୋର ଆଗୁ ଯାଉ ସେ ପରମ ସୁଖ ପାଉ ।

ଶ୍ରୀରାମକୁ ଚାଟୁ ବଚନ କହୁ ଯାଇ
ମର୍ମମାନ କହି ଦର୍ପହରୁ ମୋର ଏହି ।
ଯାଉ ଏ ନ ଥାଉ ଲଙ୍କା ସୀମାନ୍ତରେ
ରାଜା ହେଉ ପଛେ ମୋହର ଅନ୍ତରେ ।
ଏ ମୂଢ଼କୁ ଦେଖିଲେ ଯେବେ ନ ମାରଇ
ବିଶ୍ରବା ଋଷିଙ୍କର ଚରଣେ ହାରଇ ।
ଇନ୍ଦ୍ରଜିତ ଶପଥ ମୋତେ ନଉକେଶୀ ରାଣ
ବିଭୀଷଣ ଥିଲେ ଏଥି ଘେନିବି ପରାଣ ।
ଇନ୍ଦ୍ରଜିତ ମୁଖକୁ ରାବଣେଶ୍ୱର ଚାହିଁ
ଆଜ୍ଞା ଦେଲା ତାହାକୁ ମନ୍ଦୋଦରୀ ସାଇଁ ।
ମୋହର ରାଣ ତୋତେ ଶୁଣରେ କୁମର
ବିଭୀଷଣକୁ ଛାଡ଼ି ଆସ ଲଙ୍କାର ବାହାର ।
ତେବେ ମୁଁ ମଣୋହି ବରିଦିଟି ଆଳ
ସେ ଏଥି ଗଲେ ମୋତେ ହେବ ବଡ଼ କାର୍ଯ୍ୟ ।
ତୋହର ଆସିବାର ପରିଯନ୍ତେ ମୁହିଁ
ଲେଉଟ ବାରତା ପାଇଲେ ମଣୋହି କରଇ ।
ଇନ୍ଦ୍ରଜିତ ଉଠିଣ ଗଲାକ ତଡ଼ତି
ବିଭୀଷଣ ଥିଲା ଯେ ମେଢ଼ର ପଛକତି ।
ଇନ୍ଦ୍ରଜିତ ବୋଇଲା ଝଟତି ପୁତା ଆସ
ରାଜାର ଆଜ୍ଞାରେ ତୋତେ ଛଡ଼ାଇବି ଦେଶ ।
ଶୁଣିଣ ଦଶାନନ ବଚନ ବୋଇଲା
ନିଶ୍ଚୟ ଦଶାନନର କାଳ ଯେ ପୂରିଲା ।
ପଡ଼ିଲା ଦେବକୂଟ ମରିବ ଅବଶ୍ୟ
ଅଳପ ଦିନରେ ମରିବ ତୁଟିଲା ଆୟୁଷ ।
ଶ୍ରୀରାମର ବାଣ ତୋତେ ଖାଇବରେ ଭାଇ
ସମସ୍ତଙ୍କୁ ସଙ୍ଗେ ନେଇ ଯିବୁଟିରେ ତୁହି ।
ସୀତା କମଳିନୀ ପରମା ସାଧବୀ ତ
ପୂର୍ବରେ ତାଙ୍କ ଶାପରେ ତୁମ୍ଭେ ପୁଣି ଜାତ ।
ଶୁଣରେ କୁମର ତୁ ମୋହର ବଚନ
ତୋ ବାପ ମଲେ ଆସିବି ମୁଁ ଲଙ୍କା ଭୁବନ ।
ତୋହର ମାତାଗଣ ମୋ ପାଦେ ଖଟିବେ
ପୂର୍ବରୁ ଘଟାଇଣ ଅଛନ୍ତି ଦଇବେ ।
ତୁମ୍ଭେମାନେ ସବୁ ଯିବ ଅମର ପୁରକୁ
ନାରାୟଣ ହସ୍ତେ ମୃତ୍ୟୁ ପାଇବାର ହେତୁ ।
ତୁମ୍ଭର ଘରଣୀମାନେ ତୁମ୍ଭ ସଙ୍ଗେ ଯିବେ
ରାବଣର ନାରୀମାନେ ମୋ ପାଦେ ଖଟିବେ ।
ତୁମ୍ଭେ ସମସ୍ତେ ଅଚିନ୍ତେ ସ୍ୱର୍ଗପୁର ଯିବ
ରାବଣ ଅବଶ୍ୟ ନର୍କରେ ପଡ଼ିବ ।
ଏ ଲଙ୍କାଗଡ଼େ ତାର ଅଂଶ ନ ରହିବ
ନିଶ୍ଚୟ ରାବଣ ନର୍କଭୋଗ ଯେ କରିବ ।

ଏପରି ବିଭୀଷଣ ଧିକ୍କାରି କହିଲା
ଲଙ୍କାଗଡ଼ ଭିତରୁ ବାହାର ହୋଇଗଲା ।
ସେଠାରେ ବିଭୀଷଣ ଶୂନ୍ୟରେ ବିକ୍ରମିଲା
କୋଡ଼ିଏ ଯୋଜନ ଯାଏ କାୟା ବଢ଼ାଇଲା ।
ଆକାଶରେ ଗମିଣ ଉତ୍ତର ମୁଖେ ଯାଇ
ଦେଖିଲା ରକ୍ଷକପି ସିନ୍ଧୁକୂଳେ ଛାଇ ।
ବିଚାରିଲା ମୋତେ ରାବଣ ଯେ କୋପ କଲା
ଏ କଥା ହିଁ ମୋତେ ଭଲ ଯୋଗାଇଲା ।
ଦେଶ ଛଡ଼ାଇଲା ସେ ମୋତେ କ୍ରୋଧ ହୋଇ
ପରମବ୍ରହ୍ମ ମୂର୍ତ୍ତି ଦେଖିବି ଯେ ମୁହିଁ ।
ଶ୍ରୀରାମରେ ଶରଣ ପଶିବି ଯାଇ ବେଗେ
ନାରାୟଣଙ୍କର ମୋତେ ଦୟା ହେଲା ଏବେ ।
ଆଉ ଲଙ୍କାକୁ ଯିବାର କାର୍ଯ୍ୟ ମୋର ନାହିଁ
ମନ୍ଦୋଦରୀ ରାଣୀ ତ ଏକଥା ଜାଣଇଁ ।
ଆସିବାବେଳେ ଜାନକୀ କହିଅଛି ଧ୍ରୁବ
ରାବଣ ମରିବ ବିଭୀଷଣ ରାଜା ହେବ ।
ମନ୍ଦୋଦରୀ ରାଣୀ ତ ମୋ ସଙ୍ଗେ ଅଙ୍ଗସଙ୍ଗ
ତେରମାସ ହେଲା ତ ସ୍ୱାମୀର ବିଭଙ୍ଗ ।
ଶରଣ ପଶିବି ମୁଁ ଶ୍ରୀରାମ ପାଦ ଧରି
ତେଣୁ ସେ ଦୟା ମୋତେ କରିବେ ଚାପଧାରୀ ।
ପୂର୍ବର ପାପରୁ ମୁଁ ଜନମ ଅସୁର
ସେ ପାପ ଛେଦିବେ ମୋର ରଘୁକୁଳବୀର ।
ଦେଖିବି ମୁଁ କେମନ୍ତେ ଦିଶନ୍ତି ଶ୍ରୀହରି
ଦେବଙ୍କର ବୋଲରେ ମାନବରୂପ ଧରି ।
ଏ ଜନ୍ମ ସୁଫଳ କରିବି ତାଙ୍କୁ ଚାହିଁ
ନ ରହିବି ଏଠାରେ ଯିବି ବେଗ ହୋଇ ।
ଏତେ ଭାବି ଆକାଶ ମାର୍ଗରେ ଚଳିଗଲା
ଯେଉଁଠାରେ ରାମ ଛନ୍ତି ସେଠାରେ ମିଳିଲା ।
କଳାମେଘ ଯେହ୍ନେ ଗଗନେ ଦିଶଇ
ତେସନକ ଦିଶେ ଶୂନ୍ୟମାର୍ଗେ ଥାଇ ।
ଏସନକ ସମୟରେ ସୁଗ୍ରୀବର ରାୟେ
ସନ୍ଧ୍ୟା କରିବାକୁ ସାଗର କୂଳେ ଯାଏ ।
ସଙ୍ଗରେ ଅଛନ୍ତି ରକ୍ଷ କପି ବଳ
ସିନ୍ଧୁ କୂଳରେ ସନ୍ଧ୍ୟା କରେ ମହୀପାଳ ।
ବିଭୀଷଣ ସେଠାରେଅନ୍ତରୀକ୍ଷେ ରହି
ବାନର ବିଚାରନ୍ତି ଉପରକୁ ଚାହିଁ ।
ମେଘ ଖଣ୍ଡ ପ୍ରାୟ ଯେ କିସ ଦିଶୁଅଛି
ଏକକୁ ଆରେକ ହୁଅନ୍ତି ପୁଚ୍ଛା ପୁଚ୍ଛି ।
କେ କହେ ମେଘ ଅଟେ କେ କହେ ଅସୁର
କେ ବୋଲେ ଏକଥା ଜଣାଯାଏ ସମାଚାର ।

ବାନରେ ନିରେକ୍ଷିଣ ଜାଣିଲେ ଦଇତ
ଚିନ୍ତିଣ ପ୍ରାକର୍ମ କରନ୍ତି ବହୁତ ।
କେ କହଇ ଚାଲ ହେ ଆଣିବା ତାକୁ ଧରି
କେ କହଇ ସାଗରରେ ପକାଇବା ମାରି ।
କେ କହଇ ଧରଣୀରେ କଚାଡ଼ିବା ନେଇ
କେ କହଇ ପଳାଇଲେ ଧରିବା ଗୋଡ଼ାଇ ।
କେ କହଇ ସେ କାହିଁକି ଆସିଅଛଇ ଜାଣ
ସେ କଥା ତଥ୍ୟ କରି ଶୁଣିବା ଏଥି ପୁଣ ।
ଏମନ୍ତ ବିଚାର ବାନରଙ୍କର ଶୁଣି
ଅନ୍ତରୀକ୍ଷେ ଥାଇଣ ବିଭୀଷଣ ଭଣି ।
ବୋଇଲି ରାବଣର ଅଟେ ମୁଁ ଯେ ଭାଇ
ମୋହର ନାମ ବିଭୀଷଣଟି ଅଟଇ ।
ଅନୀତି କଥାମାନ କଲା ଦଶଶିରୀ
ତେଣୁ ତାର କନ୍ଧରୁ ଛାଡ଼ିଗଲା ଶିରୀ ।
ତିଆରିଲା ବୋଲ ସେ ନ କଲା ମୋହରି
କୋପରେ ଶସ୍ତ୍ର ଧରି ଗୋଡ଼ାଇଲା ମାରି ।
ବୋଇଲା ଦୋରେହାରେ ନ ଥାଅ ମୋର ପୁରୀ
ନିଶ୍ଚୟ ଜାଣିଲିରେ ରାମଟି ଦ୍ରୋହରି ।
ଇନ୍ଦ୍ରଜିତ ନ ଥିଲେ ମାରିଥାନ୍ତା ପୁଣି
ପୁତ୍ରଦାରା ଆଶା ଛାଡ଼ି ଅଇଲି ତକ୍ଷଣି ।
ଶ୍ରୀରାମଙ୍କ ଚରଣେ ପଶିଲି ଶରଣ
ମୋହର ନାମଗୋଟି ଅଟେ ବିଭୀଷଣ ।
ସ୍ୱର୍ଗପୁରେ ଭଣ୍ଡାର କୁବେର ଅଧିପତି
ଲଙ୍କାରେ ରାବଣ ଯେ ହୋଇଛି ନୃପତି ।
ଚଉଦ ଭୁବନ ଯେ ଅର୍ଜିଲା ବଡ଼ପଣ
ସ୍ୱର୍ଗେ ଦେବତାମାନଙ୍କୁ ଜିଣିଲାକ ଜାଣ ।
କୁବେରକୁ ଜିଣିଣ ଆଣିଲା ବିମାନ
ତେଣୁ ତିନିପୁରେ କଲାକ ଗମନ ।
ସ୍ୱର୍ଗରେ ପଶିଣ ଦେବତାଙ୍କୁ ଦଳି
ପାତାଳରେ ଯାଇଣ ଭେଟିଲାକ ବଳି ।
ସେ ପୁରେ ଅନେକ ନୃପତି ଦୈତ୍ୟ ଜିଣି
ପିତାର ପ୍ରସନ୍ନରେ ଜିଣିଲା ତାଙ୍କୁ ପୁଣି ।
କପିଳାସ କନ୍ଦରେ ପଶିଲା ଧସାଇ
ଦେଖିଣ ଦୟା କଲେ ପାର୍ବତୀର ସାଇଁ ।
ମର୍ତ୍ତ୍ୟ ରାଜାମାନଙ୍କୁ ଜିଣିଲା ପାପିଷ୍ଠ
ଯାଗଯଜ୍ଞ ଭାଙ୍ଗିଣ କଲା ସବୁ ନଷ୍ଟ ।
ଶ୍ରୀରାମଙ୍କ ଘରଣୀ ସୀତାଙ୍କୁ ନେଲା ହରି
ତିଆରିଲା ବୋଲ ଯେ ନ କଲା ଦଶଶିରୀ ।
ଖଡ୍‌ଗ ଘେଡ଼ି ମୋତେ ମାରି ଗୋଡ଼ାଇଲା
ଇନ୍ଦ୍ରଜିତ ପୁତ୍ର ତାର ସମ୍ଭାଳି ରଖିଲା ।

ବୋଇଲା ଶ୍ରୀରାମର ସେବକ ତୁରେ ଅଟୁ
ହୃଦରେ ମାୟା ଧରି ମିଛେ ମୋତେ ଖଟୁ ।
ଏ ଲଙ୍କାରେ ଥିଲେ ତୋର ନେନିବି ଜୀବନ
ଖଡ୍‌ଗେ ମାଂସ ତୋର କରିବି ଭିନ୍ନ ଭିନ୍ନ ।
ଶ୍ରୀରାମରେ ଶରଣ ପଶ ତୁରେ ଯାଇ
ଏମନ୍ତ କହିଣ କୋପ ମୋତେ ହୋଇ ।
ଲୋକ ଲଗାଇ କରିଦେଲା ସେ ବାହାର
ତେଣୁ କରି ମୁହିଁ ଛାଡ଼ିଲି ଲଙ୍କାପୁର ।
ରଘୁନାଥ ପାଦଙ୍କୁ ମୁଁ କରିଅଛି ଆଶ
ମୋତେ ରକ୍ଷା କର ମୁହିଁ ଅଟଇ ନିରାଶ ।
ଶୁଣି କରି ସୁଗ୍ରୀବର ଉଠିଲା ଝଡ଼ତି
ବିଭୀଷଣ କରକୁ ଧଇଲା ଡୋମାପତି ।
ବୋଇଲା ବିଭୀଷଣ ମୋଠାରୁ ଏବେ ଶୁଣ
ମୋତେ ବୋଲି ଭାଇ ଯେ ଘଉଡ଼ି ଦେଲା ଜାଣ ।
ଅନେକ ଦୁଃଖରେ ଦିନ ମୁହିଁ ନେଲି
ଯୋଗେଣ ଶ୍ରୀରାମଙ୍କୁ ଭେଟ ମୁଁ ହୋଇଲି ।
ତେଣୁ ଶ୍ରୀରାମ ଚରଣେ ପଶିଲି ଶରଣ
ଦେଖି ଦୟା କଲେ ମୋତେ ରଘୁକୁଳ ରାଣ ।
ତେଣୁ ସେ ମୋର ଛଳେ ବାଳିକି ବଧ କଲେ
କିଷ୍କିନ୍ଧ୍ୟାରେ ମୋତେ ନୃପତି ପଣ ଦେଲେ ।
ତେଣୁ ସେ ରଘୁମଣି ମୋଠାରେ ଦୟାଚିତ୍ତ
ସଙ୍ଗରେ ଘେନି ମୋତେ ଅଇଲେ ରଘୁନାଥ ।
ଋକ୍ଷ କପିବଳ ଯେ ମୁଁ ସାଜିଣ ଅଇଲି
ରାବଣକୁ ମାରିବାକୁ ଉପାୟ ମୁଁ କଲି ।
ଦାରା ବଇରୀ ଅଟଇ ରାବଣ ତାଙ୍କରି
ତେଣୁ ସେ ରାବଣକୁ ମାରିବେ ଚାପଧାରୀ ।
ସଦାଶିବ ଆସିଣ ଏଠାରେ କଳି କଲା
ଶ୍ରୀରାମଙ୍କୁ ହାରିଣ ସେହୁ ପଳାଇଲା ।
ବିଧାତା ପୁରୁଷ ଅଇଲା ଯେ ଧାଇଁ
ସକଳ ଦେବତାଙ୍କୁ ସଙ୍ଗରେ ମେଳାଇ ।
ଶ୍ରୀରାମଙ୍କ ସାନଭାଇ ଜୟ କଲେ ତାଙ୍କୁ
ପଳାଇଲେ କୁଶପାଣି ଘେନି ଦେବତାଙ୍କୁ ।
ତେଣୁ ସେ ରଘୁନାଥ ସିନ୍ଧୁ ତରିବାକୁ
ବିଚାର କରନ୍ତି ସେ ଆପଣା ମନକୁ ।
ଏପରି କହିଣ ଖଡ୍‌ଗଧର ବଳା
ବିଭୀଷଣ କର ଧରି ଚଳିଗଲା ।
ପଛରେ ଋକ୍ଷକପି ଅଛନ୍ତି ଗୋଡ଼ାଇ
ସିଂହଦୁଆରେ ପ୍ରବେଶ ହୋଇଲେ ସେ ଯାଇ ।
ଶଉରୀ ସେନାପତି ଦୁଆରେ ଥିଲା ବସି
ରାଜାଙ୍କୁ ଦେଖିଣ ସେ ଅଇଲା ପାଛୋଟି ।

ସୁଗ୍ରୀବର ବୋଇଲେ ଶୁଣରେ ଶଉରୀ
ଲଙ୍କାର ନୃପତି ଯେ ଶ୍ରୀରାମ ବଇରୀ ।
ସେ ରାଜାର କନିଷ୍ଠ ଅଟେ ବିଭୀଷଣ
ବୋଇଲା ଶ୍ରୀରାମରେ ପଶିବି ଶରଣ ।
ମୁଁ ଯେବେ ଶ୍ରୀରାମଙ୍କୁ ଜଣାଇବି ଯାଇ
ତୁ ଏହାଙ୍କୁ ଥାଅରେ ବସାଇ ।
ଆଜ୍ଞା ହେଲେ ଆସିଣ ନେବା ଏହିକ୍ଷଣି
ଏତେ କହି ଭିତରକୁ ଗଲା କପିମଣି ।
ମଣୋହି ସାରି ଶ୍ରୀରାମ କରନ୍ତି ଆଚ୍ଚମନ
ପାଣି ଟୋକି ଦିଅନ୍ତି ସୁମିତ୍ରା ନନ୍ଦନ ।
ଜମ୍ବେବ ହନୁମନ୍ତ ଅଙ୍ଗଦ ନଳ ନୀଳ
ଆଗରେ ପଟୁଆରୀ ଅଛନ୍ତି ମଙ୍ଗଳ ।
ସୁଗ୍ରୀବର ଯାଇଣ କଲା ତତକ୍ଷଣେ
ପାଏ ପଡ଼ି ଶୋଇଣ ଉଠିଲା ନନ୍ଦନ ।
ଶିରେ କର ଦେଇ ନିଜଙ୍କୁ ଗଲା
ହସ ହସ ହୋଇ ସ୍ୱାମୀରେ ଜଣାଇଲା ।
ଭୋ ଦେବ ରଘୁନାଥ ହେ ତ୍ରୈଲୋକ୍ୟ ଠାକୁର
ଅପୂର୍ବ କଥାଏ ଆଜ ଶୁଣ ରଘୁବୀର ।
ରାବଣର କନିଷ୍ଠ ନାମ ତା ବିଭୀଷଣ
ଆସିଛି ସେ ପଦ୍ମପାଦେ ପଶିବ ଶରଣ ।
ସାହେର କୂଳରେ ମୁଁ ସନ୍ଧ୍ୟା କରୁଥିଲି
ଆକାଶ ମାର୍ଗରେ ସେ ଅଇଲା ଦେଖିଲି ।
ମେଘଖଣ୍ଡ ପ୍ରାୟ ହୋଇ ଗଗନେ ଦିଶଇ
ଋକ୍ଷକପି ମାରିବ ଲୋଡ଼ନ୍ତି ତାକୁ ଚାହିଁ ।
ଶୂନ୍ୟରେ ଥାଇଣ ସେ ବୋଇଲା ବଚନ
ରାବଣର ସାନଭାଇ ମୋ ନାମ ବିଭୀଷଣ ।
ଶ୍ରୀରାମ ପାଦେ ଶରଣ ପଶିବ ଅଇଲି
ଆଜିଠାରୁ ଶ୍ରୀରାମ ସେବକ ମୁଁ ହେଲି ।
ଏହା ଶୁଣି ତାକୁ ଅଣାଇଲି ପାଶ
ଗୌରବ କରିଣ କହିଲି ହୋଇ ତୋଷ ।
ମୁହିଁ ତୋତେ ଶ୍ରୀରାମଙ୍କୁ ଦେଖାଇବି ନେଇ
ଶୁଣିଣ ଗଗନରୁ ଅଇଲା ଓହ୍ଲାଇ ।
ପଚାରିଲି ତାକୁ ମୁଁ ସକଳ ଚରିତ
କେବଣ ପାପରେ ସେ ହୋଇଲା ଦଇତ ।
ବୁଝିଲି ଦେବ ତାର ହୃଦରେ ମାୟା ନାହିଁ
ଶୁଣିଣ ବୋଇଲେ ଯେ ରଘୁକୁଳ ସାଇଁ ।
ଶରଣ ପଶିବ ଯେବଣ ଜନ୍ମ ପୁଣି
ତାଠାରେ ମୋର ଭ୍ରାନ୍ତି ନ ଥାଏ ଯେ ଜାଣି ।
ସେ ଲୋକମାନଙ୍କୁ ମୋର ଅଟେ ପୁଣି ଦୟା
ସେହି ମୋତେ ପଛକେ କରିଥାଉ ମାୟା ।

କିଅବା ସୈନ୍ୟ ମୋର ଆସିଅଛି କଳି
ଦିନାକେତେ ରହିକରି ଯାଉ ପଛେ ଚଳି ।
ଶ୍ରୀରାମ ପୁଚ୍ଛନ୍ତି ଜମ୍ବେବ ହନୂକୁ ଚାହିଁ
ନଳନୀଳ ଅଙ୍ଗଦ ତାରାକ୍ଷକୁ ହକରାଇ ।
ଗନ୍ଧମାର୍ଦ୍ଦନ ସୁଷେଣ ଡକାଇ ସକଳ
ଏକଥା ତୁମ୍ଭେମାନେ ବିଚାର ଏବେ କର ।
ଶତ୍ରୁର ଭାଇ ଆସିଣ ପଶଇ
ତୁମ୍ଭ ମନକୁ ବାବୁରେ କେମନ୍ତେ ଆସଇ ।
ଜମ୍ବେବ ବୋଇଲେ ଦେବ ଆମ୍ଭଙ୍କୁ ନ ପଚାର
ହନୁମନ୍ତ ଜାଣିଥିବ ଏଥିର ବିଚାର ।
ଲଙ୍କା ନଗରକୁ ଦେବ ଯାଇଥିଲା ସେହି
କେମନ୍ତ କଥାମାନ ସେ ପୁରେ ଉପୁଜଇ ।
ତାହାକୁ ପୁଚ୍ଛିଣ ହେ କର ଦେବକାର୍ଯ୍ୟ
ଶୁଣି ହନୁମନ୍ତଙ୍କୁ ଚାହିଁ ରଘୁରାଜ ।
କରଯୋଡ଼ି କହଇ ପବନର ସୁତ
ଭୋଦେବ ଠାକୁର ହେ ଅଯୋଧ୍ୟାର ନାଥ ।
ଯେବଣ ଦିନ ମୁହିଁ ଲଙ୍କାପୁର ଗଲି
ଅଶୋକ ବନରେ ସୀତାଙ୍କୁ ଦେଖିଲି ।
ଏହା ଦୁହିତା ତ୍ରିଜଟା ଜାନକୀର ପ୍ରାଣ
ସାନ୍ତ୍ୱନା କରଇ ସେ ଜାନକୀ କ୍ରୋଧ ଜାଣ ।
ସେ ନାରୀ ଯୋଗୁଁ ସତୀ ଅଛନ୍ତି ଦେହ ଧରି
ଜାନକୀର ପ୍ରାଣ ରଖିଛି ସେହି ନାରୀ ।
ଆରେକ ଦୁହିତା ତାରା ତାର ନାମ
ସେ ପୁଣି ଏକସ୍ତନୀ ଶୁଣ ହେ ଶ୍ରୀରାମ ।
ତୁମ୍ଭ ଭାଇ ଲକ୍ଷ୍ମଣ ସୁମିତ୍ରା କୁମର
ତାର ଉପକାରେ ଅଛି ଶୁଣ ରଘୁବୀର ।
ସେ ମୋତେ ଦେଖିଣ ଚିହ୍ନିଲାକ ଜାଣି
ବୋଇଲା ତୁ ରାମଦୂତ ସୀତାଙ୍କୁ ଖୋଜୁ ପୁଣି ।
ମୁଁ ପଚାରିଲି ତାକୁ ତୁ ଯେ କାହା ନାରୀ
କେମନ୍ତେ ଚିହ୍ନିଲୁ ରାମଦୂତ ବୋଲି କରି ।
ସେ ବୋଇଲା ଶ୍ରୀରାମ ଲକ୍ଷ୍ମଣ ଘେନି ଆସ
ରାବଣ ମଲେ ମୁଁ ଯେ ଯିବି ସ୍ୱର୍ଗବାସ ।
ଲକ୍ଷ୍ମଣ ଶକ୍ତିଭେଦ ହେବେ ଯେ ଏଠାରେ
ଔଷଧି ବାଟି ଦେବି ମୋହରି କ୍ଷୀରରେ ।
ତେବେ ସିନା ବର୍ତ୍ତିବେ ସୁମିତ୍ରା ନନ୍ଦନ
ଏପୁରେ ପିତା ମୋର ହୋଇବେ ରାଜନ ।
ରାମଙ୍କ ସୁଦୟାରେ ପିତା ହେବ ରାଜା
ଜାନକୀଙ୍କ ଦୟାରେ ଭଗ୍ନୀ ହେବ ରାଜା ।
ଲକ୍ଷ୍ମଣଙ୍କ ଦୟାରେ ଯିବି ମୁଁ ସ୍ୱର୍ଗପୁର
ଦେବତାମାନେ ମୋତେ କହିଲେ ସକଳ ।

ଏକଥାମାନ ମୁଁ ଯେ ତାରଠାରୁ ଶୁଣି
ଅଶୋକ ବନରେ ଦେଖିଲି ଠାକୁରାଣୀ ।
ମଧୁବନ ଭାଙ୍ଗନ୍ତେ ରାବଣ ଧରିନେଲା
ନାଗଫାଶେ ବାନ୍ଧି ମୋତେ ମାଡ଼ ମରାଇଲା ।
ମୋର ଶିର ଛେଦିବାକୁ ଆଜ୍ଞା ଦେଲା କୋପେ
ବିଭୀଷଣ ଥିଲା ଯେ ରାବଣ ସମୀପେ ।
ମୋର ପାଇଁ ଦେବ ସେ କହିଲା ବହୁତ
ତେଣୁ ମୁଁ ଧାର୍ମିକ ବୋଲି ଜାଣଇଁ ସେହିତ ।
ପ୍ରତ୍ୟକ୍ଷରେ ଯାହା ମୁଁ ଶୁଣିଲି ଦେଖିଲି
ବିଭୀଷଣକୁ ଅସୁର ପ୍ରାୟ ନ ମଣିଲି ।
ଲଙ୍କାର ନରନାରୀ କରନ୍ତି ବିଚାର
ସାଧୁ ମହିମା ଅଟେ ରାବଣ କନିଷ୍ଠର ।
ଧନରେ ଐଶ୍ୱର୍ଯ୍ୟ ବିବେକ ମର୍ଯ୍ୟାଦା
ଦାନେଣ ଶାନ୍ତେଣ ଅସୁର ବଳବନ୍ତା ।
ବିଭୀଷଣ ବୁଦ୍ଧିରେ ସାଧ ତିନିପୁରୀ
ନ ଥିଲେ ଦ୍ୱନ୍ଦ କରିଥାନ୍ତା ଦଶଶିରି ।
ଭୋଦେବ ଶ୍ରୀରାମ ହେ ଶରଣ ସମ୍ଭାଳ
ଆଶା କରି ଅଇଲା ଯେ ବିଶ୍ରବାର ବାଳ ।
ଏ ଯେବେ ବିଭୀଷଣ ଆସିଛି ତୁମ୍ଭ ପାଶ
ଶରଣ ରଖିବାର ତୁମ୍ଭର ଯଥାର୍ଥ ।
ତାକୁ ଶରଣ ରଖିଲେ ଅନେକ କାର୍ଯ୍ୟ ଅଛି
ବିଚାରିଣ କାର୍ଯ୍ୟ ତୁମ୍ଭେ କର ରଘୁବଂଶି ।
ଶୁଣିଣ ଶ୍ରୀରାମ ଲକ୍ଷ୍ମଣ ମୁଖ ଚାହିଁ
ସୁଗ୍ରୀବର ସଙ୍ଗରେ ଯାଅ ବ୍ୟଗ୍ର ହୋଇ ।
ମାୟା ଅମାୟା ତାରୁ ବୁଝି ଘେନି ଆସ
ସନ୍ଦେହ ଫେଡ଼ାଇବ କରାଇ ବିଶ୍ୱାସ ।
ମାୟା ଥିଲେ ଯେବେ ଆସିଲାଣି ଆସୁ
ପ୍ରଭାବ ପାଇଯିବ ତାର ନିଜ ଦୋଷୁ ।
ମୋହର କାହାକୁ ତ କେବେ ହେଁ ନାହିଁ ଡର
କେହି ସମାନ ମୋତେ ନାହିଁ ତିନିପୁର ।
ପିତାଙ୍କର ସତ୍ୟରେ ମୁଁ ବନବାସ କଲି
କର୍ମରେ ଅବଳରେ ଘରଣୀ ହରାଇଲି ।
ଭୁଜବଳେ ତିନିପୁର ପାରଇ ମୁଁ ସାଧି
ମୋତେ କିସ କରିବ ତାହା ମାୟା ବୁଦ୍ଧି ।
ଯାଅ ଯାଅ ମଇତ୍ର ହେ ଲକ୍ଷ୍ମଣଙ୍କୁ ଘେନି
ଅଙ୍ଗଦ ନଳନୀଳ କେଶରୀ ପାବନୀ ।
ଜମ୍ବେବ ମନ୍ତ୍ରୀଗଣ ଗବାକ୍ଷ କଞ୍ଚନ
ତାଳିମ୍ବ ଶତବାଳି ଦ୍ୱିବିନ୍ଦ ସୁଷେଣ ।
ମହେନ୍ଦ୍ର ପବନ ଯେ ପାରୁଶ ସୁପାରୁଶ
ଏମାନଙ୍କୁ ସଙ୍ଗେ ଘେନି ଯାଅ କପିଈଶ ।

ସଂକେତ ବୁଝିଣ କରାଅ ଦଶଂନ
ଶ୍ରୀରାମଙ୍କ ଆଜ୍ଞାରେ ଗଲେ ସର୍ବଜନ ।
ଶଉରୀ ସେନାପତି ଲକ୍ଷ୍ମଣଙ୍କୁ ଦେଖି
ଦୂରରୁ ଉଠିଲା ସେ ଆସନ ଉପେକ୍ଷି ।
କର ଦୁଇ ଯୋଡ଼ିଣ ଉଠିଲା ତଡ଼ତି
ପାଦେ ପଡ଼ି ଶୋଇଣ ଉଠିଲା ଝଟତି ।
ପଛକୁ ଘୁଞ୍ଚିଗଲା କରିଣ ନମସ୍କାର
ସଧିରେ ପଚାରଇ ବିଶ୍ରବା କୁମର ।
ଭୋ ମହାତମ ଏକ ଶ୍ରୀରାମ ଅଇଲେ
ଶଉରୀ ସେନାପତି ତୁନି କରି ବୋଲେ ।
ଏହିଟି ଲକ୍ଷ୍ମଣ ରାମଙ୍କର ସାନଭାଇ
ସୁମିତ୍ରା ଅଟନ୍ତି ଏହାଙ୍କର ଆଇ ।
କୌଶଲ୍ୟା ନନ୍ଦନ ଶ୍ରୀରାମଚନ୍ଦ୍ର ରାୟେ
ଜାନକୀ ଲକ୍ଷ୍ମଣ ଘେନି ବନବାସ ଆୟେ ।
ଶୁଣିକରି ବିଭୀଷଣ ଉଠିଲା ବହନ
ଚାହିଁଲା ଲକ୍ଷ୍ମଣ ଯେ ଜ୍ୱଳନ୍ତା ଦହନ ।
ଶ୍ରୀମୁଖ ମହାଶୋଭା ସୁଧାଂଶୁକୁ ଜିଣି
କୋଟି ରବିର ତେଜ ଗଞ୍ଜାଇ ତେଜ ପୁଣି ।
କୋଟିଏ ସିଂହ ଜିଣି ବିକ୍ରମ ମୁରତି
କୋଟି କନ୍ଦର୍ପ ଜିଣି ଅପୂର୍ବ ରୂପ କାନ୍ତି ।
କୋଟିଏ ଅରୁଣ ଛବି ଜିଣେ ଦଣ୍ଡବାସ
କୋଟି କ୍ଷତ୍ରି ଗର୍ବକୁ ଗଞ୍ଜାଇ ସୁଧାଂଶ ।
ଆଜାନୁ ବେନି ବାହୁ ବେନି ପାଦ ଶୋଭା
ନାଭି ପେଟକୁ ଅବା କି ଉପମା ଦେବା ।
ସିଂହ କଟି ଡମ୍ବରୁ ଜିଣି ଚାରୁକଟି
ମନୋହର ଉପମା ଦିଶେ କୋଟି କୋଟି ।
ଦୁତୀଜଙ୍ଗର ନଖ ଦିଶନ୍ତି ମନୋହର
ହୋଇଛନ୍ତି ଦର୍ପଣ ଚନ୍ଦ୍ରମା ଗର୍ବହାର ।
ଶିରରେ ଜଟା ସୁବାସ ପ୍ରସନ୍ନେ ମଣ୍ଡିତ
ସୁକାନ୍ତି ସ୍ୱରୂପ ଶୋଭାକୁ ଖଣ୍ଡିତ ।
କରେ କାଣ୍ଡ କୋଦଣ୍ଡ ରପ ପ୍ରଚଣ୍ଡ ଠାଣି
ଶରୀର ବର୍ଣ୍ଣେ ଦିଶେ ଚମ୍ପା ହେମ ଜିଣି ।
କସ୍ତୁରୀ ରେଖାକୁ ଯେ ଜିଳିଛି ନିଶ ରେଖ
ନୟନ ବେନି ସୁନ୍ଦର କୁସୁମ ବିଶିଖ ।
କି ଛାର ବର୍ଣ୍ଣିବ ସେ ସୁନ୍ଦର ରୂପ ରାଶି
ସିଂହଦ୍ୱାରେ କରି ମଧ୍ୟ ସିଂହପରି ଦିଶି ।
ପ୍ରସନ୍ନ ବଦନ ଦେବ ଅଳ୍ପ ଅଳ୍ପ ହସି
ବିଜେ କଲେ ବିଭୀଷଣ ଦେଖେ ରୂପ ରାଶି ।
ସୁଗ୍ରୀବ ଜଣାଇଲା ଏହିଟି ବିଭୀଷଣ
ଏହାର ଜ୍ୟେଷ୍ଠ ଭାଇ ଅଟଇ ରାବଣ ।

ଯହୁ ସେ ଦଶଗ୍ରୀବ ଅନୀତି ଆଚରିଲା
ତିଆରିଲେ ଏହାକୁ ମାରି ତ ମନେ କଲା ।
ଏହି ସେ ଧାର୍ମିକ ଧର୍ମ ମାର୍ଗେ ଥାଇ
ଅସଦ ମାର୍ଗ ଲୋକ ଏହାକୁ ନ ଯୋଗାଇ ।
ତେଣୁ ଏତେ ଜିଣି ଅଇଲା ଲଙ୍କାପୁର
ଶରଣ ପଶିଲା ଆସି ଶ୍ରୀରାମ ପୟର ।
ଏବେ ଏହାକୁ ତୁମ୍ଭେ କର ହେ ସୁଦୟା
ବିଭୀଷଣଙ୍କୁ ଚାହିଁଣ ବୋଲନ୍ତି କପି ନାହା ।
ଶୁଣ ହେ ମହାତମା ଏ ରାମଙ୍କର ଭାଇ
ଲକ୍ଷ୍ମଣ ନାମେ ବୀରସମ କେହି ନାହିଁ ।
ଏହାଙ୍କ ଛାମୁରେ ତୁମ୍ଭେ ପ୍ରୀତି ଉପୁଜାଅ
ଶୁଦ୍ଧଚିତ୍ତ ହୋଇଲେ ଦର୍ଶନ ଯାଇ ପାଅ ।
ଶୁଣିଣ ବିଭୀଷଣ ଲକ୍ଷ୍ମଣ ପାଦ ଧରି
ସାଷ୍ଟାଙ୍ଗ ପ୍ରଣିପାତ ବାରମ୍ବାର କରି ।
ଉଠ ଉଠ ବୋଲିଣ ବୋଲନ୍ତି ସଉମିତ୍ରୀ
କିମ୍ପାଇ ଏ ବୁଦ୍ଧି କଲା ଲଙ୍କପତି ।
ଶ୍ରୀରାମ ଘରଣୀକି ନେଲା କିସ ପାଇଁ
ବିଭୀଷଣ ବୋଲେ ଦେବ ମୋର ଦୋଷ ନାହିଁ ।
ବେଳହୁଁ ଦଇତ ଶ୍ରୀରାମରେ ଦୋଷୀ
ରାବଣ ଜନମ କାଳେ କପାଳେ ଦୈବ ଲେଖି ।
ଶ୍ରୀରାମ ଘରଣୀକି ଆଣିଲେ ମରିବୁ
ନୋହିଲେ ନର୍କରେ ଘାଣ୍ଟି ହେଉଥିବୁ ।
ଏମନ୍ତ ଦଶାନନର କପାଳେ ଲେଖିଦେଲା
ପୁଣି ହିଁ ବର ଦେଲା ବେଳରେ କହିଲା ।
ମନେ ନ ରହିବାକୁ ଚିତ୍ର ପଟରେ ଲିହି
ମରିବାର ବେଳକୁ ସେକଥା ପାସୋରଇ ।
ରାବଣ ଲଙ୍କାଗଡ଼େ ରାଜପଣ କରଇ
ଯେଣେ ନାଶ ଯିବ ସେ କଥା ବିଚାରଇ ।
ତିଆରିଲା ବେଳକୁ ମୋତେ ମାରିତ ମନେ କଲା
ଇନ୍ଦ୍ରଜିତ ନାମେ ତାର ପୁତ୍ର ଯେ ରୁହାଇଲା ।
ବୋଇଲା ଶ୍ରୀରାମ ପାଦେ ପଶରେ ଶରଣ
ଏଠାରେ ଥିଲେ ତୋର ଘେନିବି ପରାଣ ।
ବହୁତ ଅପମାନ ପାଇଲି ତାର ତହିଁ
ଘରଣୀ ପୁତ୍ରବନ୍ଧୁ ଛାଡ଼ିଲି ସେପାଇଁ ।
ରକ୍ଷାକର ମୋତେ ନାହିଁ ଆନଗତି
ମୁଁ ତୁମ୍ଭ ଚରଣରେ ଅଟେ ବଶ୍ୟବୃତ୍ତି ।
ଶୁଣି ଲକ୍ଷ୍ମଣ ବୋଇଲେ ବେଗେ ଉଠ
ଶୁଣିଣ ଉଭା ହୋଇଲା ରାବଣ କନିଷ୍ଠ ।
ଶିରେ କରଯୋଡ଼ି ବୋଲେ ମୋର ଗତି ନାହିଁ
ଲକ୍ଷ୍ମଣ ବୋଇଲେ ସନ୍ଦେହ ଏଥିପାଇଁ ।

ଶତ୍ରୁର ଭାଇ ଯେ ସମ୍ପ୍ରତେ ଯିବା କେହ୍ନେ
କେ ଜାଣଇ କିସ ଯେ ଅଛି ତୁମ୍ଭର ମନେ ।
ସମ୍ପ୍ରତେ କରି ତୁ ଯେ ପ୍ରୀତି ଉପୁଜାଅ
ତେବେ ତୁ ରଘୁନାଥଙ୍କୁ ଦର୍ଶନ ପାଇଁଯାଅ ।
ଉପ୍ରୋଧ ଛାଡ଼ିଣ କହିଲୁଁ ଆମ୍ଭେ ତୋତେ
ଦଶାନନର ଭାଇ ଅଟୁ ତୁ ଯୁକତେ ।
ତୁମ୍ଭେ ସମ୍ପ୍ରତେ ନ କଲେ ସୈନ୍ୟବଳ ଛନ୍ତି
ଏମାନେ ଆମ୍ଭଙ୍କୁ ବୋଲିବେ ପଛେ ବାଛି ।
ବିଭୀଷଣ ବୋଇଲା ଅନନ୍ତ ଦେବ ଶୁଣ
ଯେଉଁ ଆଜ୍ଞା ଦେବ କରିବି ଏହିକ୍ଷଣ ।
ଚୁଡ଼ା ମାଣ୍ଡୁ ସୂର୍ଯ୍ୟପଟ କରାଇବ ହେ କିସ
କି ଅବା ଜ୍ୱଳନ୍ତା ଅନଳେ ଦେବି ଝାସ ।
ପାଷାଣ ପକାଇବି ପୋତାଇବି ମୋର ଶିର
ନୋହିଲେ ପଶିବିକି ସାହେର ଭିତର ।
ମାୟା ଅମାୟା ଯେ ଜଣାଯିବ ଏବେ
ଦୋଷ ଥିଲେ ଖଡ଼ଗେ ଛେଦନ କର ବେଗେ ।
ଲକ୍ଷ୍ମଣ ବୋଇଲେ ମୁଁ ଯେ ନ ଜାଣଇ ଆନ
ଏହି ସମୁଦ୍ରେ ପଶିଣ କର ତୁ ସ୍ନାହାନ ।
ଦଶଦିଗକୁ ଚାହିଁ କହିବୁ ତୁ ଯାହା
ମୁହିଁ ହାଦେ ସଂପ୍ରତେ କରିବି ଯେ ତାହା ।
ଶୁଣିଣ ବିଭୀଷଣ ସନମତ କଲା
ସାଗର ତୀର୍ଥରେ ସ୍ନାହାନ ସେ କଲା ।
ହନୁମନ୍ତ ଜମ୍ବେବ ସୁଷେଣ ନଳ ନୀଳ
ରକ୍ଷ କପି ପଲ ଯେ ଅଛନ୍ତି ସଙ୍ଗର ।
ତୀର୍ଥରେ ସ୍ନାନ କରି କୂଳେ ଉଭା ହେଲା
ଦଶଦିଗକୁ ଚାହିଁଣ ଉଚ୍ଚରେ ଡାକ ଦେଲା ।
ମୋତେ ମୋର ଭାଇ ଯେ ବାହା ର କରିଦେଲା
ତେଣୁ ଅବିଗୁଣ ମୋ ମନରେ ରହିଲା ।
ଜଳସ୍ଥଳ ଅନଳଙ୍କୁ ଚାହିଁ ମୁଁ ଶପଥ କଲି
ଶ୍ରୀରାମଙ୍କ ଚରଣେ ମୁଁ ଶରଣ ପଶିଲି ।
ଭୈରବୀ ଅନଳ ହେ ଚନ୍ଦ୍ରମା ପବନ
ତୁମ୍ଭେମାନେ ଜାଣ ତ ମୋହର ଯେମନ ।
ଶ୍ରୀରାମ ଚରଣେ ସେବା କରି ତ ମୋର ଇଚ୍ଛା
ଏଥିରୁ ମନେ ମୋର ନାହିଁ ଆନ ବାଞ୍ଛା ।
ଯେବେ ମୋର କପଟ ଅଛି ଏ ହୃଦରେ
କଳିଯୁଗେ ରାଜା ମୁଁ ହେବି ମର୍ତ୍ତ୍ୟପୁରେ ।
ଏତେ କହିଣ ପୁଣ ଯାଇ ସ୍ନାନ କଲା
କୂଳେ ଉଭା ହୋଇଣ ଶ୍ରୀରାମ ସୁମରିଲା ।
ମୋତେ ମୋର ଭାଇ ବାହାର କରିଦେଲା
ତେଣୁ ଅଭିମାନ ମୋର ମନରେ ରହିଲା ।
ତେଣୁ ମୁଁ ଶ୍ରୀରାମ ପାଦେ ପଶିଲି ଶରଣ
ଗଗନ ବିହାରି ତୁମ୍ଭେ ଜାଣିଥାଅ ପୁଣ ।
ଏକଥା କପଟ ଯେ ନୁହେ ମୋ ଚରିତ
ଦଶଦିଗକୁ ଚାହିଁଣ ବୋଇଲି ନିୟତ ।
ବୋଇଲା ରାମଠାରେ ଯେବେ ମୋର ମାୟା
କଳିଯୁଗେ ବହୁତ କୁଟୁମ୍ବ ମୋର କାୟା ।
ପୁଣି ବୋଇଲା କଳିଯୁଗରେ ହେବି ମୁଁ ବ୍ରାହ୍ମଣ
ଏତେ ବୋଲି ବାହୁଡ଼ି ଅଇଲା ବିଭୀଷଣ ।
କେ ବୋଲେ ଭଲ ନିୟମ ଏବେ ଏହୁ କଲା
କଳିଯୁଗେ ନୃପତି ପଣ ମନାସିଲା ।
ବ୍ରାହ୍ମଣ ହେବାକୁ ଯେ ଲୋଡ଼େ ଯାର ମନ
ସମସ୍ତଙ୍କଠାରେ ଏ ପାଇବ ସନମାନ ।
ପୁଣି ବୋଇଲା ବହୁତ କୁଟୁମ୍ବ ହୋଇବ
କୁଟୁମ୍ବ ହେଲେ ଏହାକୁ ସମ୍ପଦ ଭୋଗ ହେବ ।
ବ୍ରାହ୍ମଣ କଳିଯୁଗେ ପାଇବେ ଯେ ପୂଜା
ସୁଖ ଭୋଗ ନିମନ୍ତେ କଳିଯୁଗେ ରାଜା ।
ଭଲ ସେ ମନାସିଲା ଦଶଗ୍ରୀବ କହି
ନିୟମ କଲା ସେ ଏକଥାମାନ କହି ।
ଅସୁରମାନଙ୍କ ମାୟା ଜାଣିତ ନ ପାରି
କପଟରେ ଆସିଛି କିସ ସେ ବିଚାରି ।
ଏସନେକ ଭାବେ ଯେ ଭାଳନ୍ତି ଥୋକେ ବସି
ଏକଥା ସତ୍ୟ ବୋଲି ବୋଲୁଛନ୍ତି ହସି ।
ଏଥୁ ଅନନ୍ତରେ ଶୁଣ ବିଭୀଷଣ ବୀର
ପ୍ରବେଶ ହେଲା ଆସି ଲକ୍ଷ୍ମଣ ଛାମୁର ।
ଶିରେ କର ଦେଇ ବୋଲେ ନିୟମ ମୁଁ କଲି
କଳିଯୁଗେ ନୃପତି ହେବି ମନାସିଲି ।
ଆବର କହିଲି ମୁଁ ବ୍ରାହ୍ମଣ ହୋଇବି
ଆହୁରି ବୋଇଲି ବହୁ କୁଟୁମ୍ବୀ ଯେ ହେବି ।
ରାମଚନ୍ଦ୍ର ସ୍ୱାମୀ ପାଦେ ମାୟା ଅଛି ଯେବେ
ଏହି ତିନି ମୁରତି ମୁଁ ହେବି କଳିଯୁଗେ ।
ଏହା ଶୁଣି ସଉମିତ୍ରୀ ସମାଜନ୍ତି କର
ଏଠାରେ ଥାଅ ତୁମ୍ଭେ ବିଭୀଷଣ ବୀର ।
ଏକଥା ଛାମୁରେ ଆଗ ଆସେ ମୁଁ ଜଣାଇଁ
ଆଜ୍ଞା ପାଇଲେ ଦର୍ଶନ କରିବୁ ତୁ ଯାଇ ।
ସୁଗ୍ରୀବର ଆଦି କରି ରଖାଇ ସମସ୍ତ
ଭିତରକୁ ପଶିଲେ ସୁମିତ୍ରାଙ୍କ ସୁତ ।
ଶ୍ରୀରାମଙ୍କୁ ଦେଖି ଦଣ୍ଡ ପ୍ରଣାମ କରଇ
ଉଠି ଉଭା ହୋଇ ସେ ମସ୍ତକେ କର ଦେଇ ।
ଭୋଦେବ ତିନିପୁର ଈଶ୍ୱର ରଘୁପତି
ଶରଣକୁ ଆସିଅଛି ପୌଲସ୍ତିର ନାତି ।

ତାହା ମନ ବୁଝିବାକୁ ଆଜ୍ଞା ଦେଇ ମୋତେ
ମାୟା ଅମାୟା ତାହାର ବୁଝିବା ନିମନ୍ତେ ।
ସମୁଦ୍ରରେ ପଶି କରି କଲା ସେ ସ୍ନାହାନ
ଦଶ ଦିଗକୁ ଚାହିଁ କଲା ସେ ନିୟମ ।
ଏଥି କପଟ ଥିଲେ ପାଇବି ଏହି ଶାସ୍ତି
କଳିଯୁଗ ମଧ୍ୟରେ ମୁଁ ହୋଇବି ନୃପତି ।
ପୁଣି ନିୟମ କଲା କପଟ ଥିଲେ ପୁଣ
କଳିଯୁଗେ ଜନମିବି ହୋଇଣ ବ୍ରାହ୍ମଣ ।
ପୁଣି କହିଲା କପଟ ଥିଲେ ଶ୍ରୀରାମରେ
କଳିଯୁଗେ ଜନମିବି ବହୁ କୁଟୁମ୍ବରେ ।
ତିନିବାର ସ୍ନାନ କରି ଏ ନିୟମ କଲା
ଭୋ ସ୍ୱାମୀ ଏକଥା ମନକୁ କି ଅଇଲା ।
ଶୁଣିଣ ରାମଚନ୍ଦ୍ର ଛୁଇଁଲେ ବେନିକର୍ଣ୍ଣ
କହିଲେ ବିଭୀଷଣ ତୁହି ଧନ୍ୟ ଧନ୍ୟ ।
ବେଗେ ତୁ ଲକ୍ଷ୍ମଣ ଘେନି ଆସ ଯାଇ
ଜାଣିଲି ତା ହୃଦରେ ମୋଠାରେ ମାୟା ନାହିଁ ।
ଯେବଣ ନିୟମ କଲାରେ ଆଜ ଭାଇ
ବୋଇଲା କଳିଯୁଗେ ନୃପତି ହେବି ମୁହିଁ ।
କଳିଯୁଗେ ଦଣ୍ଡଧାରୀ ପ୍ରଜାଙ୍କୁ ଦଣ୍ଡିବେ
ମହୀପାଳମାନେ ମହା ଅଧର୍ମ କରିବେ ।
ସେକଥା ଶୁଣି ଲକ୍ଷ୍ମଣ କହୁଛି ବୁଝାଇ
ଯେବଣ ନୃପତି ଯେ ପ୍ରଜା ନ ପାଳଇ ।
ଶତ୍ରୁଙ୍କୁ ଦେଖିଲେ ଯେ ଡରିଣ ପଳାଇ
ନିଜଞ୍ଜାଳି ହୋଇ ଯେ ପୁରେ ରହିଥାଇ ।
ମତ୍ତଗର୍ବ ହୋଇଣ ଯେ ପାପ ଆଚରଇ
ବଳିଆର ହୋଇ ସେ କାର୍ଯ୍ୟ କରୁଥାଇ ।
ସେହି ରାଜାମାନେ ସାତଜନ୍ମ ପରିଯନ୍ତେ
ନରକରେ ବାସ କରି ଭୋଗନ୍ତି ଦୁଃଖ ଯେତେ ।
ଆନ ସଂସାର ଦେଲେ ଜନମ ହୁଅନ୍ତି
କଳିଯୁଗ ରାଜାଙ୍କର ଏମନ୍ତ ଅଟେ ଗତି ।
ବ୍ରାହ୍ମଣ କୁଳେ ଜନ୍ମ ହେବି ସେ ବୋଇଲା
ଶୁଣିଣ ଆମ୍ଭ ମୋହର ଆକୁଳତ ହେଲା ।
କଳିଯୁଗ ବ୍ରାହ୍ମଣ ନ କରିବେ ଜପ
ଯଜମାନ ଘେନିଣ ଅର୍ଜିବ ମହାପାପ ।
ସନ୍ଧ୍ୟା ନ କରିବେ ସେ ବେଳ କାଳ ଜାଣିତ
ଅନ୍ୟ ଜାତି ସଙ୍ଗରେ କରିବେ ରମଣତ ।
ଅଗ୍ନି ନ ପୂଜିବେ ସେ ନ ପଢ଼ିବେ ବେଦ
ଅହଙ୍କାର କରିଣ କରିବେ ମନ ଖେଦ ।
ସେ ବିପ୍ରମାନେ ଚଉଦ ମନ ପରିଯନ୍ତେ
ନର୍କରେ ପଡ଼ିବେ କହୁଅଛି ତୋତେ ।
ଆନ ସୃଷ୍ଟି ହୋଇଲେ ସେମାନେ ହେବେ ଜନ୍ତୁ
ବ୍ରାହ୍ମଣଙ୍କ ଘାତକ ଅଟଇ ଏହୁ ପୁଣ ।
କଳିଯୁଗେ ବ୍ରାହ୍ମଣଙ୍କ ନାରୀମାନେ ଯାଇ
ଶୂଦ୍ରଙ୍କ ସଙ୍ଗରେ ସେ ମାତିବେ ଭାବ ବହି ।
ବୋଡ଼ିକଠାରୁ କୋଡ଼ିଏ କଉଡ଼ି ଜିଣିବ
ଗେରସ୍ତ ତାଙ୍କର ମନକୁ ନ ଆସିବ ।
ରାଣ୍ଡୀ ବ୍ରାହ୍ମଣୀମାନେ କରିବେ ଅନ୍ୟାଚାର
ଜାତି ଅଜାତିରେ ସେ କରିବେ ବିହାର ।
ତିନିମାସ ଶେଷ ହୋଇବ ଯହୁଁ ପୁଣ
ଦ୍ୱିଜେ ଭାରିଦୋଷ କରିବେ ସର୍ବେ ଜାଣ ।
ସେଥିର ପାପକୁ ନ ଡରିବେ କେହି
କଳିଯୁଗ ବିପ୍ରଙ୍କର ଆଚରଣ ଏହି ।
ବହୁତ କୁଟୁମ୍ବୀ ହେବ ସେ କହିଲା
ଏକଥା ଶୁଣି ମୋର ବିକଳ ମନ ହେଲା ।
କଳିଯୁଗ କୁଟୁମ୍ବ ଯେ ବହୁ ମହାପାପୀ
ଅବିଛନ୍ନେ ମାୟା ଶରୀରେ ଥାଏ ବ୍ୟାପି ।
ପୁତ୍ର ଦୁହିତା ଅନ୍ୟାୟ କରନ୍ତି ଯହିଁ ତହିଁ
ସେ ଦୋଷମାନ ତାରଠାରେ ଠୁଳହୋଇ ।
ସମସ୍ତଙ୍କ ଦୋଷ ଘେନି ନର୍କକୁଣ୍ଡେ ପଡ଼ି
ଶତେଜନ୍ମ ଗଲେ ସେ ନର୍କରୁ ବାହାରି ।
ଯେତେବେଳେ ବିଧାତା କରେ ଆନ ସୃଷ୍ଟି
ତେବେ ସେ ମହାତମା ଲଭଇ ମୁକତି ।
ଜପ ତପ କରିବାରୁ ସପତମାର୍ଗେ ରହି
ତାହାଠାରୁ ଦୋଷଗୁଣ ଦେବେ କ୍ଷୟହୋଇ ।
ବହୁ କୁଟୁମ୍ବୀ ନିୟମ କଲା ବିଭୀଷଣ
ସେକଥା ଅଟଇ ଭାଇ ବଡ଼ାଇ କଷଣ ।
ଅନ୍ୟ ପାପ କରିଥିଲେ ଦାନ ଦେଲେ ଯାଇ
ଏ ତିନିପାପ ବାବୁ ଖଣ୍ଡନ ନୁହଇ ।
ଯାଅରେ ଲକ୍ଷ୍ମଣ ବେଗେ ବିଭୀଷଣକୁ ଆଣ
ଧାର୍ମିକ ଜ୍ଞାନି ବୋଲି ସେ ଆଜିଠାରୁ ଜାଣ ।
ଆବର କଥାଏ ତୋତେ କହୁଛିରେ ଭାଇ
ସୁଗ୍ରୀବ ବିଭୀଷଣକୁ ପ୍ରତେ ଯିବୁ ନାହିଁ ।
ସୋଦର ଭାଇର ଯେ ଛାଡ଼ିଲା ସଦ୍‌ଭାବ
ତାହାଙ୍କୁ ବିଶ୍ୱାସ ଯିବାରେ କିସ ଲାଭ ।
କାର୍ଯ୍ୟ ପାଇବା ପାଇଁ ବିଶ୍ୱାସ କରିଥିବ
କର୍ପୂର ଚନ୍ଦନରୁ ଶୀତଳ ବହୁଥିବ ।
ହୃଦରେ ବିଚାରିବ କତୁରୀର ମତ
ତେବେ ତୋତେ ଭଲରେ ବୋଲିବ ଜଗତ ।
ଶୁଣିଣ ପାର୍ବତୀ ବୋଲନ୍ତି ବଚନ
ଏକଥା ଶ୍ରୀରାମଙ୍କର ଉଚିତ ନୁହେଁ ପୁଣ ।

ଉପକାରୀ ଲୋକଙ୍କୁ ଏମନ୍ତ କିମ୍ପା କହି
ଜାଣିଲି ଶ୍ରୀରାମ ହୃଦ କୁଟିଳ ଅଟଇ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ସେମାନ କଥା ନୁହେଁ ଆପଣାର ନୀତି ।
ଦେଖାଇ କରି ତାହା କହିଲେ ରଘୁନାଥ
ଲକ୍ଷ୍ମଣର ମନ ନୁହେଁ ଅନ୍ୟଚି ଯେମନ୍ତ ।
ଏମାନଙ୍କ ବିଚାର ରୀତିକୁ ଜାଣିଣ
ମୋଠାରେ ବା ଲକ୍ଷ୍ମଣ ବୁଦ୍ଧି କରିବେ ଭିନ୍ନ ।
ବୋଲିବ ଏମାନେ ତ ଏମନ୍ତ ରୀତି କଲେ
ଭାଇମାନଙ୍କୁ ଶତ୍ରୁ ହୋଇ ମରାଇଲେ ।
ସେ କଥାକୁ ତାକତ କରିବାର ପାଇଁ
ତେଣୁକରି ଦେଖାଇ କହିଲେ ରଘୁସାଇଁ ।
ସେଠାରୁ କିସ ହେଲା ପାର୍ବତୀ ବୋଇଲେ
ଆଣ ବିଭୀଷଣକୁ ଲକ୍ଷ୍ମଣେ ଆଜ୍ଞା ଦେଲେ ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ଶ୍ରୀରାମଠାରୁ ଶୁଣି ଲକ୍ଷ୍ମଣ ମନେ ଭାଳି ।
ବିଚାରିଲେ ରଘୁନାଥ ମୋଠାରେ କଲେ ମାୟା
ଚନ୍ଦ୍ର ସୂର୍ଯ୍ୟ ଆନ ହେଲେ ନାହିଁ ମୋ ନିର୍ଦ୍ଦୟା ।
ଏକଥା ବିଚାରି କର ଯୋଡ଼ିଲେ ଲକ୍ଷ୍ମଣ
ଶ୍ରୀରାମ ବୋଇଲେ ସଉମିତ୍ରୀ ଶୁଣ ।
ଆମ୍ଭର ହିତରେ ଆସିଛି ବିଭୀଷଣ
ନିଶ୍ଚୟ ଆମ୍ଭହସ୍ତେ ମରିବ ରାବଣ ।
ବିଭୀଷଣ ଦୁହିତା ବିଶ୍ୱାସ ସୀତାର
ଜାନକୀ ପାଟ ବାନ୍ଧିଲେ ତ୍ରିଜଟାର ଶିର ।
ବିଭୀଷଣକୁ ଲଙ୍କାରେ କରିବି ମୁଁ ରାଜା
ତେବେ ଏ ସଂସାରରେ ରହିବ ମୋର ଧ୍ୱଜା ।
ବିଭୀଷଣକୁ ଦେବି ରାବଣର ନାରୀ
ତେବେ ଯୁଗେ ଯୁଗେ କୀର୍ତ୍ତି ରହିବ ମୋହରି ।
ତାର ଦୁହିତା ଅଟେ ତାର ନାମ ଜାଣ
ସହସ୍ର ବରଷ ହେଲା ଅଛି ଅନାଇଁଣ ।
ରାବଣ ଶକ୍ତି ମାରି ତୋତେ ଯେ ନାଶିବ
ହନୁ ଗନ୍ଧମାର୍ଦ୍ଦନରୁ ଔଷଧ ଆଣିବ ।
ତାରା ଆସିଣ ଔଷଧ ବାଟିବ ରେ ଜାଣ
ଏକ ସ୍ତନରୁ କ୍ଷୀର ଦେବ ସେ ତକ୍ଷଣ ।
ମଣିଶୀଳ ପୁଆରେ କରିବ ମର୍ଦ୍ଦନ
ଔଷଧ ଆଣି ଅଙ୍ଗେ କରିବ ଲେପନ ।
ତେବେ ସେ ତୋର ଦେହେ ପଶିବ ଜୀବନ
ଚେତା ପାଇ ତାହାକୁ ତୁ ହେବୁ ପରସନ୍ନ ।
ତୋହର ଆଜ୍ଞାରେ ତାରା ସ୍ୱର୍ଗପୁର ଯିବ
ଏମନ୍ତ ଘଟାଇଣ ରଖିଛି ଦଇବ ।

ବିଭୀଷଣ ବଂଶ ଯେ ଆମ୍ଭର ଉପକାରୀ
ତାହାକୁ ଯାଇ ବେଗେ ଆଣ ତୁ ହକାରି ।
ଦେବକୂଟ ବାବୁରେ ହୋଇଅଛି ଆଗୁ
ଜାନକୀ ତ୍ରିଜଟା ବିଶ୍ୱାସ ଅଟେ ସବୁ ।
ତାରା ନାରୀ ତୋରଠାରେ ରଖିଛି ନିୟତ
ମୋଠାରେ ବିଭୀଷଣ ଅଟଇ ବିଶ୍ୱାସତ ।
ବଳରାମ ଦାସ ଦୁଇ ଭାଇଙ୍କ ବିଚାର
ଶୁଣି କରି ଆନନ୍ଦରେ ଯୋଡ଼ି ବେନି କର ।
ଶ୍ରୀରାମଙ୍କ ଆଜ୍ଞାରେ ଲକ୍ଷ୍ମଣ ଚଳିଗଲେ
ସିଂହଦ୍ୱାରେ ରହିଣ ସୁଗ୍ରୀବ ଡାକ ଦେଲେ ।
ରଘୁନାଥ ଆଜ୍ଞା ଦେଲେ ବିଭୀଷଣ ଆସୁ
ଶ୍ରୀରାମଙ୍କ ଚରଣରେ ଶରଣ ସେ ପଶୁ ।
ପୂର୍ବାର୍ଜ୍ଜିତ ଦୋଷ ତାର ସମସ୍ତ ହେଉ କ୍ଷୟ
ତୋଷମନେ ଆଜ୍ଞା ଦେଲେ ରାମଚନ୍ଦ୍ରରାୟ ।
ଶୁଣି ସୁଗ୍ରୀବର ବିଭୀଷଣ କର ଧରି
ଦୁହେଁ ଉଠି ଅଇଲେ ସିଂହଗତି କରି ।
ସେନା ସେନାପତିମାନେ ଆଗହୋଇ ଗଲେ
ଶ୍ରୀରାମଙ୍କୁ ବେଢ଼ିଣ ସେ ପଟୁଆର କଲେ ।
କନକ ମୃଗଛାଲେ ବିଜେ ଦେବ ରାମ
ସର୍ବାଙ୍ଗରେ ଚନ୍ଦନ ଲେପି ରାମରାଣ ।
କରେ କାଣ୍ଡ କୋଦଣ୍ଡ ଧରିଣ ଶରାସନ
ଶିରେ ଜଟା କାଛଟା ଅଙ୍ଗେ ପରିଧାନ ।
କଣ୍ଠରେ ଲମ୍ବଇ ସ୍ଫଟିକର ମାଳ
ସୀତାର ମଣିଗୋଟି ଲମ୍ବେ ବକ୍ଷସ୍ଥଳ ।
ବୀର ବୀରବେଶ ହୋଇଣ ଛନ୍ତି ବସି
ଏସନକ ସମୟରେ ବିଭୀଷଣ ଆସି ।
ସୁଗ୍ରୀବ କହିଲେ ପାଦେ ପଡ଼ି ଶୁଅ
ତ୍ରିପୁର ଈଶ୍ୱର ନାମ ଦଶରଥ ପୁଅ ।
ଶୁଣି ବେଗେ ବିଭୀଷଣ ପାଦେ ପଡ଼ି ଶୋଇ
ଉଠି ଉଭାହୋଇ ମସ୍ତକେ କର ଦେଇ ।
ଶତେବାର ପୁଣ ପ୍ରଣମିତ ସେହୁ
ଆସ ଆସ ବିଭୀଷଣ ଶ୍ରୀରାମ ବୋଲେ ତହୁଁ ।
ନିକଟକୁ ବିଭୀଷଣ ଭରସି ନ ଯାଇ
ବିଷ୍ଣୁ ନିଜ ତେଜଗୋଟି ବିଭୀଷଣକୁ ଦେଇ ।
ଶଙ୍ଖ ଚକ୍ର ଗଦା ଯେ ଶାରଙ୍ଗ ଚତୁର୍ଭୁଜ
ଶ୍ରୀବତ୍ସ ଲାଞ୍ଛନ କୌସ୍ତୁଭ ମଣି ତେଜ ।
ପିତବାସ ପରିଧାନ ଗରୁଡ଼ ବାହାନ
ଶିରରେ କିରଟୀ କର୍ଣ୍ଣେ କୁଣ୍ଡଳ ଶୋଭନ ।
ପଦ୍ମପତ୍ର ସୁଲଳିତ ଦରହାସ ମୁଖ
ଦେଖିଣ ବିଭୀଷଣର ତୁଟିଗଲା ଦୁଃଖ ।

ମନେ ବିଚାରିଲା ଏ ପରମ ବ୍ରହ୍ମରାଶି
ଦେବଙ୍କ ଛଳରେ ଅବତାର ଆସି ।
ରାବଣ ନ ଜାଣିଣ ଅଜ୍ଞାନପଣ କଲା
ନିଶ୍ଚୟ ସବଂଶ ସହିତେ ମରାଇଲା ।
ଏତେ ଭାଳି ମନେ ଯେ ପାଏ ପଡ଼ି ଶୋଇ
ଉଠିଣ ଉଭା ହୋଇଲା ଶିରରେ କର ଦେଇ ।
ଶ୍ରୀରାମ ବୋଇଲେ ତୁମ୍ଭ ନାମ ବିଭୀଷଣ
ମଝିଆଁ ବଡ଼ ଭାଇର ଶୁଭଟି କି ଜାଣ ।
ରାଣୀ ମହାଦେଈ ସେ ଜେମାଦେଈମାନେ
ଦେଶ ଘୋଷ ସହିତେ ଅମନାତ୍ୟ ଗଣେ ।
ରଥଗଜ ଅଶ୍ୱ ଯେ ପଦାତି ସେବକ
ଶୁଭରେ ଅଛନ୍ତିଟିକି ଲଙ୍କାରେ ଯେତେ ଲୋକ ।
ବିଭୀଷଣ ବୋଇଲା ତୁମ୍ଭେ ଧର୍ମ ପ୍ରଭୁ
ଶତ୍ରୁର ଶୁଭ କଥା ପଚାରୁଛ ସବୁ ।
ରାବଣ ବଇରୀ ପରା ଅଟଇ ତୁମ୍ଭର
ଏକଥା ଶୁଣିବାରୁ ମୋ ମନ କାତର ।
ତୁମ୍ଭେ ରଘୁନାଥ ହେ ଅଟ ଶାନ୍ତଶୀଳ
ତୁମ୍ଭଙ୍କୁ ଦ୍ରୋହ କଲା ରାବଣ ଚଣ୍ଡାଳ ।
ଯେବଣ ଦିନ ହରି ନେଲା ତମ୍ଭ ସତୀ
ସେଦିନରୁ ମନ୍ଦକୁ ଚିନ୍ତିଲା ଲଙ୍କପତି ।
ଲଙ୍କାଗଡ଼କୁ ସେ କରିବ ଯେ ନାଶ
ହନୁମନ୍ତ ଯାଇଣ କଲା ତାକୁ ଭସ୍ମ ।
ଅଶି ସହସ୍ର ବଳ କିଙ୍କର ନାଶ କଲା
ତୋଟାଳିଆଙ୍କୁ ଯମପୁରକୁ ପେଶିଲା ।
ପାଞ୍ଚ ସେନାପତି ଶାଳକଗଣ ସଙ୍ଗେ
ତାହାକୁ ମାଇଲା ହନୁ ରସ ରଙ୍ଗେ ।
ଅକ୍ଷୟ ନାମରେ ରାବଣର ସାନପୁତ୍ର
ତାର ସଙ୍ଗେ ସଇନ ପଡ଼ିଲେ ବହୁତ ।
ରଥ ଗଜ ଅଶ୍ୱ ଯେ କେ ପାରିବ ଗଣି
କୋପଭରେ ଦଶାନନ ପେଶେ ପୁଣ ପୁଣି ।
ମଧୁବନ ତୋଟା ଯେ ହୋଇଲା ନିରେଖେ
ଏକାକୀ ବିଧ୍ୱଂସିଲା ପବନର ବତ୍ସ ।
ପୁଣି ଲଙ୍କପତି ଇନ୍ଦ୍ରଜିତକୁ ପେଶି
ଅନେକ ସମ୍ଭର୍ବରେ ସମର କଲା ଆସି ।
ମାୟା ଯୁଦ୍ଧରେ କୁମର ଧରି ଘେନିଗଲା
ନାଗପାଶେ ବାନ୍ଧିଣ ଅନେକ ମରାଇଲା ।
ହନୁମନ୍ତର ମହିମା ଦେଖିଲି ଦେବ ତହିଁ
କଥାଏ ନ ଛାଡ଼ଇ ବନ୍ଧନରେ ଥାଇ ।
ଅଗ୍ନି ଘେନିଣ ସେ ପୋଡ଼ିଲା ଲଙ୍କାପୁରୀ
ବିମାନେ ବସି ନ ଥିଲେ ସରିଥାନ୍ତା ଦଶଶିରୀ ।

ସହସ୍ରେ ଯୁଣ ଲଙ୍କା ଦହିଲା ଅନଳ
କ୍ଷତ୍ରିସମ ନାହିଁ ଯେ ହନୁକୁ ମହୀତଳ ।
ବିଭୀଷଣ ମୁଖରୁ ଏସନ ବାର୍ତ୍ତା ଶୁଣି
ସାଧୁ ସାଧୁ ହନୁମନ୍ତ ବୋଇଲେ ସର୍ବେ ପୁଣି ।
ଶ୍ରୀରାମ ବୋଇଲେ ଶୁଣ ବିଭୀଷଣ
ତୋର ପରେ ଜ୍ୟେଷ୍ଠ ଯେ ଅଟଇ ରାବଣ ।
ଆବର କୁମ୍ଭକର୍ଣ୍ଣ ପୁତ୍ର ଇନ୍ଦ୍ରଜିତ
ଏହାଙ୍କର ବଳବୀର୍ଯ୍ୟ ଅଟଇ କେମନ୍ତ ।
କେତେକ ସୈନ୍ୟଛନ୍ତି କେତେକ ପଦାତି
ଅଇଶ୍ୱର୍ଯ୍ୟ ଭୋଗ କରେ ଘେନି ପୁତ୍ର ନାତି ।
ଏକଥା ସଞ୍ଚପି କହ ମୋ ଆଗର
ବିଚାରି ବୁଝିବା ଯେ ସୈନ୍ୟବଳ ତାର ।
ବିଭୀଷଣ ବୋଲେ ଦେବ ଶୁଣ ରଘୁସାଇଁ
ପଦାତି ସୈନ୍ୟ ତାର କଳନା ନ ଯାଇ ।
ଲଣ ଜଣକେ ଦେବ ରାବଣ ସମାନ
ସମସ୍ତେ ସଂଗ୍ରାମକୁ ଅଟନ୍ତି ବୀର ଜାଣ ।
ଦଶପଦ୍ମ ଅଶ୍ୱ ଯେ ଦିବ୍ୟ ଯୋଗଜାତି
ପାଞ୍ଚ ପଦ୍ମ ଟାଙ୍ଗଣ ଯେ ଉଡ଼ିବାର ଅଛି ।
ସତୁରୀ କୋଟି ଗଜ ଅଛନ୍ତି ଗୋସାଇଁ
ଐରାବତ ସମାନେ ଯୁଝିବେ ପରିଘାଇ ।
ସଭିଏ ସମର୍ଥ ଯେ ସଂଗ୍ରାମରେ ଜିତା
ମାଛିକି ସଙ୍କୁଳି ପକାଏ ବଳବନ୍ତା ।
ବାରକୋଟି ସାରଥି ବାରି ତ ନ ପାରି
ଅସଂଖ୍ୟ ସୈନ୍ୟ ଯେ ସମ୍ଭାଳେ ଦଶଶିରୀ ।
ସମ୍ପଦର ମହିମା ଅଟେ ଅଗୋଚର
ତାହାର ଦ୍ୱାରପାଳ ଅଟେ ବଜ୍ରଧର ।
ବୃହସ୍ପତି ସ୍ତୁତି ଯେ କରନ୍ତି ଉଭାହୋଇ
ନାରଦ ମହାଋଷି ବୀଣା ଯନ୍ତ୍ର ବାଇ ।
ରାତ୍ର ଥାଉଁ ବ୍ରହ୍ମା ଯେ ପଢ଼ନ୍ତି ଚାରିବେଦ
ଯମଦେବତା ତାହାର ଅଟଇ ଯେ ବୈଦ୍ୟ ।
ପବନ ଦେବତା ବିଞ୍ଚେ ବିଞ୍ଚଣା ଧରି
ବରୁଣ ଦେବତା ଯେ ଅଟଇ ବାସ କାରି ।
କୁବେର ଜ୍ୟେଷ୍ଠ ଭାଇ ସାଇତେ ରତ୍ନମାନ
ତାହାର ବସ୍ତ୍ର ପଖାଳନ୍ତି ହୁତାଶନ ।
ଈଶ୍ୱର ଦେବତା ଜ୍ଞାନ କହେ ଯାଇ
ବୁଧଦେବତା ଯେ ଚରଚା କରଇ ।
ଚାରିମେଖ ଡଗରା ସୂର୍ଯ୍ୟ ଦଣ୍ଡୁଆସି
ମଣୋହିଁ ରାନ୍ଧଣା କରଇ ଚନ୍ଦ୍ର ଆସି ।
ଅଷ୍ଟ ଅପସରୀ ଆସି ନୃତ୍ୟ କରି
ଗନ୍ଧର୍ବ କିନ୍ନର ରହନ୍ତି ପଟୁଆରି ।

ବାର ବୈଶ୍ୱଦେବତା ନବଗ୍ରହ ପୁଣ
ଅଷ୍ଟବସୁ ସହିତେ ଅଟନ୍ତି ପାସେଣ ।
କେହୁ ଛତ୍ର ଧରେ ବିଞ୍ଚେ କେ ବିଞ୍ଚଣୀ
ଅନେକ ସମ୍ପଦ ଭୋଗ କରେ ବିଂଶପାଣି ।
କୁମ୍ଭକର୍ଣ୍ଣକୁ ଦେବ ବଳରେ ସରି ନାହିଁ
ପର୍ବତ ସମାନେ ଯେ ଅଟେ ତାର ଦେହୀ ।
ମେଘନାଦ ନାମରେ ଯେବଣ ହିଁ ପୁତ୍ର
ଇନ୍ଦ୍ରକୁ ଜିଣିଣ ଯେ ବୋଲାଇ ଇନ୍ଦ୍ରଜିତ ।
ନିକୁମ୍ଭିଳା ବଟମୂଳେ ଯାଗ ଯାଇ କରି
ତ୍ରିଦଶ ଦେବତାଙ୍କୁ ଜିଣେ ମାୟା କରି ।
ଅନେକ ମାୟା ଯେ ଜାଣଇଁ ମେଘନାଦ
ବେଳହୁଁ ଯାଗ ତାହାର କରିଅଛି ସିଦ୍ଧ ।
ଦିଗପାଳ ସମାନ ଅଟନ୍ତି ଏମାନ
ତିନିପୁର ଭୋଗ ଯେ କରେ ଦଶାନନ ।
କୁମ୍ଭ ନିକୁମ୍ଭ ପୁଣି ମଲ୍ଲ ଯେ ରାକ୍ଷସ
ତାରାକ୍ଷ ଧୂମାକ୍ଷ ବିରୂପାକ୍ଷ କର୍ଣ୍ଣଦାସ ।
ଧରଣୀରାବ ଦୁରାସୁର ଯେ ଅସୁର
କାଳଘଣ୍ଟ ବିକଳ ଜ୍ୟୋତି ମହାବୀର ।
ଆବର ଲୋହିତାକ୍ଷ ସୁର ସେନାପତି
ମହୋଦର ମହାପୁରୁଷ ମକରାକ୍ଷ ଆଦି ।
ଦେବଦତ ଯମଘଣ୍ଟା ଅଟେ ସୁଚିଭଦ୍ର
ଅଲୋପି ସଲୋପି ଘଣ୍ଟବର୍ଣ୍ଣ ମୁଖାବ୍ରହ୍ମ ।
ଶାର୍ଦ୍ଦୂଳ ଶତ୍ରୁଜିତ ମରୁତ କଞ୍ଚନ
ଅନଳ ଚାରଣ ଯେ ସୁଦତ୍ତ ମାରଣ ।
ଅଛନ୍ତି ମହାମଲ୍ଲ କହିଲେ ନ ସରି
ଶୁଣିକରି ରଘୁନାଥ ନିଶରେ ହସ୍ତଭରି ।
ବୋଇଲେ ମୋର ବାଣ ଅଟେ ଅରିରାଶି
ରାବଣ ସୈନ୍ୟ ପତଙ୍ଗ ପଡ଼ିଲେ ହେବେ ଧ୍ୱଂସି ।
ସଗୋତ୍ର ସହିତେ ଇଷ୍ଟ ବନ୍ଧୁ ଘେନି
ରଥଗଜ ଅଶ୍ୱ ଯେ ଯେତେକ ସଇନୀ ।
ଏମାନଙ୍କୁ ଅବଶ୍ୟ ମୁଁ ମାରିବି ରଣଗୋଳେ
ଆବର କଥାଏ ଶୁଣ ମୋର ଭଲେ ।
ଅସୁର କରି ମୁଁ ନ ଥୋଇବି ଜାଣ
ଆଜଠାରୁ ତୋର ଲଙ୍କାରେ ରାଜପଣ ।
ଏ ମୋହର ସତ୍ୟ ଯେ ଭାଇର ଶପଥ
ଲଙ୍କାଗଡ଼ରେ ଥିଲେ ହୋଇଥାନ୍ତୁ ନାଥ ।
ନିଷ୍ଚୟ ହେଲୁ ତୁରେ ଲଙ୍କାପୁର ନାଶ
ଭଲା ତରକିଗଲୁରେ ବିଶ୍ରବାର ଶିଷ୍ୟ ।
କର ଦୁଇଯୋଡ଼ି ଜଣାଏଁ ସୁଗ୍ରୀବର
ଶୁଣ ଦେବ ଶ୍ରୀରାମ ତ୍ରୈଲୋକ୍ୟ ଈଶ୍ୱର ।

ବିଭୀଷଣ ଶରଣ ପଶିଲା ତୁମ୍ଭଠାରେ
ଅପ୍ରମାଦେ ରାଜା ହେଲା ସେ ଲଙ୍କାଗଡ଼ରେ ।
ଏ ବାରତା ଯେବେ ପାଇବ ଦଶଶିରୀ
ସେ ଆସିଣ ଶରଣ ପଶିବ ତୋହରି ।
ତାହାକୁ କେଉଁଠାରେ କରିବ ନୃପତି
ବିଭୀଷଣକୁ ଲଙ୍କା ତ ଦେଲ ତୋଷମତି ।
ଶୁଣିକରି ଶ୍ରୀରାମ ହସିଣ କହିଲେ
ଅଯୋଧ୍ୟାକୁ ମୋର ଦେବି ରାବଣ ଆସିଲେ ।
ମୁହିଁ ପଛେ ଅରଣ୍ୟେ ରହିବି ଏକପୁର
ଏ ମୋହର ସତ୍ୟ ସତ୍ୟ ଅଟେ ସୁଗ୍ରୀବର ।
ଶୁଣିକରି ଜୟେବ ବୋଇଲେ ସାଧୁ ସାଧୁ
ତୁ ଏବେ ବାହାର ଯେ ତ୍ରିଭୁବନ ମଧୁ ।
ତୋତେ ପଟାନ୍ତର ଦେବ ଆନ କେହି ନାହିଁ
ତୁମ୍ଭେ ନାରାୟଣ ହେ କମଳା ଦେବୀସାଇଁ ।
ଏ ବଚନ ଶୁଣିଣ କହଇ ବିଭୀଷଣ
ଭୋଦେବ ଦାଶରଥି ତ୍ରୈଲୋକ୍ୟ କାରଣ ।
ତୁମ୍ଭେ ମୋତେ ନୃପତି କର ବା ନ କର
ମୁହିଁ ତବ ଚରଣେ ଶରଣ କିଙ୍କର ।
ଅନେକ ପ୍ରକାରେ ସେବା କରିଥିବି
ତୋହର ଭକତିକି ଗର୍ବ ନ କରିବି ।
ଜ୍ୟେଷ୍ଠା ଦୁହିତା ତାରା କନିଷ୍ଠା ତ୍ରିଜଟା
ଜାନକୀ ଲକ୍ଷ୍ମଣଠାରେ ସେ କରି ଭକତା ।
ମୋହର ଶତେ ଘରଣୀ ଦଶପୁତ୍ର ଜାଣ
ସମସ୍ତଙ୍କର ମନ ତୋହର ଚରଣ ।
ଯେମନ୍ତେ ଜାନକୀ ହୋଇବେ ପ୍ରାପତ
ସେକଥା ବିଚାର କର ପ୍ରଭୁ ଚିତ୍ତ ।
କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ଯେମନ୍ତେ ହେବ ବଧ
ସେକଥା ବିଚାର କରିବା ଅଟେ ସିଦ୍ଧ ।
ଶ୍ରୀରାମ ବୋଇଲେ ସତ୍ୟ ତାହା ନୁହେଁ ଆନ
ଶୁଣିକରି ଆନନ୍ଦ ହୋଇଲେ ବିଭୀଷଣ ।
ଆସ୍ଥାନୁ ଉଠି ବିଭୀଷଣକୁ କୋଳ କଲେ
ସ୍ୱର୍ଗେ ଦେବତାଏ ଦେଖି ଆନନ୍ଦ ହୋଇଲେ ।
ବ୍ରହ୍ମାଙ୍କ ସଙ୍ଗତରେ ସକଳ ସୁରଗଣ
ଶ୍ୱେତପୁଷ୍ପ ବୃଷ୍ଟି ଯେ କଲେ ଉପରେଣ ।
ବିବିଧ ଛନ୍ଦରେ ଯେ ଦୁନ୍ଦୁଭି ବାଜଇ
ଅପସରୀ କିନ୍ନରୀଏ ମତ୍ତଗର୍ବ ହୋଇ ।
ରମ୍ଭା ମେନକା ବୋଇଲେ ଶୁଣ ବଜ୍ରଧର
ଏବେ ଯେ ରାବଣ ହୋଇବ ସଂହାର ।
ବିଭୀଷଣ ଭେଦ ଯେ କହିବ ସମସ୍ତ
ତେବେ ସିନା ବିନାଶ ହୋଇବ ଇନ୍ଦ୍ରଜିତ ।

ସୁମିତ୍ରାର ନନ୍ଦନ ଲକ୍ଷ୍ମଣ ବୀରବର
ପାଶୁପତ ସମାନ ଅଟଇ ତାର ଶର ।
ତେବେ ସେ ଦୈତ୍ୟବଳ ହୋଇବେ ନିଧନ
ନିଶ୍ଚୟ ଇନ୍ଦ୍ରଜିତର ସରିଲା ଜୀବନ ।
ଅଳପ ସମୟେ ଯେ ମତାଳି ତୁମ୍ଭେ ଥାଅ
କାର୍ଯ୍ୟ ନିକଟ ହେଲା ବିରାଗ ନ ହୁଅ ।
ଶୁଣିକରି ସୁରପତି ହୋଇଲେ ସନ୍ତୋଷ
ଏଥୁ ଅନନ୍ତରେ ଶୁଣ ଦିବ୍ୟରସ ।
ଯହୁଁ ଶ୍ରୀରାମ ବିଭୀଷଣକୁ କୋଳ କଲେ
ଲଙ୍କାଗଡ଼ରେ ରାଜା କରିବି ବୋଇଲେ ।
ଲକ୍ଷେକ କମଳ ଯେ ଘେନି କମଳିନୀ
ବିଭୀଷଣର କନ୍ଧେ ବିଜେ ତତ୍‌କ୍ଷଣି ।
ଅସୁର ରୂପ ତେଜିଣ ଦିବ୍ୟରୂପ ହୁଏ
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ରାମରାୟେ ।
ତୀର୍ଥଜଳ ବେଗେ ଘେନିଆସ ଭାଇ
ସମୁଦ୍ରରୁ ଜଳ ଆଣ ବୋଲି ରାମ କହି ।
ଏହିକ୍ଷଣି ବିଭୀଷଣକୁ କରିବା ଅଭିଷେକ
ଲଙ୍କାଗଡ଼ରେ ଏହାକୁ କରିବା ନାୟକ ।
ମୋହର ବଚନ ନୁହଇ ଆନ ଜାଣ
ଶୁଣିକରି ଲକ୍ଷ୍ମଣ ହେଲେ ତୋଷମନ ।
ହନୁମନ୍ତକୁ ରାଇ କହନ୍ତି ବଚନ
ତୀର୍ଥରାଜରୁ ଜଳ ଆଣ ତୁ ବହନ ।
ଶୁଣି ହନୁ ତତ୍‌କ୍ଷଣେ ଆଣିଲା ତୀର୍ଥଜଳ
ବିଭୀଷଣ ଶିରରେ ଢାଳିଲେ ରଘୁବାଳ ।
ଦେଖିଣ ଋକ୍ଷକପି ରାମଙ୍କୁ ସ୍ତୁତି କଲେ
ସାଧୁ ସାଧୁ ଶ୍ରୀରାମ ବୋଲିଣ ବୋଇଲେ ।
ଭୋଦେବ ବିଭୀଷଣକୁ କଲି ଲଙ୍କରାୟେ
ରାବଣ ମରିବାର ହୋଇଲା ନିଶ୍ଚୟ ।
ସୀତାଙ୍କୁ ଆଣିଣ ଉଦ୍ଧାରିବେ ମାନ
ଏକଥା ପ୍ରମାଣ ଯେ ଶୁଣ ରଘୁନାନ ।
ଏତେ କହି ଋକ୍ଷ କପି ଜୟ ଜୟ କଲେ
ଲକ୍ଷ୍ମଣଙ୍କ ମୁଖକୁ ରାଘବ ଅନାଇଁଲେ ।
ଜାଣିଲେ ସଉମିତ୍ରୀ ଶ୍ରୀରାମଙ୍କ ମନ
ଯମଦାଢ଼ରୁ କାଢ଼ିଦେଲେ ଯେ ବସନ ।
କରରେ ଧରି ତାହା ଦଶରଥ ଟାଟ
ବିଭୀଷଣ ଶିରେ ବାନ୍ଧିଲେ ନେଇ ପାଟ ।
ବୋଇଲେ ଲଙ୍କାଗଡ଼େ ହୋଇବୁ ନୃପତି
ଯେତେକାଳ ଥିବ ଯେ ରାମନାମ କୀର୍ତ୍ତି ।
ଯେତେକାଳଯାଏଁ ଥିବେ ଚନ୍ଦ୍ରସୂର୍ଯ୍ୟ
ତେତେକାଳ ଯାଏଁ ଲଙ୍କାରେ ହେବୁ ରାଜ ।

ଏ ପୃଥ୍ୱୀ ଥିବାଯାଏ ଦେହ ଧରିଥିବୁ
ମୁହିଁ ତୋତେ ଆଜ୍ଞା ଦେଲି ମୃତ୍ୟୁ ନ ପାଇବୁ ।
ଏସନକ ବୋଇଲେ ଶ୍ରୀରାମଚନ୍ଦ୍ର ଯହୁଁ
ସ୍ୱର୍ଗରେ ଦେବ ଇନ୍ଦ୍ର ବିଚାରିଲେ ତହୁଁ ।
ଶିରକମଳ ଦେଇ ପାଇଲା ଲଙ୍କପତି
ଅନେକ ଦୁଃଖ ପାଇଲା ଯେବଣ ବିଭୂତି ।
ସେ ସମ୍ପଦ ବିଭୀଷଣ ପାଏ ଏହିକ୍ଷଣି
ଦର୍ଶନ ମାତ୍ରକେ ଦେଲେ ରଘୁମଣି ।
ଆବର ନ ମରିବୁ ବୋଲିଣ ବୋଇଲେ
ଏବର ରାବଣଠାରୁ ଅଧିକ କରିଦେଲେ ।
ବାବୁ ଶ୍ରୀରାମ ତୁ ରେ ଭକତ ବତ୍ସଳ
ପୀରତିର ବନ୍ଧୁ ଅଟ କରୁଣା ସାଗର ।
ଶରଣ ପଞ୍ଜର ଭକତ ଜନ ସାହା
ଆରତ ଭଞ୍ଜନ ଅଟ ସବୁଙ୍କର ନାହା ।
ଅମାୟା ଅପାପି ଯେ ଅକ୍ଷୟ ଅଚ୍ୟୁତ
ନମସ୍ତେ ନାରାୟଣ ଜଗତ ଜନ ତାତ ।
ଏସନକ ବୋଲିଣ ଦେବେ ସ୍ତୁତି କଲେ
ଅପସରୀମାନେ ଯେ ହୁଳହୁଳି ଦେଲେ ।
ଗନ୍ଧର୍ବ ବିଦ୍ୟାଧରୀ କିନ୍ନର ଆନନ୍ଦ
ଯକ୍ଷ ନାଗଲୋକ ଯେ ସମସ୍ତେ ସାନନ୍ଦ ।
ସାଧୁ ସାଧୁ କଲେ ଯୋଗ କରଣ ଯେ ଗ୍ରହ
ଅଷ୍ଟବସୁ ରୁଦ୍ରଗଣ ମନ କଲେ ଥୟ ।
ଅଣଚାଶ ପବନ ଷୋଳଚନ୍ଦ୍ର ଜାଣ
ବାରହ ଆଦିତ୍ୟ ସହିତେ ବ୍ରହ୍ମଗଣ ।
ସନକ ସନାତନ ସକଳ ଋଷି ଆସି
ଏକଦୃଷ୍ଟି କରିଣ ଚାହାନ୍ତି ମୁରୁକି ।
ଦେଖିଲେ ସିନ୍ଧୁ କୂଳରେ କରୁଣା ସାଗର
ଭକତ ବତ୍ସଳ ଦଶରଥଙ୍କ କୁମର ।
ଇନ୍ଦ୍ର ବରୁଣ ଯେ କୁବେର ନଇରୁତ
ଏକଦୃଷ୍ଟି କରିଣ ଚାହିଁଲେ ସମସ୍ତ ।
ସତୀ ପତିବ୍ରତା ଯେ ଯୋଗିଜନ ରାୟ
ରଘୁନାଥଙ୍କୁ ଚାହିଁଣ କରନ୍ତି ବିନୟ ।
ଭୋ ଦେବ ନାରାୟଣ କମଳା ବିଳାସ
ଆମ୍ଭେ ଦେବତାଏ ସର୍ବଦା ଅଟୁ ଦାସ ।
ଟୀରି ରାବଣ ଭୟେ ନ ପାରୁ ସ୍ୱର୍ଗେ ରହି
ଭୋ ନାରାୟଣ ଉଦ୍ଧରି ଧର ଏବେ ମହୀ ।
ଏସନକ ବୋଲିଣ ଦେବେ ସ୍ତୁତି କଲେ
ଶୁଣ ଗୋ ପାର୍ବତୀ ଈଶ୍ୱର ବୋଇଲେ ।
ଏଥୁ ଅନନ୍ତରେ ଶୁଣ ଦିବ୍ୟ ରୀତି
ବିଭୀଷଣକୁ ରାଜା କରି ରଘୁପତି ।

ସୁଗ୍ରୀବରକୁ ଚାହିଁଣ କହନ୍ତି ରଘୁରାଣ
କେମନ୍ତେ ଯିବା ଆମ୍ଭେ ସମୁଦ୍ର ତରିଣ ।
ଅପ୍ରମିତ ବଳ ଯେ ଆମ୍ଭର ସଙ୍ଗେ ପୁଣି
ଏ ତ ଅଗମ୍ୟ ବାରାନିଧି ଲୁଣିପାଣି ।
କେମନ୍ତେ ଯିବେ ଚାଲି ଯୁଥପତି ମାନେ
ସିନ୍ଧୁକୁ ତରିବା ଯେ କେବଣ ବିଧାନେ ।
ଶୁଣି ସୁଗ୍ରୀବର କରଯୋଡ଼ି କହି
ମୋହର କଥା ଶୁଣ ରଘୁ କୁଳସାଇଁ ।
ବରୁଣ ଦେବତା ଯେ ଜଳର ଅଧିପତି
ପ୍ରଥମେ ତାଙ୍କଠାରେ କରିବା ଭକତି ।
ସେ ଆମ୍ଭଙ୍କୁ ବାଟ ଦେବେ ତ ଦେଖାଇ
କେଉଁବାଟେ ସ୍ଥଳ ହେବ କହିବେ ଜଳସାଇଁ ।
ଯଦି ସେ ଆମ୍ଭତୁଲେ ନୋହିବ ବିଶ୍ୱାସ
ନିଶ୍ଚୟ ତାଙ୍କୁ ଯେ କରିବା ବିନାଶ ।
ଏସନକ ବଚନ ବୋଇଲେ ସୁଗ୍ରୀବର
ଶୁଣିଣ ସନ୍ତୋଷ ହୋଇଲେ ରଘୁବୀର ।
ଏଥୁ ଅନନ୍ତରେ ସେନାପତି କହି
କିମ୍ପାଇଁ ବରୁଣକୁ ସଦଭାବ ହୋଇ ।
ଯୁଥପତିମାନେ ରଡ଼ି ଦିଅନ୍ତି ଘନ ଘନ
ପ୍ରଳୟ ମେଘ ଯେହ୍ନେ କରଇ ଗର୍ଜନ ।
କେ ବୋଲଇ କିସ ଏ ଦୁର୍ଗମ ସିନ୍ଧୁପାଣି
ଆମ୍ଭର ସୈନ୍ୟମାନଙ୍କୁ ହେବ ଆଣ୍ଠୁ ଆଣି ।
ପଶିଯିବା ଚାଲ ଖୋଜିଣ ସ୍ଥଳବାଟ
ଘଡ଼ିକରେ ପାର ହୋଇଯିବେ ସର୍ବଥାଟ ।
କେ ବୋଲଇ କିମ୍ପା ହେ ପଶିବା ସାଗର
ଡେଇଁଯିବା ଚାଲ ଆମ୍ଭେ ଉପର ଉପର ।
କେ ବୋଲଇ ତୁମ୍ଭେ ନ ଜାଣ ହେ କିଛି
ଅନେକ ଲୋକ ଏଥିରେ ଦୁର୍ବଳ ଅଛନ୍ତି ।
ସେମାନେ କେମନ୍ତେ ତରିବେ ମହାଜଳ
ସମସ୍ତେ ସମର୍ଥ ଯେ ନୁହନ୍ତି ଅଟାର୍ଗଳ ।
କେ ବୋଲଇ ଆସ ପହଁରି କରି ଯିବା
କେ ବୋଲଇ କିମ୍ପା ଏତେ କଷ୍ଟ ଯେ ଭୋଗିବ ।
କେ ବୋଲଇ ଚାଲ ବାନ୍ଧି ଯିବା ଭେଳା
କେ ବୋଲଇ ସମୁଦ୍ର ଅଟଇ ସିନା ଖୋଲା ।
କେ ବୋଲଇ ଚାଲ ଆମ୍ଭେ ନାବ ପକାଇବା
ସେ ନାବରେ ସମସ୍ତେ ପାରିହୋଇ ଯିବା ।
କେ ବୋଲଇ ଆସ ଆମ୍ଭେ ସମସ୍ତେ ପିଇବା
ଦିନକର ମଧ୍ୟେ ସାଗର ଶୁଖାଇବା ।
କେ ବୋଲଇ ସମସ୍ତେ କର ମୋର ବୋଲ
ସମସ୍ତେ ବୋହିନେବା ସମୁଦ୍ରର ଜଳ ।

ଧନରତ୍ନ ଏଥିରୁ ପାଇବା ବହୁତ
ଆସିବା ଯିବାକୁ ହୋଇବ ବଡ଼ ସୁସ୍ଥ ।
ଋକ୍ଷଙ୍କର ଏସନକ ରୀତି ଶୁଣି
ମନେ ମନେ ହସନ୍ତି ରଘୁକୁଳମଣି ।
ସେନାପତିମାନଙ୍କୁ ଚାହିଁଣ ପଚାରନ୍ତି
ଋକ୍ଷକପିମାନେ ସବୁଙ୍କୁ ବିଚାରନ୍ତି ।
କେମନ୍ତେ ତରିବା ଆମ୍ଭେ ଏହି ସିନ୍ଧୁଜଳ
ଯିବାକୁ ଏଥିରେ ନାହିଁ ସ୍ଥଳକୂଳ ।
ଜମ୍ବେବ ବୋଇଲେ ଦେବ ଶୁଣ ରାମ ରାହୁ
ରାଜଦାଣ୍ଡେ ପଶିଣ କିମ୍ପା ବଣା ହେଉ ।
ବ୍ରହ୍ମାଣ୍ଡ ଭିତରେ ଯେତେ ଜୀବଜନ୍ତୁ
ସମସ୍ତେ ତୋହର ସେବକ କର ହେତୁ ।
କିମ୍ପାଇଁ ଆଜ୍ଞା ତୁମ୍ଭର ଲଙ୍ଘିବ ଜଳପତି
ତୁମ୍ଭେ ତାରଠାରେ ଏବେ କର ହେ ପୀରତି ।
ସୁଗ୍ରୀବର ଜମ୍ବେବ ବୋଇଲେ ଏହା ଯହୁଁ
ରଘୁନାଥ ବୋଇଲେ ଶୁଣ ହେ ଋକ୍ଷରାହୁ ।
କେମନ୍ତେ ବରୁଣକୁ କରିବି ମୁଁ ସ୍ତୁତି
ରାବଣ ଶୁଣି ମୋତେ କରିବ ଇଙ୍ଗିତି ।
ବୋଲିବ ବଳ ଥିଲେ ସିନା ସେ ଆସନ୍ତା
ଦେବତାଙ୍କୁ କିମ୍ପାଇଁ ବିନତି କରନ୍ତା ।
ମୋହର ତଳରେ ଦେବତା ଖଟନ୍ତି
ଶ୍ରୀରାମଙ୍କୁ ଦେବତା ନୋହିଲେ ପୀରତି ।
ଏଥିର ସକାଶେ ମୁଁ କରଇ ଭାଳେଣି
ଶୁଣିଣ ଜମ୍ବେବ ମନ୍ତ୍ରୀବର ଭଣି ।
ବୋଇଲେ ଜଳଧି ରାଜା ଅଟେ ତୁମ୍ଭ ପିତା
ତାଙ୍କର ଦୁହିତା ଯେ କମଳା ଦେବୀ ସୀତା ।
ଶୁଣିକରି ଶ୍ରୀରାମ ସନ୍ତୋଷ ହୋଇଲେ
ଧନୁଶର ଥୋଇଣ ସ୍ତୁତି ଆରମ୍ଭିଲେ ।
କୁଶହସ୍ତ ହୋଇଣ କରିଲେ ବିନତି
ପୂର୍ବମୁଖ ହୋଇଣ ବସିଲେ ରଘୁପତି ।
ମଗର ବାହନ ହେ କରେଣ ମୋହପାଶି
ସକଳଜନ ଶରଣ ତୋହର ପାଦ ରାଶି ।
କହରେ ମୃଦଙ୍ଗ ଶିରରେ ହେମକାନ୍ତି
ବିନ୍ଦ ମୁଦି ବାହୁଟି କରରେ ବିରାଜନ୍ତି ।
କିରୀଟ କୁଣ୍ଡଳ କଣ୍ଠେ ପ୍ରସନ୍ନ ବଦନ
କଟିରେ କାଛଟା ଦିଶେ ଅରୁଣର ବର୍ଣ୍ଣ ।
ତୁମ୍ଭର ଆଶାରେ ଜଗତ ଜନ ବଞ୍ଚି
ଜୟ ତୁ ଜଳେଶ୍ୱର କଶ୍ୟପର ବଂଶି ।
ସପତ ସମୁଦ୍ରରେ ତୁହି ଅଧିପତି
ତୁ ଦେବ ଗର୍ଭରେ ଯେ ଧରିଅଛୁ ପୃଥ୍ୱୀ ।

ସର୍ବଦେବଙ୍କୁ ପୁଣ ବନ୍ଦିଲେ ମୋହ ଦେଇ
ତୁ ଦେବ ତ୍ରୈଲୋକ୍ୟ ଅଛୁ ଯେ ଭିଆଇ ।
ତୋର ବିନୁ ଜୀବଙ୍କର ନାହିଁ ଅନ୍ୟ ଗତି
ତୋହର ନ ଥିଲେ କି ରହନ୍ତା ଧରିତ୍ରୀ ।
ତୋହର ପ୍ରସାଦେ ହୁଅନ୍ତି ମୁକତି
ଜୀବ ଜଗତରେ ତୁହି ଅଟୁ ଅଧିପତି ।
ସେଥିରେ ସୁଦ୍ଧା ଯେ ସଂସାର ଅଛି ଧରି
ତୋହରେ ସର୍ବଜନ୍ତୁ ହୁଅନ୍ତି ମହାବଳୀ ।
ତୁହି ସେ ସପତ ସିନ୍ଧୁରେ ଭିନ୍ନ ଭିନ୍ନ
ଲବଣ ଇକ୍ଷୁ ସୁରା ମଧୁ ଦଧି ବନ ।
ସର୍ପିଦୁଗ୍ଧ ଜଳ ଏମନ୍ତ ଭିନ୍ନ ମୂର୍ତ୍ତି
ସପତ ଦ୍ୱୀପକୁ ସାର ଅଟୁ ଜଳପତି ।
ମହାଲକ୍ଷ୍ମୀ ଧନ୍ୱନ୍ତରୀ କଉସ୍ତୁଭ ମଣି
ଚନ୍ଦ୍ର ପାରିଜାତ ଅମୃତ ବାରୁଣୀ ।
ଉଚ୍ଚୈଃଶ୍ରବା ଅଶ୍ୱ ଐରାବତ ହସ୍ତୀ
ଆବର ଦ୍ରବ୍ୟମାନ ଅନେକ ମୂରତି ।
ଦେବଙ୍କର ବଚନରେ ହେଲୁ ଏବେ ଏହା
ସର୍ବଦାକାଳେ ତୁ ଯେ ଦେବତାଙ୍କୁ ସାହା ।
ଯେ ଅବା ଶରଣ ପଶିବ ତୋର ତହିଁ
ତ୍ରୈଲୋକ୍ୟରେ ତାହାଙ୍କୁ କିଛି ଭୟ ନାହିଁ ।
ବିଭାବ୍ରତ ଆଦି ଉତ୍ସବ ଆନନ୍ଦ
ଆଗହୁଁ ପ୍ରାଣୀମାନେ ତୋ ପାଦେ କର ସିଦ୍ଧ ।
ତୁମ୍ଭେ ତୀର୍ଥଙ୍କର ଅଟ ତୀର୍ଥରାଜା
ଗଙ୍ଗା ଯମୁନା ସରସ୍ୱତୀ ତୋହର ଭାରିଯା ।
ତୁମ୍ଭେ ଅଟ ଗଙ୍ଗାଦେବୀର ପ୍ରାଣବନ୍ଧୁ
ସଂସାରର ଧାରଣା ପରମ ଲୋକ ବନ୍ଧୁ ।
ଲକ୍ଷ୍ମୀଙ୍କ ପିଅର ଅଟ ବିଷ୍ଣୁଙ୍କ ଶ୍ୱଶୁର
ଭୋଦେବ ଜଳଧି ରାଜା ପ୍ରତିକାର କର ।
ରକ୍ଷ ବାନର ଯେ ଗହଳ ଅଟେ ଥାଟ
କେଉଁଆଡ଼େ ଯିବି ମୁଁ ନ ପାଉଛି ବାଟ ।
ଅଗମ୍ୟ ସିନ୍ଧୁଜଳ ନ ପାଏ ସ୍ଥଳ କୂଳ
ପ୍ରସନ୍ନ ହୁଅ ମୋତେ ତୁମ୍ଭେ ଏହି ବେଳ ।
ଏମନ୍ତ ବୋଲି ରାମ ବହୁ ସ୍ତୁତି କଲେ
ସ୍ତୁତି ସାରି ଚାପଧାରୀ ସନ୍ଧ୍ୟା ସୁମରିଲେ ।
ମେରୁର ଉହାଡ଼କୁ ଗଲେ ଯେ ଆଦିତ୍ୟ
ତିମିର ଆଚ୍ଛାଦିଣ ଘୋଟିଲା ଜଗତ ।
ନବରେ ପ୍ରବେଶ ହୋଇଲେ ରାମ ଆସି
ସୁଗ୍ରୀବରଙ୍କୁ ଚାହିଁଣ ବୋଇଲେ ଶୁଣସି ।
ଏ ଯେ ବିଭୀଷଣ ତୁମ୍ଭର ସଙ୍ଗେ ଥିବ
ଏହାକୁ ମଇତ୍ର ସଦ୍‌ଭାବରେ ରଖିବ ।

ଏତେକ କହିଣ ବିଜେ କରି ଗଲେ
ରହିବାର କପିମାନେ ବାହାରେ ରହିଲେ ।
ନଳ ନୀଳ ଅଙ୍ଗଦ ଜମ୍ବେବ ହନୁବୀର
ରାତ୍ରରେ ଚଉପାଶ ବୁଲନ୍ତି ନବର ।
ରକ୍ଷ ବାନର ଯେ ସଙ୍ଗରେ ସୈନ୍ୟ ଘେନି
ଯେ ଆଗେ ପଡ଼ନ୍ତି ତାକୁ ନ ଛାଡ଼ନ୍ତି ପୁଣି ।
ଠାବେ ଠାବେ ଠଣା ବସିଅଛି ଚଉପାଶ
ସଜଳସ ଗୁଣ୍ଡି ଯେ ଜାଳନ୍ତି ହୋଇ ତୋଷ ।
ବାନର ପହରା ଯେ ବୁଲୁଛନ୍ତି ତହିଁ
କେ ବୋଲେ ଗଲା ବୋଲିଣ ଆରେକ ଯେ ଧାଇଁ ।
ପୂର୍ବଦ୍ୱାର ରଖଇ ସଉରୀ ସେନାପତି
ଲକ୍ଷ୍ମଣ ବସିଲେ ଯାଇ ଶ୍ରୀରାମଙ୍କ କତି ।
ମୃଗଛାଲ ପାରି ପରେ ଅମଳାଣ ବାସ
ତହିଁପରେ ପହୁଡିଲେ ଜାନକୀ ବିଳାସ ।
ସୈନ୍ୟମାନେ ତହିଁ ଶୋଇଲେ ଭୂମିମାଡ଼ି
ଏଥୁ ଅନନ୍ତରେ ରାତ୍ର ହେଲା ଦଶଘଡ଼ି ।
ଏଗାର ଘଡ଼ି ଅନ୍ତରେ ଚନ୍ଦ୍ର ଅସ୍ତ ଗଲା
ପୂର୍ବଦିଗ ଅରୁଣ ପ୍ରକାଶ ହୋଇଲା ।
ପଦ୍ମ ବିକଶିତ ଯେ କୁମୁଦ ମୁଦ୍ରିତ
ଧୀର ଧୀର ହୋଇଣ ବହଇ ମରୁତ ।
କାକପକ୍ଷୀ ରାବ ଦେଲେ ଉଲୁକ ଲୁଚିଲେ
ସିଂହ ଶାର୍ଦ୍ଦୁଳ ବେନି ସମର ତେଜିଲେ ।
ତସ୍କର ଭୟ ପାଇ କୁକୁଟ ରଡ଼ି ଦ୍ୟନ୍ତି
ତାରାମାନେ ଲୀନ ହେଲେ ଅରୁଣ ପ୍ରକାଶନ୍ତି ।
ଭୟ ତେଜ୍ୟା କଲା ଯେ ତେଣ୍ଟୁଆନାମେ ପକ୍ଷୀ
ଦିବସ ପ୍ରକାଶିଲା ରବି ତେଜ ଦିଶି ।
କୁଳସ୍ତିରୀମାନେ ଲଜ୍ୟା କଲେ ଆଭରଣ
ସ୍ନାହାନ କରିବାକୁ ଚଳିଲେ ବିଦ୍ୟୁଜନ ।
ଶ୍ରୀରାମଙ୍କର ନିଦ୍ରା ଭାଙ୍ଗିଲା ସେତେବେଳେ
ସ୍ନାନ କରିବାକୁ ଚଳିଲେ ସିନ୍ଧୁଜଳେ ।
ନିତ୍ୟକର୍ମ ସାରିଣ ସନ୍ଧ୍ୟା ସୁମରିଲେ
ସେନାପତିମାନେ ଆସି ଦର୍ଶନ କଲେ ।
ସୁଗ୍ରୀବର ବିଭୀଷଣ ଦର୍ଶନ କଲେ ଯାଇ
ଏମାନଙ୍କୁ ଚାହିଁଣ ବୋଲନ୍ତି ରଘୁସାଇଁ ।
କି ବୁଦ୍ଧି କରିବା ଏବେ ସିନ୍ଧୁକୂଳେ ଥାଇ
ଆଜ ତ ଲହରୀ ଦ୍ୱିଗୁଣ ମାରଇ ।
ବରୁଣ ପ୍ରସନ୍ନ ନୋହିଲା ତ ମୋତେ
ଲଙ୍କା ଗଡ଼କୁ ମୁଁ ଯିବଇଁ କେମନ୍ତେ ।
ଏମନ୍ତ ମନରେ ଶ୍ରୀରାମ ବିଚାରିଲେ
ସମୁଦ୍ର କୂଳରେ ଯାଇ କୁଶଶଯ୍ୟା କଲେ ।

ଦକ୍ଷିଣକୁ ଶିର କରିଣ ଦାଶରଥି
ପହୁଡ଼ି ବୋଲନ୍ତି ଦେହ ଯାଉ ପଛେ ଏଥି ।
ବରୁଣ ପ୍ରସନ୍ନ ହୋଇଲେ ଉଠିବି
ନୋହିଲେ ନିଶ୍ଚେ ମୁହିଁ ଜୀବନ ହାରିବି ।
ଏତେ ବୋଲି ରଘୁନାଥ କଲେ ଦୃଢ଼ ଚିତ୍ତ
ରକ୍ଷ କପିବଳ ଯେ ଭାଳନ୍ତି ସମସ୍ତ ।
ସେନାପତିମାନେ ପାଶରେ ଘେରିଛନ୍ତି
ପାଶରେ ଧନୁଶର ଧରି ସଉମିତ୍ରୀ ।
ଶୁଣ ଗୋ ପାର୍ବତୀ ଶ୍ରୀରାମ ଚରିତ
ଅପୂର୍ବ ରସ ଏ ଅଟଇ ଅମୃତ ।
ଶ୍ରୋତାବକ୍ତା ଲୟ କର ବୈନିଜନ
ଅନନ୍ତ ମୂରତି ଧଇଲେ ଭଗବାନ ।
ଚାରକୁ ହକାରିଣ କହିଲା ରାବଣ
ତୁହି ଯେ ଦେଖାଉର ଚଳ ଏହିକ୍ଷଣ ।
ଦେଖିଣ ଆସିବୁ ବିଭୀଷଣ କେଣେ ଗଲା
ଶୁଣିକରି ଡଗର ବହନ ଚଳିଗଲା ।
ହେଳେଣ ସମୁଦ୍ର ତରିଲା ଅନର୍ଗଳ
ସାମାନ୍ୟ ମର୍କଟ ରୂପ ସେ ଧଇଲା ।
ଶ୍ରୀରାମଙ୍କ ଥାଟରେ ପ୍ରବେଶ ହୋଇଲା
ଯାବତ କଥାମାନ ଜାଣି ବାହୁଡ଼ିଲା ।
ରାବଣ ଚିନ୍ତା କରି ରାମ ଆସିବାର
ପ୍ରହରୀ ଜଗାଇଲା କରିଣ ତତ୍ପର ।
ନିରନ୍ତରେ ଦିହୁଡ଼ି ପ୍ରଜ୍ୱଳି ଜଳଇ
ପଟୁଆର ଚଉପାଶେ ସୈନ୍ୟମାନେ ରହି ।
ପ୍ରତିଜ୍ଞା କରନ୍ତି ଯେ ରାଉତ ମାହୁନ୍ତ
ରାତ୍ର ତିନିଘଡ଼ି ବେଳେ ମିଳିଲା ଆସି ଦୂତ ।
ପାଏ ପଡ଼ି ଶୋଇଣ ଶିରେ କର ଦେଇ
ବୋଇଲା ଶୁଣ ଦେବ ଲଙ୍କାପୁର ସାଇଁ ।
ବିଭୀଷଣର ବାରତା ଅଇଲି ମୁଁ ଜାଣି
ଯେ କଥା କହୁଛି ଶୁଣ ପରିମାଣି ।
ଶ୍ରୀରାମର ଦାଣ୍ଡରେ ପ୍ରବେଶ ହେଲି ଯାଇ
ସୁଗ୍ରୀବ ତୋର ଭାଇକି ଗଲାକ ଅନାଇଁ ।
ଲକ୍ଷ୍ମଣ ଜମ୍ୱେବ ଯେ ଅଙ୍ଗଦ ନଳ ନୀଳ
ପାଛୋଟି ଅଇଲେ ରକ୍ଷ କପି ବଳ ।
ଶ୍ରୀରାମଙ୍କ ଆଜ୍ଞାରେ ପରୀକ୍ଷା କରାଇଲେ
ଅନେକ ସମ୍ଭର୍ବେ ରାମପାଶେ ଭେଟାଇଲେ ।
ଦେଖିଣ ରଘୁନାଥ ଗଉରବ କଲା
ଲଙ୍କାରେ ବିଭୀଷଣକୁ ରାଜା କରାଇଲା ।
ବୋଇଲା ତୋ ଜ୍ୟେଷ୍ଠ ଭାଇ ଭଣ୍ଡାର ଅଧିପତି
କନିଷ୍ଠ ଭାଇ ଯେ ଲଙ୍କାରେ ନୃପତି ।
ମଝିଆଁ ଦୁଇ ଭାଇ ହୋଇବେ ପ୍ରାଣେ ନାଶ
ସକଳ ଦୈତ୍ୟଗଣ ଯିବେ ପୁଣ ନାଶ ।
ତପସ୍ୱୀର ମୁଖରୁ ଏସନ ବାଣୀ ଶୁଣି
ନିଉଛାଳି ହୋଇଣ ବିଭୀଷଣ ଭଣି ।
ବୋଇଲା ମୋରଠାରୁ ଶୁଣ ରଘୁରାଣ
ମୁଁ ଆସି ତୁମ୍ଭପାଦେ ପଶିଲି ଶରଣ ।
ତିଆରିଲା ବୋଲ ମୋର ରାବଣ ନ କଲା
କରେ ଶସ୍ତ୍ର ଧରିଣ ମୋତେ ମାରି ତ ମନ କଲା ।
ତେଣୁ କରି ମୁହିଁ ଛାଡ଼ିଲି ଲଙ୍କାପୁର
ତୁ ମୋତେ ରକ୍ଷା କର କୋଦଣ୍ଡ କାଣ୍ଡ ଧର ।
ରାବଣ କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ କୁମାର
ସୀତାଙ୍କୁ ଘେନି ତୁମ୍ଭେ ଆସ ରଘୁବୀର ।
ଏମନ୍ତ ଶୁଣି ସନ୍ତୋଷ ହେଲା ଚାପଧାରୀ
ଆସନୁ ଉଠି ତୋର ଭାଇକି କୋଳ କରି ।
ତୀର୍ଥଜଳ ଆଣିଣ ଅଭିଷେକ କଲା
ଆବରଣ ମଥାରେ ପାଟେକ ବାନ୍ଧିଲା ।
ବୋଇଲା ଏ ପୃଥିବୀ ଯେତେ କାଳ ଥିବ
ଯେତେକାଳ ଚନ୍ଦ୍ର ସୂର୍ଯ୍ୟ ଉଦେ ହେଉଥିବ ।
ତେତେକାଳ ଯାଏ ହୁଅ ଲଙ୍କାରେ ନୃପତି
ଏସନକ ବଚନ ବୋଇଲା ପୁଣି ଯତି ।
ସୈନ୍ୟବଳ ସଙ୍ଗରେ ଅଛନ୍ତି ଅପ୍ରମାଦେ
ମାୟା ଯେ ନ ପଶଇ ଶ୍ରୀରାମର ହୃଦେ ।
ସମୁଦ୍ର ତରିବାକୁ କରନ୍ତି ବିଚାର
ଦେବଙ୍କୁ ଦୁର୍ଲ୍ଲଭ ମାନବଙ୍କୁ ଅଗୋଚର ।
ବରୁଣକୁ ସ୍ତୁତି ଯେ କରି ଜଟାଧାରୀ
କୁଶ ପାରି ଶୋଇଛନ୍ତି ଆହାର ନ କରି ।
ଏସନକ ଚରିତ ଅଇଲି ଦେବ ଦେଖି
ଶୁଣିଣ ଉପରକୁ ଚାହିଁଣ ବିଂଶ ଆଖି ।
ମନରେ ବିଚାରିଣ କହିଲା ସେ ବାଣୀ
ଶୁଣ ଅମାନତ୍ୟ ଡଗର କୁହାବାଣୀ ।
ବିଭୀଷଣ ମୋର ସଗୋତ୍ର ମରାଇବ
ଛେଦ ଭେଦ କଥା ଯେ ମୋହର କହିବ ।
ସେ ମୋର ମରଣ ଜାଣେ ତଥ୍ୟ କରି
ଇନ୍ଦ୍ରଜିତ ନ ଥିଲେ ପକାଇଥାନ୍ତି ମାରି ।
ଆଦ୍ୟରୁ ବିଚାରଇ ସେ ମୋର ଅପହିତ
କୂଟକଥା ମାନ ଯେ ଧରିଥାଇ ଚିତ୍ତ ।
ମୋର ଭଣ୍ଡାର ତାର ସମସ୍ତ ଆୟତ
ସୋଦର ଭାଇ ବୋଲି ସମର୍ପେ ସବୁ ତ ।
ରାଣୀ ମହାଦେଈ ଯେ ତାହାର ବୋଲେ ଥାନ୍ତି
ତା କଥା ମାନନ୍ତି ହସ୍ତୀ ଘୋଡ଼ା ଯେ ପଦାତି ।

ସେ ମୋହର ମର୍ମ ଜାଣଇଁ ବୁଦ୍ଧିବଳ
ଶ୍ରୀରାମର ଆଗରେ କହିବ ସକଳ ।
ଏତେ ବୋଲି ଶୁକସାରଣେ ହକାରି
ଗୁପତ କଥାମାନ କହେ ତୁନି କରି ।
ସିନ୍ଧୁ ଉତ୍ତର କୂଳକୁ ତୁମ୍ଭେମାନେ ଯିବ
ଶ୍ରୀରାମର ବଳ କେତେ ବୁଝିଣ ଆସିବ ।
କିସ କିସ ବିଚାର କରନ୍ତି ଯେ ସେହି
କେମନ୍ତ ପ୍ରକାରେ ସେ ଆସିବେ ସିନ୍ଧୁ ଡେଇଁ ।
ଏକଥା ଜାଣିଣ ତୁମ୍ଭେ ଆସିବ ତଡ଼ତି
ଯତନରେ ଯିବ ସେ ବିଭୀଷଣ କତି ।
ବୋଲିବ ଶରଣ ତୁମ୍ଭେ ପଶିଲ ଶତ୍ରୁ ତହିଁ
ତୋତେ ନେବାକୁ ପେଶିଛନ୍ତି ଲଙ୍କସାଇଁ ।
ବୁଝାଇ କହିଣ ତୁମ୍ଭେ ତାକୁ ଘେନି ଆସ
ଆବର ଯିବ ତୁମ୍ଭେ ସୁଗ୍ରୀବର ପାଶ ।
ବୋଲିବ ବାଳି ଯେ ରାବଣ ସଙ୍ଗେ ମିତ
ତେଣୁ ତୁମ୍ଭେ ସାନୁଜ ହୋଇଲ ତାହାର ତ ।
ଜ୍ୟେଷ୍ଠ ଭାଇ ସଙ୍ଗରେ ତୁମ୍ଭର କିସ ରଣ
ତୁମ୍ଭେ କିମ୍ପାଇଁ ଅଇଲ ସୈନ୍ୟଙ୍କୁ ଘେନିଣ ।
ଯାଅ ତୁମ୍ଭେ ବାହୁଡ଼ି ଦଶଗ୍ରୀବ ବୋଲେ
ଶ୍ରୀରାମ ଲକ୍ଷଣ ଦୁହେଁ ଯୁଝନ୍ତୁ ମୋ ତୁଲେ ।
ଏକଥା କହିଲେ ସୁଗ୍ରୀବର ବାହୁଡ଼ି ଯିବ
ବିଭୀଷଣଙ୍କୁ ଘେନି ଶୀଘ୍ରରେ ଆସିବ ।
ଆଜ୍ଞା ପାଇଣ ଶୁକସାରଣ ବେନି ଜଣ
ନିଶ୍ୱାସ ବାରି ଅନୁକୂଳ କଲେ ଜାଣ ।
ଅନ୍ତରିକ୍ଷ ମାର୍ଗରେ ବେଗେ ଚଳିଗଲେ
ଉତ୍ତର କୂଳରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ବନଗିରି ପୂରିଛନ୍ତି ବଳ
କୁମ୍ଭାର ପଦାରେ ସେ ହୋଇଛନ୍ତି ଠୁଳ ।
ସମୁଦ୍ର ବାହାରେ କି ଆରେକ ସାଗର
ଏମନ୍ତ ପ୍ରାୟ ଦିଶନ୍ତି ସୈନ୍ୟ ଶ୍ରୀରାମର ।
କୁଶ ଶଯ୍ୟାରେ ଶୋଇଛନ୍ତି ରାମ ରାଣ
ଋକ୍ଷ ବାନର ସଇନୀ ଜଗିଛନ୍ତି ଜାଣ ।
ଯୁଥପତିମାନେ ଯେ ସଙ୍ଗରେ ଅଛନ୍ତି
ଶୂନ୍ୟରେ ଥାଇ ଶୁକ ସାରଣ ଦେଖନ୍ତି ।
ବିଭୀଷଣ ନିକଟକୁ ବେନିଜଣ ଗଲେ
ଦୂରରୁ ଦେଖିଣ ସେ ଶିରରେ କର ଦେଲେ ।
ଶୂନ୍ୟେ ଥାଇ ବୋଲନ୍ତି ଶୁଣ ହେ ବିଭୀଷଣ
ଆମ୍ଭେ ବେନି ଅଟୁଁ ଶୁକ ଯେ ସାରଣ ।
ଭାଇ ତୁମ୍ଭ ପେଶିଛନ୍ତି ତୁମ୍ଭର ତହିଁକି
ଶତ୍ରୁର ତୁଲେ ଶରଣ ପଶୁଛ କାହିଁକି ?

ଏକଥା ଉଚିତ ତୁମ୍ଭର ନୁହଇ
ଆମ୍ଭଙ୍କୁ ପେଶିଛନ୍ତି ତୁମ୍ଭଙ୍କୁ ନେବାପାଇଁ ।
କୁଟୁମ୍ବ ମରାଇକି ଯଶ ଅରଜିବ
ଏ ମହିମଣ୍ଡଳେ ଅପକୀରତି ଶୁଣିବ ।
ଆସ ଆସ ବିଭୀଷଣ ଆମ୍ଭ ବୋଲ କର
ସୋଦର ଭାଇ ତୁମ୍ଭର ଅଟନ୍ତି ଦଶଶିର ।
ସେହି କହିବାରୁ ଛଳ କିମ୍ପା କଲ
ମନ୍ତ୍ରୀବର ହୋଇକରି କଥା ନ ଭାବିଲ ।
ଶୁଣି ତାହା ବିଭୀଷଣ ଉପରକୁ ଚାହିଁ
ବୋଇଲା ବେଗେ ହୋଇ ଯାଅ ହେ ପଳାଇ ।
ଟେଳା ମାରି ଗିରିବର ଲୋଡ଼ୁଅଛ ଚୂରି
ଫାଶ ପକାଇ ପବନ ଲୋଡ଼ୁଅଛ ଧରି ।
କର ବଢ଼ାଉ ଅଛ ଧରିବାକୁ ଶଶୀ
ଘୃତ ଢାଳି ସମୁଦ୍ରକୁ ତୋଳିବ କି ବସି ।
କରେ ପାଣି ବ୍ୱାହି ଶୁଖାଇବକି ସାଗର
ତଳ ଚୋପା ଘୋଡ଼ାଇକି ରଖିବ ମନ୍ଦର ।
ବିଧାତାର ଆୟୁଷ କରିବ କି ଶେଷ
ସିଂହକୁ ପରାକ୍ରମ ଶିଖାଇବ କିସ ।
ଅନଳକୁ ଦର୍ଶନ କି ହୁଅଇ ପତଙ୍ଗ
ଭେକ ସଙ୍ଗେ ସର୍ପକୁ କରାଏ ଲୋଡ଼ ସଙ୍ଗ ।
ଦେବତାମାନଙ୍କୁ ଲଗାଅ ବନ୍ଧୁପଣ
ଅମରପୁର ଶବର ପଲ୍ଲୀ ସଙ୍ଗେ ଗଣ ।
କ୍ଷୀର ନେଇ ଖାରରେ ମିଶାଅ କାହିଁ ପାଇଁ
ପଙ୍କରେ ପାଟ ସୂତାକୁ ବୁଡ଼ାଅ କିମ୍ପାଇଁ ।
ତମ୍ବାପାତ୍ରେ କିମ୍ପାଇଁ ପୂରାଅ ଲୋଡ଼ ଦୁଧ
ମାଣିକ୍ୟ ପକାଅ ନେଇ ହୁତାଶନ ମଧ୍ୟ ।
ମଦୁଆ କର ଦେଇ ଲୋଡ଼ ବେଦ ପୋଥି
ତଇଳ କୁଣ୍ଡରେ ନେଇ ପୂରାଅ ଗଜମୋତି ।
ଏକଥା ଯେମନ୍ତେ ହୋଇଲେ ନାଶ ଯାଇ
ତୁମ୍ଭ ବୋଲେ ଲଙ୍କା ଗଲେ ସେହିପରି ମୁହିଁ ।
ଯେବେ ପିଣ୍ଡରେ ପ୍ରାଣ ଥିବାକୁରେ ଚାହିଁ
ବେଗହୋଇ ଲଙ୍କାଗଡ଼ ଯାଅରେ ପଳାଇ ।
ଯେମନ୍ତେ ରାମଚନ୍ଦ୍ର ରାବଣକୁ ମାରି
ଯେମନ୍ତେ ଦଇତକୁଳ ଯିବେ ଯମପୁରୀ ।
ଯେମନ୍ତେ ଋକ୍ଷକପି ଲଙ୍କାକୁ ବିଧ୍ୱଂସିବେ
ଯେମନ୍ତେ ଶ୍ରୀରାମଚନ୍ଦ୍ର ସୀତାଙ୍କୁ ଆଣିବେ ।
ଯେମନ୍ତେ ରାବଣ ସଗୋତ୍ରେ ନାଶ ଯିବ
ଯେମନ୍ତେ ହରଷ ହୋଇବେ ସର୍ବ ଦେବ ।
ଏକଥା ଯେମନ୍ତେ ବେଗରେ ହୁଅଇ
ସେ କଥା ଅନୁବ୍ରତେ ମନରେ ବିଚାରଇ ।

ମୋହର ଶତ୍ରୁ ଯେ ରାବଣ ଯିବ ନାଶ
ମନ୍ଦୋଦରୀ ରାଣୀ ଯେ ଖଟିବ ମୋର ପାଶ ।
ସେ କିସ ସହୋଦର ଅଟଇ ମୋହରି
ତିଆରି କହିବାରୁ ଗୋଡ଼ାଇଲା ମାରି ।
ରାମଚନ୍ଦ୍ରଙ୍କୁ ପ୍ରସାଦେ ପାଇଲି ଜୀବନ
ଦଶାନନ ଆଗରେ କହ ଏକଥା ମାନ ।
ଶୁଣି ଶୁକ ସାରଣ ତେଣ୍ଟୁଆ ରୂପ ହୋଇ
ଗଗନ ମାର୍ଗରେ ଉଡ଼ିଲେ ବୋବାଇ ।
ସୁଗ୍ରୀବକୁ ସମସ୍ୟା ଦେବାକୁ ତାଙ୍କ ମନ
ବାରି ନ ପାରନ୍ତି ତହିଁ ଅଗୋଚର ସୈନ୍ୟ ।
କେହୁଟି ବୋଲି ସେ କହନ୍ତି ଉଚ୍ଚେ ଥାଇ
ସୁଗ୍ରୀବର ଆଗରେ କହିଲେ ଲୋକ ଯାଇ ।
ଭୋ ଦେବ କିଷ୍କିନ୍ଧାର ଠାକୁର କପିପତି
ଚଢ଼ାଇ ଦୁଇଗୋଟି ଶୂନ୍ୟରେ ଉଡୁଛନ୍ତି ।
ଥାଟକୁ ପଚାରନ୍ତି କେ କହୁଛି ବୋଲି
ଅପୂର୍ବ ଶୁଣି ଦେବ ଜଣାଇଁ ଅଇଲି ।
ପଚାରିବଟି ଏହା କେବଣ ଚରିତ
ଶୁଣିଣ ଗଗନକୁ ଚାହିଁଲା ରବି ସୁତ ।
ପକ୍ଷୀଙ୍କି ପଚାରନ୍ତି କାହିଁରେ ତୁମ୍ଭ ଥାଟ
କାହିଁରେ ତୁମ୍ଭ ଘର କାହାର ପାଦେ ଖଟ ।
ଶୁକ ସାରଣ ଦୁହେଁ କହନ୍ତି ଶୂନ୍ୟେ ଥାଇ
ଆମ୍ଭେ ବେନି ଖୋଜୁଅଛୁ କପିକୂଳ ସାଇଁ ।
ତାହାଙ୍କୁ ଦେଖିଲେ ଆମ୍ଭେ କହିବୁ ବାରତା
ଏ ବଚନ ଶୁଣି କହେ ହନୁମାନ ପିତା ।
ଏହି ସେ ଖଡ଼ଗଦ ରାଜା ସୁଗ୍ରୀବ ତନୟ
ଶ୍ରୀରାମଙ୍କ ମିତ୍ର ଏ କପିକୁଳ ରାୟ ।
ଏହାଙ୍କ ପାଖକୁ ବେନି ପକ୍ଷୀ ଆସ
ନିର୍ଭୟ ହୋଇ କହ ସମ୍ବାଦଟି କିସ ।
ଶୁକ ଶାରଣ କହନ୍ତି ଶୂନ୍ୟ ମାର୍ଗେ ରହି
ଶୁଣ ହେ ସୁଗ୍ରିବ ରାଜା କପିକୁଳ ସାଇଁ ।
ଲଙ୍କାଗଡ଼ର ନୃପତି ଅଟଇ ରାବଣ
ତୁମ୍ଭଠାକୁ ପେଶିଛନ୍ତି ଆମ୍ଭଙ୍କୁ ଯେ ଜାଣ ।
କହିଛନ୍ତି ମିତ୍ର ମୋର ବାଳି ଯେ ରାଜନ
ବହୁତ ସ୍ନେହ ମୋର ତାଙ୍କର ଅଟେ ଜାଣ ।
ସୁଗ୍ରିବର ଅଟନ୍ତି ଆମ୍ଭର କନିଷ୍ଠ
ସେ କିମ୍ପାଇଁ ବିଚାର ନ କରେ ଭଲ ବାଟ ।
ସୀତାଙ୍କୁ ଏଥୁଁ ନେଲେ ତାଙ୍କର କିସ ହୋଇ
ସେ କିମ୍ପାଇଁ ସୈନ୍ୟ ଘେନି ଆସିଛନ୍ତି ଧାଇଁ ।
ଆମ୍ଭଙ୍କୁ ପେଶିଲେ କହିଣ ଏମନ୍ତ
ତୁମ୍ଭେ ବେଗେ ଏଠାରୁ ବାହୁଡ଼ ରୋମାକାନ୍ତ ।

ରାମ ରାବଣ ସମର କରନ୍ତୁ ଯେ ଦୁଇ
ତୁମ୍ଭେ ରାଜ୍ୟକୁ ଯାଅ ସୈନ୍ୟ ବାହୁଡ଼ାଇ ।
ରାବଣର ତୁମ୍ଭର ପିରତି ଭାବ ଥାଉ
ଏମନ୍ତ ଶୁଣି କହେ କପିକୁଳ ରାହୁ ।
ଶୁଣ ହେ ବେନି ମନ୍ତ୍ରୀ କହିଲେ ଯେ କଥା
କେମନ୍ତେ ଭାଇ ମୋର ଅଟେ ଦଶମଥା ।
ଶ୍ରୀରାମଙ୍କର ବଇରୀ ମୋର ଅଟେ ବାଦୀ
ବାଳି ମୋହର ଶତ୍ରୁ ଶ୍ରୀରାମ ତାକୁ ଛେଦି ।
ମୁହିଁ ଏବେ ତାଙ୍କର ଶତ୍ରୁକୁ ବିନାଶିବି
ଅସୁର ସୈନ୍ୟ ମାରି ଲଙ୍କା ବିଧ୍ୱଂସିବି ।
ଲଙ୍କାପୁରେ ଯେଉଁଦିନ ହୋଇବି ପ୍ରବେଶ
ବଡ଼ଭାଇ ସମ୍ଭାବନା ପାଇବ ଦଶଈଶ ।
ପୁତ୍ର ନାତି ଭାଇ ବନ୍ଧୁ ସୈନ୍ୟ ସଙ୍ଖୋଳିବି
ସମ୍ଭାବନା କରିଣ ମୁଁ ସମସ୍ତ ପାଳିବି ।
ସେତେବେଳେ ବଡ଼ ଭାଇ ଚିହ୍ନିବ ସାନୁଜ
ଦୁଇ ଚାରିଦିନ ହୋଇଥାନ୍ତୁ ଲଙ୍କାରାଜ ।
ଏହି କଥା ଯାଇଣ ରାବଣକୁ କହ
ଜୀବନ ନ ରହିବଟି କ୍ଷଣେ ହେ ନ ରହ ।
ଅଙ୍ଗଦ ପଚାରିଲା ଏ କାହୁଁ ଆସିଛନ୍ତି
କେଶରୀ ବୋଇଲା ଏ ରାବଣର ବେନି ମନ୍ତ୍ରୀ ।
ଶୁଣିଣ ତାରାସୁତ ଉର୍ଦ୍ଧ୍ୱକୁ ଉଡ଼ିଗଲା
ବିଚିତ୍ର ଗତି କରି ବିଧାଏ ମାଇଲା ।
ବାଜିଥିଲେ ମରି ପଡ଼ିଥାନ୍ତେ ସିନ୍ଧୁ ଜଳେ
ଦୂରରୁ ପଳାଇଲେ ପ୍ରାଣର ବିକଳେ ।
ବାହୁଡ଼ି ଅଙ୍ଗଦ ମିଳିଲା ସିନ୍ଧୁତୀରେ
ଅନେକ ଋକ୍ଷ କପି ଅଛନ୍ତି ସଙ୍ଗରେ ।
ଶୁକ ସାରଣ ଦୁହେଁ ଲଙ୍କାରେ ପ୍ରବେଶ
ଝାଳ ଗମ ଗମ ବହେ ଖର ଯେ ନିଃଶ୍ୱାସ ।
ଆସ୍ଥାନ କରିଣ ବସିଛି ଲଙ୍କପତି
ଏ ସମୟେ ଦର୍ଶନ କଲେ ବେନି ମନ୍ତ୍ରୀ ।
ପାଏ ପଡ଼ି ଶୋଇଣ ଉଠି କରଯୋଡ଼ି
ଲୋକଙ୍କୁ ବାହାର କରି କହନ୍ତି ଆଗ ବଢ଼ି ।
ସକଳ ଚରିତ ଛାମୁରେ ଜଣାଇଲେ
ସୁଗ୍ରିବର ବିଭୀଷଣ ଯେମନ୍ତ କହିଲେ ।
ଶୁଣିଲା ରାବଣ ଯେ ବାଳିର ମରଣ
ହୃଦୟ ମଧ୍ୟେରେ ବିଚାର କରେ ପୁଣ ।
ନିଶ୍ଚୟ ରଘୁନାଥ ଅଟନ୍ତି ନାରାୟଣ
ବାଳିକି ମାରିବାକୁ ଆନ କେ ଭାଜନ ।
ବାନର ଜୀବମାନେ ହେଲେ ଯେବେ ବଶ
ପ୍ରତ୍ୟକ୍ଷ ଦାଶରଥି ଅଟନ୍ତି ପିତବାସ ।

ସାଗର ତରିବେ ଯେ ସେ କେବଣ ମତେ
ଅସୁରଙ୍କ ସଙ୍ଗରେ ଯୁଝିବେ କେମନ୍ତେ ।
ମନୁଷ୍ୟ ହୋଇ ତାଙ୍କର ଏଡ଼େକ ସାହସ
ଏତେ କହି ଭିତରକୁ ଗଲା ଦଶଈଶ ।
ଏଥୁ ଅନନ୍ତରେ ଶୁଣ ଦିବ୍ୟ ବାଣୀ
ଅଶୋକ ବନରୁ ଆସିଥିଲା ଅସୁରୁଣୀ ।
ରାବଣ ଗଲାରୁ ସେ ଚଳିଗଲା ପୁଣ
ପ୍ରବେଶ ହୋଇଲା ଅଶୋକ ବନେଣ ।
ସାରେଣୀ ବନରେ ଯେ ଅସୁର ଆସିଥିଲା
ରାବଣର ଆଜ୍ଞାରେ ସେହୁ ଚଳିଗଲା ।
ସେନାପତି ପଦାତି ଗଲେ ଯେଝା ଘର
ପୁତ୍ର ନାତିମାନେ ଚଳିଲେ ଯେଝା ପୁର ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଅଶୋକ ବନୁଁ ଅସୁରୀ ଯାଇଥିଲା ସେଠି ।
ଜାଣିଲା ବିଭୀଷଣ ଗଲା ଯେ ଲଙ୍କାରୁ
ରାବଣ ଚିନ୍ତା କଲା ମନ୍ତ୍ରୀ କହିବାରୁ ।
ଶୁଣିଣ ଅସୁରୀମାନେ ବେଗେ ଚଳିଗଲେ
ଅଶୋକ ବନରେ ପ୍ରବେଶ ହୋଇଲେ ।
ଦେଖିଣ ତ୍ରିଜଟା ବୋଲେ ଏଣେ ଆସ
ରାଜାର କିସ କଥା କହ ଗୋ ସନ୍ଦେଶ ।
ଅସୁରୀମାନେ ବୋଇଲେ ଶୁଣ ଯେମାଦେଈ
ରାଜାଙ୍କର ଖବର ବୁଝି ଅଛି ମୁହିଁ ।
ବାପ ତୋର ବିଭୀଷଣ ରାଜାଙ୍କୁ ତିଆରିଲା
ସୀତାଙ୍କୁ ଦେଇ ଶରଣ ପଶିବା ବୋଇଲା ।
ସେ କଥା ଶୁଣି ରାବଣ ମାରିତ ମନ କଲା
ରାଜ୍ୟୁ ତାହାକୁ ବାହାର କରିଦେଲା ।
ତାହାର ବୋଲରେ ତୋ ପିତା ଚଳିଗଲା
ଶ୍ରୀରାମଙ୍କ ଚରଣରେ ଶରଣ ପଶିଲା ।
ହରଷେ ରାମ ତା ଶିରେ ବାନ୍ଧି ଦେଲେ ପାଟ
ନୃପତି ପଣେ ତାକୁ ଦେଲେ ଲଙ୍କାରାଷ୍ଟ୍ର ।
ତାହା ଶୁଣି ରାବଣ ମନ୍ତ୍ରୀଙ୍କି ପେଶିଦେଲା
ବିଭୀଷଣ ସୁଗ୍ରୀବଙ୍କୁ ଫେରାଅ ବୋଇଲା ।
ସିନ୍ଧୁ ଉତ୍ତର କୁଳେ ଶ୍ରୀରାମଛନ୍ତି ରହି
ସିନ୍ଧୁପାର ହେବାକୁ ବରୁଣେ ଲିଙ୍ଘା ଦେଇ ।
ଅନେକ ବଳ୍କ ରୁକ୍ଷ ବାନର ସଇନୀ
ବନଗିରି ପର୍ବତ ପୂରିଛନ୍ତି ପୁଣି ।
ଫେରିବାକୁ ସୁଗ୍ରି ବିଭୀଷଣ ନାହିଁ କଲେ
ଆସିଣ ଶୁକ ସାରଣ ରାବଣେ କହିଲେ ।
ତାହା ଶୁଣି ରାବଣ ବିଷାଦ ମନ ହେଲା
ସଭା ମଣ୍ଡଳାରଣ ମନ୍ଦିରକୁ ଗଲା ।

ତାହା ଶୁଣି ଜାନକୀ ଆନନ୍ଦ ହୋଇଲେ
ଶ୍ରୀରାମର ନାମକୁ ଉଚ୍ଚାରଣ କଲେ ।
ତ୍ରିଜଟା ଶରଣ ପଶେ ଜାନକୀ ଚରଣ
ଆନନ୍ଦ ହୋଇଲେ ଜନକସୁତା ଜାଣ ।
ବଇଦେହୀ ବୋଇଲେ ଶୁଣ ଗୋ ଜେମାଦେଈ
ମୁହିଁ ତୋତେ ରାଜା ଯେ କରିବି ଯହିଁ ତହିଁ ।
ତୋର ଶିରେ ଆଜିଠାରୁ ପାଟ ବାନ୍ଧିଦେଲି
ମୋର କଥା କହିବାକୁ ନୃପତି ତୋତେ କଲି ।
ଏତେ ବୋଲି ପାଟ ବାନ୍ଧିଦେଲେ ତାର ଶିରେ
ତ୍ରିଜଟା ନୃପତି ବୋଲି ବୋଲିବେ ସକଳେ ।
ହରଷରେ ତ୍ରିଜଟା ନମସ୍କାର କଲା
ବାସ ଜଳରେ ସୀତାଙ୍କ ଚରଣ ଧୋଇଦେଲା ।
ଆସୁରୀଗଣଙ୍କୁ ତ୍ରିଜଟା ଜହେ ପୁଣ
ବଧାଇ ବେଭାର ତାଙ୍କୁ ଦେଲେ ତତକ୍ଷଣ ।
ଅସୁରୀମାନେ ସେଥିରେ ଆନନ୍ଦ ହୋଇଲେ
ସେକଥା ଶୁଣିଣ ପାର୍ବତୀ ପଚାରିଲେ ।
ବୋଇଲେ ଜାନକୀ ଯେ କ୍ରୋଧ ହୋଇଥିଲା
ତ୍ରିଜଟା ଜେମାଦେଈ କେମନ୍ତେ ଜାଣିଲା ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଶୁଣିକରି କଥା ଯେ ଜାନକୀ ତୃପତି ।
ଯେତେବେଳେ ତ୍ରିଜଟାରେ ହେଲା ସୁଖ ତାର
ସ୍ୱାମୀ ରାଜା କରିବାର ଶୁଣିଲେ କର୍ଣ୍ଣର ।
ତେଣୁ ସେ ଶୀତଳ ଯେ ତ୍ରିଜଟାରେ ହୋଇ
ତ୍ରିଜଟାକୁ ଚନ୍ଦନ ପ୍ରାୟେ ସେ ଲାଗଇ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ସେକଥାକୁ ତ୍ରିଲୋଚନ କହ ମୋତେ ଭଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଶାକମ୍ଭରୀ
ଜାନକୀ ମନରେ ବିଚାର ପୁଣ କରି ।
ସବୁଦିନେ ପିତା ମୋର ଅଟଇ ବରୁଣ
ଶ୍ରୀରାମରେ ପ୍ରସନ୍ନ ନୁହଇ କିମ୍ପା ପୁଣ ।
ଏକଥାକୁ ମୁହିଁ କରିବି ବିଚାର
ଦୂତ ବରଗିବି ଯେ ପିତାର ଛାମୁର ।
ଏମନ୍ତ ବିଚାରି ଯେ ଲେଖନ ପତ୍ର ଧରି
ପିତାର ପାଶକୁ ଚିଟାଉ ଲେଖି କରି ।
ଜଳର ରାଜନ ଯେ ସବୁ ଦେବରେ ଭଲ
ଆଗେ କମଳା ଯେ ଜାତ ତୋର କୋଳ ।
ତେଣୁ ତୁ ଭକତି ବିଷ୍ଣୁଠାରେ ହେଲୁ
ତୋହର ଦୁହିତାଙ୍କୁ ନାରାୟଣେ ଦେଲୁ ।
ତେଣୁ ସେ ନାରାୟଣ ଲଭି ତୋ ଦୁହିତା
ତେଣୁ ତୁ ସଂଗ୍ରାମରେ ହେଲୁ ଜଗଜିତା ।

ତେଣୁ ସେ ନାରାୟଣ ଅନେକ ଅବତାର
ସଙ୍ଗରେ ଦୁହିତା ତୋର ଜନମ ତାଙ୍କର ।
ଅସୁର ବିନାଶ କରି ପୃଥକ କରେ ଧୀର
ବାସୁକି ନାଗର ଯେ ମସ୍ତକ ହୁଏ ସ୍ଥିର ।
ଦେବତାମାନେ ଲଭନ୍ତି ସୁଖ ଜାଣ
ତେଣୁ ସେ ଅବତାର ହୁଅନ୍ତି ନାରାୟଣ ।
ଏବେ ପୁଣି ରାବଣ ତାହାଙ୍କୁ ଦୁଃଖ ଦେଲା .
ଦେବତାଙ୍କୁ ଆଣିଣ ପାଦେ ଖଟାଇଲା ।
ତେଣୁ ସେ ଦେବତାଏ କହିବାରୁ ଜାଣ
ମାନବର ରୂପେ ଜାତ ହେଲେ ନାରାୟଣ ।
ତେଣୁ ତୋ ଦୁହିତା ମାନବ ସ୍ତିରୀ ହେଲା
ଅଯୋନି ସମ୍ଭୁତରେ ଜନକ ଘରେ ପରା ।
ଅଳପ ଦିନରେ ଯେ ଦେବେ କୂଟ କଲେ
ରାବଣକୁ ମାରିବାକୁ ବନକୁ ପେଶିଲେ ।
ତେଣୁ ସେ ବଶ୍ୟାନର କହିବାରୁ ପୁଣ
ବିଜେ କଲି ମୁହିଁ ଲଙ୍କାରେ ଆସିଣ ।
ମୋତେ ନ ଦେଖି ବାସୁଦେବ ଯେ ବିକଳ
ଦାରାବୈରୀ ମାରିବାକୁ କ୍ରୋଧେ ସେ ପ୍ରଜ୍ଜ୍ୱଳ ।
ତେଣୁ ଯେ ତୋତେ ସେ କରନ୍ତି ସୁମରଣା
ପ୍ରସନ୍ନ ନୋହୁ କିମ୍ପା ହୋଇଲୁ କି ବଣା ।
ପିତାବଧ ଦୋଷକୁ ଡରିଣ ରଘୁସୁତ ।
ତୋତେ ଦୟା କରିଣ ବୋଇଲେ କୁଶହସ୍ତ
ତୁ ଯେବେ ତାହାଙ୍କୁ ନ ଦେବୁ ବାଟ କହି ।
ରାବଣ ନ ମରୁ ତୋତେ ମାରିବେ ରଘୁସାଇଁ
ଜାଣ ତୁ ସହୋଦର ବ୍ରହ୍ମା ରୁଦ୍ର ପୁଣ
ସେହି ତାଙ୍କ ହସ୍ତରେ ପାଇଲେ ଶାସ୍ତି ଜାଣ ।
ମୋହର ବୋଲ କରି ତାହାଙ୍କୁ ବାଟ ଦେବୁ
କ୍ରୋଧ ହେଲେ ମୋତେ ଯେ ପଶ୍ଚାନ୍ତେ ନ କହିବୁ ।
ତୋହର ଚରଣରେ ବିନତି ମୋହର
ମନରେ ବିଚାରି ମୋର ସ୍ୱାମୀଙ୍କି ଭେଟ କର ।
ଏ ବଚନ କହି ଚିଟାଉ ଲେଖିଣ
ମୁଦି ଦେଇ ମନରେ ପବନକୁ ଧ୍ୟାଇଣ ।
ଜାଣିକରି ପବନ ଛାମୁରେ ଆସି ମିଳି
ଜାନକୀ ବୋଇଲେ ଯାଅ ବରୁଣ ରାଜାପୁରୀ ।
ବୋଲିବ ଏବେ କି ଦେଖାଅ ବଡ଼ପଣ
ଶ୍ରୀରାମରେ ପ୍ରସନ୍ନ ନୁହ କି କାରଣ ।
ଏମନ୍ତ କହି ଲେଖା ତାଙ୍କ କରେ ଦେବୁ
ତାଙ୍କୁ କହିଣ ବାବୁ ଫେରିଣ ଆସିବୁ ।
ସେ ଯାହା କହିବେ କହିବୁ ମୋର ଆଗ
ଶୁଣିକରି ପବନ ଚଳିଗଲା ବେଗ ।

ଜଳଧି ରାଜ ପୁରେ ହେଲା ପରବେଶ
ଦେଖି କରି ବରୁଣ ମନରେ ହରଷ ।
ଅନେକ ଗଉରବ କରି ଘେନିଗଲା
ରତନ ସିଂହାସନେ ନେଇ ବସାଇଲା ।
ବନ୍ଦାପନା ବିଧି ଯେ କଲେକ ବରୁଣ
କେଣେ ଅଇଲ ବୋଲି ପଚାରିଲେ ପୁଣ ।
ପବନ ବୋଇଲେ ତୁମ୍ଭେ ଶୁଣ ସିନ୍ଧୁରାୟ
ସିନ୍ଧୁ ତରିବାକୁ ରାମ କରନ୍ତି ବିନୟ ।
କୁଶଶଯ୍ୟା କରିଣ ଅଛନ୍ତି ରଘୁ ତାଟ
ତାହାଙ୍କୁ କାହିଁପାଇଁ ନ ବତାଅ ବାଟ ।
ଶ୍ରୀରାମ ଅଇଲେ ରାବଣ ମରିବ
ଅନେକ ଦୈତ୍ୟବଳ ମାରିବେ ରାଘବ ।
ବରୁଣ ବୋଇଲେ ଅସୁରେ ବଡ଼ ଦୁଷ୍ଟ
ମହିଁ ଗଲେ ମୋର କରିବେ ଅନିଷ୍ଟ ।
ଯେବେ ସେ ମୋ ପାଶକୁ ଦୂତ ପେଶିଦେବେ
ଧରିନେଲା ପ୍ରାୟ ସେ ମୋତେ ଘେନିଯିବେ ।
ତେବେ ମୋହର ଦୋଷ ହୋଇବ ଖଣ୍ଡନ
ନୋହିଲେ ଶ୍ରୀରାମ ମାରନ୍ତୁ ମୋତେ ପୁଣ ।
ସପତ ସାଗର ଶୁଖାନ୍ତୁ ରଘୁରାଣ
ନୋହିଲେ ଏମନ୍ତ ନ କରିବି ଜାଣ ।
ଆପଣେ କଲାକୀର୍ତ୍ତି ଆପଣେ ନାଶିବେ
ଯେବେ ସେ ନ ବୁଝି ମୋଠାରେ କୋପ ହେବେ ।
ସେ କଥାକୁ କିସ କରିବି ମୁଁ ଏବେ
ଅସୁର କ୍ରୋଧ ହୋଇ ମୋତେ ଯେ ମାରିବେ ।
ରାମ ମାଇଲେ ମୋତେ ସେ କଥା ଦୁର୍ଲ୍ଲଭ
କାର୍ଯ୍ୟ ନ କରିଣ ଯେ ମୋତେ ସେ କ୍ରୋଧ ହେବ ।
ଏଣୁ ଯେ ଭୟ ହୁଏ ରାବଣକୁ ଜାଣ
କି କି ଲେଖି ଦେଇଛନ୍ତି ଦିଅ ମୋତେ ପୁଣ ।
ଶୁଣି କରି ପବନ ଚିଟାଉ ନେଇ ଦେଲା
ପଢ଼ିଣ ବରୁଣ ସନ୍ତୋଷ ହୋଇଲା ।
ବୋଇଲା ଏହି କଥା କହିବୁ ଦୁହିତାକୁ
ରାମଦୂତ ଦେଖିଲେ ଯିବି ମୁଁ ସେଠାକୁ ।
ଶୁଣିକରି ପବନ ବେଗେ ଚଳିଗଲା
ସୀତାଙ୍କୁ ଚରଣେ ଓଳଗି ହୋଇଲେ ।
କହିଲା ପିତା ତୋର କହିଲା ଯେ ଜାଣ
ରାମଦୂତ ପେଶିଲେ ଯିବି ମୁଁ ପାଶେଣ ।
ନୋହିଲେ ରାବଣ ମୋଠାରେ କ୍ରୋଧ ହେବ
ରାମ ଧରି ନେଲା ପ୍ରାୟ ରାବଣ ଜାଣିବ ।
ଦେବତାମାନଙ୍କୁ ନେଉଛି ଯେହୁ ଧରି
ଅବଶ୍ୟ ଏ ରାମ ମୋତେ ପକାଇବେ ମାରି ।

ଶୁଣି କରି ଜାନକୀ ସନ୍ତୋଷ ମନ ହେଲେ
ଏକଥା ଉଚିତ ବୋଲି ମନରେ ବିଚାରିଲେ ।
ପାର୍ବତୀ ବୋଇଲେ ସେଠାରୁ ହେଲା କିସ
ଏହା ଜାଣିଲେ ଟିକି ରାବଣ ରାଣୀହଂସ ।
ଜାନକୀ କହିବାରୁ ମନ୍ଦୋଦରୀ ରାଣୀ
ବିଭୀଷଣ ସଙ୍ଗରେ ପୀରତି କଲା ଜାଣି ।
ବିଭୀଷଣ ଯିବାରୁ କିସ ସେ ବିଚାରିଲା
ସେକଥା ମୋର ଆଗେ କହ ପ୍ରଭୁ ଭୋଳା ।
ରାବଣର ଭର୍ତ୍ସନାରେ ଉତ୍ତରଦିଗେ ଗଲା
ଶ୍ରୀରାମ ଚରଣରେ ଶରଣ ପଶିଲା ।
ସେତେବେଳେ ଲଙ୍କାରେ ଜାଣିଲେ ସକଳ
ମନ୍ଦୋଦରୀ ରାଣୀ ଶୁଣି ହୋଇଲା ବିକଳ ।
ଭାବିଲା ସ୍ୱାମୀ ଯେ ମନ୍ଦ କୃତ୍ୟ କଲା
ସୋଦର ଭାଇକି ବାହାର କରିଦେଲା ।
ଦୂତ ବୋଲେ ଉତ୍ତରକୁ ଗଲା ତା ଦିଅର
ଶରଣ ପଶିଲା ସେ ଶ୍ରୀରାମ ପୟର ।
ତେଣୁ ସେ ଶ୍ରୀରାମ ପରମ ତୋଷ ହେଲେ
ଲଙ୍କାରେ ରାଜା ହେବୁ ବୋଲିଣ ବୋଇଲେ ।
ଅଭିଷେକ କରାଇ ବାନ୍ଧିଲେ ଶିରେ ପାଟ
ଦୂତମାନେ ଶୁଣି ଆସି କହିଲେ ନିରାଟ ।
ଶୁଣିଣ ମନ୍ଦୋଦରୀ ସନ୍ତୋଷ ହୋଇଲା
ଜାନକୀ କହିବା କଥା ଏବେ ସେ ଘଟିଲା ।
ନାରଦ କହିବା କଥା ହୋଇଲା ଏବେ ମୂଳ
ମୋ ସ୍ୱାମୀ ମରିବାକୁ ଅଛି ଅଳପ କାଳ ।
ନିୟତ ପୂରିଲେ ଯେ ନୁହନ୍ତି ଥୟ କେହି
ଅଜ୍ଞାନ ଘୋଟଇ ଯେ ବୁଦ୍ଧି ପାସୋରଇ ।
ସେହି ରାବଣ ଯେ ଭାଇର ବୋଲେ ଥିଲା
ଏବେ ପୁଣି ସେଇ ଭାଇକି ଘଉଡ଼ିଲା ।
ଭଲ କଥା କହିଲେ ମଣିଲା ତାକୁ ସଲ
ମରିବା ବେଳକୁ ନ ରହେ ସଙ୍ଗ ମେଳ ।
ଏମନ୍ତ ବିଚାରି ରାଣୀ ଶୁଚି ଶଉଚ ହେଲା
ଦିବ୍ୟାସନେ ବସିଣ ଦେବାର୍ଚ୍ଚନ କଲା ।
ନାରଦଙ୍କୁ ସୁମରଣା କଲା ମନ୍ଦୋଦରୀ
ତତ୍‌କାଳେ ନାରଦ ମିଳିଲେ ଆସି କରି ।
ଦେଖିକରି ମନ୍ଦୋଦରୀ ଆସନୁ ଉଠିଲା
ସୁବାଷିତ ଜଳରେ ଚରଣ ଧୋଇଦେଲା ।
ସୁବର୍ଣ୍ଣ ଆସନରେ ବସାଇଲା ନେଇ
ଦେଖି ପରମ ତୋଷ କଳହ ପ୍ରିୟ ହୋଇ ।
କରଯୋଡ଼ି ମନ୍ଦୋଦରୀ କହଇ ବଚନ
ଏବେ ଘଟିଲା ଆସି ତୁମ୍ଭ କଥା ମାନ ।

ଗଲା ଯେ ବିଭୀଷଣ ପଶିଲା ଶରଣ
ରାବଣ ମରିବାକୁ ଅଛି କେତେ ଦିନ ।
ନାରଦ ବୋଇଲେ ଆଉ ଦି ମାସ ଦିନ
ନିଶ୍ଚୟ ନାଶ ଯିବ ବିଶ୍ରବା ନନ୍ଦନ ।
ତୋତେ ବଡ଼ ଶୁଭ ଗୋ ହେଲା ପରାପତ
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏଁ ଥିବୁ ତୁ ଜୀବିତ ।
ବିଭୀଷଣକୁ ବର ଦେଲେ ଚାପଧାରୀ
ବୋଇଲେ ପ୍ରଳୟ କାଳେ ମରଣ ତୋହରି ।
ଶୁଣିଣ ମନ୍ଦୋଦରୀ ପରମ ତୋଷ ହେଲା
ନାରଦଙ୍କ ଚରଣେ ବିନମ୍ର ଓଳଗିଲା ।
ଏତେ କହି ନାରଦ ଅନ୍ତର୍ଦ୍ଧାନ ହେଲେ
ମନ୍ଦୋଦରୀ ମନକୁ ଉଚାଟ କରାଇଲେ ।
ମନ ଚଇତନ ମନ୍ଦୋଦରୀ ପୁଣ
ବିଭୀଷଣଠାରେ ମନ ରଖିଲା ସେ ଜାଣ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
କୁଶଶଯ୍ୟା କରିଥିଲେ ଦଶରଥ ବଳା ।
ଶୁଣିଣ ଈଶ୍ୱର କହନ୍ତି ନେ ତେତି
ଶୁଣ ଗୋ ହିମବନ୍ତୀ ଅପୂର୍ବ ଭାରତୀ ।
ତିନିଦିନରେ ଶ୍ରୀରାମ ନ ପାଇ ସନ୍ଦେଶ
କ୍ରୋଧଭର ହୋଇଣ ଉଠିଲେ ରଘୁ ଶିଷ୍ୟ ।
ସୁଗ୍ରୀବରକୁ ଚାହିଁ ବୋଲନ୍ତି ରଘୁରାଣ
ଯୂଥପତିମାନେ କି ବିଚାର କଲେ ପୁଣ ।
କି ବୁଦ୍ଧି କରିବା ହେ କହ ରୋମାପତି
ମୋତେ ଏବେ ପ୍ରସନ୍ନ ନୋହିଲା ଜଳପତି ।
ସୁଜନମାନଙ୍କର ନୁହଇ ଏ ରୀତି
ଏକେତ ଜଣାଗଲା ବରୁଣର ଗତି ।
ସୁଗ୍ରୀବର ବୋଇଲେ ଶୁଣ ରଘୁପତି
ଭଲଗୁଣ ନାହିଁ ଜଳପତି ଦେହରେଟି ।
ନିଶ୍ଚୟ ଜଳପତି ଯିବ ଆଗ ନାଶ
ତାହାକୁ ରଖି ନ ପାରିଲେ ଯେ ତ୍ରିଦଶ ।
ଦୁଷ୍ଟଜନମାନଙ୍କଠୁଁ ତ୍ରାସରେ କାର୍ଯ୍ୟ ପାଇ
ତେବେ ସେ ଦୁଷ୍ଟ ତେଜ ଗର୍ବ ନ ରହଇ ।
ତସ୍କର କଳଙ୍କରେ ଯେହ୍ନେ କ୍ଷୟ ହୋଇ
ଅଜ୍ଞାନ ଲୋକକୁ ଯେ କହିଲେ ନ ଶୁଣଇଁ ।
ହୀନଜନମାନଙ୍କୁ ନ କଲେ ଯେ ମାୟା
ମାୟା ହେଲେ ତାଙ୍କର କମଇ ଯେ ହିଆ ।
ଦୁଷ୍ଟ ଲୋକମାନେ ଯେ ହେଉଥାନ୍ତି ଟାଣି
ଭୟ ଦେଖାଇଲେ ସେ ସୁସ୍ୱରେ କହେ ବାଣୀ ।
ଜଳର ଅଧିପତି ଅଟଇ ବରୁଣ
ଆପଣେ ଦେଖାଉ ଅଛି ଆପଣା ବଡ଼ପଣ ।

ତାଥିଁରାଜା ହୋଇଣ ନିର୍ଭୟ ସେ ହେଲା
ତୁମ୍ଭଙ୍କୁ ନ ଚିହ୍ନିଣ ମନେ ଗର୍ବ କଲା ।
ସୁବାଷ ପାଣି ଘେନି ଖଟେ ରାବଣକୁ
ଅସୁର ବଳ ଟାଣ ଦେଖାଏ ତୁମ୍ଭଙ୍କୁ ।
ବାଳି ପରା ବଳିଆର ଏକକାଣ୍ଡେ ମଲା
ସପ୍ତଶାଳା ଏକା କାଣ୍ଡକେ ଛେଦ ହେଲା ।
ହେ ରଘୁ ନନ୍ଦନ କର ହେ ତୁମ୍ଭେ କାର୍ଯ୍ୟ
ସୁଗ୍ରୀବର ବଚନେ ଉଠିଲେ ରାମ ରାଜ ।
ଅଗ୍ନିଶର କାଢ଼ିଣ ପଢ଼ିଲେ ଧନୁର୍ବେଦ
ବୋଇଲେ ମୋର କଥା ନ ଶୁଣିଲା ଜଳରାଜ ।
ଚଇକ୍ଷବା ଧନୁକୁ ଓଟାରିଦେଲେ ପୁଣ
କୋପମୁଖ ହୋଇଣ ବୋଲନ୍ତି ରାମରାଣ ।
କାଳାନଳ ଅଟଇ ଏ ମୋହର ଶର
ନିଶ୍ୱାସକେ ଶୁଖାଇ ସପତ ସାଗର ।
ମତ୍ସ୍ୟ ମଗର କୁମ୍ଭୀର ବିକଳ ହୋଇବେ
ଜଳର ଜୀବଜନ୍ତୁ ମରଣ ଲଭିବେ ।
ସୀତୟାର ଛଳରେ ମୋହର ବଇରୀ ରାଗ
ରାବଣ ନ ମରୁଣୁ ତୁ ମରିବୁ ଆଗ ।
ଅନେକ ଦୁଃଖ ମୋତେ ଦେଇଛି ଲଙ୍କପତି
ଏହିକ୍ଷଣି ତୋର ମୁହିଁ ସାରିବି ବିଭୂତି ।
ଦୁଷ୍ଟ ଗୋରୁ ସଙ୍ଗେ ଯେହ୍ନେ ସନ୍ଥ ଗୋରୁ ଥାଇ
ସେ ଯିବାରୁ ତାର ସଙ୍ଗେ କୃଷିଖାଏ ଯାଇ ।
କୃଷିକାରୀ କି ଦେଖି ପଳାଇଯାଏ ସେ ଦୁଷ୍ଟ
ସନ୍ଥ ଗୋରୁଟି ତହିଁ ଭୋଗେ ଦଣ୍ଡ କଷ୍ଟ ।
ତେସନ ପ୍ରକାରେ ତୁରେ ଆଗ ନାଶ ଯିବୁ
ଯେବେ ତୁ ଆଜ ମୋତେ ବାଟ ଯେ ନ ଦେବୁ ।
ସୀତା ବିହୁନେ ମୋର ଦେହେ ଯେତେ ତାପ
ତୋହର ଉପରେ ପ୍ରଥମେ ହେବ ଧାପ ।
ବଳ ଯେବେ ଅଛିରେ ସହିବୁ ମୋର ବାଣ
ଆଜ ଦେଖି ପରୀକ୍ଷା କରିବ ତୋର ପ୍ରାଣ ।
ପ୍ରାଣପ୍ରିୟା ମୋରରେ ଲଙ୍କାରେ ବନ୍ଦି ହୋଇ
ବାଟକୁ ଅଟକିଛୁ ନ ଦେଇ ମୋତେ ଘାଇ ।
ସକଳ ଦୁଷ୍ଟଗଣ ତୋହର ଗର୍ଭେ ଛନ୍ତି
ପୃଥିବୀ କି ସଲ ତୁରେ ଜଳପତି ।
ଶଙ୍ଖାସୁର ଥିଲା ଯେ ବେଦ ଚୋରୀ କଲା
ତୋହର ଗର୍ଭେ ଥାଇ କେତେ ଦ୍ୱନ୍ଦ୍ୱ କଲା ।
ତୁ ଯେବେ ନ ଥାନ୍ତୁରେ ପ୍ରଳୟ କିମ୍ପା ହୋନ୍ତା
ବିଧାତା ମହାତମା ସୁଖୀ ହୋଇଥାନ୍ତା ।
ସଚରାଚର ଜନ୍ତୁ ତୁହି କରୁ ନାଶ
ନବସୃଷ୍ଟି ସାଜିଣ ବିଧାତା ପାଏ କ୍ଳେଶ ।

ତେଣୁ ସେ ସାଗରକୁ ଶୋଷିଲେ ଅଗସ୍ତି
ଭାଗୀରଥି ଗଙ୍ଗା ଆଣନ୍ତେ ସମ୍ଭାଳିଲା ଏଥି ।
ଏବେ ରାବଣକୁ ଗର୍ଭରେ ଅଛୁ ଧରି
ଯିବାକୁ ବାଟ ମୋତେ ଅଛୁରେ ଓଗାଳି ।
ଏବେ ଏହିକ୍ଷଣୀରେ ଗେନିବି ତୋର ପ୍ରାଣ
ଏତେ ବୋଲି ନାରାଚ ପୁରାଇ ରାମରାଣ ।
ମନ୍ତ୍ର ପଢ଼ି ଶର ଯୋଚି ଗୁଣ ଧରି ଟାଣି
ସପତ ସମୁଦ୍ରକୁ ଶୋଷିବି ଏହିକ୍ଷଣି ।
ନାରାଚର ତେଜ ଯେ ପୂରିଲା ଜଗତ
ପାଣି ଟୋପା ପ୍ରାୟ ଦିଶଇ ସିନ୍ଧୁ ସାତ ।
କୋପାନଳରେ ଶ୍ରୀରାମ ରକ୍ତବର୍ଣ୍ଣ ଆଖି
ଆକାଶରେ ସୁରଗଣ ଭୟ କଲେ ଦେଖି ।
ବୋଇଲେ ମେଦିନୀ ପଡ଼ିବ ରସାତଳେ
ବରୁଣ ଦେବତା ଯେ ଯିବ ଯମଆଳେ ।
ଧବଳ ମୁଖୀ ଗଙ୍ଗା ବିଧବା ହୋଇବ
ହସ୍ତର ମଙ୍ଗଳ ସୂତା ଛିଣ୍ଡାଇ ପକାଇବ ।
ଏମନ୍ତ ବୋଲିଣ ଯେ ପଳାନ୍ତି ଦେବତାଏ
ଭୟେ ଥରହର ଯେ ସକଳ ଦେବତାଏ ।
ଇନ୍ଦ୍ର ସୁମରିଲେ ବେଦବରଙ୍କୁ ପୁଣ
ଯଶୋବନ୍ତୀ ପୁରେ ଜାଣିଲେ ସାବିତ୍ରୀ ରମଣ ।
ଗାୟତ୍ରୀ ସାବିତ୍ରୀଙ୍କି ଡକାଇ କହିଲେ
ଅମରେ ଇନ୍ଦ୍ରଦେବ ସୁମରଣା କଲେ ।
ଯିବି ମୁଁ ସ୍ୱର୍ଗପୁର ତୁମ୍ଭେ ଏଥି ଥାଅ
ଏମନ୍ତ ବୋଲି ସଜ ହେଲେ ବେଦପ୍ରିୟ ।
ସାବିତ୍ରୀ ପଚାରିଲେ ବଡ଼ ଉଦ୍‌ବେଗ
ଅସୁର ତୁମ୍ଭ ଉପରକୁ କି ହୋଇଲା ବିରାଗ ।
ସେକଥା ମୋର ଆଗେ କହ ହେ ବୁଝାଇ
ଅନେକ ଜଞ୍ଜାଳ ଲାଗିଲା ପ୍ରାୟ ହୋଇ ।
ବେଦ ବ୍ରହ୍ମା ବୋଇଲେ ଶୁଣରେ ସୁନ୍ଦରୀ
ଦେବ ଅସୁର ସକାଶେ ସୁମରେ ବଜ୍ରଧାରୀ ।
ଅସୁର ମୋରଠାରେ ଭକତି ଆଗ ହୋନ୍ତି
ତପ କରି ମୋଠାରୁ ବର ସେ ନିଅନ୍ତି ।
କାଳେ ପଣ ବଳ ପାଇ ହୁଅନ୍ତି ପ୍ରବଳ
ତେଣୁ ସେ ଦେବତାଙ୍କୁ ଅସୁର ହୋନ୍ତି କାଳ ।
ତିନିପୁର ଜିଣିଣ ଦେବଙ୍କୁ ଦୁଃଖ ଦ୍ୟନ୍ତି
ସ୍ୱର୍ଗର ସମ୍ପଦ ସେ ଦୂର କରି ନ୍ୟନ୍ତି ।
ଦେବତାଙ୍କୁ ଧରି ନେଇ ଖଟାନ୍ତି ପାଦତଳେ
ତେଣୁ ସେ ଦେବତାଏ ସ୍ମରନ୍ତି ମୋତେ ବେଳେ ।
ତେଣୁ ସେ ନାରାୟଣଙ୍କୁ ମୁହିଁ ଚିନ୍ତା କରି
ସକଳ ଦେବତାଏ ଯାନ୍ତି ବୈକୁଣ୍ଠ ପୁରୀ ।

ନାରାୟଣଙ୍କୁ ଶପୁର୍ନୁ ଉଠାଇ ଦେଇଣ
ସକଳ ଚରିତ କହନ୍ତି ମଣାଇଣ ।
ତେବେ ସେ ନରାୟଣ ଘେନିଣ ଭକତି
ଭାବଗ୍ରାହୀ ଚିନ୍ତାମଣି ବିଚାର କରନ୍ତି ।
ତେଣୁ ସେ ଅବତାର ହୁଅନ୍ତି ନାରାୟଣ
ନାନାଛଳ କରିଣ ଅସୁର ମାରେ ପୁଣ ।
ତିନି ପୁରକୁ ରକ୍ଷା କରନ୍ତି ଚକ୍ରଧର
ତେବେ ସେ ଉଶ୍ୱାସ ପାଆନ୍ତି ନାଗବଳ ।
ସାବିତ୍ରୀ ବୋଇଲେ ତୁମ୍ଭେ କାହିଁକି ଦିଅ ବର
କାଳେ ହେଁ ଅସୁର କରନ୍ତି ହରବର ।
ବିଧାତା ବୋଇଲେ ନ ଦେଲେ ମୁଁ ବର
ଅସୁରଗଣ ଆସିଣ ବୁଲନ୍ତି ମୋର ପୁର ।
ତେଣୁ ମୁଁ ଡରିକରି ତାହାଙ୍କୁ ବର ଦେଇ
ଯେ ଯହିଁରେ ମରିବାର ସେଥିରେ ଲେଖିଥାଇ ।
ସାବିତ୍ରୀ ବୋଇଲେ କିଏ ସେ ଅସୁର
କାହାର ସକାଶରେ ଚିନ୍ତା ଯେ ତୁମ୍ଭର ।
କୁଶପାଣି ବୋଇଲେ ଶୁଣରେ ରମଣୀ
ଚାରି ରାବଣ ଏବେ ବଳବନ୍ତ ପୁଣି ।
ଏବେ ସେ ତାଙ୍କର ମରଣ କାଳ ଆସି
ଅନେକ କାଳରୁ ଦେବତାଙ୍କୁ ସେ ତ୍ରାସି ।
ତାଙ୍କର ପୀଡ଼ାରେ ନାରାୟଣଙ୍କୁ କହି
ତେଣୁ ସେ ନାରାୟଣ ମର୍ତ୍ତ୍ୟରେ ଜନ୍ମ ହୋଇ ।
ସାବିତ୍ରୀ ବୋଇଲେ ଯେବେ ନାରାୟଣ ଜାତ
କମଳା ଏକାକି ରହିଲେ ବୈକୁଣ୍ଠ ।
ବେଦବର ବୋଇଲେ ଶୁଣରେ ରୂପବନ୍ତୀ
ନାରାୟଣ ସଙ୍ଗରେ କମଳା ଜାତ ହୋନ୍ତି ।
ତେବେ ସେ କମଳା ନାରାୟଣ ସଙ୍ଗେ ଲୀଳା
ଅସୁର ମାରନ୍ତି କରି ନାନା ଖେଳା ।
ସାବିତ୍ରୀ ବୋଇଲେ ଚାରି ରାବଣ ମାରିବାକୁ
କେଉଁଠାରେ ଜାତ କଲେ ସେ ନାରାୟଣଙ୍କୁ ।
ବିଧାତା ବୋଇଲେ ସୂର୍ଯ୍ୟବଂଶରେ ଜାତ
ଦଶରଥ ନନ୍ଦନ ନାମ ରଘୁନାଥ ।
ଦୁଇମାସ ପନ୍ଦର ଦିନେ ମରିବ ରାବଣ
ଚାରି ରାବଣଙ୍କୁ ମାରିବେ ରାମରାଣ ।
ସାବିତ୍ରୀ ବୋଇଲେ କମଳା ଜାତ କାହିଁ
ଶ୍ରୀରାମ ସଙ୍ଗରେ ଅଛନ୍ତିଟି ସେହି ।
ବେଦବର ବୋଇଲେ କମଳା ଅମେଳ
ଜନକ ସୁତା ଯାଇ ଅଛି ଲଙ୍କାପୁର ।
କମଳା ଜାତ ହେଲେ ଜନକ ରଷିଆଳେ
ଯୁବାକାଳେ ବିଭା ଯେ ରାମଙ୍କୁ ଭାଗ୍ୟବଳେ ।

ଦେବକୂଟରେ ସେ ଯେ ବନବାସ କଲେ
ରାବଣର ବୁଦ୍ଧିକି ଦେବତା ହରି ନେଲେ ।
ତେଣୁ ସେ ରାବଣ ରାମ ନାରୀକି ଆଣି
ଲଙ୍କାରେ ବିଜୟ କଲେ କମଳିଣୀ ।
ଅଗ୍ନିରୂପ ଧରିଣ ଅଶୋକ ବନେ ଅଛି
ତେଣୁ ସେ ଅସୁର ନ ପାରେ ତାକୁ ଧାପି ।
ସାବିତ୍ରୀ ବୋଇଲେ ଅନ୍ୟାୟ ତୁମ୍ଭେ କଲ
ବାସୁଦେବ ଘରଣୀକୁ ସଙ୍ଗରୁ ଛଡ଼ାଇଲ ।
ସେ ଯେବେ ନାରାୟଣ ମାରନ୍ତେ ଅସୁର
ତୁମ୍ଭେ କିମ୍ପା ଅଗତି କଲ ହେ ବେଦବର ।
କୁଶପାଣି ବୋଇଲେ ଶ୍ରୀରାମ ଅଟେ ଧୀର
ତେଣୁ ତାଙ୍କ ଘରଣୀକି ନେଲା ଯେ ଅସୁର ।
ଘରଣୀର ଛଳରେ ମାରିବେ ଦୈତ୍ୟବଳ
ତେବେ ସେ ଉଶ୍ୱାସ ହୋଇ ମହୀଭାର ।
ଶୁଣିଣ ସାବିତ୍ରୀ ହରଷ ମନ ହେଲେ
ବିଧାତାଙ୍କ ଚରଣେ ଓଳଗି ମେଲାଇଲେ ।
କହିଣ ପରମହଂସ ଚଢ଼ି ବେଦପତି
ସ୍ୱର୍ଗ ଭୁବନକୁ ଚଳିଲେ ଝଟତି ।
ଦେଖିଣ ଦେବତାଏ ହରଷ ହୋଇଲେ
ମାନ୍ୟଧର୍ମ କରିଣ ବ୍ରହ୍ମାଙ୍କୁ କହିଲେ ।
ଅସୁର ନ ମାରି ରାମ ଦେବଙ୍କୁ ଦେଲେ ଦାଉ
ବରୁଣଙ୍କୁ ମାରିବାକୁ ଯୋଚିଲେ ଅଗ୍ନି ସେହୁ ।
ବିଧାତା ବୋଇଲେ ସେଥିର କଥା କିସ
ସୁରରାଜା ବୋଲେ ଶୁଣ ବିଧାତା ପୁରୁଷ ।
ଋକ୍ଷକପି ସୈନ୍ୟ ଯେ ଅନେକ ଠୁଳ କଲେ
ରାବଣକୁ ମାରିବାକୁ ଲଙ୍କାକୁ ବାହାରିଲେ ।
ସିନ୍ଧୁ ତରିବାକୁ ସେ ନ ପାଇଲେ ପଥ
ତିନିଦିନ କୁଶାସନ କଲେ ରଘୁନାଥ ।
ବରୁଣ ନ କହିବାରୁ ଧରିଲେ କୋଦଣ୍ଡ
ବୋଇଲେ ଶୁଖାଇବି ସାଗର ସାତ ଖଣ୍ଡ ।
ଅଗସ୍ତି ଚଳୁକରି ଥରେ ଶୁଖାଇଲେ
ଜଳ ମନ୍ତ୍ର ବାରାନିଧିକି ଶୋଷିଦେଲେ ।
ମୁଁ ଏବେ ଅଗ୍ନିଶରେ ଶୋଷିବି ସିନ୍ଧୁଜଳ
ଏମନ୍ତ ମନରେ କ୍ରୋଧ ହେଲେ ରଘୁବୀର ।
ବୋଇଲେ ସେ ବେଳେ ଗଙ୍ଗାଙ୍କୁ ଭାଗୀରଥି
ଆଣିଣ ସାଗର ସମ୍ପୂର୍ଣ୍ଣ କଲା ଏଥି ।
ଏବେ କେଉଁ ତୀର୍ଥ ଆସି ହେବ ଭର୍ତ୍ତି
ବରୁଣ ରାଜାକୁ କେ ରଖିବ ଏ ଘାନ୍ତି ।
ଏମନ୍ତ ବୋଲିଣ ଯେ ଶ୍ରୀରାମ କୋପ କଲେ
ଯେତେବେଳେ ରାମଚନ୍ଦ୍ର କୁଶଶଯ୍ୟା କଲେ ।

ଜାଣିଣ ଜାନକୀ ହୋଇଲେ ବିକଳ
ପବନକୁ ପେଶିଦେଲେ ବରୁଣର ଆଳ ।
ଯାଇଣ ପବନ ବରୁଣଙ୍କୁ କହି
ଶ୍ରୀରାମଙ୍କୁ ପଥ ଦିଅସି ଯେ ତୁହି ।
ଅସୁର ଘରେ ବନ୍ଦି ଦୁହିତା ତୋହର
ତେଣୁ ସେ ଜାନକୀ ପେଶିଲେ ତୋ ପାଶର ।
କୋପଭର ତୋଠାରେ ହେବେ ରାମ ରାଣ
ବରୁଣ ବୋଲେ ଦୈତ୍ୟ ଜାଣିଲେ ନେବ ପ୍ରାଣ ।
ତେଣୁ ସେ ଅସୁରକୁ ଭୟ ମୋର ଚିତ୍ତ
ଶ୍ରୀରାମ ହସ୍ତେ ମଲେ ହୋଇବି ମୁକତ ।
ଦେବଙ୍କର ଅଳି ଯେ ମୋରଠାରୁ ଯାଉ
ସପତ ସାଗରକୁ ଶ୍ରୀରାମ ଶୁଖାଉ ।
ନୋହିଲେ ରାମ ଯେବେ ମୋତେ ନେବ ଧରି
ଦଶାନନ କ୍ରୋଧରୁ ହୋଇବି ମୁଁ ପାରି ।
ଏମନ୍ତ ବୋଲିଣ ପବନକୁ କହି
ଫେରିଣ ପବନ ସୀତାଙ୍କୁ ବୁଝାଇ ।
ଶୁଣିଣ ଜାନକୀ ହୋଇଲେ ତୋଷମନ
ସେ କଥା ମୋର ଆଗେ କହିଲେ ପବନ ।
ସେ କଥା ବିଚାରିବାକୁ ସୁମରିଲୁ ଦେବ
କିପରି ପ୍ରବୋଧ ହୋଇବେ ରାଘବ ।
ଶୁଣିଣ ଦେବେଙ୍କର ନାରଦଙ୍କୁ ସୁମରି
ତଳପୁରୁ ନାରଦ ଅଇଲେ ବେଗ କରି ।
ବିନୟେ ପିତାଙ୍କୁ ହେଲେ ନମସ୍କାର
ଦେଖିଣ ସନ୍ତୋଷ ହେଲେ କୁଶଧର ।
ବୋଇଲେ ନାରଦ ତୁ ଚଳିଯା ସତ୍ୱର
ଧବଳ ମୁଖୀ ଗଙ୍ଗାଙ୍କୁ କହିବୁ ସତ୍ୱର ।
ବୋଲିବୁ ଶ୍ରୀରାମଙ୍କୁ ଯାଇଣ ବୋଧ କର
ନୋହିଲେ ବିଧବା ହୋଇବୁ ନିକର ।
ଶୁଣିକରି ନାରଦ ବେଗେ ଚଳିଗଲେ
ଦେଖିଣ ବରୁଣ ଯେ ପରମତୋଷ ହେଲେ ।
ବାସଜଳ ନେଇଣ ଚରଣ ଧୋଇଦେଲେ
ସୁବର୍ଣ୍ଣ ସିଂହାସନରେ ନେଇ ବସାଇଲେ ।
କରଯୋଡ଼ି ବରୁଣ ଆଗରେ ଛିଡ଼ାହୋଇ
କି କାର୍ଯ୍ୟେ ଦେବରଷି ମୋ ପୁରେ ଆସିଲଇଁ ।
ଏହି ସମୟରେ ଗଙ୍ଗା ଯେ ଯମୁନା
ସରସ୍ୱତୀ ସାରାବତୀ ଆଦି ଯେ ନଳନା ।
ମଙ୍ଗଳ ଆରତୀ କରି ଧୂପଦୀପ ଦେଲେ
ଚରଣେ ଓଳଗିହୋଇ ଛାମୁରେ ଉଭା ହେଲେ ।
ସନ୍ତୋଷରେ ନାରଦ କହନ୍ତି ବଚନ
ଶୁଣ ତୁ ମୋରଠାରୁ ଜଳଧି ରାଜନ ।

ସ୍ୱୟଂ ନାରାୟଣ ଆମ୍ଭ ଦୁଃଖ ଦୂର ପାଇଁ
ମର୍ତ୍ତ୍ୟପୁରେ ଜନମ ଆସି ହେଲେ ସେହି ।
ଅସୁରଙ୍କୁ ମାରିବାକୁ ମନେ ବିଚାରିଲେ
ଦଶରଥ ଘରେ ନାରାୟଣ ଜନ୍ମ ହେଲେ ।
ଆମ୍ଭର ସକାଶେ ସେ ଆସି ଘୋର ବନେ
ରଚିଲେ ମଢ଼ିଆ ଦଣ୍ଡକ ଅରଣ୍ୟେ ।
ରାବଣ ମାରିବାକୁ ଯହୁଁ ସେ ମନ କଲେ
ତେଣୁ ସେ ଦଶଗ୍ରୀବ ଶୁଣିଲା କର୍ଣ୍ଣରେ ।
ତେଣୁ ସେ ଦଶଶିର ଜମ୍ବୁଦ୍ୱୀପକୁ ଗଲା
ଶ୍ରୀରାମ ଘରଣୀକି କପଟେ ଭେଟିଲା ।
ବୋଇଲା ତୋତେ ମୁଁ ନେବାକୁ ଅଛି ଆସି
ଲଙ୍କାଗଡ଼କୁ ତୋତେ ଶୁଭ୍ରକେଶୀ ।
ସମୁଦ୍ର ଭିତରେ ଅଟେ ମୋର ପୁର
ସୁବର୍ଣ୍ଣମୟ ଲଙ୍କାପୁର ମଧ୍ୟେ ସାର ।
ହୀରା ନୀଳା ମୋତି ଯେ ବଇଦୁର୍ଯ୍ୟ ସାର
ନାନା ରତ୍ନେ ମଣ୍ଡଣି ହୋଇଛି ସବୁ ଘର ।
ସେ ପୁରରେ ବିଜୟ କର ତୁମ୍ଭେ ଯାଇ
ତୋହର ରୂପକୁ ସେ ପୁର ଯୋଗାଇ ।
ଶୁଣିଣ ତୋ ଦୁହିତା ତାହାକୁ ପଚାରି
ସେ ପୁରକୁ ଗଲେ କି ପୁରୁଷାର୍ଥ ମୋହରି ।
ମୋହର ଠାକୁର ଯେ ଅଟନ୍ତି ରାମରାଣ
ତାଙ୍କର ସଙ୍ଗେ ଥିଲେ ମୋତେ ଯେ କାରଣ ।
ତୁହି ପରା ରାବଣ ଦେବଙ୍କୁ କଷ୍ଟ ଦେଲୁ
ତ୍ରିଦଶ ଦେବତାଙ୍କୁ ଧରିଣ ଘେନିଗଲୁ ।
ସ୍ୱର୍ଗଭୁବନକୁ ତୁ ପରା କଲୁ ଜୁର
ଦେବତାମାନେ ପରା ହେଲେ ତୋ କିଙ୍କର ।
ତୁହି ପରା ମୋରପାଶେ ବଇକୁଣ୍ଠେ ଥିଲୁ
ମୋରଶ୍ୟାପେ ତୁହି ଯେ ଦୈତ୍ୟ ତନୁ ହେଲୁ ।
ଜନ୍ମଜନ୍ମାନ୍ତରେ ଦେବତା ରିପୁ ତୋର
ଏହିପରି ସାତଜନ୍ମ ହୋଇବ ତୋହର ।
ତେଣୁ ସେ ନାରାୟଣ ହସ୍ତରେ ତୁ ମରି
ତୋ ଗୁଣ ଦେଖି ବାସୁଦେବ ଅବତରୀ ।
ପାଞ୍ଚବେଳ ମାଇଲେ ଶାରଙ୍ଗ ଧନୁ ଧରି
ଏଥର ହୃଦୟ ବିଦାରିବେ ଯେ ତୋହରି ।
ତୋତେ ମାରିବାକୁ ଜାତ ହେଲେ ହରି
ଆଗରୁ ଦେବତାଏ କଲେ ଯେ ଗୁହାରି ।
ତେଣୁ ସେ ବାସୁଦେବ ମାରିବା ପାଇଁ ତୋତେ
ଦେବକୁଟେ ବିଜୟ କରିଲେ ବନସ୍ତେ ।
ତୁହି ଏବେ ମୋତେ ନ ନିଅ ଲଙ୍କାପୁର
ବଳତ୍କାର କରି ନେଲେ ମରିବୁ ପାମର ।

ରାବଣ ବୋଇଲା ଆସିଛି ମୁଁ ଭାବି
ଲଙ୍କାଗଡ଼କୁ ତୋତେ ନିଷ୍ଟେ ନେଇଯିବି ।
ଆଉ କେଉଁ କଥାକୁ ନାହିଁ ମୋ ବିଚାର
ତୋତେ ନେବାପାଇଁ ବଳିଛି ମନ ମୋର ।
ଜାନକୀ ବୋଇଲେ ଘଟିଲା ତୋର କାଳ
ଭାଇବନ୍ଧୁ ପୁତ୍ର ନାତି ମରିବେ ସକଳ ।
ସୈନ୍ୟବଳ ସହିତେ ସମସ୍ତେ ହେବେ ନାଶ
ଶ୍ରୀରାମର ବାଣରେ ସର୍ବେ ହେବେ ଧ୍ୱଂସ ।
ତୁହି ନାଶ ଯିବୁରେ ନ ରହିବ ଅଂଶ
ଶ୍ରୀରାମଙ୍କ ବାଣ ଅଟେ ଦୈତ୍ୟଙ୍କର ଶେଷ ।
ରାବଣ ବୋଇଲା ଏକଥା ମୋର ମୂଳ
ପୁତ୍ରନାତି ଭାଇବନ୍ଧୁ ମରନ୍ତୁ ସକଳ ।
ମୁହିଁ ନାଶଯିବି ପଛେ ଆଶା ମୋର ନାହିଁ
ପ୍ରମାଣ କରୁଅଛି ତୋର ଆଗେ ମୁହିଁ ।
ଜାନକୀ ବୋଇଲେ ଯେ ଏକଥା ନିୟତ
ସବୁଙ୍କୁ ମାରିବାର ଅଛି ତୋର ଚିତ୍ତ ।
ତେବେ ମୁଁ ଲଙ୍କାକୁ ଯିବଇଁ ପ୍ରମାଣ
ଛୁଇଁଲେ ଭସ୍ମ ହେବୁ ଜାଣିଥା ରାବଣ ।
ଏମନ୍ତ ବୋଲିଣ ସୀତା କ୍ରୋଧରେ କ୍ରୋଧଅଗ୍ନି
ଦେଖିଣ ରାବଣ ଦୂରରୁ ପରିମାଣି ।
ବୋଇଲେ ତୋର କଥା ତୁ ସତ୍ୟ ରଖ ତ
ମୋର ପ୍ରମାଣ ଯେ ଅଟଇ ନିୟତ ।
ଶୁଣି ଠାକୁରାଣୀ ବୋଇଲେ ଆଣ ଯାନ
ଆଣିଣ ରାବଣ ରଥ ଥୋଇଲା ଆଗେଣ ।
ସେ ରଥ ଉପରକୁ ଉଠିଲେ ରାମନାରୀ
ରଥପରେ ସିଂହାସନ ବସେ ଯାଇକରି ।
ତେଜରେ ଦାବାନଳ ହୋଇଲେ ରଥରେ
ତଳ ପିଢ଼େ ରାବଣ ବସି ଭୟ କରେ ।
ତେଣୁ ସେ ରାବଣ ରଥ ନେଲା ବାହି
ଜାନକୀର ଇଚ୍ଛାରେ ବେଳ ଯିବ କହି ।
ଚୁଡ଼ି ବିଦ ବାହୁଟି କାଢ଼ିଲେ ଦେବୀ ସୀତା
ଋଷ୍ୟମୂକେ ପକାଇଦେଲେ ସେ ବାରତା ।
ସେ ପର୍ବତ ଉପରେ ସୁଗ୍ରୀବର ଥିଲା
କାହାର ଆୟ ବୋଲି ସାଇତି ରଖିଲା ।
ସେଠାରୁ ଲଙ୍କାଗଡ଼େ ଯାଇ ପରବେଶ
ସ୍ୱତୀର ତେଜ ଦେଖି ରାବଣ ବିରସ ।
ଅଶୋକ ବନରେ ସ୍ୱତୀକି ରଖିଗଲା
ଅଗ୍ନିରୂପ ଦେଖିଣ ମନରେ ଭୟ କଲା ।
ପାଞ୍ଚଦିନରେ ସେ ସ୍ୱତୀ ଶୁଦ୍ଧ ସ୍ନାନ କରି
ଅଗ୍ନିରେ ସ୍ନାହାନ କଲେକ ରାମନାରୀ ।
ଦଇତ ଦଇତୁଣୀ ଗଲେ ତାହା ଦେଖି
ଥରହର କମ୍ପିଲେ ଭୟ ମନେ ରଖି ।
ସେହିଦିନୁ ସ୍ୱତୀ ଯେ ନ କରେ ଆହାର
ପବନ ନେଇ ଅମୃତ ଖଟଇ ଛାମୁର ।
ନିର୍ଜନ ବେଳରେ ସ୍ୱତୀ ଆହାର ଯେ କରି
ବାସପାଣି ପିଅଇ ସନ୍ତୋଷ ରାମନାରୀ ।
ଗୁପତ ଭୋଜନ ଯେ ନ ଜାଣନ୍ତି କେହି
ଦେବତା ସବୁଦିନ ଛାମୁରେ ଭେଟ ହୋଇ ।
ସ୍ତୁତି କରି କହିଣ ଯାଆନ୍ତି ଦେବଗଣ
ବିଧାତା କହିବାରେ ପ୍ରବୋଧ ସ୍ୱତୀ ଜାଣ ।
ବେଦବରଙ୍କୁ ପୁଣି କହନ୍ତି ସ୍ୱତୀ ରାଗେ
କେତେଦିନରେ ଭେଟ ହେବେ ବାସୁଦେବେ ।
କୁଶପାଣି ବୋଇଲେ ଚଉଦ ମାସ ଯିବ
ଲଙ୍କାରେ ଅଠାଇଶ ଥର ଶୁଦ୍ଧ ସ୍ନାନ ହେବ ।
ଚଉଦ ମାସ ଦି'ଦିନେ ମରିବ ରାବଣ
ନିଶ୍ଚୟ ଏହିକଥା ଅଟଇ ପ୍ରମାଣ ।
ସହସ୍ରମୁଖା ରାବଣ ତୋ ହସ୍ତେ ମରିବ
ତୋ ସାନ ଦିଅର ଶତମୁଖାକୁ ମାରିବ ।
ଅନନ୍ତ ଲକ୍ଷ୍ମଣ ମାରିବେ ଏକମୁଖା
ତେବେ ତିନିପୁର ହୋଇବ ଯେ ରକ୍ଷା ।
ବିଧାତାର ବଚନେ ତୃପତି ରାମନାରୀ
ଏଥୁ ଅନନ୍ତରେ ଶୁଣ ଜଳଦଣ୍ଡଧାରୀ ।
ମୃଗମାରି ରାମ ଆସି ନ ଦେଖିଲେ ସୀତା
ତେଣୁ ସେ ଅବିଗୁଣ ପାଇଲେ ଜଗଜିତା ।
ଦୁଇଭାଇ ସେଠାରୁ ଗମନ କରି ଗଲେ
ଋଷ୍ୟମୂକ ପର୍ବତରେ ସୁଗ୍ରୀବକୁ ଭେଟିଲେ ।
ସୁଗ୍ରୀବ ସଙ୍ଗେ ମଇତ୍ର ହେଲେ ରାମରାଣ
ବାଳୀକି ନାଶ କଲେ ମଇତ୍ର ଛଳେଣ ।
ତେଣୁ ସେ ଋକ୍ଷକପି ତାଙ୍କ ସଙ୍ଗେ ଘେନି
କୁମାର ପଦାରେ ପ୍ରବେଶ ଭାଇ ବେନି ।
ତାହାଙ୍କୁ ଦେଖିଣ ଈଶ୍ୱରଙ୍କ ଚାଟ
ନିରୋଧ କଲା ଆସି ଶ୍ରୀରାମଙ୍କ ଥାଟ ।
ତେଣୁ ସେ ଲକ୍ଷ୍ମଣ କ୍ରୋଧରେ ଅଇଲେ
କାର୍ତ୍ତିକକୁ ଧରି ବନ୍ଧନ କରି ନେଲେ ।
ତାହା ଜାଣି ବଳ ସାଜି ଈଶ୍ୱର ଅଇଲେ
ଏକା କାଣ୍ଡକେ ଲକ୍ଷ୍ମଣ ତାଙ୍କୁ ପକାଇଲେ ।
ଜାଣିଣ ବେଦବର ସେ ସ୍ଥାନକୁ ଗଲେ
ସୋଦରକୁ ଜିଣାଇ ଦେବାକୁ ମନ କଲେ ।
ଦେଖିକରି ଲକ୍ଷ୍ମଣ ବ୍ରହ୍ମାଙ୍କୁ ବିନ୍ଧି ବାଣ
ଅଜ୍ଞାନ ହୋଇ ପଡ଼ିଲେ ସାବିତ୍ରୀ ରମଣ ।

ଶୁଣିଣ ପାର୍ବତୀ ସେଠାକୁ ଆସିଲେ
ଖବର ପାଇ ସାବିତ୍ରୀ ସେ ସ୍ଥାନେ ମିଳିଲେ ।
ବେନିନାରୀ କହନ୍ତେ ଶ୍ରୀରାମ ଦୟା କଲେ
ଜୀବନ୍ୟାସ ଶରରେ ଲକ୍ଷ୍ମଣ ବଞ୍ଚାଇଲେ ।
ସେଠାରୁ ବ୍ରହ୍ମାରୁଦ୍ର ନ ପାରିଲେ ରହି
ଯେ ଯାହା ଆଶ୍ରମକୁ ଚଳିଲେ ବେଗହୋଇ ।
ସେହିଠାରୁ ଶ୍ରୀରାମ ସମୁଦ୍ରକୂଳେ ଆସି
ବହୁତ ସ୍ତୁତି କଲେ କୁଶାସନେ ବସି ।
ପ୍ରସନ୍ନ ନୋହିବାରୁ କୁଶଶଯ୍ୟା କଲେ
ତିନିଦିନେ ତୋହର ପ୍ରସନ୍ନ ନ ଦେଖିଲେ ।
ତେଣୁ ସେ ଶ୍ରୀରାମ କ୍ରୋଧରେ ଉଠିଣ
କୋଦଣ୍ଡରେ ଗୁଣ ଦେଲେ ତତକ୍ଷଣ ।
ଅଗ୍ନିଶର ରାଇ କରନ୍ତି ଆଚମନ
ସପତସାଗରକୁ ଶୁଖାଇବାକୁ ମନ ।
ତେଣୁ ସେ ବେଦବର ଦେବଙ୍କ ପାଶେ ମିଳି
ଦେଖିଣ ବାସବ ଯେ କହନ୍ତି ମନେ ଭାଳି ।
ଶୁଣିଣ ବିଧାତା ମୋତେ ଯେ କହିଲେ
ଶ୍ରୀରାମଙ୍କୁ ଗଙ୍ଗାଦେବୀ ସନ୍ତୁଷ୍ଟ କରିଲେ ।
ତେବେ ସେ ଜଳଧି ରାଜା ପାଇବେ ପରାଣ
ତାଙ୍କଠାରୁ ଶୁଣି ମୁଁ ଅଇଲି ତୋ ପୁରେଣ ।
ଦୃଷ୍ଟାନ୍ତର କଥାମାନ ବୁଝାଇ କହିଲି
ସାଗର ନ ଶୁଖୁ ବେଳସୁଁ ବୋଇଲି ।
ଶୁଣିକରି ବରୁଣ ହେଲେ ତୋଷମନ
ବୋଇଲେ ଗଙ୍ଗାଯମୁନା ଯାଆନ୍ତୁ ବହନ ।
ଗଙ୍ଗାଯମୁନା ଶୁଣି ବେଗ ହୋଇଗଲେ
ରତ୍ନ ଅଳଙ୍କାର ସେ ଭୂଷଣ ହୋଇଲେ ।
କୁସୁମ ମାଳମାନ ମସ୍ତକେ ମଣ୍ଡନ
ଅଳକା ମଥାମଣି ଦିଶେ ଶୋଭାବନ ।
କର୍ଣ୍ଣରେ ମଲ୍ଲୀକଢ଼ି ହେମର କୁଣ୍ଡଳ
ମଧ୍ୟକର୍ଣ୍ଣ ଫିରିଫିରା ଦିଶଇ ମଞ୍ଜୁଳ ।
କଣ୍ଠରେ ଚାପସରି ମୁକୁତା ରତ୍ନମାଳି
ହୃଦରେ ପଦକ ରବିର ତେଜ ବଳି ।
ଚନ୍ଦ୍ରହାର ଢଳଇ ଯେ ତହିଁର ପାଶରେ
ହେମର କାଞ୍ଚୁଲା ଶୋଭେ ବକ୍ଷସ୍ଥଳେ ।
ବେନିହସ୍ତେ ହୀରା ମାଣିକ୍ୟ ଚୂଡ଼ି ଶୋଭା
ବିଦମୁଦି ବାହାରେ ଦିଶଇ ଚନ୍ଦ୍ରପ୍ରଭା ।
କଟିରେ କାଛଟା ଯେ ମେଖଳା ଶୋଭାବନ
ଯେସନ ଅରୁଣ ଦିଶଇ ତେସନ ।
ବଳାଝୁଣ୍ଟିଆ ପାହୁଡ଼ ନୂପୁର ପାଦରେ
ଜଗତ ମୋହିବ ସେ କଙ୍କଣ ଶବ୍ଦରେ ।
ଅମଳାଣ ଶାଢ଼ୀ ସେ ପିନ୍ଧିଲେ ଯତ୍ନ କରି
ପାର୍ବତୀଙ୍କି ଜିଣିଣ ଦିଶିଲେ ସୁନ୍ଦରୀ ।
ନୟନରେ ଅଞ୍ଜନ ମସ୍ତକେ ସିନ୍ଦୂର
ଦେଖିକରି ମୋହିତ ହୋଇବେ ସୁର ନର ।
ହେମମୟ ହାନ୍ଦୋଳାରେ ବସିଲେ ବେନିସଖୀ
ବନ୍ଦାପନା ସାମଗ୍ରୀ ସକଳ ପାଶେ ରଖି ।
ଷୋଳଗୋଟି ଦାସୀ ସେ ସଙ୍ଗରେ ଘେନିଣ
ହାନ୍ଦୋଳାମାନ ଦାସୀ କନ୍ଧରେ ବହିଣ ।
ମନ୍ଦିରୁ ବାହାର ହୋଇ ସିନ୍ଧୁରେ ପଶିଲେ
ଦେଖିଣ ନାରଦ ସ୍ୱର୍ଗପୁରେ ଗଲେ ।
ବେଦବର ଆଗରେ କହିଲେ ନାରଦ
ନମସ୍କାର କରିଣ କହିଲେ ସମ୍ବାଦ ।
ବୋଇଲେ ବରୁଣକୁ ମଣାଇଁ କହିଲି
ଗଙ୍ଗା ଯମୁନାକୁ ରାମପାଶକୁ ପେଶିଦେଲି ।
ଶୁଣିକରି ବିଧାତା ପରମତୋଷ ହେଲେ
ଶ୍ରୀରାମ ତୋଷ ହେବେ ବୋଲି ବିଚାରିଲେ ।
ଦେବତାଏ ଆନନ୍ଦ ହେଲେ ଶୁଣି କରି
ଦୁନ୍ଦୁଭି ବଜାଇ ନାଚିଲେ ଅପସରୀ ।
କିନ୍ନରୀ ନୃତ୍ୟ କଲେ ଗାନ୍ଧାର ରାଗେ ଗୀତ
ସ୍ୱର୍ଗରେ ଆନନ୍ଦ ଉତ୍ସବ ବହୁତ ।
ଏଥୁ ଅନନ୍ତରେ ଶୁଣ ଗୋ ହୈମବନ୍ତୀ
ଗଙ୍ଗା ଯମୁନା ଦୁହେଁ ସାଗର ପଶିଲେଟି ।
ଉତ୍ତର କୂଳରେ ଯାଇ ହୋଇଲେ ପ୍ରବେଶ
ହେମମୟ ହାନ୍ଦୋଳା ଚଳାଇ ସରସ ।
ଆଗରେ ବେନିଛତି ଧବଳବର୍ଣ୍ଣ ଦିଶି
ଶ୍ୱେତଚାମର ଢାଳନ୍ତି ଆଗରେ ରହି ଦାସୀ ।
ଆଲଟ ଚାମର ବିଞ୍ଚନ୍ତି ଦାସୀଗଣ
ହୁଳହୁଳି ଶବଦେ ଆଳାପ କଲେ ପୁଣ ।
ଦେଖି ଋକ୍ଷ ବାନର ଆଶ୍ଚର୍ଯ୍ୟିତ ହେଲେ
ଶ୍ରୀରାମଙ୍କ ଆଗେ ଯାଇ ବାରତା କହିଲେ ।
ବୋଇଲେ ଶୁଣ ହେ ଅଯୋଧ୍ୟା ଠାକୁର
ସାଗରୁ ଦୁଇ ହାନ୍ଦୋଳା ହୋଇଲା ବାହାର ।
ଛତ୍ରମାନ ଟେକାଇ ଚାମର ଆଗେ ପଡ଼ି
ଆଲଟା ବିଞ୍ଚଣା ଯେ ବିଞ୍ଚୁଛନ୍ତି ନାରୀ ।
ହୁଳହୁଳି ଶବଦରେ କମ୍ପୁଅଛି କୂଳ
ଦେଖି ଅଇଲୁ ଦେବ କିମ୍ଭୁତ ପ୍ରକାର ।
ଶୁଣିଣ ଶ୍ରୀରାମ ପରମ ତୋଷ ହେଲେ
ମାରୁତି ଅଙ୍ଗଦକୁ ଚାହିଁଣ ଆଜ୍ଞା ଦେଲେ ।
ବରୁଣ ଅଇଲା କିରେ ମୋର କଷ୍ଟ ଜାଣି
ଯାଇଁ ତାକୁ ପାଛୋଟି ଆଣରେ ତକ୍ଷଣି ।

ଅଙ୍ଗଦ ବୋଇଲା ଦେବ ନୁହଇ ବରୁଣ
ସ୍ତିରୀ ପ୍ରାୟ ଦିଶୁଛନ୍ତି ସେହି ବେନି ଜଣ ।
ଛତ୍ର ଧରିଛନ୍ତି ଯେ ଅପସରୀ ସ୍ୱର୍ଗର
ନୃତ୍ୟକାରୀମାନେ ଧରି ଅଛନ୍ତି ଚାମର ।
ବିଳାସୁଣୀମାନେ ହୁଳହୁଳୀ ଦେଇ
ଶୁଭ୍ର କେଶିମାନେ ଶଙ୍ଖ ଯେ ବଜାଇ ।
ଏମନ୍ତ ପ୍ରକାରେ ଦିଶନ୍ତି ଶୋଭାବନ
ପୁରୁଷ ନୁହନ୍ତି ଅଟନ୍ତି ସ୍ତିରୀଜନ ।
ଶ୍ରୀରାମ ବୋଇଲେ ହନୁ ଏକା ହୋଇ ଯାଅ
ଅଙ୍ଗଦ କୁମରକୁ ସଙ୍ଗତରେ ନିଅ ।
ଦୁଇ ମାୟା ସ୍ତିରୀ ହୁଅ ତତକ୍ଷଣ
ଶୁଣି ମାୟାବତୀ ହକାରି ହନୁମାନ ।
ଜାଣିଣ ମାୟାବତୀ ହୋଇଲେ ପ୍ରସନ୍ନ
ମାୟା ସ୍ତ୍ରୀ ହୋଇଲେ ଅଙ୍ଗଦ ହନୁମାନ ।
ଜଗତ ମୋହିନୀ ପ୍ରାୟ ସେ ହୋଇଲେ
ଶ୍ରୀରାମଙ୍କୁ ଓଳଗୀ ବେଗେ ଚଳିଗଲେ ।
ଗଙ୍ଗା ଯମୁନା ନିକଟେ ମିଳି ବେନିଜନ
ହୁଳହୁଳୀ ଦିଅନ୍ତି ଆନନ୍ଦ ମନେଣ ।
ବାନର ହୁଳହୁଳୀ ଗାଳତୁରୀ ବାଇ
ରାମତାଳୀ ହରିବୋଲ ଶବଦ କଲେ ତହିଁ ।
ହନୁ ଅଙ୍ଗଦ ଦୁହେଁ ଗଙ୍ଗାପାଶେ ମିଳି
ହାଦୋଳାର ପାଶରେ ଓଳଗିଲେ ବାଳି ।
ଯମୁନା ପୁଛିଲେ ରାମ ଲକ୍ଷ୍ମଣ କାହାନ୍ତି
ମାରୁତି ବୋଇଲେ ସେ ଗହନେ ରହିଛନ୍ତି ।
ଯମୁନା ବୋଇଲା ତାଙ୍କୁତ ଭେଟ ଯେ କରାଅ
କେଉଁଠାରେ ଅଛନ୍ତି ଦଶରଥଙ୍କ ପୁଅ ।
ମାରୁତି ବୋଇଲା ଆସ ମୋର ସଙ୍ଗେ
ଭେଟାଇବି ଶ୍ରୀରାମଙ୍କୁ ନେଇଣ ମୁଁ ଏବେ ।
ଏତେ କହି ଅଙ୍ଗଦ ହନୁ ଆଗେ ଯାଇଁ
ତାହାଙ୍କର ପଛରେ ହାନ୍ଦୋଳ ଚଳଇ ।
ଶ୍ରୀରାମ ଥିବା ସ୍ଥାନରେ ହେଲେ ପରବେଶ
ଦେଖିଲେ ବେନିନାରୀ କଉଶଲ୍ୟା ଶିଷ୍ୟ ।
ହାନ୍ଦୋଳାରୁ ଉତୁରି ହୋଇଲେ ବାହାର
ଦେଖିଲେ ଶ୍ରୀରାମ ଯେ ଗଙ୍ଗାର ଶରୀର ।
ବୋଇଲେ ଜନନୀ ତ ବିନୟ ମୋହର
କୋଦଣ୍ଡରୁ ଶର ଯେ କାଢ଼ିଲେ ରଘୁବୀର ।
ଗୁଣକୁ ଶୀତଳ କରି ତଳରେ ଥୋଇଲେ
ବେନି କରଯୋଡ଼ି ଚରଣେ ଶୋଇଲେ ।
ଦେଖିକରି ଲକ୍ଷ୍ମଣ ଭୂମିରେ ଲୋଟ ଗାଳି
ଉଠ ଉଠ ବୋଲିଣ ଧବଳଙ୍ଗୀ ବୋଲି ।

କରଯୋଡ଼ି ଆଗରେ ବିଜେ ରାମରାଜ
ତତପରେ ଉଠିଲେ ସୁମିତ୍ରା ତନୁଜ ।
ଧବଳାଙ୍ଗୀ ଦାସୀଙ୍କି କହିଲେ ଯେ ପୁଣ
ଧୋଇଦିଅ ରାମ ଲକ୍ଷ୍ମଣଙ୍କର ଚରଣ ।
ଶୁଣିଣ ବେନି ଦାସୀ ବେଗେ ଚଳିଗଲେ
ବାସ ପାଣି ନେଇଣ ଚରଣ ଧୋଇଲେ ।
ବୋଇଲେ ନିଶ୍ଚଳରେ ବସ ବେନି ଭାଇ
ତୁମ୍ଭଙ୍କୁ ଆଜି ବରୁଣ ରାଣୀ ଅର୍ଘ୍ୟ ଦେଇ ।
ଦେଖିଣ ରାମଲକ୍ଷ୍ମଣ ମୃଗଛାଲେ ବସି
ହନୁମନ୍ତ ଅଙ୍ଗଦ ଆଲଟ ଧରି ବିଞ୍ଚି ।
ଦେଖିଣ ଗଙ୍ଗା ଯମୁନା ଅର୍ଘ୍ୟ ଥାଳି ଘେନି
ଶ୍ରୀରାମଙ୍କୁ ଶିରରେ ଅର୍ଘ୍ୟ ଦେଲେ ଆଣି ।
ଶ୍ରୀରାମଙ୍କ ବନ୍ଦାପନା ସାରି ବେନି ନାରୀ
ଲକ୍ଷ୍ମଣଙ୍କୁ ବନ୍ଦାଣ ଯାଇ ବେଗେ କରି ।
ବନ୍ଦାପନା ସାରିଣ ଦୁର୍ବାକ୍ଷତ ଦେଲେ
ମଙ୍ଗଳ ଆରତୀ କରି ଅଲଗା ହୋଇଲେ ।
ବୋଇଲେ ଜଳଧି ରାଜଙ୍କୁ କିମ୍ପା କୋପ
ପିଲାଟି ଦିନରୁ ତ ବରିଅଛି ବାପ ।
ପିତାବଧ କରିବାକୁ ମନ କି ଏବେ ବଳେ
ଅନର୍ଥ କଥାମାନଙ୍କୁ ମନାସ ମନରେ ।
ଅସୁର ବଳିୟାର ଦେବତା ତାଙ୍କୁ ଡରି
ସକଳ ସମ୍ପଦ ଦେଇ ଚରଣ ସେବା କରି ।
ତେଣୁ ସେ ତୁମ୍ଭ ପାଶେ ଆସି ଦେବଗଣ
ରାବଣ ଜାଣିଲେ ଦଣ୍ଡିନେବ ପ୍ରାଣ ।
ନ ଜାଣି କ୍ରୋଧ କିମ୍ପା ହେଉଛ ରଘୁନାଥ
ଦେବ କାର୍ଯ୍ୟ କଲେ ସିନା ବୋଲାଇ ସମର୍ଥ ।
ଦାରା ବଇରୀକି ନାଶ କର ହେ ବହନ
ପିତା ଶତ୍ରୁ ଅଟଇ ରାବଣ ଦୈତ୍ୟ ଜାଣ ।
ଦୈତ୍ୟଙ୍କୁ ନାଶ କଲେ ଧରଣୀ ସ୍ଥିର ହୋଇ
ନାଗରାଜା ସମସ୍ତଙ୍କୁ ଉଶ୍ୱାସ ଲାଗଇ ।
ଆପଣାର କୀର୍ତ୍ତିକି ରାଗ କୋପ ମନ
ଶୁଣିଛ ଉପର ବଂଶେ ସାଗର ତିଆରିଣ ।
ଅଗସ୍ତି କୋପିବାରୁ ଭାଗୀରଥି ମୋତେ
ମୋହର ଧର୍ମପୁତ୍ର ହେଲା ଯେ ଯୁକତେ ।
ମୋ ପିତା ଘରୁ ଆଣିଣ କୂଳ ଉଦ୍ଧାରିଲେ
ସପତ ସାଗରକୁ ସେହି ପୂର୍ଣ୍ଣ କଲେ ।
ତେଣୁ ମୋ ସ୍ୱାମୀ ସଙ୍ଗେ ହେଲି ମୁହିଁ ମେଳ
ବିଧାତା ଆଣିଣ ଖଞ୍ଜିଲା ଯୋଗବେଳ ।
ମଙ୍ଗଳ ସୂତା ଦେଇ ବିଭା କରି ଗଲେ
ତେଣୁ ସେ ଜଳଧି ରାଜା ଆମ୍ଭଙ୍କୁ ଲଭିଲେ ।

ତେଣୁ ଜଳଧିରାଜାର ହେଲୁଁ ତିନିରାଣୀ
ଜନକ ଦୁହିତା ଅଟେ ଆମ୍ଭର ଦୁଲଣୀ ।
ପୂର୍ବରୁ ଦେଇ ତୁମ୍ଭରେ ପଶିଛୁ ଶରଣ
ସେ କଥାକୁ ଏବେ ପାଶୋର କିମ୍ପା ପୁଣ ।
ମାନବ ଅବତାରେ କି ଅଚେତା ହୋଇଲ
ପୂର୍ବର କଥାମାନ କି ଏବେ ପାସୋରିଲ ।
ରାମ ବୋଇଲେ ସମୁଦ୍ର କେମନ୍ତେ ଯିବି ତରି
କେମନ୍ତେ ସୈନ୍ୟବଳ ହେବେ ଏବେ ପାରି ।
କେମନ୍ତେ ରାବଣକୁ କରିବି ମୁଁ ହତ
ମୋର ସୈନ୍ୟବଳଙ୍କର ଭରସା ନ ପୂରେତ ।
ଧବଳାଙ୍ଗୀ ବୋଇଲେ ଶୁଣ ମୋ ବଚନ
ଜଳଧି ରାଜାକୁ ଧରାଇ ଆଣ ପୁଣ ।
ଅସୁର କୋପ କଲେ ଜଳଧି କହିବ
ଶ୍ରୀରାମ ଧରି ନେଲେ ବୋଲିଣ ବୋଲିବ ।
ସେ ଆସିଲେ ବାଟ ଯେ ମିଳିବ ତୁମ୍ଭଙ୍କୁ
ନୋହିଲେ ସିନ୍ଧୁ ତରି ନ ପାର ଯିବାକୁ ।
ଶୁଣିଣ ଶ୍ରୀରାମ ଯେ ବିସ୍ମୟ ମନ ହେଲେ
ଧବଳାଙ୍ଗୀ ଶ୍ରୀରାମଙ୍କୁ କହି କରି ଗଲେ ।
ସମୁଦ୍ର ଭିତରେ ଯାଇଣ ପଶିଲେ
ଦାସୀମାନେ ତାଙ୍କର ସଙ୍ଗେ ସଙ୍ଗେ ଗଲେ ।
ରତ୍ନାକର ପୁରରେ ହେଲେ ପରବେଶ
ଦେଖି କରି ବରୁଣ ମନରେ ହେଲେ ତୋଷ ।
କରଯୋଡ଼ି ଧବଳାଙ୍ଗୀ ବୋଇଲେ ବଚନ
ପ୍ରବୋଧ କରି ଅଇଲୁଁ ମାନବ ନାରାୟଣ ।
ଶୁଣିଣ ଜଳଧି ରାଜା ମନ ତୋଷ ହେଲା
ପୂର୍ଣ୍ଣିମାଚନ୍ଦ୍ର ପ୍ରାୟ ମୁଖ ବିକାଶିଲା ।
ଧବଳାଙ୍ଗୀ ବୋଇଲେ ଆସିବେ ରାମଦୂତ
ଯିବା ସଜରେ ତୁମ୍ଭେ ଥାଅ ହେ ପ୍ରାଣନାଥ ।
ଶୁଣିଣ ବରୁଣ ଯେ ତରଙ୍ଗ ମନ୍ତ୍ରୀକି ରାଇ
ବୋଇଲେ ଶ୍ରୀରାମଙ୍କୁ ବାଟ ଦିଅ କହି ।
ତେବେସେ ରାବଣକୁ ମାରିବେ ରାମରାଣ
ସେ କଥା ବିଚାର କର ହେ ମନ୍ତ୍ରୀ ପୁଣ ।
ତରଙ୍ଗ ବୋଇଲେ ସାଗର ଅକଳିତ
କେଉଁଠାରେ ସ୍ଥଳ ନାହିଁ ଆହେ ଜଳନାଥ ।
କଥା ଏକ ବଳ ଯେ ଅଛଇଁ ଆମ୍ଭର
ରାମଦୂତ ଆସିଲେ ଯିବା ତା ଛାମୁର ।
କଥାରେ ବଥାଇବାକୁ ଆମ୍ଭର ଅଛି ବଳ
ଆଗହୁଁ ବିଧାତା କରିଛି ସୁତ୍ରଧାର ।
ବିଶ୍ୱକର୍ମାର ବିର୍ଯ୍ୟେ ନଳ ଜାତ ହେଲା
କାଳେ ହେଁ ସେ ନଳ ପ୍ରବଳବନ୍ତ ହେଲା ।
ତହୁଁ ନଳଯାଇ ଭୂମିକି ଘାତ କରି
ଋଷିଙ୍କର ଦ୍ରବ୍ୟକୁ ଜଳରେ ଦେଲା ଭରି ।
ତେଣୁ କରି ଋଷିମାନେ ତାକୁ ବର ଦେଲେ
ଯେତେ ଦ୍ରବ୍ୟ ଛୁଇଁବୁ ନ ବୁଡ଼ିବ ଜଳେ ।
ସେହି ନଳ ଅଛି ତ ଶ୍ରୀରାମ ସଙ୍ଗରେ
ସେହି କଥା କଲେ ରାମ ତରିବେ ସିନ୍ଧୁ ହେଳେ ।
ପର୍ବତ ଆଣିଣ ତାକୁ ଛୁଆଁଇବେ ପୁଣ
ତେଣୁ ଅଚଳ ହୋଇବ ଭେଳା ଜାଣ ।
ଶୁଣିଣ ବରୁଣ ଯେ ପରମ ତୋଷ ହେଲେ
ଏଥରକୁ ମୁଁ ବର୍ତ୍ତିବି ବୋଲିଣ ବୋଇଲେ ।
ଶୁଣିଣ ପାର୍ବତୀ ବୋଲନ୍ତି ବଚନ
ସେଠାରୁ କିସ ହେଲା କହ ତ୍ରିଲୋଚନ ।
ଗଙ୍ଗା ଯମୁନା ଶ୍ରୀରାମଙ୍କୁ ବୋଧ କଲେ
କୋଦଣ୍ଡରୁ ଶରକୁ ଶ୍ରୀରାମ ସଂହରିଲେ ।
ରାବଣର ଭାଇ ଯେ ଅଟେ ବିଭୀଷଣ
ଶ୍ରୀରାମ ଚରଣରେ ପଶିଲା ଶରଣ ।
କୁଶଶଯ୍ୟା କରିବାରୁ ଭାବିଲା ବିଭୀଷଣ
ଏ ଅବା ନୁହନ୍ତିକି ପ୍ରଭୁ ନାରାୟଣ ।
ରାବଣକୁ ଏହୁ ଯେବେ ନ ପାରିବେ ମାରି
ଅକାରଣେ ମରଣ ତ ହୋଇଲା ମୋହରି ।
ଏହି ନାରାୟଣ ବୋଲି ଭରସା କରିଥିଲି
ଶରଣ ହୋଇ ପ୍ରାଣ ରଖିବି ଭାବିଥିଲି ।
ନାରାୟଣ ଦେବ ଯେବେ ଅବତାର ହେଲେ
ବରୁଣକୁ ସ୍ତବ କିମ୍ପା କରନ୍ତି ମନରେ ।
ନାରଦ କହିବା କଥା ନୁହେଁ ଯେ କାରଣ
ଏମନ୍ତ ବିଚାର କରେ ବିଭୀଷଣ ।
କୁଶଶଯ୍ୟାରେ ଥାଇ ଶ୍ରୀରାମ ଜାଣିଲେ
ଉଠିଣ କୋଦଣ୍ଡରେ ଶରକୁ ସନ୍ଧିଲେ ।
ଶର ବସାନ୍ତେ ସେ ଦେବତା ଆକୁଳ
ନାରଦ କହିବାରୁ ରାଣୀ ଗଲେ ଖର ।
ଧବଳାଙ୍ଗୀ ଶ୍ରୀରାମଙ୍କୁ କରିବାରୁ ତୋଷ
ବିଭୀଷଣ ଜାଣିଲା ଏ କମଳା ବିଳାସ ।
ନୋହିଲେ କି ଦେବନାରୀ ଏହାଙ୍କୁ ବଶ ହୋଇ
ଗଙ୍ଗା ଯମୁନା ଆସିକି ରାମ ପାଶେ କହି ।
ବିଚାରିଲା ମୋର ମନେ ବିଚାର ଯା କଲି
ସେ କଥାରେ ପାତକ ମୁଁ ଅନେକ ଅରଜିଲି ।
ମୋହର ଗର୍ବମାନ ଜାଣିଣ ରାମରାଣ
କୋଦଣ୍ଡ ଧରି ତେଜୋବନ୍ତ ହେଲେ ଜାଣ ।
ଏବେ ତ ଜଣାଗଲା ସାକ୍ଷାତେ ବାସୁଦେବ
ରାବଣକୁ ନିଶ୍ଚୟ ମାରିବେ ରାଘବ ।

ଏମନ୍ତ ବିଚାର ସେ ହୃଦଗତେ କଲା
ବରୁଣ ପୁରକୁ କିଏ ଯିବ ବିଚାରିଲା ।
ପାର୍ବତୀ ବୋଇଲେ କଥାଏ ରହିଲା
ସେହିକଥା ଗୋଟି ମୋର ମନରେ ପଡ଼ିଲା ।
ଅଙ୍ଗଦ ମାରୁତି ଯେ ହେଲେ ସ୍ତିରୀ ପୁଣ
ରାମ କହିବାରୁ କି ପୂର୍ବରୁ ଥିଲା ପୁଣ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଯେତେବେଳେ ମାରୁତିକି ଦେବତାବର ଦ୍ୟନ୍ତି ।
ବୋଇଲେ ହନୁମନ୍ତରେ ଭେଟିବୁ ବାସୁଦେବ
ତାଙ୍କୁ ଭେଟିଲେ ବଳ ତୋତେ ଯୋଗହେବ ।
ସେ ଯାହା କହିବେ କରିବୁ ତାହା ପୁଣ
ସେ କଥାରେ ଜ୍ଞାନ ରଖିଥିବୁ ଜାଣ ।
ଶୁଣିକରି ମାରୁତି ହେତୁ ରଖିଥିଲା
ଶ୍ରୀରାମର କଥାକୁ ଅବଜ୍ଞା ନ କଲା ।
ଯେଣୁ ସେ ରାମ ବୋଲେ ହେଲା ସ୍ତିରୀ ଜାଣ
ଗଙ୍ଗାଙ୍କୁ ଦେଖି ନିଜ ରୂପ ହେଲା ହନୁମାନ ।
ପାର୍ବତୀ ବୋଇଲେ ଅଙ୍ଗଦ କଥା କହ
ସେ କିମ୍ପା ସ୍ତିରୀ ରୂପ ହୋଇଲା ହେ ପ୍ରିୟ ।
ଈଶ୍ୱର ବୋଇଲେ ମଲାବେଳେ ତା ପୁଅର
ଅଙ୍ଗଦକୁ କହିଲା ଶୁଣରେ କୁମର ।
ଏ ରାମ ନାରାୟଣ ମାନବ ଅବତାର
ମୋତେ ମାରି ମୋକ୍ଷଗତି ଦେଲେ ରଘୁବୀର ।
ଏ ରାମର ବୋଲରେ ନିୟତରେ ଥିବୁ
ସେ ଯାହା କହିବେ ସେ କଥା କରିବୁ ।
ତେବେ ତୁ ଅଚିନ୍ତେ ଅମର ପୁର ଯିବୁ
ସେତେବେଳେ ମୋତେରେ କୁମର ଦେଖିବୁ ।
ସେ କଥାକୁ ଅଙ୍ଗଦ ନିୟତ କରି ମନେ
ଶ୍ରୀରାମର ବଚନ କରଇ ସାବଧାନେ ।
ତେଣୁ ସେ ରାମ ବୋଲେ ସ୍ତିରୀବେଶ ହେଲା
ଗଙ୍ଗାଙ୍କୁ ଦେଖିବାରୁ ନିଜ ରୂପ ପାଇଲା ।
ପାର୍ବତୀ ବୋଇଲେ ସେଠାରୁ କିସ କରି
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ ।
ଗଙ୍ଗା ଯେ ଯମୁନା କହି ଚଳିଗଲେ
ସେଠାରୁ ଦାଶରଥି ମନେ ବିଚାରିଲେ ।
ବୋଇଲେ ବରୁଣ ରାଜାର ପୁରକୁ
କିଏ ସେ ଯିବ ବୋଲି ଭାବିଲେ ମନକୁ ।
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ
ସୁଗ୍ରୀବର ବିଭୀଷଣ ଅଛ ହେ ସକଳ ।
କିଏ ଯାଇପାରିବ ବରୁଣ ପୁରକୁ
ଡାକିଣ ଆଣିବ ଜଳଧି ରାଜାକୁ ।

ସମସ୍ତେ ବୋଇଲେ ଜମ୍ବେବକୁ ପୁଛ
ପ୍ରାଚୀନ ଅନେକ କାଳର ସେହିତ ।
ସମୁଦ୍ର ମନ୍ଥନ କାଳରୁ ଛନ୍ତି ରହି
ଭଣ୍ଡାର ଅଧିକାରୀ ସ୍ୱର୍ଗରେ ଥିଲେ ହୋଇ ।
ସେହି ସେ କହିବେ ଯାହାକୁଟି ଜାଣ
ଅବଶ୍ୟ ଯିବ ସେ ଆସିବ ବରୁଣ ।
ଶୁଣି କରି ରଘୁନାଥ ଜମ୍ବେବକୁ ପଚାରି
କେ ଯିବ ମନ୍ତ୍ରୀବର କହ ହେ ବିଚାରି ।
କେମନ୍ତରୂପେ ବରୁଣ ଆସେ ଏ ସ୍ଥାନର
ଜମ୍ବେବ ବୋଇଲେ ଶୁଣ ରଘୁବୀର ।
ସାଗରର ମଧ୍ୟରେ ବରୁଣର ସ୍ଥାନ
ଚଉଦ ଲକ୍ଷ ଯୋଜନ ଏଠାକୁ ଅଟେ ଜାଣ ।
ଦଧି ସମୁଦ୍ର କୂଳରେ ବରୁଣର ଘର
ସେଥି ଜଳଧି ରାଜା କରିଛି ନବର ।
ହେମମୟ ପୁର ଯେ ଅଟଇ ତାହାର
ସେ କୂଳକୁ ଯିବାକୁ ସ୍ଥଳ ନାହିଁ ଜଳ ।
ରତ୍ନାକର ନବରେ ସକଳ ରତ୍ନଠୂଳ
ତେଣୁ କରି ହେମାଳ ଅଟଇ ସେ ପୁର ।
ଶ୍ରୀରାମ ବୋଇଲେ ରାବଣ କେମନ୍ତେ ଗଲା
ଜମ୍ବେବ ବୋଇଲେ ତାର ପୁଷ୍ପକ ଯାନ ଥିଲା ।
ଅକ୍ଷୟ ଯାନ ସେହୁ ଚାରି ଯୁଗେ ଥାଇ
ଜଳ ସ୍ଥଳ ଅନଳେ ଗମନ କରି ଯାଇ ।
ଯହିଁ ମନ କରିବ କ୍ଷଣକେ ତହିଁ ମିଳି
ସେ ଯାନ ବସି ବରୁଣକୁ ଜିଣିଲା ଦଶମୌଳି ।
ଶ୍ରୀରାମ ବୋଇଲେ କିସ ଉପାୟ ଏବେ କରି
ଜମ୍ବେବ ବୋଇଲେ ଦେବ କେହି ନୁହେଁ ସରି ।
କେବଣ କଥାଏ ମନକୁ ମୋର ପାଇ
ପବନ ନନ୍ଦନ ତହିଁ ଏକା ପାରେ ଯାଇ ।
ଶ୍ରୀରାମ ବୋଇଲେ ସେ ଲଙ୍କାଗଡ଼ ଗଲା
ବହୁତ ପଥଶ୍ରମ ସେଥିରେ ପାଇଲା ।
ତାର ସଙ୍ଗେ ଦୈତ୍ୟଗଣ କଳି କଲେ ପୁଣ
ସେଠାରୁ ଉବୁରି ଅଇଲା ହନୁମାନ ।
ଅନ୍ୟ କେହି ହୋଇଥିଲେ ନ ଆସନ୍ତା ଆଉ
ଏବେ ସେ ହେମପୁରକୁ ଯିବ କେହୁ ।
ଜମ୍ବେବ ବୋଇଲେ ଦେବ ମୋରଠାରୁ ଶୁଣ
ମାରୁତି କପାଳେ ବ୍ରହ୍ମଅଗ୍ନି ଅଛି ଜାଣ ।
ତେଣୁ କରି ହେମ ବାଧା ନ କାଟିବ ତାକୁ
ଅନ୍ୟ କେହି ପାରି ନ ପାରେ ସେ ସ୍ଥାନକୁ ।
ଶୁଣିଣ ଶ୍ରୀରାମ ଯେ ମାରୁତିକି ଚାହିଁ
କରଯୋଡ଼ି ହନୁମନ୍ତ ଆଗେ ଉଭା ହୋଇ ।

ବୋଇଲା ମୁହିଁ ଯିବି ରତ୍ନାକର ପାଶ
ମୋରଠାରେ ଭୋଦେବ ହୁଅ ଏ ସନ୍ତୋଷ ।
ଶ୍ରୀରାମ ବୋଇଲେ ମାରୁତି ବେଗେ ଯିବୁ
କୌଣସି କଥାକୁ ବିଚାର ନ କରିବୁ ।
ଜଳଧି ରାଜନକୁ ଆଣିବୁ ମୋ ପାଶକୁ
ନ ଆସିଲେ ଧରି କରି ଆଣିବୁ ତାହାକୁ ।
ଶୁଣିଣ ହନୁମନ୍ତ ଓଳଗ ମେଲାଇଲା
ଶ୍ରୀରାମଙ୍କ ଚରଣ ତଳରେ ଲୋଟିଲା ।
ଦେଖିକରି ଶ୍ରୀରାମ ହନୁକୁ କୋଳ କଲେ
ଖର୍ପ ଧରି ଯାଅ ବୋଲିଣ ବୋଇଲେ ।
ମାନ୍ୟଧର୍ମ କରିବୁ ତୁ ବରୁଣ ରାଜାକୁ
ସେ ମୋହର ପିଅର ଅଟେ ନ ଲଙ୍ଘିବୁ ତାଙ୍କୁ ।
ଶୁଣି କରି ମାରୁତି ପରମ ତୋଷ ହେଲା
ଖର୍ପ ରୂପ ଧରିଣ ସିଂହରଡ଼ି ଦେଲା ।
ଲକ୍ଷ୍ମଣଙ୍କୁ ନମସ୍କାର କଲା ହନୁମାନ
ବିଭୀଷଣଙ୍କୁ ଓଳଗି ସୁଗ୍ରୀବଙ୍କୁ ମାନ୍ୟ ।
ପଚିଶ ଯୂଥପତିଙ୍କୁ ମାନ୍ୟ ଧର୍ମ କଲା
ଅଙ୍ଗଦକୁ ଚାହିଁଣ ବାହାର ହୋଇଲା ।
ଖର୍ପ ଧରିଣ ଶୂନ୍ୟରେ ଉଡ଼ିଯାଇ
ପଚିଶ ଯୂଣ ପର୍ଯ୍ୟନ୍ତେ ଉପରେ ଉଠଇ ।
ଶୂନ୍ୟରେ ହନୁମନ୍ତ କରଇ ଗମନ
ଧୀରେ ଧୀରେ ହୋଇଣ ଚଳଇ ହନୁମାନ ।
ଦେଖିଣ ଦେବତାଏ ପରମତୋଷ ହେଲେ
ହନୁମାନ ଶିରରେ କୁସୁମ ବରଷିଲେ ।
ଅପ୍‌ସରୀମାନେ ଯେ ନୃତ୍ୟରଙ୍ଗ କରି
କିନ୍ନର ଗଣ ହୁଳହୁଳି ଧ୍ୱନୀ କରି ।
ବୃହସ୍ପତି ଶୂନ୍ୟରେ ମଙ୍ଗଳ ପାଠ କରି
ବେଦବର ଚାରିବେଦ ପଢ଼ନ୍ତି ଉଚାରି ।
ସୂର୍ଯ୍ୟଙ୍କର ଅଷ୍ଟକ ପଢ଼ନ୍ତି ଶୁକ୍ରଦେବ
ରୁଦ୍ର ପରାୟଣ ଯେ ପଢ଼ନ୍ତି ଚନ୍ଦ୍ରଦେବ ।
ଦେବଙ୍କର ହରଷରେ ହନୁ ଚଳିଯାଇ
ଯେସନେ ଉପରେ ଚନ୍ଦ୍ରମା ଗମଇ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାବଣର ଚାର ଥିଲେ ଶ୍ରୀରାମଙ୍କ କତି ।
ବାନର ସ୍ୱରୂପ ଧରିଣ ସେ ପୁଣ
ହନୁମନ୍ତ ଯିବାରୁ ଯେ ଦେଖିଲେକ ଜାଣ ।
ଲଙ୍କାଗଡ଼କୁ ସେ ବେଗେ ଚଳିଗଲେ
ରାବଣର ଆଗରେ ବାରତା ଜଣାଇଲେ ।
ଶିରରେ କରଦେଇ କହଇ ବଚନ
ଭୋଦେବ ଲଙ୍କେଶ୍ୱର ଆଜିର ବିଧାନ ।

ଜମ୍ବୁଦ୍ୱୀପକୁ ମୁହିଁ ଯାଇଥିଲି ଜାଣ
ମାୟାରୂପ ଧରି ବାନର ହେଲି ପୁଣ ।
ଶ୍ରୀରାମର ସୈନ୍ୟବଳ ବୁଲିଣ ଦେଖିଲି
ଅନେକ ପ୍ରତିଜ୍ଞା ଯେ ସେଠାରେ ଶୁଣିଲି ।
କେ ବୋଲନ୍ତି ମାରିବା ସକଳ ଅସୁର
କେ ବୋଲେ ଅସୁରୀଙ୍କ ସଙ୍ଗେ କରିବା ବିହାର ।
କେ ବୋଲେ ଲଙ୍କାଗଡ଼କୁ ଉପାଡ଼ି ଆଣିବା
କେ ବୋଲନ୍ତି ସମୁଦ୍ର ଭିତରେ ପକାଇବା ।
କେ ବୋଲନ୍ତି ଚୂର କରିବା ଲଙ୍କାପୁର
କେ ବୋଲନ୍ତି ରାବଣର ମାରିବା ସୈନ୍ୟବଳ ।
କେ ବୋଲେ ଅଶୋକ ବନରୁ ଫଳ ଖାଇବା
ରାବଣର ପୁତ୍ର ନାତିଙ୍କି ମାରିବା ।
ଏମନ୍ତ ବିଚାର କରନ୍ତି ଋକ୍ଷ କପି
ସେଠାରେ ଥାଇଣ ମୁଁ ଶୁଣିଲି ସଞ୍ଚପି ।
ଶ୍ରୀରାମ ବରୁଣକୁ ଅନେକ ସ୍ତୁତି କଲେ
କେବେ ହେଁ ବରୁଣ ଯେ ପ୍ରସନ୍ନ ନୋହିଲେ ।
ବରୁଣ ଆସିବାର ମନରେ ବିଚାରି
କ୍ରୋଧରେ କୋଦଣ୍ଡ ଧଇଲେ ଚାପଧାରୀ ।
ବୋଇଲେ ସପତ ସାଗର ଶୁଖାଇବି
ବରୁଣ ରାଜାଙ୍କୁ ମୁଁ ପ୍ରାଣରେ ମାରିବି ।
ସାଗର ଯାକରେ ମୁଁ କରିବି ଗ୍ରାମ ଘର
ଅସୁରଙ୍କୁ ମାରିଣ କରିବି ଛାରଖାର ।
ରାବଣର ବଂଶରୁ ମୁଁ ଗୋଟିଏ ନ ରଖିବି
ରାବଣ ଭାରିଯାକୁ ମାହାରକୁ ଦେବି ।
ବଧୂ ଦୁହିତାମାନଙ୍କୁ ଦେବି ମୁଁ ଚାଣ୍ଡାଳେ
ତେବେ ମୋର କଥା ଯେ ରହିବ କାଳେ କାଳେ ।
ଏତେ କଥା କହିଣ କୋଦଣ୍ଡେ ଶରଯୋଚି
ତିନିପୁର ମଧ୍ୟରେ କମ୍ପେ ବସୁମତୀ ।
ସମୁଦ୍ର ଲହରୀ ଯେ ହୋଇଲାକ ସ୍ଥିର
ଦେଖି ଦେବତାମାନେ ଆନନ୍ଦ ମନର ।
ତେଣୁ ଗଙ୍ଗା ଯମୁନା ସମୁଦ୍ର ବାହାରିଲେ
ଶ୍ରୀରାମଙ୍କ ଶିରରେ ଅର୍ଘ୍ୟ ନେଇ ଦେଲେ ।
ରାମଙ୍କୁ ବୋଇଲେ ନକର ତୁମ୍ଭେ କୋପ
ବରୁଣକୁ ଧରିଣ ଆଣ ପେଶି ଲୋକ ।
ଏହା ଶୁଣି ରାମ ହନୁମନ୍ତକୁ ପେଶିଲେ
ବରୁଣ ତୁ ଧରି ଆଣରେ ବୋଇଲେ ।
ଶୁଣି କରି ହନୁମନ୍ତ ବହନ ଚଳିଗଲା
ସେ ଯିବାର ଦେଖିଣ ଅଇଲି ମୁଁ ଭଲା ।
ତୁମ୍ଭର ଆଗରେ ଆସିଣ କହିଲି
ଶ୍ରୀରାମ ଲଙ୍କାକୁ ଆସିବେ ଉପାୟ ଦେଖିଲି ।

ଶୁଣିକରି ରାବଣ ବିସ୍ମୟ ହୋଇଲା
ହେମାଳ ପୁରକୁ ମାରୁତି କେହ୍ନେ ଗଲା ।
ଦେବାସୁର ଯହିଁକି ନକରନ୍ତି ଗମନ
ହେମରେ ଅମର ଦେବତା ନିଜନ ।
ଚାର ଜଣାଇଲା ଶୁଣ ଦଣ୍ଡଧାରୀ
ବାଳିର ମନ୍ତ୍ରୀ ଯେ ଜାମ୍ବେବ ହିତକାରୀ ।
ଶ୍ରୀରାମଙ୍କୁ ହନୁ ଯେ କହିଲା ଛେଦଭେଦ
କିଷ୍କିନ୍ଧ୍ୟାରେ ନୃପତି ସୁଗ୍ରୀବ ରାଜଦେବ ।
ବୋଇଲା ସେ ହନୁ ଜନମ କାଳୁ ଜାଣ
ବଜ୍ରଅଙ୍ଗ ଗୋଟି ହେ ଅଟେ ହନୁମାନ ।
ଲାଙ୍ଗୁରେ ବାସୁକି କଣ୍ଠରେ ସରସ୍ୱତୀ
ମସ୍ତକରେ ବ୍ରହ୍ମଅଗ୍ନି ବେଳହୁଁ ତା ଅଛି ।
ଜାମ୍ବେବ କହିବାର ଶ୍ରୀରାମ ତୋଷ ହେଲେ
ବରୁଣକୁ ଧରିଆଣ ହନୁକୁ କହିଲେ ।
ଦେବତା ଅସୁର ଯେବେ ବିରୋଧ ତୋତେ କରି
ମାରିବୁ ତାଙ୍କୁ ଉପରୋଧ ଛାଡ଼ି କରି ।
ବଳବନ୍ତ ହେଲେରେ ସୁମରିବୁ ମୋତେ
ନାରାୟଣ ଶର ମୁଁ ପେଶିବି ତ୍ୱରିତେ ।
ତେବେ ସେ ତୋର ରିପୁ ହୋଇବେ ଯେ ନାଶ
ଶୁଣିଣ ରାମ ଭାଇ କହିଲେ ସନ୍ଦେଶ ।
ବୋଇଲେ ସୁମରିବାଯାଏଁ କିମ୍ପା ଯିବ
ଶାରଙ୍ଗ ଧନୁ ନେଉ ପବନର ଆତ୍ମଜ ।
ଶ୍ରୀରାମ ବୋଇଲେ ଏକଥା ନୁହେଁ ଭଲ
ନାରାୟଣ ଧନୁ କେହ୍ନେ ନେବ ହନୁବୀର ।
ଲକ୍ଷ୍ମଣ ବୋଇଲେ ଏ ଦ୍ୱିତୀୟ ଗରୁଡ଼
ତୁମ୍ଭଙ୍କୁ କନ୍ଧେ ବହି ନିଏ ଏହି ଦୃଢ଼ ।
ଶୁଣିଣ ଦାଶରଥି ସନ୍ତୋଷ ହୋଇଲେ
ଶାରଙ୍ଗ ଧନୁଗୋଟି ହନୁକୁ ସମର୍ପିଲେ ।
ସେ ଧନୁର ତେଜ ଯେ ଅଗ୍ନିସମ ଜାଣ
ସେ ଧନୁ ଘେନି ହନୁ କଲାକ ଗମନ ।
ରାବଣ ବୋଇଲା ଯାଇ ଧନୁ ଧରି
କି କରି ପାରିବ ମୋତେ ରାମ ଦଣ୍ଡଧାରୀ ।
ରତ୍ନାକର ପୁରକୁ ଯିବାକୁ ନାହିଁ ବଳ
ମାଂସ ମିଳାଇଣ ପଡ଼ିବ ସିନ୍ଧୁଜଳ ।
ଡରିଣ ରାବଣ ସେ ପୁରକୁ ନ ଗଲା
ପୁତ୍ରନାତି ସୈନ୍ୟବଳ କାହାକୁ ନ ପେଷିଲା ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ହନୁମନ୍ତ ଗଲା ଯେ ବରୁଣ ଭୁବନ ।
କେମନ୍ତ ଉପାୟରେ ତରିଲା ଜଳସ୍ଥଳ
ସେକଥା ମୋର ଆଗେ କହ ହେ ଈଶ୍ୱର ।

ଈଶ୍ୱର ବୋଇଲେ ଶୁଣ ଶାକମ୍ଭରୀ
ବେନିଦିନ ବେନି ରାତ୍ର ହନୁମାନ ଚଳି ।
ଦଧି ସମୁଦ୍ରରେ ହେଲା ପରବେଶ
ଜଳସ୍ଥଳ ଦେଖିଗଲା ପବନର ଶିଷ୍ୟ ।
ଲତାଗିରି ବନ ଦିଗମାନ ଦେଖି
ମନରେ ଆନନ୍ଦ ହୋଇଲା ମାରୁତି ।
ବିଚାରିଲା ଏଥିରେ ଅଛି ସ୍ଥଳକୂଳ
ଏମନ୍ତ ବିଚାରି ସେ ଚଳିଲା ଚଞ୍ଚଳ ।
ରତ୍ନମୟ ଦ୍ୱୀପରେ ସେ ହେଲା ପରବେଶ
ଦେଖିଲା ବନଲତା ଅଛଇଁ ବିଶେଷ ।
ଦେଖିଲା ଦିବ୍ୟଫଳ ପାଚିଅଛି ତହିଁ
ସେ ଫଳ ଭୁଞ୍ଜିଣ ହନୁ ତୋଷମନ ହୋଇ ।
ଦେଖିକରି ତୋଟାଳିଆ ବେଗେ ଆସି ଧାଇଁ
ବୋଲନ୍ତି ମର୍କଟ ଏ ପୁରେ ପଶିଲୁ କିମ୍ପାଇଁ ।
ପ୍ରତିଦିନ ଗୋଟାଇ ଦେବଙ୍କ ପୁରେ ମିଳୁଁ
ସୁପକ୍ୱ ଫଳ ତୁହି ଖାଉ କି ହେତୁରୁ ।
ହିମବନ୍ତ ପୁରରେ ତୁ ପଶିଲୁ କେମନ୍ତେ
ନିଅତ ଖୋଜିକିରେ ଆସିଅଛୁ ଏଥେ ।
ଶୁଣିଣ ମାରୁତି ବୋଇଲେ ବଚନ
କାହାର ପୁର ଅଟଇ ଯେ ପୁଣ ।
ଏହି ରତ୍ନପୁରୀର ରାଜା କେ ଅଟଇ
ଦେବତା ଅସୁର କହରେ ବୁଝାଇ ।
ତୋଟାଳିଆ ବୋଇଲେ ଏପୁର ବରୁଣର
ଜଳଧିରାଜା ଏଥି ଅଟେ ନୃପବର ।
ସହସ୍ର ଯୁଣ ଯେ ଅଟଇ ଏ ପୁରଟି
ସବୁ ଯେ ରତ୍ନମୟ ନିର୍ମିତ ଅଛି ସୃଷ୍ଟି ।
ହେମରତ୍ନେ ନିର୍ମିତ ହୋଇଛି ଏ ପୁର
ବାରଶତ ଦାଣ୍ଡ ଯେ ହୋଇଛି ଏଥିର ।
ପାଞ୍ଚସହସ୍ର କନ୍ଦି ବିକନ୍ଦି ଗଳି ଅଛି
ବାର ସାଗର ଘର ନିର୍ମାଣ ହୋଇଛି ।
ଏଥିରେ ଜଳଧି ରାଜନର ଘର
ସପତ ସାଗରରେ ତାର ଅଧିକାର ।
ମତ୍ସ୍ୟ ମଗର କୁମ୍ଭୀର କଚ୍ଛପ ଏଥିପାଇଁ
ଦେବାସୁରେ ଏପୁରକୁ ନ ଆସନ୍ତି କେହି ।
ଏବେ ତ ବିପରୀତ ଦେଖିଲୁ ତୋତେ ପୁଣ
ତୁ ଛାର ବାନରରେ ଆସିଲୁ କାହୁଁ ପୁଣ ।
ହେମଲାଗି ତୋରରେ ଶରୀର ନ ସଢ଼ିଲା
ପାଷାଣରୁ ଅଧିକ ତୋ ଶରୀରଟି ଭଲା ।
ନିଶ୍ଚୟ ମରଣ ପାଇବୁ ଆଜ ତୁହି
କିଏ ଇଷ୍ଟ ଦେବତା ସ୍ମର ବେଗ ହୋଇ ।

ହନୁମନ୍ତ ବୋଇଲା କହଯା ରାଜାଙ୍କୁ
ଆଉ ବେଳେ କହିଲେ ମାରିବି ତୁମ୍ଭଙ୍କୁ ।
ଏହା ଶୁଣି ତୋଟାଳିଆ ଅନେକ ଗାଳି ଦେଲେ
ନିର୍ଲ୍ଲଜ ଆମ୍ଭ ତୋର ବୋଲିଣ ବୋଇଲେ ।
ହନୁ ଶୁଣିଣ ବୋଇଲା ସେମାନଙ୍କୁ
ତୁମ୍ଭେ ତ ପ୍ରବଳ ହେଉଛ ମୋହ ଉପରକୁ ।
ତୁମ୍ଭେ ଯାଅ ଯାଅରେ ବରୁଣ ଆଗେ କହ
କହି ଲାଙ୍ଗୁଳ ବେଢ଼ାଏ ପବନର ପୁଅ ମୁଁ
ବାରସହସ୍ର ତୋଟାଳିଆ ଏକଠାବେ ଥିଲେ
ତାହାଙ୍କୁ ଲାଙ୍ଗୁଳରେ ବାନ୍ଧିଲା ଏକାବେଳେ ।
ଦେଖିକରି ଉବୁରା ଲୋକେ ପଳାଇଲେ
ବରୁଣ ରାଜା ଆଗେ ପ୍ରବେଶ ହୋଇଲେ ।
ବୋଇଲା ଏକଇ ମର୍କଟ ଆସିଣ
ନନ୍ଦନ ବନରେ ଫଳ ଖାଏ ପୁଣ ।
ପକ୍ୱ ଫଳମାନ ସବୁ ତୋଳିଣ ଖାଇଲା
ଆମ୍ଭେ କହିବାରୁ ଉତ୍ତର ସେ ଦେଲା ।
ବୋଇଲା ବାପକୁ କହରେ ତୁମ୍ଭେ ଯାଇ
ଶୁଣି କରି ଆମ୍ଭେ ତାକୁ ବହୁତ ଗାଳି ଦେଇ ।
ତେଣୁ ସେ ବାନର କ୍ରୋଧଭର ହେଲା
ବାରସହସ୍ର ତୋଟାଳିଆଙ୍କୁ ଲାଞ୍ଜରେ ବାନ୍ଧିଲା ।
ଯେଉଁ ପୁରକୁ ଦେବତା ଅମର ଭୟ କରେ
ଅସୁରେ ନ ପଶନ୍ତି ହିମ ପ୍ରଭାବରେ ।
ସେ ପୁରେ ମର୍କଟ ପଶିଲା ଆସି ଏବେ
ଏକଥା କେମନ୍ତ ପ୍ରକାର ବୁଝି ଦେବେ ।
ବରୁଣ ବୋଇଲା ଗଙ୍ଗାଙ୍କ ମୁଖ ଚାହିଁ
ପବନ କୁମରକି ମାରୁତି ଅଟେ ସେହି ।
ଶ୍ରୀରାମଙ୍କ ଆଜ୍ଞାରେ ଆସିଲା ମୋର ପୁର
ନୋହିଲେକ ସମର୍ଥ ଆସନ୍ତା ଏ ପୁର ।
ତୁମ୍ଭେ ଯାଇ ତାହାକୁ ଶାନ୍ତି କରି ଆଣ
ତୋଟାଳିଙ୍କୁ କ୍ରୋଧ ବୀର ହନୁମାନ ।
ଏହା ଶୁଣି ଧବଳାଙ୍ଗୀ ବେଗେ ଚଳିଗଲା
ନନ୍ଦନ କାନନରେ ପ୍ରବେଶ ହୋଇଲା ।
ଦେଖିଲେ ମାରୁତି ବସିଛି ସେ ବନରେ
ପକ୍ୱ ଫଳମାନ ଖାଉଛି ଧରି ବେନି କରେ ।
ଗଙ୍ଗାକୁ ଦେଖି ହନୁ ବେଗେ ଲୋଟଗାଳି
ଦେଖିଣ ଧବଳାଙ୍ଗୀ କୋମଳ ଭାଷା କରି ।
କିହୋ ହନୁମନ୍ତ ତୁ କିମ୍ପା ହେଉ ରାଗ
ତୋଟାଳିଆଙ୍କୁ ଲାଙ୍ଗୁଳେ ବାନ୍ଧିଦେଲୁ ବେଗ ।
ମାରୁତି ବୋଇଲା ଶୁଣ ଠାକୁରାଣୀ
ବେନିଦିନ ବେନିରାତ୍ର ଆହାର ନାହିଁ ପୁଣି ।
ଶୂନ୍ୟରେ ଯାଉ ଯାଉ ଏ ବନ ଦେଖିଲି
ତେଣୁ ଏ ବନରେ ଆସିଣ ମିଳିଲି ।
କ୍ଷୁଧା କରିବାରୁ ମୋତେ ଖାଇଲି ଫଳ ବସି
ନିଷେଧ କଲେ ତୋଟାଳିଆମାନେ ଆସି ।
ଅନେକ ଭର୍ତ୍ସନା କରି ମୋତେ ଗାଳି ଦେଲେ
କାଣ୍ଡ କୋଦଣ୍ଡ ଧରି ମାରିତ ମନ କଲେ ।
ତେଣୁ ମୁଁ ଲାଙ୍ଗୁଳରେ କରିଛି ବନ୍ଧନ
ତୁମ୍ଭର ବଳ ଥିଲେ ଫିଟାଇ ନିଅ ପୁଣ ।
ଶୁଣିଣ ଧବଳାଙ୍ଗୀ ହସିଣ ବୋଇଲେ
ଆମ୍ଭର ବଳ ନାହିଁ ମାରୁତି ତୋ ତୁଲେ ।
ପବନ ନନ୍ଦନ ତୁ ରେ ଶ୍ରୀହରିର ଦାସ
ତୋ ସଙ୍ଗେ କଳି କଲେ ପାଇବୁ କି ଯଶ ।
ଶୁଣିକରି ମାରୁତି ଲାଞ୍ଜ ଫେଡ଼ିଦେଲା
ପଳାଇଲେ ତୋଟାଳିଆ ଭୟରେ ଆକୁଳା ।
ଧବଳାଙ୍ଗୀ ବୋଇଲେ ରାଜାର ପାଶେ ଚାଲ
କେତେ କାର୍ଯ୍ୟରେ ଆସିବ ପବନ ଦୁଲାଳ ।
ଶୁଣିଣ ମାରୁତି ଧବଳାଙ୍ଗୀର ବାଣୀ
ଆନନ୍ଦ ହୋଇ ଚରଣେ ନମିଲାକ ପୁଣି ।
ଗଙ୍ଗାକୁ କହିଲା ଜନନୀ ଆଗେ ଚାଲ
ଶୁଣିଣ ଧବଳାଙ୍ଗୀ ହୋଇଲେ ବାହାର ।
ଆଗରେ ମେରୁ ଦୁହିତା ପଛରେ ହନୁମନ୍ତ
ହରଷରେ ଚଳଇ ପବନର ସୁତ ।
ବରୁଣର ପୁରରେ ହେଲେ ପରବେଶ
ବରୁଣଙ୍କୁ ଦେଖିଣ ମାରୁତି ହରଷ ।
ବରୁଣଙ୍କ ଚରଣ ତଳରେ ମାରୁତି
କରଯୋଡ଼ି ଆଗରେ ଉଭା ସେ ଝଟତି ।
ବରୁଣ ବୋଇଲେ ତୁ ରେ କିମ୍ପାଇଁ ଅଇଲୁ
ଏତେ ଦୁର୍ଗମ ପଥକୁ କେମନ୍ତେ ତରିଲୁ ।
ହନୁ ବୋଇଲା ମୋର ଭରସା ନାରାୟଣ
ଯାହାର ନାମ ଧରିଲେ ସମସ୍ତ କାରଣ ।
ନାରାୟଣ ପୁରୁଷ କେଉଁଠାରେ ଛନ୍ତି
ସେ କଥା ସଞ୍ଚପି କହରେ ମାରୁତି ।
ହନୁ ବୋଇଲା ଋକ୍ଷ ମର୍କଟଙ୍କ ମେଳେ
ରାବଣ ମାରିବାକୁ ଛନ୍ତି ସିନ୍ଧୁକୂଳେ ।
ଦଶରଥ ନନ୍ଦନ ସେ ଅଟନ୍ତି ରଘୁନାଥ
ଜାନକୀଙ୍କ ଛଳରେ ମାରିବେ ଦଶମାଥ ।
ଧବଳାଙ୍ଗୀ ଯାଇଣ ବାରେକ ସମ୍ଭାଳିଲା
ନୋହିଲେ ଯମପୁର ଯାଇଥାନ୍ତୁ ଭଲା ।
ବରୁଣ ବୋଇଲା ଅଇଲୁ କିସ ପାଇଁ
ମାରୁତି ବୋଇଲା ଚାଲ ଚାଲ ବେଗହୋଇ ।

ଯାଇଣ ତୁ ସିନ୍ଧୁରେ ବେଗ ଦିଅ ବାଟ
ଲଙ୍କାକୁ ଚଳିଲେ ଶ୍ରୀରାମଙ୍କ ଥାଟ ।
ବରୁଣ ବୋଇଲା ମୁଁ ନ ପାରଇ ଯାଇ
ଅକଳିତ ସାଗର ତହିଁରେ ବାଟ ନାହିଁ ।
ମାରୁତି ବୋଇଲା ତୁ କରୁଛୁ ପରିହାସ ।
ରାବଣ ନ ମରୁ ତୁ ଆଗେ ଯିବୁ ନାଶ ।
ଏତେ ବୋଲି ମାରୁତି କ୍ରୋଧରେ ଜର ଜର
ସତୁରୀ ଯୁଣ ଦୀର୍ଘରେ ବଢ଼ାଇଲା ଶରୀର ।
ଆକାଶ ମଣ୍ଡଳରେ ଲାଗିଲା ତାର ଶିର
ଗର୍ଜଇ ହନୁ ପ୍ରଳୟ ସିନ୍ଧୁ ପରକାର ।
ବେନି ହସ୍ତେ ମାରୁତି ଧଇଲା ବରୁଣଙ୍କୁ
ବୋଇଲା କେଉଁ ବାପ ରଖିବ ତୁମ୍ଭଙ୍କୁ ।
ବରୁଣ ବୋଇଲା ସମ୍ଭାଳ ହନୁମନ୍ତ
ଅସୁର ଭୟ ନାରୁ ପାଇଲି ମୁକତ ।
ଛାଡ଼ ଛାଡ଼ ହନୁମନ୍ତ ଯିବି ଏହିକ୍ଷଣି
ଶୁଣି କରି ମାରୁତି ଛାଡ଼ିଲା ସେ ପୁଣି ।
ବେଗେ ଜଳଧିରାଜା ହୋଇଲାକ ସଜ
ମଗର ଉପରେ ଚଢ଼ିଲାକ ବେଗ ।
ଆଗରେ ବରୁଣ ପଛରେ ମାରୁତି
ମଧ୍ୟରେ ତରଙ୍ଗ ମନ୍ତ୍ରୀ ଚଳିଣ ଆସନ୍ତି ।
ମାରୁତି ଆସିଣ ଯେ ଗର୍ଜଇ ଶୂନ୍ୟେଣ
ଗରୁଡ଼ ଅଇଲା କି ରମ୍ୟକ ଦ୍ୱୀପୁ ଜାଣ ।
ଦେଖିଣ ଦେବତାଏ ହରଷ ହୋଇଲେ
ଧନ୍ୟରେ ହନୁମନ୍ତ ବୋଲି ପ୍ରଶଂସିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବରୁଣକୁ ସଙ୍ଗେ ଘେନି ମାରୁତି ଆସେ ଫେରି ।
ଏଥୁ ଅନନ୍ତରେ ଶୁଣ ଯେ ଭଗବତୀ
ହନୁମନ୍ତ ଯିବାରୁ ବିଚାରେ ଋକ୍ଷକପି ।
ଲଙ୍କାକୁ ଗଲା ଯଶ କରିଣ ଅଇଲା
ସୀତାଙ୍କୁ ଠାବ କରି ଲଙ୍କାପୋଡ଼ି ଦେଲା ।
କେ ବୋଲଇ ଲଙ୍କା ଅଳପ ବାଟ ସିନା
ଏକା ଦିନକରେ ମାରୁତି ଗଲା କିନା ।
କେ ବୋଲଇ ଜାନକୀଙ୍କ ଲାଗି ଦେଖ ମାରି
କେ ବୋଲଇ ପିତା ତାର ଅଛି ଲଙ୍କାପୁରୀ ।
କେ ବୋଲଇ ଦୈତ୍ୟଙ୍କର ସଙ୍ଗରେ କଳି କଲା
କେ ବୋଲନ୍ତି ଦେବଙ୍କର ମାୟାରେ ଜିଣିଲା ।
କେ ବୋଲଇ ଏବେ ଯେ ଗଲା ବହୁ ଦୂର
କେ ବୋଲଇ ବାରଲକ୍ଷ ଯୁଣ ଜଳପୁର ।
କେ ବୋଲଇ କେ ଅବା କଲେକି ବଳେ ପୁଣି
କେ ବୋଲଇ ମାରୁତିକି ମାରିଲେ କି ଜାଣି ।
କେ ବୋଲେ ଭଲଯୋଗେ ହନୁର ଜନନୀ
ପବନ ଦେବତାଙ୍କୁ ସ୍ୱାମୀ କଲା ପୁଣି ।
ଏମନ୍ତ କୁହାକୁହି ହୁଅନ୍ତି ସୈନ୍ୟବଳ
ପାଞ୍ଚଦିନ ହୋଇଲା ଅଛନ୍ତି ସିନ୍ଧୁକୂଳ ।
କେ ବୋଲଇ ରାବଣରେ ଭଲ କାର୍ଯ୍ୟ କଲୁ
ଦାବାନଳ ଅଗ୍ନିକୁ ଲଙ୍କାକୁ ଘେନିଗଲୁ ।
କେ ବୋଲଇ ଆସିଣ ଦେଲା କେଡ଼େ ବେଗେ
ଭଲା ତରକିଲା ନ ପଡ଼ିଲା ରାମ ଆଗେ ।
କେ ବୋଲେ ବେଳ କାଳ ଜାଣି ରହିଥିଲା
ସତୀଙ୍କି ସତ୍ୟ କରାଇ ଘେନି ଏଥୁଁ ଗଲା ।
କେ ବୋଲେ ଶ୍ରୀରାମର ବଳ କଷିବାକୁ
ଘେନିଣ ଯାଇଅଛି ଜନକ ସୁତାଙ୍କୁ ।
କେ ବୋଲେ ଦେବତାଏ କରିଛନ୍ତି ରୁଷ୍ଟ
ରାବଣ ଦେବତାଙ୍କୁ ଦେଲା ବହୁ କଷ୍ଟ ।
ରାମ ହସ୍ତରେ ରାବଣକୁ ମରାଇବେ
ତେବେ ସେ ଦେବତା ଏ ସ୍ୱର୍ଗରେ ରହିବେ ।
ଏମନ୍ତ ବିଚାରନ୍ତି ସେନାପତିଗଣ
ସମୁଦ୍ର କୂଳରେ ଶ୍ରୀରାମ ସଙ୍ଗେ ପୁଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସୁଗ୍ରୀବକୁ ଘେନିଣ ଭାଳେ ଲଙ୍କପତି ।
ବିଭୀଷଣ ବୋଲଇ ଶୁଣ କପିପତି
କେଡ଼େକ ସାହସୀ ଯେ ଅଟଇ ମାରୁତି ।
ଶ୍ରୀରାମଙ୍କ ବୋଲରେ ଗଲା ସିନ୍ଧୁ ଡେଇଁ
ଲଙ୍କାରେ ଯାହା କଲା ସେ କଥା ମୁଁ ଜାଣଇ ।
ଏବେ ସେ ବରୁଣକୁ ଯାଇଛି ଆଣିବାକୁ
ବଡ଼ାଇ ସାମର୍ଥ ଯେ ବୋଲିବା ତାହାକୁ ।
ଯିବା ଆସିବାରେ ସର୍ବେ ନିସତ ହୋନ୍ତି
ଦେଖ ମାରୁତିର ଅଳସ ନାହିଁ କିଛି ।
ସୁଗ୍ରୀବର ବୋଲନ୍ତି ଶ୍ରୀରାମ ନାରାୟଣ
କହିବାରୁ ସିନ୍ଧୁ ଲଙ୍ଘେ ହନୁମାନ ଜାଣ ।
ଯେଉଁଦିନ ଶ୍ରୀରାମଙ୍କୁ ବାର ଯେ ବରଷ
ବିଶ୍ୱାମିତ୍ରଙ୍କ ଯାଗ ରଖିଲେ ଯାଇ ସେ ତ ।
ଗଉତମଙ୍କ ନାରୀ ପାଷାଣ ହୋଇଥିଲେ
ଶ୍ରୀରାମଙ୍କ ପାଦ ଲାଗି ମୁକତି ହୋଇଲେ ।
ଜନକ ଋଷି ଘରେ ଶିବଧନୁ ଥିଲା
ଅନେକ ରାଜାମାନେ ହାରିଗଲେ ପରା ।
ନରବାନର ଦେବତା ଅସୁର ଚାରିଜାତି
ସେ ଧନୁକୁ ଦେଖିଣ ସମସ୍ତେ ଡରିଯାନ୍ତି ।
ବାରବାର ସକାଳେ ସେଠାରେ ରଘୁରାଣ
ଶିବଧନୁ ଭାଙ୍ଗି ସୀତାଙ୍କୁ ବିଭା ଜାଣ ।

ଚଉଦ ବରଷପାଇଁ ବନକୁ ଆସିଲେ
ଅଠାଇଶ ବରଷରେ ବାଳିକି ବଧ କଲେ ।
ଯେତେବେଳେ ଶ୍ରୀରାମ ଛୁଇଁ ମୋର ଅଙ୍ଗ
ସେତେବେଳେ କାହୁଁ ହୋଇଲା ବଳବୀର୍ଯ୍ୟ ।
ଯେଉଁ ବାଳିକି ମୁଁ ଦେଖିଲେ ଡରଇ
ସେହି ବାଳି ସଙ୍ଗରେ ରଣ ମୁଁ କଲଇଁ ।
ନାରାୟଣ ନୋହିଲେ ଏମନ୍ତ କିମ୍ପା ହୋନ୍ତା
ନିର୍ବଳ ଲୋକର ବଳ କାହୁଁ ସେ ଆସନ୍ତା ।
ସୁଗ୍ରୀବଠାରୁ ଶୁଣି ବିଭୀଷଣ କହି
ନାରଦ ଋଷି ମୋତେ ଗଲେକ ଚେତାଇ ।
ବୋଇଲେ ନାରାୟଣ ମାନବ ଅବତାର
ତୋ ଭାଇ ରାବଣକୁ ମାରିବେ ନିକର ।
ଦେବକୂଟ କରିଣ ରାବଣ ବୁଦ୍ଧି ହରି
ଶ୍ରୀରାମ ନାରୀକି ରାବଣ ଚୋରି କରି ।
ଦେଖିଣ ଜାନକୀଙ୍କି ମରିବ ରାବଣ
ଏକଥା ନିଶ୍ଚୟରେ ଦେଖିବୁ ବିଭୀଷଣ ।
ତରକ ବୁଦ୍ଧି କଲେ କାଳେ କାଳେ ଥିବୁ
ନୋହିଲେ ତୁ ରାବଣ ସଙ୍ଗରେ ନାଶ ଯିବୁ ।
ସେକଥା ହେତୁ ରଖିଥା ମନେ ତୋହରି
ଜାନକୀ ନେବାରେ ବୁଦ୍ଧି ଦେଖିଲି ତାହାରି ।
ତେଣୁ ମୋ ମନରେ ସଂପ୍ରତେ ପୁଣି ଗଲି
ଅନେକ ପ୍ରବୋଧି ରାବଣେ କହିଲି ।
ଯେଣୁ ସେ ମୋର କଥା ନ କଲାକ ମନେ
ବାହାର କରିଦେଲା କ୍ରୋଧ ହୋଇ ମନେ ।
ତେଣୁ କରି ଲଙ୍କାଗଡ଼ ତେଜିଲି ମୁଁ ଜାଣ
ଶ୍ରୀରାମ ଚରଣରେ ପଶିଲି ଶରଣ ।
ଏମନ୍ତ କୁହା କୁହି ହେଲେ ବେନିଜଣ
ଏଥୁ ଅନନ୍ତରେ ଦିବ୍ୟରସ ଶୁଣ ।
ଚାରିଦିନ ଯାଇଣ ହୋଇଲା ପାଞ୍ଚଦିନ
ବିକଳିତ ହୋଇଲା ଶ୍ରୀରାମଙ୍କ ମନ ।
ବୋଇଲା ଲକ୍ଷ୍ମଣରେ ଏ କି କାର୍ଯ୍ୟ ହେଲା
ମାରୁତି କେଣେ ଗଲା ବରୁଣ ନ ଅଇଲା ।
ଆଜି ରଜନୀରେ ମୁଁ ଦେଖିଲି ସ୍ୱପନ
ବରୁଣ ସଙ୍ଗେ କଳହ କରେ ହନୁମାନ ।
ଲକ୍ଷ୍ମଣ ବୋଇଲେ ଦେବ ଚିନ୍ତା ଯେ ନ କର
ଆଜି ରଜନୀରେ ଦେଖିଲି ମୁହିଁ ସାର ।
ମତ୍ତହସ୍ତୀ ଉପରେ ବିଜୟ ହନୁମନ୍ତ
ବରୁଣକୁ ସଙ୍ଗେ ଘେନି ଆସଇ ତ୍ୱରିତ ।
ଆଜିର ମଧ୍ୟରେ ଦେବ ଭେଟ ହେବ ଜାଣ
ଏମନ୍ତ ବଚନ କହିଲେ ଲକ୍ଷ୍ମଣ ।

ଶୁଣି କରି ରଘୁନାଥ ହରଷ ହୋଇଲେ
ତଳରେ ଗାରକାଟି ପ୍ରଶନେ ଜାଣିଲେ ।
ଶୁଭ ବେଳରେ ଖଡ଼ି କରିଲେ ସେ ଜାଣ
ତେଣୁ ସେ ହରଷ ହୋଇଲେ ରାମରାଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଏମନ୍ତ ସମୟରେ ପବନ ବହିଲାଟି ।
ଦକ୍ଷିଣ ଦିଗରୁ ବହଇ ଘନ ଘନ
ବରୁଣକୁ ସଙ୍ଗେ ଧରି ଆସେ ହନୁମାନ ।
ଏହି ସମୟରେ ହନୁ ସିଂହରଡ଼ି ଦେଲା
କି ଅବା ସାଗର ଆସି ପ୍ରଳୟ ହୋଇଲା ।
ସମୁଦ୍ର ଲହଡ଼ି ଆସଇ ବେଗ ବେଗ
ଲଙ୍କା ଦିଶେ ଦକ୍ଷିଣେ ନ ଦିଶେ ସେ ଦିଗ ।
ଦେଖିଣ ଶ୍ରୀରାମ ଜମ୍ବୁବକୁ ପଚାରି
ଆକାଶେ ମେଘ ନାହିଁ ଗର୍ଜନ କିମ୍ପା କରି ।
ଦକ୍ଷିଣ ଦିଗଟି ତ ଦିଶେ ଅନ୍ଧକାର
ରାବଣ ସୈନ୍ୟ ଘେନି ଆସେ କି ଏଠାର ।
କି ଅବା ସମୁଦ୍ର ଉଠିଲା ପ୍ରଳୟକୁ
କି ଅବା ବରଣ୍ଣ ମାଇଲା ହନୁକୁ ।
ଏମନ୍ତ ବିଚାର କରିଣ ଦାଶରଥି
ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ଉଠିଲେ ଝଟତି ।
କୋଦଣ୍ଡମାନଙ୍କରେ ଗୁଣ ଚଢ଼ାଇଲେ ଗୁଣ
ଟଙ୍କାର କରିଣ ସେ ଯୋଚିଲେ ଶର ପୁଣ ।
ଦେଖିଣ ଋକ୍ଷକପି ତରସ୍ତ ହୋଇଲେ
ସୁଗ୍ରୀବର ବିଭୀଷଣ ସହିତେ ଉଠିଲେ ।
ପଚିଶ ଯୂଥପତି ମଲ୍ଲ ମହାମଲ୍ଲ
ଅଷ୍ଟ ସେନାପତି ଯେ ଉଠିଲେ ସକଳ ।
ଏମନ୍ତ ସମୟରେ ଅଙ୍ଗଦ ଦେଲା ଚାହିଁ
ମଣିମୟ ମୁକୁଟ ଉଜ୍ଜ୍ୱଳ ଦିଶଇ ।
ବୋଇଲା ମାରୁତି ଅଇଲା ଆମ୍ଭର
ଶୁଭଯୋଗରେ ହନୁ ଯଶ କଲା ସାର ।
ଆଠଦିନେ ଲଙ୍କାରୁ ଆସିଥିଲା ପୁଣ
ପାଞ୍ଚ ଦିନରେ ଅଇଲା ଘେନିଣ ବରୁଣ ।
କହୁ କହୁ ମାରୁତି ଆସି ହେଲା କୂଳ
ବରୁଣ ଦେବତା ଯେ ଅଛଇ ସଙ୍ଗର ।
ପ୍ରବେଶ ହୋଇଲା ଆସି କାୟା ମୋଟ
ରବି ଚନ୍ଦ୍ରରେ ଯାଇ ଲାଗିଛି ମୁକୁଟ ।
ଶ୍ରୀରାମ ଚରଣରେ ଆସି ଓଳଗିଲା
ପ୍ରକାଣ୍ଡ ରୂପ ତେଜି ସାମାନ୍ୟ ରୂପ ହେଲା ।
ଦେଖିଣ ରଘୁନାଥ ମନରେ ବିଚାରିଲେ
କିମ୍ପିତ କଥା ହନୁ ଜାଣେ ସେ ଭାବିଲେ ।

ଏମନ୍ତ ବିଚାରିଣ କୋଦଣ୍ଡ ତଳେ ଥୋଇ
ବରୁଣକୁ ଦେଖି ଓଳଗି ମେଲାଇ ।
ମଗର ବାହନରୁ ବରୁଣ ଓହ୍ଲାଇଲେ
ସୁକଲ୍ୟାଣ କରିଣ ଦୁର୍ବାକ୍ଷତ ଦେଲେ ।
ଲକ୍ଷ୍ମଣ ଓଳଗିଲେ ବରୁଣ ଚରଣ
ଯୁଥପତିମାନେ ଓଳଗ କଲେ ପୁଣ ।
ସୈନ୍ୟବଳ ସକଳ ଶିରରେ କର ଦେଲେ
କପିରାଜାମାନେ ଯେ ଭକତି ହୋଇଲେ ।
ସୁଗ୍ରୀବ ବିଭୀଷଣ କଲେକ ନମସ୍କାର
ଦେଖିଣ ବରୁଣ ଯେ ହରଷ ମନର ।
ବରୁଣ ବୋଇଲେ ଶୁଣରେ ବିଭୀଷଣ
ଅକାଳ ମୃତ୍ୟୁରୁ ଏବେ ପାଇଲୁ କାରଣ ।
ଶ୍ରୀରାମଚରଣର ଶରଣ ପଶିଲୁ
ଆନ ସୃଷ୍ଟି ହେବାଯାଏ ଏଥର ବଞ୍ଚିଲୁ ।
ପାଞ୍ଚପକ୍ଷ ଗଲେ ହୋଇବ ଲଙ୍କା ତୋର
ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ହୋଇବୁ ଅମର ।
ପବନର ସୁତ ଯେ ଅଟଇ ହନୁମନ୍ତ
ଦେବ ଦାନବରେ ନ କରେ ଓପ୍ରୋଧତ ।
ରାମାୟଣ ଯୁଦ୍ଧରେ ଅଟଇ ଏକା ଜାଣ
ଅନେକ ରାମ କାର୍ଯ୍ୟ କରିବ ସେ ପୁଣ ।
ଏ ଅବତାରରେ ମାରୁତି ହେଲା ସାର
ଯୁଗେ ଯୁଗେ ମାରୁତି ହୋଇବ ଅମର ।
କପିଇନ୍ଦ୍ର ବୋଲି ଆଜହୁଁ ନାମ ତାର
ପୁରାଣରେ ତାର କଥା ହୋଇବ ଯେ ସାର ।
ଏମନ୍ତ ବୋଲିଣ ବରୁଣ ରାଜା କହି
ରାମ ଲକ୍ଷ୍ମଣଙ୍କ ଆଗେ କରଯୋଡ଼ି ରହି ।
ଯୁଥପତି ସେନାପତି ମଲ୍ଲ ମହାମଲ୍ଲ
ସମସ୍ତେ କରଯୋଡ଼ି ବରୁଣ ଆଗର ।
ଋକ୍ଷକପି ସୈନ୍ୟବଳ ବରୁଣକୁ ଦେଖି
ପରମ ଆନନ୍ଦ ହେଲେ ସର୍ବେ ସୁଖି ।
**ବଳରାମ ଦାସ** ଯେ ସେ କଥା କର୍ଣ୍ଣେ ଶୁଣି
ଶ୍ରୀରାମଚରଣରେ ଶରଣ ପଶେ ପୁଣି ।
ଏଥୁ ଅନନ୍ତରେ କହନ୍ତି ଶୂଳପାଣି
ବରୁଣକୁ ଧରି ଆସିଲା ପାବନୀ ।
ତେଣୁ ସେ ବରୁଣ ଶ୍ରୀରାମ ସଙ୍ଗେ ଦେଖା
ଦେଖିଣ ଶ୍ରୀରାମ ମନରୁ ଛାଡ଼େ ଶଙ୍କା ।
ମାନ୍ୟ ଗଉରବ ଯେ ବେନିଭାଇ କଲେ
ବସିବାକୁ ମୃଗଛାଲ ଗୋଟିଏ ଆଣି ଦେଲେ ।
ବରୁଣଙ୍କ ଚରଣ ପଖାଳି ଅଙ୍ଗଦ
ଦେଖିଣ ପରମତୋଷ ବାରାନିଧିରାଜ ।

ବୋଇଲେ ମୋତେ କିମ୍ପା ଅଣାଅ ଚାପଧାରୀ
କି ଉପକାର କରିବି କହ ଶୀଘ୍ର କରି ।
ଶ୍ରୀରାମ ବୋଇଲେ ଶୁଣ ଜଳଧିରାଜନ
ଅସୁର ପ୍ରବଳ ଯେ ହୋଇଲେ ଏବେ ଜାଣ ।
ନର ବାନର ଦେବତା କାହାକୁ ନ ଗଣିଲେ
ହୋମଯାଗ ଋଷିଙ୍କୁ ଦେଖି କୋପ କଲେ ।
ଦେବଙ୍କୁ ଧରିଣ ସେ ସେବକ ପଣେ ରଖି
ତେଣୁ ସେ ଦେବତାଏ ହେଲେ ବଡ଼ ଦୁଃଖୀ ।
ଦିଗପତିମାନଙ୍କର କହନ୍ତି କଳିଦ୍ୱନ୍ଦ
ସବୁଦିନେ ଅସୁର ଅଟନ୍ତି ବଡ଼ ମନ୍ଦ ।
ପିତାଙ୍କ ସତ୍ୟପାଳି ମୁଁ ବନକୁ ଅଇଲି
ଫଳମୂଳ ଭୁଞ୍ଜିଣ ଅରଣ୍ୟେ ଦିନ ନେଲି ।
ନିରାଶ୍ରୟ ହୋଇଣ ମୁଁ ବୁଲଇ ବନରେ
ଭାଇ ଭାରିଯା ମୋର ଥିଲେଟି ସଙ୍ଗରେ ।
ଅନେକ ଦୁଃଖରେ ତେର ବରଷ ମୋର ଗଲା
ତେବେ ହେ ବିଧାତା ମୋର ଦୋଷ ନ ଖଣ୍ଡିଲା ।
ମୃଗ ମାରି ବେନି ଭାଇ ବନକୁ ଯେ ଗଲୁ
ଦଇବର କୂଟ ଆମ୍ଭେ ଜାଣି ନ ପାରିଲୁ ।
ଲଙ୍କାର ଅସୁର ରାବଣ ଆସିଣ
ମୋହର ଘରଣୀକୁ ଘେନିଗଲା ଜାଣ ।
ତେଣୁ ଯେ ନିରାଶ୍ରୟ ହେଲୁ ବେନି ଭାଇ
ଅରଣ୍ୟରେ ବନିତା ନ ପାଇଲୁ କାହିଁ ।
ତେଣୁ ସେ କିଷ୍କିନ୍ଧ୍ୟାରେ ପ୍ରବେଶ ହୋଇଲୁ
ଋଷ୍ୟମୂକ ପର୍ବତରେ ସୁଗ୍ରୀକୁ ଭେଟିଲୁ ।
ସେ ମୋତେ ବୋଇଲା ଅଧର୍ମୀ ଅଟେ ବାଳୀ
ମୋହର ଘରଣୀ ତାହାର ମାନ୍ୟକାରୀ ।
ମୋତେ ସେ ଘଉଡ଼ି ଦେଇ ମୋ ନାରୀ ହରିଲା
ଏମନ୍ତ ଅନ୍ୟାୟ ଯେ ସୃଷ୍ଟିରେ ନ ଥିଲା ।
ଅନ୍ୟାୟ ଦେଖିଣ ମାଇଲି ମୁଁ ତାକୁ
ସେ କଟକେ ରାଜା କରାଇଲି ସୁଗ୍ରୀବକୁ ।
ମୋହର ଦୁଃଖକୁ ଦେଖିଣ କପିରାୟେ
ଋକ୍ଷ ମର୍କଟ ସୈନ୍ୟ ସାଜିଣ ସେ ଆୟେ ।
ଚାରିଦିଗକୁ ଦୂତ ପେଶିଣ ଖୋଜାଇଲି
ଲଙ୍କାଗଡ଼କୁ ହନୁମନ୍ତକୁ ପେଶିଲି ।
ମୋ ସଖୀକି ସେହି ଦେଖିଣ ଅଇଲା
ମୋ ଆଗରେ କହିବାରୁ ଦୁଃଖ ଉପୁଜିଲା ।
ତେଣୁ ସେ ଦାରା ବୈରୀକୁ କରିବାକୁ ନାଶ
କୁମାର ପଦାରେ ଆସି ହୋଇଲୁଁ ପ୍ରବେଶ ।
ଏ ପଦାରେ ଈଶ୍ୱର ନନ୍ଦନ କଳି କଲା
ପିତାକୁ ତାହାର ଡକାଇ ଆଣିଲା ।

ଅନେକ ସୈନ୍ୟବଳ ଘେନି ସେ ଅଇଲେ
ମୋର ଭାଇ ଲକ୍ଷ୍ମଣ ସଙ୍ଗରେ ଦ୍ୱନ୍ଦ୍ୱ କଲେ ।
ଦୋଷ ନ ଥିବାରୁ ଜିଣିଲା ମୋର ଭାଇ
ହାରିଣ ବ୍ରହ୍ମରୁଦ୍ର ଗଲେ ଯେ ପଳାଇ ।
ତେଣୁ ମୁଁ ତୁମ୍ଭଙ୍କୁ କଲି ସୁମରଣ
ପ୍ରସନ୍ନ ନୋହିଲ ମୋତେ ପିତା କି କାରଣ ।
କେଉଁ ବାଟରେ ଯିବି ଲଙ୍କାଗଡ଼କୁ କହ
ବାଟ ନ ପାଇଣ ଆକୁଳ ମୋର ଦେହ ।
ଜଳଧିରାଜା ବୋଇଲେ ଶୁଣ ରାମରାଣ
ଅକଳିତ ବାରାନିଧି କଳିତ ନୁହେ ପୁଣ ।
ଯିବାକୁ ସ୍ଥଳକୂଳ ଏଥି ନାହିଁ ପଥ
ସାଗରମାନେ ପୂର୍ବରୁ ଅଟନ୍ତି ଅକଳିତ ।
ଶ୍ରୀରାମ ବୋଇଲେ ଯେବେ ଅକଳିତ କଲୁ
ଅଗସ୍ତିଙ୍କ କୋପରେ ଅନ୍ତର କିମ୍ପା ହେଲୁ ।
ସପତ ସାଗର ମନ୍ତ୍ରବଳେ ଚଳୁ କଲା
ସତରଯୁଗ ପର୍ଯ୍ୟନ୍ତେ ଶୁଖି ପଦା ହେଲା ।
ତରୁ ତୃଣ ଲତା ହୋଇଲା ଯେ ଜାଣ
ତପନକୁଳେ ଜାତ ଭଗିରଥି ପୁଣ ।
ଆପଣା କୀର୍ତ୍ତି ବୋଲି ଗଙ୍ଗାକୁ ଅଣାଇଲେ
ତେଣୁ ସେ ସପତସାଗର ପୂର୍ଣ୍ଣ ହେଲେ ।
ତେଣୁ ସେ ଗଙ୍ଗାଯମୁନା ବରିଲେ ତୁମ୍ଭଙ୍କୁ
କାଳେ କାଳେ କଥା ଯେ ରହିଲା ଯୁଗକୁ ।
ସାଗର ଭିତରେ ଅସୁର ଅଛ ରଖି
ତେଣୁ ସିନା ଦେବତାଏ ହେଉଛନ୍ତି ଦୁଃଖୀ ।
ଆପେ ନ ମାରି ପରେ ନ ମରାଇ ଦିଅ
ଫାନ୍ଦ କରିବାରୁ ଅସୁର ପାଦେ ପ୍ରିୟ ।
ଦାରା ବଇରିକି ମୁଁ ଯେ ନିଶ୍ଚୟ ମାରିବି
ପିତା ଶତ୍ରୁ ବଇରୀକି କେବେ ନ ରଖିବି ।
ତୁମ୍ଭେ ମୋତେ ବାଟ ନ ଦେଲେ ରାଜନ
ଲବଣ ସମୁଦ୍ରକୁ ଶୁଖାଇ ହେବି ଜାଣ ।
ବରଣୁ ବୋଇଲେ ଅଧର୍ମ ତୋତେ ହେବ
ପିତା କୀର୍ତ୍ତିନାଶ କଲେ ନିନ୍ଦା ଉପୁଜିବ ।
ଶ୍ରୀରାମ କହିଲେ ଏକଥା ଯେବେ କହ
ଶର ପେଶି ଲଙ୍କାକୁ କିରବି ଭସ୍ମମୟ ।
ବରୁଣ ବୋଇଲେ ତୁମ୍ଭ କଥା ହେବ ଜାଣ
ବେଳକୁ ଅନ୍ୟାୟ କରିବା ହେବ ପୁଣ ।
ଆଗେ ପରା ବିଭୀଷଣେ ଲଙ୍କା ଦାନ କଲ
ଏବେ ଦାନ ହରିବ ମନେ ବିଚାରିଲ ।
ଶ୍ରୀରାମ ବୋଇଲେ ମୋତେ ପଡ଼ିଲା ସଙ୍କଟ ତ
ଲଙ୍କାକୁ ନ ଗଲେ ଦାରା ବଇରୀ ନିଶ୍ଚିନ୍ତ ।

ବରୁଣ ବୋଇଲା ଏବେ ସମୁଦ୍ରେ ବନ୍ଧ ବାନ୍ଧ
ପାରି ହୋଇଣ ଯିବେ ତୁମ୍ଭର ସୈନ୍ୟବୃନ୍ଦ ।
ଶ୍ରୀରାମ ବୋଇଲେ ଏ ତ ଅକଳିତ ସିନ୍ଧୁ
କି ରୂପରେ ଏଥିରେ ଆମ୍ଭେ ବନ୍ଧ ବାନ୍ଧୁ ।
ବରୁଣ ବୋଇଲେ ଦେବ ଦେବତା ବିଚାରି
ରାବଣ ମାରିବାକୁ ଆଗହୁଁ ଜାତ କରି ।
ଜଳରେ ବନ୍ଧ ହେବ ବୋଲିଣ ନ୍ୟାୟ କଲା
ଯେ ବନ୍ଧ ବାନ୍ଧିବ ତୁମ୍ଭର ସଙ୍ଗେ ପରା ।
ଶ୍ରୀରାମ ବୋଇଲେ ମୁହିଁ ତ ନ ଜାଣଇଁ
ସମୁଦ୍ର ଭିତରେ କେ ପାରିବ ବନ୍ଧ ଦେଇ ।
ବରୁଣ ବୋଇଲେ ମୟ ବାନରର ପୁତ୍ର
ସମୁଦ୍ରେ ବନ୍ଧ ବାନ୍ଧିବାକୁ ହୋଇଛି ଜାତ ।
ସେ ନଳ ଛୁଇଁଲେ ପଥର ନ ବୁଡ଼େ ପାଣିରେ
ସାଗରେ ବନ୍ଧ ପଡ଼ିବ ନଳର ହସ୍ତରେ ।
ବାନର ବଳ ତୋର ପର୍ବତ ବୋହିଆଣି
ନଳକୁ ଛୁଆଁଇଣ ପକାଇବେ ପାଣି ।
ତେବେ ସେ ସିନ୍ଧୁରେ ହୋଇବ ବନ୍ଧ ଜାଣ
ଦଶଯୁଣ ଓସାର ପଡ଼ିବ ବନ୍ଧ ପୁଣ ।
ଭାସିବ ଜଳରେ ପଥର ନ ବୁଡ଼ିବ
ଏକଥା ଆଗରୁ ଭିଆଇଛି ପଦ୍ମୋଦ୍ଭବ ।
ରାମ ବୋଇଲେ ଯେବେ ଭାସିବ ପଥର
ପବନ ବହିଲେ ସେ ଆଉଳିବ କୂଳର ।
ବରୁଣ ବୋଇଲେ ଶୁଣ ସେଥିର ବ୍ୟବସ୍ଥା
ଦୀର୍ଘ ପ୍ରତି ଦଶଯୁଣ ବନ୍ଧ ନ କର ବୃଥା ।
ଦଶଯୁଣ ମଧ୍ୟରେ ପୁଣ ଅଛି ସ୍ଥଳ
ଦେବ ଅସୁର ସେହୁ ଅଗୋଚର ।
ଏମନ୍ତ ବନ୍ଧକୁ ପବନ କି କରିବ
ବାନର ବଳରେ ସେ ଆଉଜି ନ ଯିବ ।
ଶତେଯୁଣ ଲଙ୍କାକୁ ଅଟେ ପଥ ଦୂର
ମଧ୍ୟରେ ନବସ୍ଥଳ ଅଛଇଁ ସେଥିର ।
ଯୁଣକ ଆୟତରେ ଅଟେ ଜଳସ୍ଥଳି
ବିଧାତା ପୁରୁଷ ଆଗହୁଁ କଲେ ଭାଳି ।
ଏହିରୂପେ ବନ୍ଧ ଯେ ବେନିକୂଳେ ମିଶି
ଶୁଣିଣ ଶ୍ରୀରାମ ମନରେ ହେଲେ ଖୁସି ।
ଶ୍ରୀରାମ ବୋଇଲେ ଶୁଣ ଜଳଧି ରାଜନ
କେଉଁ ସଳଖରେ ପଡ଼ିବ ବନ୍ଧ ପୁଣ ।
ବିଚାରି ବୋଇଲେ ମୁଁ ମନ୍ତ୍ରୀଙ୍କି ସଙ୍ଗେ ଦେବି
ସେହି ସେ ତୁମ୍ଭଙ୍କୁ କହିବେ ବନ୍ଧ ବିଧି ।
ଏମନ୍ତ କହି ବରୁଣ ମନ୍ତ୍ରୀଙ୍କି ଡକାଇଲେ
ଶ୍ରୀରାମ ସଙ୍ଗେ ଥିବୁ ବୋଲିଣ ବୋଇଲେ ।

ହୁଅ ତୁ ବାନର ରୂପ ନ ଚିହ୍ନନ୍ତୁ କେହି
ବନ୍ଧ ସରିଲେ ମୋର ପାଶରୁ ଯିବୁ ତୁହି ।
ଶ୍ରୀରାମ ବୋଇଲେ କଥାଏ ଅଛି ଆଉ
କେମନ୍ତେ ବାନର ପର୍ବତ ଆଣିବେ କାହୁଁ ।
ଧରଣୀକି ଫୁଟିଣ ରହିଛନ୍ତି ଗିରି
କେମନ୍ତେ ବାନର ଆଣିବେ ଉପାଡ଼ି ।
ବରୁଣ କହିଲେ ଧରଣୀକି ଆଣ
ସେ ଅଇଲେ ତୁମ୍ଭଙ୍କୁ କହିବେଟି ଜାଣ ।
ଏତେ କହି ବରୁଣ ଶ୍ରୀରାମ ପାଶୁ ଉଠି
ଯାଉଛି ନିଜ ପୁର ବୋଲିଣ କହିଲେଟି ।
ମାରିବ ଅସୁରକୁ ନ କରିବ ହେଳା
ଅସୁର ମାୟାବୀ ଅଟନ୍ତି ଯେ ଭଲା ।
ସେଠାରୁ ବରୁଣ ମଗର ପରେ ବସି
ସାଗରେ ପଶିଲେ ଦେଖିଲେ ରଘୁଶିଶି ।
ବରୁଣ ଯିବାରୁ ଭାବିଲେ ଚାପଧାରୀ
କେଉଁଠାରେ ଧରଣୀଛନ୍ତି ଘର କରି ।
ଜମ୍ବେବ ବୋଇଲେ ତାହାର ଥୟ ନାହିଁ
କେଉଁପୁରେ ଥିବ ସେହୁ ଭେଦ ତାର ନାହିଁ ।
ଯିବାକୁ ସମର୍ଥ ଯେ କେହି ନାହିଁ ତହିଁ
ତାହାକୁ ସୁମରଣା କର ଏବେ ତୁହି ।
ଶୁଣିକରି ରାମରାଣ ମନରେ ତୋଷ ହେଲେ
କୁଶ ଆସନ କରିଣ କୂଳରେ ବସିଲେ ।
ବୋଇଲେ ଧରଣୀ ତୁ ଗୋ ଜଗତ ଜନନୀ
ମୋହଠାରେ ସୁଦୟା କର ଏବେ ପୁଣି ।
ସକଳ ପୁରର କରତା ଅଟୁ ତୁହି
ନବଖଣ୍ଡ ମେଦିନୀ ତୋହର ବୋଲାଇ ।
ଚଉଦ ଭୁବନ ଯେ ତୋହର ସଞ୍ଚିଲା
ସପତ ପୁରକୁ ଧରଣୀ ଅଟୁ ପରା ।
ସକଳ ଜୀବ ତୋରଠାରୁ ହେଲେ ଜାତ
ତୋହର ପ୍ରସାଦରେ ସମସ୍ତେ ତୋଷଚିତ୍ତ ।
ସବଳ ନିର୍ବଳ ଯେ ସକଳ ତୁହି କରୁ
ତେଣୁ କରି ସଂସାରେ ଅଟୁ ମହାମେରୁ ।
ତୁହି ମୋତେ ସୁଦୟା କର ଏବେ ଆସି
ଅସୁରଙ୍କୁ ମାରିବାକୁ ମୁହିଁ ଆସିଅଛି ।
ମୁହିଁ ଯେବେ ଅସୁର ବଳକୁ ନ ମାରିବି
ତୁହି ବ୍ୟଥା ପାଇବୁ ହୋଇବୁ ଅନୁଭବି ।
ଏତେ ବୋଲି ଶ୍ରୀରାମ ଧରଣୀକୁ କହି
ରସାତଳ ପୁରେ ଥାଇ ଧରଣୀ ଜାଣଇ ।
ପଞ୍ଚମପୁର ଭେଦି ମଞ୍ଚରେ ଆସି ମିଳି
ଦକ୍ଷିଣ ସମୁଦ୍ରକୂଳେ ପ୍ରବେଶ ବେଗ କରି ।

କାମଧେନୁ ରୂପ ଧରି ଚାଲେ ଧୀର ଧୀର
ପ୍ରବେଶ ହୋଇଲା ଯାଇ ରାମଙ୍କ ପାଶର ।
ଶ୍ରୀରାମଙ୍କ ଆଗରେ ପ୍ରବେଶ ହୋଇଲା
ଚରଣେ ଲୋଟଗାଳି ଧରଣୀ ଶୋଇଲା ।
ଦେଖିକରି ରକ୍ଷକପି ବିଚାରନ୍ତି ମନେ
ଗୋରୁ ଗୋଟିଏ କେଉଁଠୁ ଆସିଲା ଏ ସ୍ଥାନେ ।
କେ ବୋଇଲା ଏ ଗୋରୁକୁ ମାଇଲା କେ ପୁଣ
କେ ବୋଲଇ ଆସିଛି ବା ଗୁହାରି କରିଣ ।
କେ ବୋଲଇ ଗାଈଗୋଟି କେଉଁଠାରେ ଥିଲା
କେ ବୋଲଇ ଶାର୍ଦ୍ଦୁଳର ଡରେ ଏ ଅଇଲା ।
କେ ବୋଲଇ ଗୋପାଳ ନାହିଁ ସଙ୍ଗତରେ
କେ ବୋଲଇ କିମ୍ଭୂତ ଜାଣି ତ ନ ପାରେ ।
ଶ୍ରୀରାମ ବୋଇଲେ ଉଠ ଗୋ ବେଗ କରି
କେଉଁଠାରେ ଥିଲ ଗୋ ବିକଳ ତୁମରି ।
ଧରଣୀ ବୋଇଲା ମୁଁ ତଳପୁରେ ଥିଲି
ବିରାଟ ପୁରୁଷଙ୍କୁ ମୋ ଦୁଃଖ କହୁଥିଲି ।
ସେ ବିରାଟ ପୁରୁଷ କହିଲେ ତୁ ମର୍ତ୍ତ୍ୟପୁରକୁ ଯାଅ
ଦଶରଥ ପୁତ୍ର ଆଗେ ତୋ ଦୁଃଖ ଜଣାଅ ।
ମୁଁ ବୋଇଲି ଦଶରଥ ମାନବ ଶରୀର
ତାର ପୁତ୍ର ମୋର ଦୁଃଖ ନ କରେ ନିବାର ।
ବିରାଟ ବୋଇଲେ ସେ କରିବେ ତୋତେ ରକ୍ଷା
ପାଞ୍ଚପକ୍ଷେ ନିବାରିବେ ତୋର ଦୁଃଖ ଚିନ୍ତା ।
ତାଙ୍କଠାରୁ ଶୁଣି ମୁଁ ଯେ ଉଦବେଗେ ଆସେ
ପାଞ୍ଚପୁର ଖୋଜିଣ ଭେଟିଲି ତୋତେ ଏବେ ।
ଶ୍ରୀରାମ ବୋଇଲେ ଯେବେ ବିରାଟ ପୁରୁଷ
କେଉଁପୁରେ ରହି ସେ ଯେ କରୁଛନ୍ତି କିସ ।
ଧରଣୀ ବୋଇଲେ ସେ ରସାତଳେ ରହି
ଜ୍ୟୋତିଲୟ କରିଛନ୍ତି ବସିଣ ଯେ ତହିଁ ।
ଶ୍ରୀରାମ ବୋଇଲେ ଷଡ଼ପୁର ଅଟେ କେହୁ
ଧରଣୀ ବୋଇଲେ ମଞ୍ଚ ପାତାଳ ଯେ ଏହୁ ।
ସୁତଳ ବିତଳ ବେନିପୁର ଯେ ଅଟଇ
ଅନ୍ତରାଳ ରସାତଳ ସ୍ୱର୍ଗକୁ ମିଶାଇ ।
ଏମନ୍ତ ସାତପୁର ଧରିତ୍ରୀ ଅଛି ହୋଇ
ଶୁଣ ହେ ଶ୍ରୀରାମ ତ୍ରୈଲୋକ୍ୟ ଗୋସାଇଁ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଅଟଇ ହିଂସା ଭାଗ
ତେଣୁ ସେ ମୋ ଶିରରେ କରୁଅଛି ଦଗ୍ଧ ।
ଆଉ ଚାରିପୁର ଯେ ନୁହଇ ଦ୍ୱନ୍ଦ୍ୱକାରୀ
ତେଣୁ ମୁହିଁ ଦୁଃଖିତ ଅଟେ ଚାପଧାରୀ ।
ଶ୍ରୀରାମ ବୋଇଲେ ଶୋଣିତ କିମ୍ପା ଚଳି
ନାସା ଶ୍ରବଣରୁ ସ୍ଖଳିତ ହୁଏ ବାରି ।

ଧରଣୀ ବୋଇଲା ମୋର ଏହିରୂପେ ଦଶା
ସାତଗଣ୍ଡା ଯୁଗ ହେଲା ଏ ଦୁଃଖ ଦୁର୍ଦ୍ଦଶା ।
ଶ୍ରୀରାମ ବୋଇଲେ କାହାକୁ ଭୟ ପୁଣ
ଧରଣୀ ବୋଇଲେ ତୋର ଦାରାବୈରୀ ଜାଣ ।
ଶ୍ରୀରାମ ବୋଇଲେ ମୁଁ କେମନ୍ତେ ତାକୁ ମାରି
ଧରଣୀ ବୋଇଲେ ସେତୁବନ୍ଧ ବାନ୍ଧ ବେଗ କରି ।
ସେଥିପରେ ସୈନ୍ୟ ଘେନି ଲଙ୍କାଗଡ଼େ ଯାଅ
ତେବେ ସିନା ମରିବ ବିଶ୍ରବାର ପୁଅ ।
ତାହାର ସଙ୍ଗରେ ମରିବେ ବହୁ ଦୈତ୍ୟ
ଚାରି ରାବଣ ସଗୋତ୍ରେ ହୋଇବେ ଯେ ହତ ।
ଶ୍ରୀରାମ ବୋଇଲେ କିପରି ଆମ୍ଭେ ଯିବୁଁ
କାହିଁରେ ବନ୍ଧ କରିବୁଁ କିପରି ତରିବୁଁ ।
ଧରଣୀ ବୋଇଲା ବାନର ରକ୍ଷବଳ
ଗିରି ପର୍ବତ ବହି ଆଣନ୍ତୁ ସକଳ ।
ଶ୍ରୀରାମ ବୋଇଲେ ପର୍ବତ ମହାମେରୁ
ଋକ୍ଷ ବାନର କେମନ୍ତେ ଆଣିବେ ସେଥିରୁ ।
ଧରଣୀ ବୋଇଲେ ଆଜଠାରୁ ପୁଣ
ଚଉଦ ଦିନଯାଏଁ ହେଙ୍ଗୁଳା ଗୋଳ ଜାଣ ।
ଥୁଆହେଲା ପରାଏ କୋଟିଏକ ଗିରି
ପୂର୍ବ ପଶ୍ଚିମରୁ ଆଣିବେ ଯାଇକରି ।
ତିଳ ଚୋପାପ୍ରାୟ ଉଶ୍ୱାସ ଲାଗିବ
ଚଉଦ ଦିନ ଗଲେ ମେରୁ ଭାରି ହେବ ।
ଶୁଣିଣ ରଘୁନାଥ ହରଷ ହୋଇଲେ
ଉଠିଣ ଧରଣୀଙ୍କି ଶାନ୍ତଶୀଳ କଲେ ।
ସକଳ ଚିନ୍ତାମାନ ଛାଡ଼ିଲା ଧରଣୀ
ମେଦିନୀ ଗୋଟି ତାକୁ ଉଶ୍ୱାସ ହେଲା ପୁଣି ।
ଓଳଗ ମେଲାଇଣ ଅନ୍ତର୍ଦ୍ଧାନ ହେଲା
ଜାଣିଲେ ସର୍ବବଳ ଧରଣୀ ଆସିଥିଲା ।
ପାର୍ବତୀ ବୋଇଲେ ଶୁଣ ତ୍ରିଲୋଚନ
ସେଠାରୁ କିସ କଲେ କୌଶଲ୍ୟା ନନ୍ଦନ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଧରଣୀ ଶ୍ରୀରାମଙ୍କୁ କହିଗଲା ଧାଡି ।
ତେଣୁ ସେ ଶରୀର ଉଶ୍ୱାସ ତାର ହେଲା
ମୁଣ୍ଡରୁ ପର୍ବତ ଥୋଇଲା ପରି ଭଲା ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ଜାମ୍ବେବ ଚାହିଁଣ ଶ୍ରୀରାମ ପଚାରି ।
ନଳ କେଉଁ ଗୁଣରୁ ଛୁଇଁଲେ ପଥର
ଜଳରେ ଭାସେ ସେ କଥା କହ ମୋର ଆଗର ।
ଜାମ୍ବେବ ବୋଇଲେ ଶୁଣ ହେ ଦାଶରଥି
ପ୍ରଭଞ୍ଜନୀ ଅଟଇ ଖଡ଼ଗଦ ଦୁହିତୀ ।

ଖଡ଼ଗଦ ରାଜନ କେଶରୀ କପିକୁ
ପ୍ରଦାନ କରିଣ ଦେଲା ଦୁହିତାକୁ ।
ସେ ଦୁହିତା ଗର୍ଭରୁ ଜନମ ହନୁମନ୍ତ
ପବନର ବୀର୍ଯ୍ୟରୁ ହୋଇଲା ସମ୍ଭୁତ ।
କେଶରୀ କପିର ଏକଇ ଦୁହିତା
ଜନମ ହେଲା ଶୁଣ ଦଶରଥ ପୁତା ।
ସେ କନ୍ୟା କାଳେଣ ହେଲା ଯୁବା ଅଙ୍ଗ
କେଶରୀ ଦୁହିତାକୁ ପ୍ରଦାନ କଲା ବେଗ ।
ମୟ କପିକି ନେଇ ବିଭା କରାଇଲା
ତେଣୁ ସେ ସୁମେଧା ନାରୀ କାନ୍ତକୁ ସେବା କଲା ।
ତ୍ରିପୁର ସୁନ୍ଦରୀ ସେ ତାରାକୁ ପାରେ ବଳି
ମୟ ବାନର ଯେ ତାହାକୁ ଶ୍ରଦ୍ଧା କରି ।
ଏକ ଦିନରେ ମୟ ବାନର ସ୍ୱର୍ଗପୁର
ନିଷ୍କଳ ଘର ଗୋଟି ମନରେ ବିଚାର ।
ସ୍ୱର୍ଗର ବିଶ୍ୱକର୍ମାକୁ କଲା ସୁମରଣା
ତେଣୁ ସେ ବିଶ୍ୱକର୍ମା ଆସିଣ ମିଳେ ସିନା ।
ଦେଖି ମୟ ବାନର ଓଳଗ ମେଲାଇଲା
ଚରଣ ଧୋଇଦେଇ ଆସନେ ବସାଇଲା ।
ବୋଇଲା ରତ୍ନଘର ଗୋଟିଏ ଦିଅ ମୋତେ
ପରମବ୍ରହ୍ମ ଶୁଣି ହରଷ ହେଲେ ଚିତ୍ତେ ।
ରତ୍ନଘର ଗୋଟିଏ ନିର୍ମାଣ ବେଗେ କଲା
ଏହି ସମୟରେ ସୁମେଧା ଭେଟ ହେଲା ।
ବୋଇଲା କଥାଏ ମାଗିବି ତୁମ୍ଭଙ୍କୁ
ହରଷ ମନେ ବିଚାର କରର ସେ କଥାକୁ ।
ମୋର ସଙ୍ଗେ ଏକଦିନ ଅଙ୍ଗ ସଙ୍ଗ ହେବ
ତୁମ୍ଭ ସମାନରେ ମୋର କୁମର ଜାତ ହେବ ।
ବିଶ୍ୱକର୍ମା ବୋଇଲେ ତୁ ଶୁଦ୍ଧସ୍ନାନ ଦିନ
ସୁମରଣା କଲେ ଆସିବି ସେଦିନ ।
ସୁମେଧା ବୋଇଲା ମୋର କାଲି ଶୁଦ୍ଧସ୍ନାନ
ଆଜକ ଏଠାରେ ତୁମ୍ଭେ କର ହେ ବିଶ୍ରାମ ।
ଶୁଣିକରି ବିଶ୍ୱକର୍ମା ସେଠାରେ ରହିଲେ
ଆରଦିନ ସତୀର ସ୍ନାହାନ ଦେଖିଲେ ।
ସୁମେଧା ସୁନ୍ଦରୀ ଯେ ଅପୂର୍ବ ବେଶ ହେଲା
ବିଶ୍ୱକର୍ମାକୁ ସୁମେଧା ରତି ଦାନ ଦେଲା ।
ସୁଯୋଗରେ ବିଶ୍ୱକର୍ମା ବୀର୍ଯ୍ୟଦାନ ଦେଲେ
ତେଣୁ ସେ ସୁମେଧାର ମନ ଶାନ୍ତି ଭଲେ ।
ବିଶ୍ୱକର୍ମା ବୋଇଲେ ଶୁଣ ଗୋ ସୁନ୍ଦରୀ
ମୋହର ସମାନ ତୋର ପୁତ୍ର ଅବତରୀ ।
ଏହି ପୁତ୍ରଟି ତୋର କୁଳ ଉଦ୍ଧରିବ
ଯୁଗେ ଯୁଗେ କଥା ଯେ ତୋହର ରହିବ ।

ବାସୁଦେବଙ୍କ ସଙ୍ଗରେ ହେବ ପ୍ରୀତିଭାବ
ମାମୁଁ ଭଣଜାଙ୍କ କଥା ହୋଇବ ଦୁର୍ଲ୍ଲଭ ।
ପବନର ସୁତ ମାମୁଁ ତାହାର ଭଣଜା
ଦୁଇଜଣ ଦେବତାଙ୍କୁ ବଳିବେ ଏବେ ଯାଅ ଯା ।
ଶୁଣିକରି ସୁମେଧା ନମସ୍କାର କଲା
ସେଠାରୁ ବିଶ୍ୱକର୍ମା ଅନ୍ତର୍ଦ୍ଧାନ ହେଲା ।
ଯେଣୁ ସେ ନଳ ଅଟେ ବିଶ୍ୱକର୍ମା ସୁତ
ସେହି ହେତୁ ନଳ ଯେ ହେଲା ବଳବନ୍ତ ।
ବଳବନ୍ତ ପଣରେ ବନସ୍ତରେ ବୁଲି
କେଶରୀ ଶାର୍ଦ୍ଦୁଳଙ୍କୁ ଧରିକରି ମାରି ।
ଋଷିଙ୍କର ଦ୍ରବ୍ୟମାନ ପକାଏ ସିନ୍ଧୁରେ
ତେଣୁ ସେ ଋଷିମାନେ କ୍ରୋଧ ତାରପରେ ।
ବାଳକ ଜାଣି ଋଷି ତାକୁ ଶ୍ୟାପ ଦେଲେ
ଯେତେକ ଦ୍ରବ୍ୟ ତୁ ପକାଇବୁ ଜଳେ ।
ସକଳ ଭାଷିବ ତୁହି ଯେ ଛୁଇଁଲେ
ଶୁଣିଣ ନଳମନେ ଆନନ୍ଦ ହୋଇଲେ ।
ଏମନ୍ତ ଶ୍ୟାପ ଦେଲେ ଋଷିଗଣ ପୁଣ
ନଳ ଛୁଇଁଲା ଦ୍ରବ୍ୟ ନ ବୁଡ଼େ ଜଳେଣ ।
ସେହିକାଳୁ ଋଷିଙ୍କର କରୁଣା ଯେ ଅଛି
ଏ କାଳକୁ ଉପକାର ହେଲା ରଘୁବଂଶି ।
ପୂର୍ବରୁ ଏସନକ କଥା ଅଛି ଜାଣ
ନଳର ହସ୍ତରେ ବନ୍ଧ ବାନ୍ଧି ରଘୁରାଣ ।
ଏ ନଳ ଯା ଛୁଇଁବ ନ ବୁଡ଼ିବ ଜଳ
ତୋର ସମ ଯେବେ ହୋଇବ ଅଚଳ ।
ସେତୁବନ୍ଧ ବାନ୍ଧିଣ ଯିବା ପାର ହୋଇ
ଏମନ୍ତ ବଚନ ଜମ୍ବେବ ମନ୍ତ୍ରୀ କହି ।
ଶୁଣିଣ ଶ୍ରୀରାମ ମନରେ ଉସତ
ପର୍ବରୁ ଧାତା ବିଚାର କରିଅଛି ସତ ।
ରାବଣ ତ ମରିବା କରିଛି ଉପାୟ
ଯେମନ୍ତେ ମରିବଟି ବିଶ୍ରବା ତନୟ ।
ସକଳ କଥା ଯେ ଜାଣିଲେ ରାମରାଣ
ବୋଇଲେ ସୀତା ମୋତେ ପ୍ରାପତ ହେବ ଜାଣ ।
ଏଥୁ ଅନନ୍ତରେ ଶୁଣ ଗୋସାମଣି
ବରୁଣ ଧରଣୀ ଜମ୍ବେବଙ୍କ କଥା ଶୁଣି ।
ତିନିଜଣଙ୍କଠାରେ ରାମ ମନତୋଷ
ଶ୍ରୀ ଜଗନ୍ନାଥ ଶରଣ ମୁଁ **ବଳରାମ ଦାସ** ।
ସୁଗ୍ରୀକି ରାମ କହନ୍ତି କି କରିବା ମିତ
ବରୁଣ ଧରଣୀ କହିଲେ ବନ୍ଧ ବାନ୍ଧିବାକୁତ ।
ଏତେ କହି ଶ୍ରୀରାମ ନଳକୁ ହକାରିଲେ
ଗଉରବ କରିଣ ପାଶରେ ବସାଇଲେ ।

ଶରୀର ଆଉଁସିଣ ପଚାରନ୍ତି କଥା
କହ ବାବୁ ତୁରେ ବନ୍ଧର ବ୍ୟବସ୍ଥା ।
ତୁହିତ ଛୁଇଁଲେ ନ ବୁଡ଼ିବ ପଥର
ଲୁହା କାମୁଡ଼ା ଯେ ସହିତେ ସକଳ ।
ଏମନ୍ତ କଥାମାନ ବିଧାତା ଅଛି ସଞ୍ଚି
କେମନ୍ତେ ବଞ୍ଚିବ ଯେ ବିଶ୍ରବାର ବଂଶି ।
ଏତେ ବାଗେ ଯାହାକୁ ନ ସହିବେ ବରୁଣ
କେମନ୍ତେ ବଡ଼ ବୋଲି ବୋଲାଏ ରାବଣ ।
ଶୁଣିଣ ବିଭୀଷଣ ଯୋଡ଼ଇ ବେନିକର
ବୋଇଲା ଭୋ ସ୍ୱାମୀ ଅଯୋଧ୍ୟା ଈଶ୍ୱର ।
ଦଶଗ୍ରୀବ ଅଇଶ୍ୱର୍ଯ୍ୟ ମନରେ ପାଇଲା
ହାନିଲାଭ ଦୁଇ କଥା ଜାଣି ତ ପାରିଲା ।
ସୀତାଙ୍କୁ ଦେଇଥିଲେ ନୁହନ୍ତା ପ୍ରାଣେ ନାଶ
ଦେବେ ନ ସହିଲେ କରନ୍ତେ ତାଙ୍କୁ କିସ ।
ତୁମ୍ଭସଙ୍ଗେ ଶତ୍ରୁ ହୋଇ ଦଶଗ୍ରୀବ ଗଲା
ଅଜ୍ଞାନ ପଣରେ ଏବେ ହୀନବୁଦ୍ଧି କଲା ।
କହିଲାର ବୋଲ ଯେ ନ କଲା ବିଂଶପାଣି
ତେଣୁ ସେ ବିଧାତା ବାମ ତାକୁ ଜାଣି ।
ପାପୀଜନମାନଙ୍କୁ ନ ସହଇ ମହୀ
ସେମାନେ ଥିଲେ ଧରଣୀ ସୁଖ ଯେ ନ ପାଇ ।
ଏହିରୂପରେ କେତେ ପାପିଷ୍ଠ ଦଇତ
ମାରନ୍ତି ବାସୁଦେବ ଏକଥା ନିୟତ ।
ଯେତେବେଳେ ଈଶ୍ୱର ମାରନ୍ତି ଦୈତ୍ୟବଳ
ତେତେବେଳେ ଇନ୍ଦ୍ର ଯେ ମାରନ୍ତି ଅସୁର ।
ଦେବତାଙ୍କର କୂଟ ଯେ ସବୁଦିନେ ଜାଣ
କୌଣସି ଦିନେ ଅସୁର ନୁହନ୍ତି ସଜ୍ଜନ ।
ରାମ ବୋଇଲେ ଦେବତାଙ୍କର କି ଭଲଗୁଣ
ସବୁଦିନେ ଦ୍ୱନ୍ଦ୍ୱ ପାଞ୍ଚୁଥାନ୍ତି ଜାଣ ।
ବିଭୀଷଣ ବୋଇଲା ଦେବେ ସୃଷ୍ଟି ପାଳି
ଛପନକୋଟି ଜୀବଙ୍କର ସହନ୍ତି ଆର୍ଦ୍ଦୋଳି ।
ଅସୁର କ୍ରୁର କରିଣ ପରଦ୍ରବ୍ୟ ଖାଇ
ତେଣୁ ସେ ଅସୁରଙ୍କୁ ନ ସହନ୍ତି କେହି ।
ଶୁଣିଣ ହସନ୍ତି ଶ୍ରୀରାମ ମନେ ମନ
ସୁଗ୍ରୀବଙ୍କୁ ଚାହିଁଣ ବୋଲନ୍ତି ବଚନ ।
ଆଜ୍ଞା ଦିଅ ମିତ ହେ ଋକ୍ଷକପି ଯାନ୍ତୁ
ପର୍ବତ ଉପାଡ଼ିଣ ବହି ସେ ଆଣନ୍ତୁ ।
ବେନିଲକ୍ଷ ପର୍ବତ ଭାଙ୍ଗନ୍ତୁ ଏକଦିନେ
ଦଶ ଦିନରେ ବନ୍ଧ ସମ୍ପୂର୍ଣ୍ଣ ହେବ ଯେହ୍ନେ ।
ଧରଣୀ କହିଲେ ଚଉଦ ଦିନଯାଏଁ
ଗିରିମାନେ ଉଶ୍ୱାସ ହେବେ ଭାରି ନୁହେଁ ।

ଆଉ ଦିନ ବଳିଲେ ସକଳ କପି ମିଳି
ଏକଇ ପର୍ବତକୁ ନ ପାରିବେ ଟୋଳି ।
ଆହୁରି କଥାଏ ସେ କହିଗଲା ମୋତେ
ଅସମୟ କାଳେ ହନୁକୁ ପେଶିବ ତୁରିତେ ।
ତୁମ୍ଭନାମ ଧରି ହନୁ ଟୋଳିବ ଗିରିବର
ଅସାଧ୍ୟ ଲୋକମାନଙ୍କୁ ସେ କରିବ ସାର ।
ତିନିପୁର ପରିଯନ୍ତେ ହନୁ ଭେଦିଯିବ
ତିନିପୁର ବଳିଗଲେ ମୃତ୍ୟୁ ସେ ପାଇବ ।
ତେଣୁ କହୁଛି ମାରୁତି ତିନିପୁର ଯିବୁ
ସେଥିରୁ ବଳିଲେ ତୁ ମୋତେ ନ କହିବୁ ।
ଶୁଣିକରି ହନୁମନ୍ତ ବୋଲେ ଦେବ ଶୁଣ
ଯେଉଁପୁରେ କାର୍ଯ୍ୟ ନାହିଁ ନ ଯିବି ସେ ସ୍ଥାନ ।
ଶୁଣିଣ ଶ୍ରୀରାମ ହରଷ ମନ ହେଲେ
ଅଙ୍ଗଦକୁ ଚାହିଁଣ ବଚନ ବୋଇଲେ ।
ବୋଇଲେ ଋକ୍ଷକପି ରାଜା ଛନ୍ତି ପୁଣ
ଅଷ୍ଟସେନାପତି ତୁମ୍ଭେ ସଙ୍ଗେ ଯାଅ ଜାଣ ।
ପଶ୍ଚିମ ଦିଗରୁ ବେନିଲକ୍ଷ ଗିରିବର
ଘେନିଣ ଯେ ବାବୁରେ ଯାଇଣ ସତ୍ୱର ।
ନଳକୁ ଛୁଆଇଣ ପକାଅ ସିନ୍ଧୁଜଳ
ଯୁଗ ଯୁଗାନ୍ତରେ ରହିବ କଥା ମୋର ।
ଏକଥା ଶକୁନ ଯେ ଅଛଇଁ ଆମ୍ଭର
ପଥର ନ ବୁଡ଼ିଲେ ମରିବ ଦଶଶିର ।
ବିଭୀଷଣଙ୍କୁ ଚାହିଁ ବୋଲନ୍ତି ଶ୍ରୀରାମ
ଏଠାକୁ କେତେଦୂର ଅଟେ ତୋର ଗ୍ରାମ ।
କେଉଁ ସଳଖରେ ବାନ୍ଧିବା ଆମ୍ଭେ ବନ୍ଧ
କେବଣ ପ୍ରକାରେ ଜିଣିବା ଦଶକନ୍ଧ ।
ବିଭୀଷଣ ବୋଇଲା ଶୁଣିବା ଗୋସାଇଁ
ଶତେଯୁଣ ଏଠାକୁ ଅଟଇ ଲଙ୍କା ଭୂଇଁ ।
ଏହି ସଳଖରେ ଉତ୍ତରଦ୍ୱାର ହୋଇ
ମେଘନାଦ ପାଚେରୀ ଚାଳିଶି କୋଶ ତହିଁ ।
ବେନିକୋଶ ଓସାର ଦଶଯୁଣ ଉଚ୍ଚା
ସୁବର୍ଣ୍ଣରେ ନିର୍ମାଣ ପାଚେରୀ ସୁସଞ୍ଚା ।
ପଶ୍ଚିମ ଦଡ଼ଦାଣ୍ଡ ପୂର୍ବରେ ତାଟି ବାଡ଼
ପୂର୍ବଦ୍ୱାର ଗୋଟି ଯେ ଅଟେ ତାର ସାର ।
ପଶ୍ଚିମଦ୍ୱାରେ ରାଜା ଆସନ କରି ବସେ
ସକଳ ଦିଗକୁ ସେ ତେଜ ହିଁ ବିକାଶେ ।
ସହସ୍ରେ ଯୋଜନ କଟକ ଆୟୋଜନ
ପାଚେରୀ ବେଢ଼ି ସେଥିରେ ଚାଳିଶିକୋଶ ଜାଣ ।
ପକ୍ଷୀ ଜନ୍ତୁ ସେଥିରେ ଯାଇ ନ ପାରନ୍ତି
ମେଘମାନେ ଗଲେ ଝୁଣ୍ଟିଣ ପଡ଼ନ୍ତି ।

ତେଣୁ ସେ ପାଚେରୀ ନାମ ମେଘନାଦ
ଲଙ୍କାର ଭିତରେ ଦେଢ ଚଉଷଠି ଦାଣ୍ଡ ।
ଜନ୍ଦି ବିକନ୍ଦି ଯେ ନ ଯାଇ ଗଣନ୍ତା
ସତେକ ହାଟ ତହିଁରେ ସଦା କିଣାବିକା ।
ଯେ ଅବା ବେଳକ ସେ ସ୍ନାହାନ କରନ୍ତି
ଅମୃତ ସମାନେ ସେଥିରେ ଭୋଜନ କରନ୍ତି ।
ବେଦବର ସେଥିରେ ତୀର୍ଥେକ ରଚିଲା
ଗୋମୁଖି ବୋଲି କରି ନାମ ତାର ଦେଲା ।
ବାରକୋଟି ଧେନୁଦାନ କଲେ ଯେତେ ଫଳ
ସେ ତୀର୍ଥରେ ସ୍ନାନ କଲେ ପାଏ ତେତେ ଫଳ ।
ଲଙ୍କେଶ୍ୱରୀ ବୋଲିଣ ଦେବୀଏ ତହିଁ ଅଛି
ଯାବତ କଥା କରଇ ଦୈତ୍ୟ ତାକୁ ପୁଛି ।
ଶଶିଭୂଷଣ ବୋଲି ଏକ ଲିଙ୍ଗ ଅଛି
ସେ ଲିଙ୍ଗ ଗୋଟିକ ଈଶ୍ୱର ସଙ୍କେ ଲେଖି ।
ସେ ଲିଙ୍ଗକୁ ଆରାଧନା କରଇ ଲଙ୍କପତି
ଶଯ୍ୟାରୁ ଉଠଇ ସେ ପ୍ରହରେ ଥାଉ ରାତି ।
ନିତ୍ୟକର୍ମ ସାରିଣ ଆଖଡ଼ା ଶାଳେ ପଶି
ସାଧନା ସାଧିବାରେ ପ୍ରହରେ ହୁଏ ନିଶି ।
ସାଧନାର ଉତ୍ତାରୁ ସେ ପଢ଼େ ଚାରି ବେଦ
ବିଷ୍ଣୁ ପୁରାଣରୁ ସେହୁ ପଢ଼େ ଲକ୍ଷେ ପଦ ।
ଦୁଇଲକ୍ଷ ପଦ ରୁଦ୍ରନାମକୁ ଜପଇ
ଚଣ୍ଡୀମନ୍ତ୍ର ଜପଇ ସହସ୍ରେକ ସେହି ।
ଉଦୟ ସମୟରେ ସନ୍ଧ୍ୟା ପାଠ ପଢ଼ି
ସୂର୍ଯ୍ୟଙ୍କ ପୂଜା ସେ ଯେ କରେ କରଯୋଡ଼ି ।
ଦୋହରା ମନ୍ଦିରେ ପ୍ରବେଶ ହୁଏ ଯାଇ
ଘୃତଧାରା ଦେଇ ସେ ଅନଳ ତୋଷଇ ।
ଦେବତା ପୂଜା ସେ କରଇ ସେଠାରୁ
ମାନ୍ୟ ଧର୍ମ ସେ ଯେ କରଇ ତାପରୁ ।
ରାଣୀ ହଂସ ପୁରରେ ହୁଏ ପରବେଶ
ରାଣୀଙ୍କ ସଙ୍ଗରେ ସେ କରେ ରତି ରସ ।
ପାଞ୍ଚ ସାତରାଣୀ ସଙ୍ଗେ ରମଣ ବିଧି କରି
ସେଠାରୁ ଭୋଜନ କରେ ଦଶଗିରି ।
ଷଡ଼ରସରେ ଭୋଜନ କରି ହୁଏ ତୋଷ
ବିଡ଼ିଆ ଭୁଞ୍ଜିଣ ମନରେ ସନ୍ତୋଷ ।
ଲକ୍ଷେକ ବ୍ରାହ୍ମଣଙ୍କୁ ବରିର ଦାନ ଦେଇ
ଦୁଃଖି ଦରିଦ୍ରଙ୍କୁ ଦାନ ସେ ଦିଅଇ ।
ଦାନ ସାରି ସେଠାରୁ ଚଳେ ଦଶାନନ
ମତ୍ତଗଜ ପିଠିରେ ବସଇ ବହନ ।
ଗଜ ଗମନ ସାରି ଅଶ୍ୱପରେ ବସି
ହରଷ ମନରେ ଚଳଇ ବିଂଶ ଆଖି ।

ଧାଉଁରିଆ ଶର ଯେ ବିନ୍ଧଇ ବେଗ କରି
ପାଞ୍ଚ ସାତଅଣ୍ଟୁ ଯେ ଫୁଟିଲେ ଛାଡ଼ି କରି ।
ଗୋଡ଼ାଇ ବାହୁଟିଆ ଧରିଣ ଆଣନ୍ତି
ସେଠାରୁ ବରଡ଼ା ପରେ ବିଜୟ କରନ୍ତି ।
ଶରୀର ପଖାଳିଣ ଯାଏ ଲଙ୍କସାଇଁ
ଅମଳାନ ବସନ ଆଣିଣ ପିନ୍ଧଇ ।
ଦିବ୍ୟ ଅଳଙ୍କାର ଦେହେ କରେ ଆଭରଣ
କରିଣ ବିଶ୍ରବାସୁତ ଦିଶେ ଶୋଭାବନ ।
କେଶରେ କୁସୁମ ଦିବ୍ୟ ଜାତି ଗଭା
ପାଗ ପରେ ମୁକୁଟ ଦିଶେ ଅତି ଶୋଭା ।
ଦଶ ଲଲାଟରେ କସ୍ତୁରୀ ଚିତା ଘେନି
ସଙ୍ଗରେ ବିଜେ କରିଥାନ୍ତି ସୁର ମୁନି ।
ବିଚିତ୍ର ଅମଳାଣ କରନ୍ତି ଦୋଷଡ଼ା
ରୁଣଝୁଣ ବାଜଇ ପାଦେ ନୂପୁର ଯୋଡ଼ା ।
ସୁବର୍ଣ୍ଣର କଠଉ ଚଢ଼ିଣ ବୀର ଆସେ
ଶିର ପରେ ଅଳକା ଚନ୍ଦ୍ରମା ପ୍ରାୟ ଦିଶେ ।
ତାମ୍ବୁଳ ଭୁଞ୍ଜଇ ସେ ଚାଲିବାର ପଥେ
ସଙ୍ଗରେ ପଟୁଆର ରାଉତ ମାହୁନ୍ତେ ।
ଯେତେବେଳେ ଦଶଶିର ବସେ ଆସ୍ଥାନର
ଚାମର ବିଞ୍ଚଣୀ ଯେ ପଡ଼େ ନିରନ୍ତର ।
ଗହ ଗହ ସଭା ଯେ ଏଗାର ଘଡ଼ି ଯାଏ
ହସ୍ତୀ ଘୋଡ଼ା ପାଇକ ଦେଖଇ ଦୈତ୍ୟରାୟେ ।
ରାଜ୍ୟ ଦେଶ ବିବିଧ ଗ୍ରାମର ବାରତା
ପାତ୍ର ଅମାନାତ୍ୟ ପୁତ୍ରମାନଙ୍କ ଚେରଷ୍ଟା ।
ସକଳ କଥାମାନ ସଂଖୋଳା କରିଣ
ଭିତରକୁ ଯାଏ ଯେ ଆସ୍ଥାନ ଭାଙ୍ଗିଣ ।
ନାଡ଼ି ଘଡ଼ିଆଳ ଆସି ଛାମୁରେ ଜଣାଏ
ସେଥିକି ସାବଧାନ ହୁଏ ଲଙ୍କାରାୟେ ।
ଅଭେଦ ପୁରେ ଯାଇ ବିନ୍ଧିଣ କରଇ
ସେଠାରୁ ଯାଇଣ ସେ ମାର୍ଜଣା ହୁଅଇ ।
ଦୋଅଡ଼ା ମଣୋ ହିଁ କରେ ଲଙ୍କପତି
ଚନ୍ଦ୍ରର ରାନ୍ଧଣାରେ ଯାଇ ଭୁଞ୍ଜେ ସେଟି ।
ସୁପକ୍ୱ ଆହାର ଭୁଞ୍ଜେ ଲଙ୍କପତି
ଆଞ୍ଚୋବନ କରିଣ ମନରେ ତୃପତି ।
ତେରଘଡ଼ିଠାରେ ତାର ମଣୋହି ସମ୍ପୂର୍ଣ୍ଣ
ତାମ୍ବୁଳ ଲାଗି ନେଇ କରଇ ଦାସୀ ପୁଣ ।
ଲବଙ୍ଗ ଅଳାଇଚ ଜାଇଫଳ ଖାଏ
ଶଯ୍ୟାରେ ଲଙ୍କପତି କରଇ ବିଜୟେ ।
ଲୋକଙ୍କୁ କଢ଼ାଇଣ ହୁଏ ଅବକାଶ
ରାଣୀହଂସ ଆସଣ ଅଟନ୍ତି ତାର ପାଶ ।

ତିନିକୋଟି ପଚାଶ ସହସ୍ର ତାର ରାଣୀ
ଯାହାକୁ ମନ ଇଚ୍ଛେ ତାହାକୁ ଭୋଗେ ପୁଣି ।
ସେଥିର ଉତ୍ତାରୁ ଯେ ନିଦ୍ରାରେ ଅଶକତ
ରାତ୍ର ପ୍ରହରେ ଥାଉ ଉଠଇ ତ୍ୱରିତ ।
ଏମନ୍ତ ପ୍ରକାରେ ନିତ୍ୟ କରଇ ଦଶାନନ
କରଯୋଡ଼ି ଏହା କହଇ ବିଭୀଷଣ ।
ଶୁଣିଣ ଶ୍ରୀରାମ ଧଇଲେ ଧନୁଶର
ଦକ୍ଷିଣ କରେ ଅଛି ପ୍ରଚଣ୍ଡ ଅସିବର ।
ବୋଇଲେ ଏହି ଅନୁକୂଳ ଯେ ମୋହରି
ଦିବସେ ଦଶଶିର ରମଇଁ ଯେବେ ସ୍ତିରୀ ।
ନିଶ୍ଚୟ ରାବଣ ଆଜହୁଁ ଗଲା କ୍ଷୟ
ଏ ଘାନ୍ତି ତାକୁ କେହି ନ ରଖନ୍ତି ରାୟ ।
ସୁର ନର କିନ୍ନର ନ ରଖିବେ ଆସି
ରଖିଲେ ନିଶ୍ଚୟ ମୁଁ ମାରିବଇଁ ତ୍ରାସି ।
ଏତେ ବୋଲି ଶ୍ରୀରାମ ଉଠି ଉଭା ହୋଇ
ପର୍ବତ ବୋହି ଆଣ ବୋଲି ଆଜ୍ଞା ଦେଇ ।
ରାବଣ ବଳକଳ ଜଣାଗଲା ଏବେ
ଏହି ଅନୁକୂଳ ବେଳ ଅଟେ ମୋର ତେବେ ।
ଏତେ କହି ରାମଚନ୍ଦ୍ର କପିରାଜ ଚାହିଁ
ପର୍ବତ ଆଣନ୍ତୁ ସୈନ୍ୟ ବୋଲି ଆଜ୍ଞା ଦେଇ ।
ରାବଣର ନିୟୁନ ଯେ ପାଇଲିଣି ମୁହିଁ
ଅନୁକୂଳ ବେଳ ଆଉ ଏଥି ଅନ୍ୟ ନାହିଁ ।
ଶୁଣି କପିଈଶ ମାରୁତିକି ବୋଇଲେ
ମହିଧରମାନ ଆଣ ସୈନ୍ୟ ଘେନି ତୁଳେ ।
ଅଙ୍ଗଦ ସହିତେ ତୁମ୍ଭେ ସମସ୍ତେ ହେ ଯାଅ
ଯେ ଯାହା ଅନୁରୂପେ ପର୍ବତ ବୁହାଅ ।
ସାଗରେ ବନ୍ଧବାନ୍ଧି ସୈନ୍ୟ ସୁଖେ ଯିବା
ଏ ମହାଜଳକୁ ଆଉ ସଂଶୟ ନ ଥିବା ।
ଶୁଣି ମନେ ବିଚାରଇ ପବନ କୁମର
ଏଠାକୁ ଲଙ୍କାଗଡ଼ ଚାରିଶକୋଶ ଦୂର ।
ଏତେ ଗିରି ଆଣିବା ହୋଇବ କେତେ ଦିନ
ଏବେ ଏ କଥାକୁ ଏବେ ବିଚାରିବା ମନ ।
ମେରୁରୁ ଖଣ୍ଡେ ଭାଙ୍ଗି ଆଣିବା ଶତେ ଯୁଣ
ଆଜ ହିଁ ବନ୍ଧ ହେବ ଦେଖନ୍ତୁ ରାମରାଣ ।
ଏମନ୍ତ ମନେ ବିଚାର କରଇ ମାରୁତି
ଯୋଗବଳେ ସେ କଥା ଜାଣିଲେ ବେଦପତି ।
ପବନ ଦେବତାକୁ ହକାରିଲେ ପାଶ
'ତୋହର ପୁତ୍ରକୁ ତୁ ବୁଝାଇଣ ଆସ ।
ବେଗ ହୋଇ ଯାଅ କରନାହିଁ ହେଳା
ଅନ୍ୟାୟ ବିଚାର କରୁଛି ତୋର ବଳା ।

ମେରୁରୁ ଖଣ୍ଡେ ଭାଙ୍ଗି ଆଣିତ ତାର ମନ
ବନ୍ଧ ବାନ୍ଧି ସେହିପରି କରିବ ସଇନ ।
ମେରୁଗିରି ଅଟଇ ଜଗତ ଧାରଣ
ଦେବତାମାନଙ୍କ ସ୍ଥାନ ଅଟଇ ସେ ପୁଣ ।
ସବୁବେଳେ ନିର୍ଦ୍ଦୋଷୀ ସେ ଜଗତ ହିତକାରୀ
ତାକୁ ମାରୁତି ଦୁଃଖ ଦେବଟି ନ ବିଚାରି ।
ସତ୍ୱର ତୁ ଯାଅ ବାବୁ ନିବର୍ତ୍ତାଇ ଦିଅ
ନୋହିଲେ ଏହିକ୍ଷଣି କରିବ ଦୁଃସହ ।
ଶୁଣିଣ ପବନ ଧଇଲା ବହନ
ଗୁପତରେ ଆସିଣ ଭେଟିଲା ହନୁମାନ ।
କୋଳେ ଧରି କୁମରକୁ ମୁଖେ ଚୁମ୍ୱେ ଦେଲା
ଦେବବର ଆଜ୍ଞା ତାର ଆଗରେ କହିଲା ।
ଶୁଣ ହନୁମନ୍ତ ମେରୁ ଜଗତ ଧାରଣା
ଅକାରଣେ ନ କରୁତୁ ଏତେକ ବୋଲଣା ।
ଦେବତାମାନଙ୍କର ସେ ସର୍ବଦା କାଳେ ବାସ
ତାକୁ ପ୍ରାଣ ନ ଦିଅ ନ ଯାଅ ତାର ପାଶ ।
ହେମବନ୍ତ ପର୍ବତ ଦୁହିତା ହେମବନ୍ତୀ
କେବେ ହେଁ ନ ଯିବୁ ବାବୁ ସେ ପର୍ବତ କତି ।
ମନ୍ଦର ଗିରିଧରି ଅଛନ୍ତି ଭଗବାନ
କେବେ ହେଁ ନ ଯିବୁ ସେ ଗିରିର ସନ୍ନିଧାନ ।
ପୃଥ୍ୱୀ ଅଷ୍ଟଦିଗେ ଗିରି ଯେ ଅଛନ୍ତି
ଅଷ୍ଟଚଣ୍ଡୀ ତହିଁରେ ବିଜୟ କରିଛନ୍ତି ।
ମୋହର ବଚନ ବାବୁ କର ତୁ ପ୍ରମାଣ
ଏତେ ଗିରି ଛାଡ଼ି ଆନ ଗିରି ଆଣ ।
ଶୁଣିଣ ହନୁମନ୍ତ ମନରେ ସନ୍ତୋଷ
କହିଲା ନ ଯିବୁ ଆମ୍ଭେ ଏତେ ଗିରି ପାଶ ।
ଏମନ୍ତ କହି ଅଙ୍ଗଦ ଯୂଥପତି ଘେନି
ସଙ୍ଗତରେ ଘେନାଇଁ ସେ ଅନେକ ସଇନି ।
ପଶ୍ଚିମ ବିପିନୀରୁ ଗିରି ଉପାଡ଼ନ୍ତି
ଏକ ଦୁଇ ତିନି ଚାରି ପାଞ୍ଚ ଯେ ବୁହନ୍ତି ।
ଏକକୁ ଆରେକ ଯେ ଆଗସରି ଯାନ୍ତି
କନ୍ଧେ ମୁଣ୍ଡେ ହସ୍ତେ ଘେନି ଗଗନେ ଉଡ଼ନ୍ତି ।
ଅଇଲାର ବେଳେ କେହୁ ହୁଅନ୍ତି ଅଦୃଶ୍ୟ
ଆସ ଆସ ବୋଲି କେ ଉଡ଼ଇ ଆକାଶ ।
ଶଏ ଯୁଣ ଯାଏ ଆଣନ୍ତି ଗିରିମାନ
କରେ କନ୍ଧେ ଶିରେ ବହି ଆଣନ୍ତି ବହନ ।
ବନଜୀବମାନେ ଯେ ଗିରିପରେ ଥିଲେ
ଗିରିବୋହି ଆଣନ୍ତେ ସେମାନେ ଅଇଲେ ।
ଲକ୍ଷ କପିମାନେ ଯେ ଗଗନେ ଉଡ଼ନ୍ତି
ପର୍ବତରେ ଯେତେ ଜୀବଜନ୍ତୁମାନେ ଥାନ୍ତି ।

ଆକାଶ ଗଙ୍ଗାକୁ ବଢ଼ାଇଲେ କର
ରାମଚନ୍ଦ୍ର ମହିମାରୁ ପାଇଲେ ଗଙ୍ଗାନୀର ।
ଦେବତାଏ ଧନ୍ୟ ଧନ୍ୟ କରନ୍ତି ଆନନ୍ଦେ
ହୁଳହୁଳି ଦିଅନ୍ତି ଅପସରୀ ବୃନ୍ଦେ ।
ଧନ୍ୟ ଧନ୍ୟ ରଘୁନାଥ ମହିମା ସାଗର
ମର୍ତ୍ତ୍ୟର ଜୀବମାନେ ପାଇଲେ ସ୍ୱର୍ଗପୁର ।
ବାନର ଭଲ୍ଲୁକମାନେ ବହିଲେ ପର୍ବତ
ସିନ୍ଧୁରେ ବନ୍ଧ ବାନ୍ଧିବାକୁ ସେ ସମର୍ଥ ।
ଅସୁରଙ୍କ ସଙ୍ଗରେ ସେ କରିବେ ସମର
ଧନ୍ୟ ଧନ୍ୟ ରାମଚନ୍ଦ୍ର ମହିମା ତୁମ୍ଭର ।
କହନ୍ତି ମହାଦେବ ଶୁଣ ଗୋ ଦେବୀ ଉମା
ତିନିଲୋକେ ଖ୍ୟାତ ହେଲା ରାମଙ୍କ ମହିମା ।
ହେଳାରେ ପୋତିଲେ ସେ ଲବଣ ମହାସିନ୍ଧୁ
ବନର ଜୀବମାନେ ହୋଇଲେ ତାଙ୍କ ବନ୍ଧୁ ।
ସ୍ୱୟଂ ନାରାୟଣ ଯେ ଦଶରଥ ସୁତ
ସ୍ୱୟଂ ଲକ୍ଷ୍ମୀ ଜଗତ୍‌ମାତ ଜନକ ଦୁହିତା ।
ଦେବତାମାନେ ସାକ୍ଷାତେ ଋକ୍ଷ କପିମୂର୍ତ୍ତି
ନୋହିଲେ ଆନ ବଳେ କି ସିନ୍ଧୁ ହୁଏ ପୋତି ।
ଏଥୁ ଅନନ୍ତରେ ଋକ୍ଷ କପିଗଣ
ବହିଣ ଆଣୁଛନ୍ତି ମହିଧର ମାନ ।
ନଳକୁ ଛୁଆଁଇଣ ପକାନ୍ତି ସିନ୍ଧୁଜଳେ
ଧାମନ୍ତି ତୋଷ ହୋଇଣ ଏକୁ ଆର ବଳେ ।
ପୁଣି ଆସି ପର୍ବତ ବହି ଘେନି ଯାନ୍ତି
ଗିରିଘେନି ଆସିବାରେ ବାଟ ନ ପାଆନ୍ତି ।
ବେନିଥର ପର୍ବତ ଆଣନ୍ତେ ନଳେ ଛୁଇଁ
ଦଶଯୁଣ ପରିଯନ୍ତେ ସିନ୍ଧୁ ପୋତା ହୋଇ ।
କୁଦରେ ବନ୍ଧମୁଣ୍ଡ ଲାଗିଲାକ ଯାଇ
ତରଙ୍ଗ ମନ୍ତ୍ରୀ ଯାଇ ରାମଙ୍କୁ ଚେତାଇ ।
ଭୋଦେବ ମୋହର ବାଣୀ ଶୁଣ ରାମଚନ୍ଦ୍ର
ସାଗର ଆଜଦିନ ଏତିକି ହେଉ ବନ୍ଦ ।
ଏହି ସମୟରେ ରବି ଅସ୍ତ ଯାଇ
ତିମିରକାଳ ଆସି ଆଚ୍ଛାଦିଲା ମହୀ ।
ଅଠର ସହସ୍ର କପିଶୁକ୍ଳ ବର୍ଣ୍ଣ ପୁଣ
ବାରକୋଟି ଗୋଲାଙ୍ଗୁଡ଼ା ଠୁଳରେ ଛନ୍ତି ଜାଣ ।
ଦଧିମୁଖ କପି ଯେ ଆଠକୋଟି ହୁଏ
ତିନିକୋଟି କାଳିମୁଖା ସେହି ବଳେ ରହେ ।
ରକ୍ତମୁଖା ଅଟନ୍ତି ଦଶକୋଟି ଜଣ
ଶଙ୍ଖମୁଖା ଅଟନ୍ତି ତିନିକୋଟି ପୁଣ ।
ଶ୍ରୀରାମ ଆଜ୍ଞାଦେଲେ ବନ୍ଧରେ ତୁମ୍ଭେ ରହ
ନିଶାଣ ବଜାଇଣ ପହରା ଦେଉଥାଅ ।

ଶୁଣିକରି କପିବଳ ବନ୍ଧରେ ଉଠିଲେ
ଦଶଯୁଣ ପରିଯନ୍ତେ ନିଗଞ୍ଜେ ରହିଲେ ।
ଦିହୁଡ଼ି ଚନ୍ଦ୍ରାଦୀପ ଲଗାଇଲେ ହୁଳା
ହୁଳହୁଳି ଗାଲତୁରୀ ବାଇଜରେ ଲୀଳା ।
ରାମଚନ୍ଦ୍ର ବୋଇଲେ ତୁ ହନୁମନ୍ତ ଶୁଣ
ଅଷ୍ଟସେନାପତି ଅଙ୍ଗଦ ସଙ୍ଗେ ଘେନିଣ ।
ଆଗୁଆଣି ଠଣାରେ ରହ ତୁମ୍ଭେ ଯାଇ
ହାନିଲାଭ କଥାକୁ ସାବଧାନ ହୋଇ ।
ମଧ୍ୟେରେ ଜଗିଣ ଯୁଥପତି ଥାନ୍ତୁ
ମଲ୍ଲ ମହାମଲ୍ଲ ମୋର ସଙ୍ଗରେ ରହନ୍ତୁ ।
ଋକ୍ଷକପି ରାଜାମାନେ ରହନ୍ତୁ ମୋ ପାଶ
ଏମନ୍ତ ବୋଲି ଆଜ୍ଞା ଦେଲେ ରଘୁଶିଷ୍ୟ ।
ଶୁଣିକରି ସେନାପତି ଆଗେ ଚଳିଗଲେ
ମଧ୍ୟେରେ ଯୁଥପତି ସକଳ ରହିଲେ ।
କୂଳରେ ରାମଲକ୍ଷ୍ମଣ ସୁଗ୍ରୀ ବିଭୀଷଣ
ମଲ୍ଲ ମହାମଲ୍ଲ ଯେ ଋକ୍ଷ କପିଜାଣ ।
ଉତ୍ତରକୂଳୁ ପ୍ରଥମ ଦିନ ବନ୍ଧ ହୋଇ
ଭାସିଲା ପର୍ବତ ଯେ ଦେଖିଲେ ରଘୁସାଇଁ ।
ହରଷ ହୋଇ ରାମ ସିନ୍ଧୁ କୂଳକୁ ଗଲେ
ସନ୍ଧ୍ୟା ସୁମରିଣ ତର୍ପଣ ତହିଁ କଲେ ।
କପି ଋକ୍ଷପତି ସୁଗ୍ରୀବ ବିଭୀଷଣ
ସିନ୍ଧୁ କୂଳରେ ସମସ୍ତେ ସାରି ନିତ୍ୟକର୍ମ ।
ଆସିଣ ନବରେ ହେଲେ ପରବେଶ
ଫଳମୂଳ ଭୋଜନ କଲେ ରଘୁ ଶିଷ୍ୟ ।
ଆଞ୍ଚୋବନ ସାରିଣ ଭୁଞ୍ଜି ଜଷାଫଳ
ମୃଗଛାଲ ଉପରେ ଶୟନ ତତ୍କାଳ ।
ଶ୍ରୀରାମ ନିଦ୍ରା ଯିବାରୁ ଲକ୍ଷ୍ମଣ ଭୁଞ୍ଜିଣ
ସୁଗ୍ରୀବର ବିଭୀଷଣ ଅଙ୍ଗଦ ହନୁମାନ ।
ମହାମଲ୍ଲ ମଲ୍ଲ ଋକ୍ଷ କପିବଳ
ସମସ୍ତେ ଆସି ଭୋଜନ କଲେ ଫଳମୂଳ ।
ସେନାପତି ଯୁଥପତି ଭୁଞ୍ଜି ଫଳମୂଳ
କେହୁ ନିଦ୍ରା ଗଲେ କେ ବୁଲଇ ବନ୍ଧପର ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ଏ ସମୟରେ ସାତଘଡ଼ି ହୋଇଲା ଯେ ରାତି ।
ଲଙ୍କାର ଅସୁର ଆସି ରାମ ଥାଟେ ଥିଲା
ମାୟା କପି ହୋଇଣ ସେ ବନ୍ଧ ଦେଖୁଥିଲା ।
ରଘୁନାଥ ନିଦ୍ରାଯିବାର ଦେଖିଲା
କପିରୂପ ତେଜିଣ ଲଙ୍କାକୁ ଚଳିଲା ।
ରାବଣର ଆଗରେ ପ୍ରବେଶ ହେଲା ଯାଇ
ଦେଖିଲା ଜଗତି ପରେ ଅଛି ଲଙ୍କାସାଇଁ ।

ଡଗର ଆଗରେ କହିଲା ଚାରଯାଇ
ଜମ୍ବୁ ଦ୍ୱୀପରୁ ଚାର ଅଇଲା ଗୋସାଇଁ ।
ଶୁଣିକରି ରାବଣ ହରଷ ମନ ହେଲା
ଚାରକୁ ଅଣାଅରେ ବୋଲିଣ ଆଜ୍ଞା ଦେଲା ।
ଶୁଣିକରି ଡଗର ଘେନିଗଲା ଆସି
ଦଶଗ୍ରୀବ ଦେଖି ତାକୁ ବହନ ପ୍ରକାଶି ।
କହରେ ଶ୍ରୀରାମର କେମନ୍ତେ ବିଚାର
କେଉଁ ରୂପେ ସିନ୍ଧୁକୁ ତରିବେ ବଳ ତାର ।
କେମନ୍ତ ବିଚାର କରନ୍ତି ରହି କୂଳ
ସଙ୍ଗରେ ଅଛନ୍ତି କେତେ ସୈନ୍ୟବଳ ।
ସୁଗ୍ରୀ ବିଭୀଷଣ ଆବର ହନୁମନ୍ତ
ଜମ୍ୱେବ ସୁଷେଣ ଆବର ବାଳିସୁତ ।
ଚାର ବୋଇଲା ଶୁଣ ହେ ଲଙ୍କରାଣ
ଶ୍ରୀରାମଙ୍କ ସଙ୍ଗରେ ଅନେକ ସୈନ୍ୟ ଜାଣ ।
ସୈନ୍ୟଙ୍କୁ ଦେଖି ମୁଁ ଯେ କଳିବାକୁ ଗଲି
ବାରଣାସି ପରିଯନ୍ତେ ଗମନ ମୁଁ କଲି ।
ସବୁଠାରେ ଦେଖିଲି ସୈନ୍ୟ ପୂରିଛନ୍ତି
ସିଂହର ପରାଏ ସର୍ବେ ରଡ଼ି ଦ୍ୟନ୍ତି ।
ଚାରିବର୍ଣ୍ଣେ ବାନର ଦୁଇବର୍ଣ୍ଣେ ଭାଲୁ
ପୂରିଛନ୍ତି ବାନର କଳି ତ ନ ପାରିଲୁଁ ।
ବାରାଣସୀଠାରୁ ମୁଁ ଲେଉଟି ଅଇଲି
ଶ୍ରୀରାମର ପାଶରେ ପ୍ରବେଶ ହୋଇଲି ।
ଦେଖିଲି କୁଶଶଯ୍ୟା କରିଛି ରାମରାଣ
ବରୁଣକୁ ହୃଦରେ ଜପ କରେ ପୁଣ ।
ତିନିଦିନ ପର୍ଯ୍ୟନ୍ତେ ବରୁଣ ସାୟରୁ ନ ଯାଇ
କ୍ରୋଧରେ ଶ୍ରୀରାମ ଯେ କୋଦଣ୍ଡ ଧରଇ ।
ବୋଇଲେ ସମୁଦ୍ରକୁ ଦେବି ମୁଁ ଶୁଖାଇ
ଆଗେ ବରୁଣକୁ ମାରିବଇଁ ମୁହିଁ ।
ଏମନ୍ତ ବିଚାରନ୍ତେ ଧବଳାଙ୍ଗୀ ଆସି
ବୋଇଲେ ରାବଣ ଡରେ ବରୁଣ ନ ଆସି ।
ଲୋକ ପଠିଆଇ ଆଣିବ ଯେବେ ଧରି
ନୋହିଲେ ବରୁଣ ନ ଆସେ ଚାପଧାରୀ ।
ଶୁଣିଣ ଶ୍ରୀରାମ ମନରେ କ୍ରୋଧ ହେଲେ
ଦେଖିବା ବାପ ରାବଣ ରଖିବ ବୋଇଲେ ।
ମାରୁତିକି ବୋଇଲେ ଯାଅରେ ବହନ
ବରୁଣକୁ ଧରିଣ ମୋ ପାଶକୁ ଆଣ ।
ଶୁଣିଣ ହନୁମନ୍ତ ବେଗେ ଚଳିଗଲା
ବରଣକୁ ଧରିଣ ସେ ଶୀଘ୍ର ଆଣିଲା ।
ଦେଖିଣ ଶ୍ରୀରାମ ବୋଇଲେ ତାକୁ ରାଗେ
ସାଗରେ ବାଟ ମୋତେ ଦିଅରେ ତୁ ବେଗେ ।

ବରୁଣ ବୋଇଲା ଯେ ସାଗର ବାଟ ନାହିଁ
ଅକଳିତ ବାରାନିଧି କଳନା ନ ଯାଇ ।
ନଳର ହସ୍ତରେ ତୁମ୍ଭେ ବନ୍ଧାଅ ସେତୁବନ୍ଧ
ତେବେ ସିନା ପାରି ହୋଇବେ ସୈନ୍ୟବୃନ୍ଦ ।
ନଳକୁ ଋଷିମାନେ ଦେଇଛନ୍ତି ବର
ଛୁଇଁଲେ ସମୁଦ୍ରରେ ନ ବୁଡ଼େ ପଥର ।
ଏତେ କହି ବରୁଣ ନିଜ ପୁରେ ଗଲେ
ପଥର ବହି ନଳର ହସ୍ତେ ଛୁଆଁଇଲେ ।
ପର୍ବତେ ସମୁଦ୍ର ପୋତିଲେ ଦଶଯୁଣ
ଓସାର ଦଶଯୁଣ ବନ୍ଧର ପ୍ରମାଣ ।
ଏମନ୍ତ ଦେଖି ମୁଁ ଯେ ସେଠାରୁ ଅଇଲି
ତୁମ୍ଭର ଆଗରେ ବାରତା କହିଲି ।
ଶୁଣିଣ ରାବଣ ହେଲା ଅସମ୍ଭବ ମନ
ସମୁଦ୍ରରେ ବନ୍ଧ ବାନ୍ଧିଲେ କେହ୍ନେ ରାମ ।
ଏମନ୍ତ ବିଚାରି ମିତ୍ରଘନକୁ ଡକାଇ
ଯାନ ପରେ ବସିଣ ଯାଅ ବେଗ ହୋଇ ।
ଶୁଣିଣ ମିତ୍ରଘନ ବେଗେ ଚଳିଗଲା
ସମୁଦ୍ରରେ ବନ୍ଧ ଦେଖି ତକ୍ଷଣେ ଫେରିଲା ।
ରାବଣ ଆଗରେ କହିଲା ଆସି କରି
ଚାର କଥା ସତ ଆହେ ଦଣ୍ଡଧାରୀ ।
ଦଶଯୁଣ ବନ୍ଧ ଯେ ସିନ୍ଧୁରେ ବାନ୍ଧିଲା
ସେହି ବନ୍ଧ ଉପରେ ବାନର ଜଗାଇଲା ।
ଲଙ୍କାପୋଡ଼ା ମର୍କଟ ହୋଇଛି ଆଗୁଆଣି
ବାଳି ରାଜା କୁମର ସଙ୍ଗରେ ଅଛି ପୁଣି ।
ଶୁଣିଣ ରାବଣ ଇନ୍ଦ୍ରଜିତକୁ କହି
ଚାରିଦ୍ୱାର ଭଲେ ନିରୋଧ କର ତୁହି ।
ଶୁଣିଣ ଇନ୍ଦ୍ରଜିତ ବେଗେ ଚଳିଗଲା
ଲଙ୍କାର ଚାରିଦ୍ୱାର ଦୃଢ଼େ ନିରୋଧ କଲା ।
କବାଟ ଦେଇଣ ଅର୍ଗଳି କିଳି ଦେଲା
ଛିଟିକିଣୀ ଦେଇଣ ବେଗେ ସେ ଅଇଲା ।
କରଯୋଡ଼ି କହିଲା ରାବଣ ଆଗର
ନିରୋଧି ଅଇଲି ଦୃଢ଼େ ଚାରିଦ୍ୱାର ।
ପାର୍ବତୀ ବୋଇଲେ କହ ହେ ଈଶ୍ୱର
ସୀତା ଜାଣିଲେଟିକି ବନ୍ଧ ବାନ୍ଧିବାର ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଅସୁରୀ ଯାଇଥିଲେ ରାବଣର କତି ।
ରାମ ବନ୍ଧ ବାନ୍ଧିବାର ଖବର ଶୁଣିଲେ
ରାବଣର ପୁରରୁ ବେଗେ ଚଳିଗଲେ ।
ଅଶୋକ ବନରେ ହୋଇଲେ ପ୍ରବେଶ
ତ୍ରିଜଟାକୁ କହିଣ ହେଲେ ହସ ହସ ।

ବୋଇଲେ ରାଜଜେମା ଶୁଣ ଆଜ କଥା
ଶ୍ରୀରାମ ଲକ୍ଷ୍ମଣଙ୍କର ଯେମନ୍ତ ବ୍ୟବସ୍ଥା ।
ରାବଣ ଯେ ଶ୍ରୀରାମ ପାଶକୁ ଚାର ପେଶିଲା
କି ଘଟଣା ଘଟୁଛି ବୁଝିବା ବୋଇଲା ।
ରାବଣ ଆଜ୍ଞାରେ ଚାର ଚଳିଗଲା
ଶ୍ରୀରାମଚନ୍ଦ୍ରଙ୍କର ଖବର ଆଣିଦେଲା ।
ବୋଇଲା ରଘୁନାଥ ଉପାୟ ଯେ କଲା
ବରୁଣକୁ ପଚାରି ବନ୍ଧ ବନ୍ଧାଇଲା ।
ପର୍ବତେ ସମୁଦ୍ର ପୋତେ ରାମରାଣ
ନଳ ବୋଲି ମର୍କଟ ଯେ ଅଛି ତହିଁ ଜାଣ ।
ସେ କପି ଛୁଇଁଲେ ପଥର ନ ବୁଡ଼େଟି
ଇନ୍ଦ୍ରଜିତ ପିତା ବସି ମନରେ ଭାଳଇଟି ।
କାଲି ଦଶଯୁଣ କରିଛନ୍ତି ବନ୍ଧ
ନିଶ୍ଚୟ ଏଥିକି ଆସିବେ ଆଦିକନ୍ଦ ।
ଶୁଣିଣ ବଇଦେହୀ ମନରେ ତୋଷ ହେଲେ
ରାମ ବନ୍ଧ ବାନ୍ଧିବାର କର୍ଣ୍ଣରେ ଶୁଣିଲେ ।
ଅଗ୍ନି ଦେବତାଙ୍କୁ ସେ ସୁମରି ମନରେ
ବୋଇଲେ ଏକଥା ଜାଣିବା ପ୍ରତ୍ୟକ୍ଷରେ ।
ସୁମରନ୍ତେ ଅଗ୍ନି ଯେ ଅଇଲେ ବହନ
ଦେଖିକରି ବଇଦେହୀ କହିଲେ ବଚନ ।
ବୋଇଲେ ଏବେ ତୁମ୍ଭେ ବେଗେ ଚଳିଯିବ
ଶ୍ରୀରାମ ବନ୍ଧ ବାନ୍ଧିଲେ ଦେଖିଣ ଆସିବ ।
ଶୁଣି ବୈଶ୍ୱାନର ବେଗେ ଚଳିଗଲେ
ସେତୁବନ୍ଧ ପରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ଦଶଯୁଣ ବନ୍ଧ ଲମ୍ବ ଜାଣ
ଦଶଯୁଣ ଓସାରରେ ପଡ଼ିଛି ପ୍ରମାଣ ।
ବେନିଲକ୍ଷ ଯୋଜନରେ ଦଶଯୁଣ ପୋତା
ବେନିଲକ୍ଷ ପର୍ବତରେ ଦ୍ୱିଗୁଣେ ଅଛି ଶିଖା ।
ଦେଖିକରି ବୈଶ୍ୱାନର ଫେରିଣ ଅଇଲେ
ଶ୍ରୀରାମନାରୀ ଆଗେ ସମସ୍ତ କହିଲେ ।
ଶୁଣିକରି ତୃପତ ହେଲେ ରାମନାରୀ
ବୋଇଲେ ନିଶ୍ଚୟ ଏବେ ଆସିବେ ଚାପଧାରୀ ।
ପାର୍ବତୀ ପଚାରିଲେ କହ ବିଶ୍ୱନାଥ
ସେଥି ଉତ୍ତାରୁ ରାମ କଲେ କେଉଁ କୃତ୍ୟ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଦ୍ୱିତୀୟଦିନ ବନ୍ଧ କଲେ ଯେଉଁ ରୀତି ।
ଶର୍ବରୀ ଶେଷ ହୁଅନ୍ତେ ଉଠିଲେ ରାମରାଜ
ନିତ୍ୟକର୍ମ କରିବାକୁ ଚଳିଗଲେ ବେଗ ।
ସ୍ନାହାନ ସାରିଣ ପିନ୍ଧିଲେ ବାସପୁଣ
ନିତ୍ୟକର୍ମ ଦେବ ଯେ ସାରିଲେ ବହନ ।

ସନ୍ଧ୍ୟା ତର୍ପଣ ସାରି ଅଇଲେ ରାମରାଣ
ସେତୁବନ୍ଧଠାରେ ପ୍ରବେଶ ହେଲେ ପୁଣ ।
ମଲ୍ଲ ମହାମଲ୍ଲଙ୍କୁ ଡାକିଣ ଆଜ୍ଞା ଦେଲେ
ପୂର୍ବଦିଗୁ ପର୍ବତ ଆଣରେ ବୋଇଲେ ।
ନଳକୁ ଛୁଆଁଇଣ ପକାଇଲେ ନେଇ
ଆଡ଼ଦୀର୍ଘରେ ବନ୍ଧ ତିଆରି କରାଇ ।
ଦ୍ୱିତୀୟଦିନ ବନ୍ଧ ଦଶଯୁଣ ହେଲା
ଏମନ୍ତ ସମୟରେ ରବି ଅସ୍ତ ଗଲା ।
ଶ୍ରୀରାମ ବୋଇଲେ ବନ୍ଧ ଏତିକି ହେଉ ଆଜ
କ୍ଷେମେବ ଜଣାଇଁଲେ ଦଶଯୁଣ ଆଜ ।
ସୁଷେଣ ବୋଇଲେ ଦୁଇଦିନେ ଜାଣ
କୋଡ଼ିଏ ଯୁଣ ବନ୍ଧନିର୍ଭା ହେଲା ପୁଣ ।
ଶୁଣିକରି ଶ୍ରୀରାମ ପରମ ତୋଷ ହେଲେ
ନିତ୍ୟକର୍ମ କରିବାକୁ ସିନ୍ଧୁ କୂଳକୁ ଗଲେ ।
ଜଳତର୍ପଣ ସନ୍ଧ୍ୟା ସାରିଲେ ତକ୍ଷଣ
ସେନାପତି ଯୁଥପତି କପିରାଜ ପୁଣ ।
ଯେ ଯାହାର ନିତ୍ୟକର୍ମ ସାରିଲେ ସୈନ୍ୟବଳ
ଶ୍ରୀରାମଙ୍କ ସଙ୍ଗରେ ଅଇଲେ ସକଳ ।
ସେ ବନ୍ଧ ଉପରେ ନବର କରି ରହି
ଫଳମୂଳ ଖାଇଣ ସନ୍ତୋଷ ମନ ହୋଇ ।
ଆଞ୍ଚୋବନ ସାରିଣ କଷାଫଳ ଭୁଞ୍ଜି
ମୃଗଛାଲ ଉପରେ ଶୋଇଲେ ଚିନ୍ତା ତେଜି ।
ଏଥୁ ଅନନ୍ତରେ ଋକ୍ଷ କପିବଳ
ସମସ୍ତେ ଆହାର କଲେକ ଫଳମୂଳ ।
ଯେଉଁ ପର୍ବତମାନଙ୍କୁ ବହିଣ ଆଣିଲେ
ସେ ପର୍ବତମାନଙ୍କର ଫଳ ଯେ ଭୁଞ୍ଜିଲେ ।
ଯେଉଁ ଦେଶରେ ଯେଉଁ ବାନର ନୃପତି
ମଲ୍ଲ ମହାମଲ୍ଲ ଯେ ଯେତେକ ଯୁଥପତି ।
ସେନାପତି ସର୍ଦ୍ଦାର ସେଥିରେ ଯେତେଥିଲେ
ସମସ୍ତେ ଫଳମୂଳ ଭୋଜନ ସେଥି କଲେ ।
ଲକ୍ଷ୍ମଣ ବିଭୀଷଣ ସୁଗ୍ରୀବ ହନୁମନ୍ତ
ଅଙ୍ଗଦ ନଳନୀଳ ଶୌରୀ ସୁଷେଣତ ।
ଏମାନେ ଲକ୍ଷ୍ମଣ ସଙ୍ଗତେ ଭୁଞ୍ଜିବସି
ଫଳମୂଳ ଖାଇଣ ଚିତ୍ତକୁ ସନ୍ତୋଷୀ ।
ଆଞ୍ଚୋବନ ସାରିଣ ଭୁଞ୍ଜିଲେ କଷାଫଳ
ଅଙ୍ଗଦକୁ ଚାହିଁ କହେ ସୁମିତ୍ରାର ବାଳ ।
ବୋଇଲେ ସେନାପତି ଯୁଥପତି ଯାଅ
ସେତୁବନ୍ଧ ସେ ମୁଣ୍ଡରେ ଜଗୁଆଳି ରହ ।
ମଧ୍ୟରେ ଯୁଥପତି କପିରାଜ ପୁଣ
ଋକ୍ଷପତି ବିଭୀଷଣ ମୋ ପାଶେ ଥାନ୍ତୁ ଜାଣ ।

ଶୁଣିଣ ଯୁଥପତି ସେନାପତି ଗଲେ
ଋକ୍ଷବାନର ନୃପତି ସଙ୍ଗରେ ରହିଲେ ।
ଲକ୍ଷ୍ମଣ ବିଭୀଷଣ ସୁଗ୍ରୀବର ଜାଣ
ଶ୍ରୀରାମଙ୍କ ସଙ୍ଗରେ ରହିଲେ ଏ ପୁଣ ।
ରାମତାଳୀ ଗାଲତୁରୀ ହରିବୋଲ ଡାକ
ବାଜଣା ବଜାଇ କରନ୍ତି ତହିଁ ନୃତ୍ୟ ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ଚାର ଯାଇ ରାବଣ ଆଗରେ କହେ ଫେରି ।
ଶୁଣ ହେ ଭୋଦେବ ଲଙ୍କା ଅଧିପତି
କୋଡ଼ିଏ ଯୁଣ ବନ୍ଧ ନିର୍ଭାକଲା ଯତି ।
ଶୁଣିଣ ରାବଣ ବୋଇଲା ବଚନ
ଜାଣିବା ତପସୀ କେତେ ବଳବାନ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ରଜନୀ ଶେଷ ହେଲା ହୋଇଲା ପାହାନ୍ତି ।
ଉଠିଲେ ରଘୁନାଥ ଶୟନ ତେଜିଣ
ଶ୍ରୀମୁଖ ପ୍ରକ୍ଷ୍ୟାଳନ କଲେ ରାମ ରାଣ ।
ସେନାପତି ଯୁଥପତି ଦର୍ଶନ କଲେ ଯାଇ
କି ଆଜ୍ଞା ହେବ ହେଉ ଛାମୁରେ ଜଣାଇଁ ।
ଶୁଣି କରି ରାମରାଣ ତାହାଙ୍କୁ କହିଲେ
ପର୍ବତ ବୋହିଆଣ ବୋଲିଣ ବୋଇଲେ ।
ଦଶଦିନରେ ବନ୍ଧ ନିର୍ଭା ଯେ ହୋଇବ
ତେବେ ଯେ ଏଠାରୁ ଚଳିଯିବା ବେଗ ।
ଶୁଣିକରି କପିବଳ ଯୁଥପତି ଗଲେ
ପଶ୍ଚିମ ଦିଗରୁ ପର୍ବତ ଉପାଡ଼ିଲେ ।
କେହୁ ଦଶବିଂଶ କେହୁ କୋଡ଼ିଏ ତିରିଶ
ମୁଣ୍ଡରେ କନ୍ଧରେ କପି ଆଣନ୍ତି ହରଷ ।
ବେନିଥରେ ଦୁଇଲକ୍ଷ ପର୍ବତ ବୋହିଆଣି
ଦଶଯୁଣ ପୋତିଲେ ତତକ୍ଷଣେ ପୁଣି ।
ତିନିଦିନେ ତିରିଶ ଯୁଣ ନିର୍ଭା କଲେ
ଜାଣିକରି ଶ୍ରୀରାମ ସମ୍ମାନ କରିଗଲେ ।
ସ୍ନାନ ସାରିଣ ଯେ ସାରିଲେ ନିତ୍ୟକର୍ମ
ତର୍ପଣ ସନ୍ଧ୍ୟା ସାରିଣ ଅଇଲେ ରାମରାଣ ।
ଫଳମୂଳ ଆଣିଣ ଭୋଜନ ସେ କଲେ
ଆଞ୍ଚୋବନ କରି କଷାଫଳ ସେ ଭୁଞ୍ଜିଲେ ।
ବୋଇଲେ ବନ୍ଧଜଗି ରୁହ ସର୍ବଜନ
ଏତେ କହି ରାମଚନ୍ଦ୍ର ନିଦ୍ରାରେ ଅଚେତନ ।
ସକଳ ସୈନ୍ୟବଳ ଫଳମୂଳ ଖାଇ
ସେନାପତି ଯୁଥପତି ସମସ୍ତେ ତୋଷ ହୋଇ ।
ସୈନ୍ୟବଳ ଘେନିଣ ସେନାପତି ଯାଇ
ସେତୁବନ୍ଧ ଉପରେ ଜଗିଣ ସେ ରହି ।

ଏଥୁ ଅନନ୍ତରେ ଲକ୍ଷ୍ମଣ ବିଭୀଷଣ
ସୁଗ୍ରୀବରଙ୍କୁ ଘେନିଣ କରନ୍ତି ଭୋଜନ ।
ଆଞ୍ଚୋବନ ସାରିଣ ଭୁଞ୍ଜିଲେ କଷାଫଳ
କଥା ହୁଅନ୍ତେ ରଜନୀ ହେଲା ଶେଷ କାଳ ।
ପୂର୍ବଦିଗରେ ଅରୁଣ ଉଦୟ ଯହୁଁ ହେଲେ
ସେଠାରୁ ଶ୍ରୀରାମ ଯେ ନିଦ୍ରା ତେଜ୍ୟା କଲେ ।
ସ୍ନାହାନ ସାରିଣ ସାରିଲେ ନିତ୍ୟକର୍ମ
ସନ୍ଧ୍ୟା ତର୍ପଣ କଲେ ପ୍ରଭୁ ରାମରାଣ ।
ନିତ୍ୟକର୍ମ ସାରିଣ ମୃଗଛାଲେ ବସି
କୋଦଣ୍ଡ ଧରିଣ ଶ୍ରୀରାମ ମନ୍ଦେ ହସି ।
ବୋଇଲେ ରାବଣରେ ଦେଖିବା ତୋର ବଳ
ପୁତ୍ରବନ୍ଧୁ ଭାଇ ନାତି ଯେତେ ସୈନ୍ୟ ତୋର ।
ସକଳ ଦେବତାଙ୍କୁ ଘେନି ଯେବେ ଯୁଦ୍ଧି
ସେତେବେଳେ ମାରିବି ନ ରହିବ ତୋ ବୁଦ୍ଧି ।
ଏତେ କହି ରାମଚନ୍ଦ୍ର ସୈନ୍ୟେ ଆଜ୍ଞା ଦେଲେ
ପର୍ବତ ବୋହିଆଣ ବୋଲିଣ ବୋଇଲେ ।
ଶୁଣିଣ କପିବଳ ସମସ୍ତେ ଚଳିଗଲେ
ଏକାଥରେ ବେନିଲକ୍ଷ ପର୍ବତ ଆଣିଲେ ।
ନଳକୁ ଛୁଆଇଁ ପକାଇଲେ ସିନ୍ଧୁ ନୀର
ତରଙ୍ଗ ମନ୍ତ୍ରୀ କହିଲା ସଳଖି କରି ଧର ।
ଚାଳିଶ ଯୁଣ ସେତୁବନ୍ଧ ଚାରିଦିନେ ନିର୍ଭା
ଆଠଲକ୍ଷ ପର୍ବତରେ ଦିଶଇ ଶିଖା ପ୍ରଭା ।
ଏଥୁ ଅନନ୍ତରେ ହୋଇଲା ରଜନୀ
ସେନାପତିମାନେ ଗଲେ ସୈନ୍ୟବଳ ଘେନି ।
ସେନାପତି ଯୁଥପତି ମଲ୍ଲ ମହାମଲ୍ଲ
ଏମାନେ ବନ୍ଧ ଜଗି ରହିଲେ ନିଶିର ।
କୁମାର ପଦାଠାରୁ ବାରାଣସୀ ଯାଏଁ
ଏକାମ୍ରର ବନରେ ଘୋଟିଣ କପି ରହେ ।
ରାତ୍ର ଦିବସରେ ଯେ ଶବଦ ଗହଳ
ସମୁଦ୍ର ଲହରୀ ପ୍ରାୟେ ଶବଦ ଚହଳ ।
ସେତୁବନ୍ଧ ଜଗାଇଣ ରାମ ଉଠିଗଲେ
ସିନ୍ଧୁ କୂଳକୁ ଯାଇ ତର୍ପଣ ସାରିଲେ ।
ସନ୍ଧ୍ୟା ସୁମରିଣ ଦିଅନ୍ତି ଜଳଦାନ
ପିତୃଲୋକେ ସନ୍ତୋଷ ହୋଇଲେ ଯେ ପୁଣ ।
ପିତୃଙ୍କୁ ବୋଧ କରି ସେଠାରୁ ରାମ ଆସି
ସଙ୍ଗରେ ବିଭୀଷଣ ସୁଗ୍ରୀବର ଅଛି ।
ଲକ୍ଷ୍ମଣଙ୍କୁ ସଙ୍ଗେ ଘେନି ଖାଇଲେ ରଘୁନାଥ
ନବରେ ବିଜେ କଲେ ହୋଇ ହରଷିତ ।
ଫଳମୂଳ ଆଣିଣ ଲକ୍ଷ୍ମଣ ସମର୍ପିଲେ
ରଘୁନାଥ ଭୁଞ୍ଜିଣ ସନ୍ତୋଷ ମନ ହେଲେ ।
ଆଞ୍ଚୋବନ ସାରିଣ ଭୁଞ୍ଜିଲେ କଷାଫଳ
ମୃଗଛାଲ ଉପରେ ଶୋଇଲେ ରଘୁବାଳ ।
ଲକ୍ଷ୍ମଣଙ୍କୁ ଘେନିଣ ସୁଗ୍ରୀବ ଭୁଞ୍ଜିଲେ
ଆଞ୍ଚୋବନ ସାରିଣ ସୁଖେ ନିଦ୍ରା ଗଲେ ।
ସମସ୍ତେ ନିଦ୍ରାଯିବାରୁ ଲକ୍ଷ୍ମଣ ହେଲେ ଚେତା
ଧନୁରେ ଗୁଣ ଦେଇ ବସିଲେ ଜଗଜିତା ।
ତୀକ୍ଷଣ ଶର ନାରାଚକୁ ଗୁଣରେ ବସାଇ
ଧରିଣ ସଉମିତ୍ରୀ ଚଉଦିଗ ଚାହିଁ ।
ଦକ୍ଷିଣ ଦିଗରେ ଦେଖିଲେକ ପୁଣ
ତିନିଗୋଟି ଲଙ୍କା ତାରା ଉଇଁଅଛି ଜାଣ ।
ନିର୍ଘାତ ଶବଦ ଯେ ଶୁଭଇ ଘନ ଘନ
ଦେଖିଣ ଲକ୍ଷ୍ମଣ ବାରିଲେ ଦିଗ ପୁଣ ।
କେତେବେଳେ ଉତ୍ତାରେ ରଜନୀ ଗଲା ପାହି
ତଦନ୍ତରେ କୋକିଳ ରାବ ଯେ କରଇ ।
କୁକ୍କୁଟ ରଡ଼ିଦେଲା ଚଉଦିଗ
ଶଯ୍ୟାତେଜ୍ୟା କରିଣ ଉଠିଲେ ରାମ ବେଗ ।
ରାମ ଲକ୍ଷ୍ମଣ ସୁଗ୍ରୀ ବିଭୀଷଣ ବୀର
ସ୍ନାହାନ କରିବାକୁ ଚଳିଲେ ସତ୍ୱର ।
ସ୍ନାନ ନିତ୍ୟକର୍ମ ସାରିଣ ବହନ
ପ୍ରବେଶ ହୋଇଲେ ରହିବାର ସ୍ଥାନ ।
ମୃଗ ଛାଲ ଉପରେ ବସିଲେ ରାମ ରାଣ
ଋକ୍ଷ ବାନର ପତି ମିଳିଲେ ତକ୍ଷଣ ।
ଶ୍ରୀରାମଙ୍କୁ ସମସ୍ତେ କଲେ ନମସ୍କାର
ଓଳଗ ମେଲାଇଲେ ବୀର ମହାବୀର ।
ଏହି ସମୟରେ ଯେ ମଲ୍ଲ ମହାମଲ୍ଲ
ଦର୍ଶନ କଲେ ଆସି ଶ୍ରୀରାମ ପୟର ।
ତଦନ୍ତରେ ଅଇଲେ ସର୍ବ ଯୁଥପତି
ଶ୍ରୀରାମଙ୍କ ଚରଣେ ଓଳଗି ହୁଅନ୍ତି ।
ସେନାପତିମାନେ ଯେ ଦରଶନ କଲେ
ନମସ୍କାର କରିଣ ଆଗରେ ଉଭା ହେଲେ ।
ଶ୍ରୀରାମ ବୋଇଲେ ଶୁଣ ହେ ସମସ୍ତେ
ଆଜି ମୋର କଥାକୁ ପାଳିବ ନିଶ୍ଚିନ୍ତେ ।
ପର୍ବତ ଆଣିବାକୁ ପଶ୍ଚିମ ଦିଗେ ଯାଅ
ସେହି ବନେକ୍ରୀଡ଼ା କରି ଫଳମୂଳ ଖାଅ ।
ନିର୍ଝର ଜଳ ତହିଁ କରି ଆସ ପାନ
ଉଦର ସୁଖ କରି ସୁସ୍ଥ ହୁଅ ପୁଣ ।
ଶୁଣି କରି ଋକ୍ଷ କପି ବେଗେ ଚଳିଗଲେ
ସତର ଯୁଣ ପର୍ଯ୍ୟନ୍ତେ ଗିରିକି ଦେଖିଲେ ।
ଏକ ଏକ ପର୍ବତ ଆବୋରିଲେ ପୁଣ
ଫଳ ମୂଳ ଖାଇକରି ହର୍ଷ କଲେ ମନ ।

ନିର୍ଝର ପାଣି ସେ କଲେ ସ୍ନାନପାନ
ହରଷରେ ଗିରିମାନ ଉପାଡ଼ି ବହନ ।
ମୁଣ୍ଡରେ ମୁଣ୍ଡାଇ ଆଣନ୍ତି ବେଗ ହୋଇ
ତେରଘଡ଼ି ସମୟରେ ଆସି ପ୍ରବେଶ ହୋଇ ।
ନଳକୁ ଛୁଆଇଁ ପକାଇ ସିନ୍ଧୁ ନୀର
ତରଙ୍ଗ ମନ୍ତ୍ରୀ ଯେ ଗଢ଼ଇ ଜଳର ।
ସକଳେ ପର୍ବତକୁ ପକାନ୍ତେ ନେଇଣ
ତେଣୁ ସେ ଦଶ ଯୁଣ ବନ୍ଧ ହେଲା ଜାଣ ।
ସେଠାରେ ପଚାଶ ଯୁଣ ହୋଇଲା ସମ୍ପୂର୍ଣ୍ଣ
ବନ୍ଧ ବାନ୍ଧିବାର ଯେ ହୋଇଲା ପାଞ୍ଚଦିନ ।
ଏମନ୍ତ ସମୟରେ ଆଦିତ୍ୟ ଅସ୍ତ ହୋଇ
ମେରୁ ଉହାଡ଼େ ଲୁଚିଲେ ଛାୟାଦେବୀ ସାଇଁ ।
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ
ବାନରଙ୍କ ଈଶ୍ୱର ଯେ ରାଜା ଭାଲୁଙ୍କର ।
ଏମାନେ ସମସ୍ତେ ଦର୍ଶନ କଲେ ଯାଇ
କେହୁ ଓଳଗିଣ ଚରଣେ ଶୁଅଇ ।
କେହୁ ମାନ୍ୟ କଲେ କେହୁ ଯେ ନ କଲେ
ସୁଗ୍ରୀବର ବିଭୀଷଣ ନମସ୍କାର କଲେ ।
ରଘୁନାଥ ବୋଇଲେ ଶୁଣ ହେ ସକଳ
ବରୁଣର କଥା ତ ହୋଇଲା କୁଶଳ ।
ବିଭୀଷଣ ବୋଇଲେ ବରୁଣ କଥା ସତ
ନଳ ଛୁଇଁ ଦେବାରୁ ଭାସଇ ପର୍ବତ ।
ଶ୍ରୀରାମ ବୋଇଲେ ବରୁଣ ମନ୍ତ୍ରୀ ପୁଣ
ତୁମ୍ଭଙ୍କୁ ଦେଖା କି ଦିଅଇ ପ୍ରତିଦିନ ।
ମାରୁତି ବୋଇଲା ସେ କଥା ହିଁ ସତ
ପର୍ବତ ପକାନ୍ତେ ସଳଖ ସମସ୍ତ ।
ସଳଖ ବନ୍ଧକୁ କରେ ସେହି ଥାଇ ଜାଣ
ପ୍ରତିଦିନ ବନ୍ଧବେଳେ ମିଳେ ମନ୍ତ୍ରୀ ପୁଣ ।
ଶୁଣିଣ ରାମରାଣ ହରଷ ମନ ହେଲେ
ମନ୍ତ୍ରୀମାନେ ବହୁ କାମ କରନ୍ତି ବୁଝିଲେ ।
ଶ୍ରୀରାମ ପଚାରିଲେ ରକ୍ଷକପି ଶୁଣ
ଧରଣୀ କଥା କେମନ୍ତେ ଭେଟିଲା ସେ ଜାଣ ।
ପର୍ବତମାନ କି ଉଶ୍ୱାସ ହେଲାଠାରୁ
ଅଙ୍ଗଦ ବୋଲେ ଦେବ ତୁମ୍ଭରି ଆଜ୍ଞାରୁ ।
ପର୍ବତ ଲାଗୁଛି ଆମ୍ଭଙ୍କୁ ଫୁଲଗଭା
ଧଇଲେ ଉପୁଡ଼ଇ ଭିଡ଼ିବା ନାହିଁ ପ୍ରଭା ।
ମଧୁବନରେ ପଶିଲା ପରାଏ ସେ ଲାଗେ
ନାନାଫଳ ପାଚିଣ ଦିଶେ ଅନ୍ୟ ଭାଗେ ।
କିଏ ସେ କଳା ବର୍ଣ୍ଣ ଧବଳବର୍ଣ୍ଣ କେହୁ
ନୀଳ ଉପୃଳ ପରାଏ ଦିଶୁଛନ୍ତି ସେହୁ ।
କେହୁ ବସନ୍ତ ବର୍ଣ୍ଣ କେହୁ ଦିଶେ ରଙ୍ଗ
ନାନାଦି ବର୍ଣ୍ଣରେ ପାଚି ଦିଶଇ ସୁରଙ୍ଗ ।
କ୍ଷୁଧା ଯେ ତୃପତି ହୁଏ ଦେବପୁଣ
ଅନ୍ୟଠାରୁ ଅଟେ ସ୍ୱାଦୁ ଅଟେ ଜାଣ ।
ଶୁଣିକରି ଶ୍ରୀରାମ ବୋଇଲେ ସନ୍ତୋଷ
ତୁମ୍ଭେମାନେ ସମସ୍ତେ ପାଅ ବଳ ହର୍ଷ ।
ଏଥୁ ଅନନ୍ତରେ ସକଳ ସୈନ୍ୟଗଲେ
ଉଜାଗରେ ବନ୍ଧକୁ ଜଗିଣ ରହିଲେ ।
କିଳିକିଳା ଶବଦରେ ଚଉଦିଗେ ପୂରି
ଶ୍ରୀରାମ ସେ କଥାକୁ ମନରେ ବିଚାରି ।
ଏଥୁ ଅନନ୍ତରେ ଶ୍ରୀରାମ ବିଜେ କଲେ
ସମୁଦ୍ର କୂଳରେ ତର୍ପଣ ସାରିଲେ ।
ବିଭୀଷଣକୁ ସଙ୍ଗରେ ସୁଗ୍ରୀ ଘେନି ପୁଣି
ଲକ୍ଷ୍ମଣକୁ ସଙ୍ଗରେ ଘେନି ରଘୁମଣି ।
ରହିବା ନବରରେ ହେଲେ ପରବେଶ
ଫଳମୂଳ ଶ୍ରୀରାମ ତହିଁ କଲେ ଗ୍ରାସ ।
ଆଞ୍ଚୋବନ ସାରି କଷାଫଳ ଖାଇ
ମୃଗଛାଲ ଉପରେ ପହୁଡ଼େ ରଘୁସାଇଁ ।
ଏଥୁ ଅନନ୍ତରେ ରଜନୀ ଶେଷ ହେଲା
ଶାରୀଶୁକ କୋକିଳ ବନେ ଡାକ ଦେଲା ।
କାକ ଦେଲେ ରାବ ଯେ କୋକିଳ ଦେଲେ ରଡ଼ି
ଉଠିଣ ରଘୁନାଥ ବସିଲେ ବେଗ କରି ।
ସ୍ନାହାନ ତର୍ପଣ କରିଣ ଆସିଲେ
ନିତ୍ୟକର୍ମ ସାରିଣ ଆସନେ ବସିଲେ ।
ସେନାପତି ଯୂଥପତି ମଲ୍ଲ ମହାମଲ୍ଲ
ଦର୍ଶନ କଲେ ଆସି ଶ୍ରୀରାମ ପୟର ।
ଶ୍ରୀରାମ ବୋଇଲେ ହେଲା ଯେ ନ କର
ସେତୁବନ୍ଧକୁ ନିକର କର ହେ ସତ୍ୱର ।
ଶୁଣି ରକ୍ଷବାନର ବଳ ଚଳିଗଲେ
ପୂର୍ବ ଦିଗୁ ପର୍ବତ ବହିଣ ଆଣିଲେ ।
ନଳକୁ ଛୁଆଁଇଣ ପକାଇଲେ ଜଳ
ସେଦିନ ଦଶଯୁଣ ନିର୍ଭା କଲେ ବଳ ।
ସନ୍ଧ୍ୟା ସମୟରେ ବନ୍ଧ ଜଗି ରହି
ନିଶାଣ ବଜାଇଲେ ପ୍ରହରିମାନେ ତହିଁ ।
ସାତଯୁଣ ବନ୍ଧ ହୋଇଲା ନିକର
ରାମ ଆଗେ ସେନାପତି କହିଲେ ସକଳ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାବଣ ଆଗରେ ଚାର ଜଣାଅନ୍ତି ।
ଭୋଦେବ ଲଙ୍କେଶ୍ୱର ଶୁଣ ମୋ ବଚନେ
ରାମ ଲକ୍ଷ୍ମଣ ଯେ ବେନି ଯତି ଜାଣ ।

ବାନର ବଳ ଘେନି ସମୁଦ୍ରେ ବନ୍ଧ ବାନ୍ଧି
ଷାଠିଏ ଯୁଣ ବନ୍ଧ ହେଲାଣି ଯେ ସିଦ୍ଧି ।
ରାବଣ ବୋଇଲା ବନ୍ଧ କେତେକ ଓସାର
ଚାର ଜଣାଇଲା ଯଶଯୁଣ ପ୍ରତି ତାର ।
ମେଘନାଦ କୁମରକୁ ସତ୍ୱର ସେ ଡାକି
ଶ୍ରୀରାମ ସମୁଦ୍ରେ ବନ୍ଧ ବାନ୍ଧିଲା ଶୁଣିଲୁଟି ।
ତୁ ବେଗେ ଯାଇଣ ସୈନ୍ୟ ସଜ କର
ସେନାପତି ପଦାତିମାନଙ୍କୁ ତିଆର ।
ଘୋଡ଼ା ହସ୍ତୀ ପଏକାର ସାରେଣୀ ଶାର୍ଦ୍ଦୁଳ
ଶ୍ୱାନ ଗଣ୍ଡା ମହିଷୀ ଗୃଧ୍ର ଯେ ଶୃଗାଳ ।
ଏମାନଙ୍କୁ ସମ୍ପାଦି ଚାରିଦ୍ୱାର ରୁନ୍ଧ
ସନ୍ଧ୍ୟା ବେଳଠାରୁ ଦ୍ୱାର କର ତୁ ନିରୋଧ ।
ଶୁଣିକରି ମେଘନାଦ ବେଗେ ଚଳିଗଲା
ସେନାପତିମାନଙ୍କୁ ହକାରି ଆଣିଲା ।
ବୋଇଲା ଯେ ଯାହା ସଜରେ ରହି ଚଳ
ରାଜାଙ୍କର ବଇରୀ ତ ଦଶରଥ ବାଳ ।
ରାଜାଙ୍କ ଆଜ୍ଞା ହେବାରୁ ମୁଁ ତମ୍ଭଙ୍କୁ କହିଲି
ଯୁଦ୍ଧକୁ ସଜ ତୁମ୍ଭେ ହୁଅ ବେଗ କରି ।
ପଦାତି ବଳ ଡକାଇ ଇନ୍ଦ୍ରଜିତ କହି
ରାଜାଙ୍କର ଆଜ୍ଞା ସର୍ବେ ରୁହ ସଜ ହୋଇ ।
ରାଉତ ମାହୁନ୍ତ ପାଇକ ଡକାଇଲା
ଅଶ୍ୱ ଗଜ ସାରେଣୀ ସାଜରେ ବୋଇଲା ।
ଶ୍ୱାନ ଶୃଗାଳ ଗଣ୍ଡା ଶାର୍ଦ୍ଦୁଳ ମହିଷୀ
ଏମାନଙ୍କୁ ସଜକର ରାଜା ଆଜ୍ଞା ଅଛି ।
ସେମାନଙ୍କୁ ଜଗାଇ ଚାରିଦ୍ୱାରେ ଗଲା
ବେଳ ଥାଉ ଥାଉ ଦ୍ୱାର ନିରୋଧ ହୋଇଲା ।
ସମସ୍ତଙ୍କୁ ସମ୍ପାଦି ମେଘନାଦ ଚଳି
ପିତାର ଅଗ୍ରତେ ତ୍ୱରିତେ ସେ ମିଳି ।
କରଯୋଡ଼ି ରାଜାର ଆଗରେ ଜଣାଇଲା
ସମସ୍ତଙ୍କୁ ସମ୍ପାଦିଲି ବୋଲିଣ ବୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ରାବଣ ପୁର ଯାଇଥିଲେ ସେ ଅସୁରୀ ।
ସକଳ କଥା ଶୁଣି ଲେଉଟି ଅଇଲେ
ତ୍ରିଜଟାର ଆଗରେ ସକଳ କହିଲେ ।
ବୋଇଲେ ଲଙ୍କାଗଡ଼େ ଲାଗିଛି ଗହଳ
ଶ୍ରୀରାମ ବନ୍ଧ ବାନ୍ଧିଲେ ଆସିବେ ଚଞ୍ଚଳ ।
ଶୁଣିଣ ଜାନକୀ ପରମ ତୋଷ ହେଲେ
ନିକଟେ ସ୍ୱାମୀ ମୋର ଆସିବେ ଭାବିଲେ ।
ତ୍ରିଜଟା ବୋଇଲା ତୁମ୍ଭେ ଶୁଣ ଗୋ ଜନନୀ
କିମ୍ପାଇଁ ଚିନ୍ତା କରି ବସିଅଛ ପୁଣି ।

ଜାନକୀ ବୋଇଲେ ଯେ ପ୍ରଭୁ ରଘୁବୀର
ମୋହର ନିମନ୍ତେ କେତେ ସହିଲେ ଦୁଃଖ ଭାର ।
ଶାଶୁଙ୍କର ବୋଲ ଯେ ନରଖିଲି ବେଳେ
ସେକଥା ମାନ ମୁଁ ଯେ ଭାଳଇ ମନରେ ।
ରାବଣ ମରିଥାନ୍ତା ଗୋଦାବରୀ କୂଳେ
କିମ୍ପାଇଁ ଏତେ ଦୁଃଖ ଭୋଗନ୍ତେ ରଘୁବାଳେ ।
ଶୁଣିଣ ତ୍ରିଜଟା ଅନେକ ବୁଝାଇଲା
ଅଳପ ଦିନରେ କଷ୍ଟ ଯିବ ଗୋ ବୋଇଲା ।
ତାହା ଶୁଣି ଜାନକୀ ବୋଲେ ତୁମ୍ଭେ ଜାଣ
ଶ୍ରୀରାମ ହସ୍ତରେ ମରିବେ ଦୈତ୍ୟଗଣ ।
ଏମନ୍ତ ଶୁଣିଣ ସତୀ ଶାନ୍ତି ହେଲେ
ଏଥୁଅନ୍ତରେ ଗଉରୀ ଶୁଣ ତହୁଁ ଭଲେ ।
ମନ୍ଦୋଦରୀ ରାଣୀ ଯେ ଶୁଣିଲା ଅନ୍ତଃପୁରେ
ନାରଦ କଥା ଘଟିଲା ଏବେ ପ୍ରତ୍ୟକ୍ଷରେ ।
ଶ୍ରୀରାମଙ୍କ ନାରୀ ଯେ ଜାନକୀ ଅଟେ ପୁଣ
ସେହି କହିଥିଲା ଯେ ଆସିଲା ବେଳେଣ ।
ସେ ସତ୍ୟ କଥା ତ ଏବେ ମୂଳ ହେଲା
ବିଧାତାର ଲିଖନ ଆନ ନୁହେଁ ଭଲା ।
ଏମନ୍ତ ବିଚାର ମନରେ ରାଣୀ କଲା
ବିଭୀଷଣର ଠାରେ ଚିତ୍ତ ବୃତ୍ତି ଦେଲା ।
ବିଚାରିଲା ବିଭୀଷଣ ମୋର ପ୍ରାଣନାଥ
କେଉଁଦିନ ରିପୁ ନୁହଇ କାହାରି ତ ।
ଏମନ୍ତ ବିଚାରି ସେ ସପତଣୀ କି କହି
ନାରଦ ବଚନ ସତ ହେଲା ଆରେ ସହି ।
ରାମନାରୀ ବଚନ ହୋଇଲା ନିକର
ଦିଅରେ ଶରଣ ପଶେ ଆସିବେ ରଘୁବୀର ।
ଶୁଣିଣ ସପତଣୀମାନେ ଭାବି କହି
ରାଜାର ଘରଣୀ ହୋଇ ବିଧବା ପୁଣି ହୋଇ ।
ଚୋର ଖଣ୍ଟଙ୍କ ଘରଣୀ ଅଳପ ଦିନ ଭୋଗ
ମରୁକି ନ ମରୁ ବୋଲନ୍ତି ବଡ଼ଭୋଗ ।
ଏମନ୍ତ ବିଚାର କରନ୍ତି ରାଣୀହଂସ
ଦାସୀମାନେ ବୋଇଲେ ବନ୍ଧ ବାନ୍ଧିଲେ ରଘୁଶିଷ୍ୟ ।
ଶୁଣିଣ ମନ୍ଦୋଦରୀ ନାରଦଙ୍କୁ ସୁମରିଲେ
ନାଗରାଜା ପୁରେ ଥାଇ ନାରଦ ଜାଣିଲେ ।
ବୋଇଲେ ନାଗରାଜା ଶୁଣ ମୋ ବଚନ
ମଧ୍ୟ ପୁରରୁ ଆମ୍ଭେ ଯାଉଛୁଁ ବହନ ।
ଦେବଙ୍କର କାର୍ଯ୍ୟ ଯେ ତୁମ୍ଭଙ୍କୁ ଉଶ୍ୱାସ
ଏତେ କହି ନାରଦ ଚଳିଲେ ହରଷ ।
କଳହ ଋଷି ଯାଇ ଲଙ୍କାରେ ମିଳିଲେ
ରାବଣର ଅନ୍ତଃପୁରେ ପ୍ରବେଶ ହୋଇଲେ ।

ଦେଖିଣ ମନ୍ଦୋଦରୀ ମାନ୍ୟଧର୍ମ କଲା
ସୁବର୍ଣ୍ଣର ସିଂହାସନେ ନେଇ ବସାଇଲା ।
ବୋଇଲେ ଶ୍ରୀରାମ ତ ବାନ୍ଧିଲେ ସେତୁବନ୍ଧ
ନିଶ୍ଚୟ ନାଶଯିବ ଏବେ ଦଶକନ୍ଧ ।
ବିଭୀଷଣ ଏଗଡ଼ରେ ହୋଇବ ନୃପତି
ଆମ୍ଭମାନଙ୍କଠାରେ କରିବିଟି ପ୍ରୀତି ।
ନାରଦ ବୋଇଲେ ପରମ ସୁଖ ଅଟେ ତୋର
ବିଚାରଇ ମନ୍ଦୋଦରୀ ମୂଳ ଅଟେ ମୋର ।
ଛନ୍ଦ କୁଟିଳ କଥାମାନ ଯାର ନାହିଁ
ତାହାକୁ ରାବଣ ଯେ ବାହାର କରିଦେଇ ।
ଭଲ କହିବାରୁ ତାକୁ ଦେଲା ଯେ କ୍ଷଣ
ଦଇବ ସପକ୍ଷ ହୋଇଲା ତାକୁ ଜାଣ ।
ମାସେ ସତର ଦିନରେ ମରିବେ ତୋର ସ୍ୱାମୀ
ପୁତ୍ରନାତି ସହିତେ ହୋଇବେ ସ୍ୱର୍ଗଗାମୀ ।
ଏତେ କହି ନାରଦ ସେଠାରୁ ଚଳିଗଲେ
ଇନ୍ଦ୍ରଙ୍କ ପୁରରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ଦେବତାଏ ସମସ୍ତେ ଏକମେଳ
ବିଚାରନ୍ତି ରଘୁନାଥ ମାରିବେ ଦୈତ୍ୟବଳ ।
ପର୍ବତରେ ଷାଠିଏ ଯୁଣ ପୋତିଲେ ସିନ୍ଧୁଜଳ
ଆହୁରି ଚାରିଶ ଯୁଣ ରହିଛି କେବଳ ।
ଏଗାରଦିନେ ଶ୍ରୀରାମ ଲଙ୍କାଗଡ଼କୁ ଯିବେ
ବାରଦିନେ ରଘୁନାଥ ଯୁଦ୍ଧ ଆରମ୍ଭିବେ ।
ଏମନ୍ତ ବିଚାର କରନ୍ତି ଦେବଗଣ
ଏହି ସମୟରେ ନାରଦ ମିଳିଣ ।
ସୁରପତି ବୋଇଲେ କେଉଁପୁରେ ଥିଲ
ରାମ ରାବଣର କି ସମାଚାର ଦେଖିଲ ।
ନାରଦ ବୋଇଲେ ମୁଁ ପାତାଳପୁରେ ଥିଲି
ନାଗରାଜାଙ୍କ ସଙ୍ଗରେ କଥା ହେଉଥିଲି ।
ନାଗରାଜା ବୋଇଲେ ମୋର ଦୁଃଖ ଭରି
ଅସୁରଙ୍କ ଭାରା ମୁଁ ସହିତ ନ ପାରି ।
ମୁଁ ବୋଇଲି ଅଳପଦିନେ ଦୈତ୍ୟମରି
ଚିନ୍ତା ଆଉ ନ କର ନାଗଦଣ୍ଡଧାରୀ ।
ସମୁଦ୍ରେ ରାମଚନ୍ଦ୍ର ବାନ୍ଧିଲେଣି ବନ୍ଧ
ଅଳପ ଦିନେ ରାମ ଛେଦିବେ ଦଶକନ୍ଧ ।
ଏତେ କହି ସେଠାରୁ ବହନ ଅଇଲି
ମନ୍ଦୋଦରୀର ସ୍ମରଣ ଚିତ୍ତରେ ହେଜିଲି ।
ସେଠାରୁ ଲଙ୍କାଗଡ଼କୁ ଗଲି ମୁଁ ବହନ
ରାବଣର ନାରୀକି କହିଲି ସନ୍ଧାନ ।
ବୋଇଲି ରଘୁନାଥ ମାରିବେ ତୋର ସ୍ୱାମୀ
ସେ ରାମ ଅଟନ୍ତି ପରଂବ୍ରହ୍ମସ୍ୱାମୀ ।

ସେ ବୋଇଲେ ଦୁଷ୍ଟପଣ କଲା ଦଶକନ୍ଧ
ସେଥିର ସକାସେ ମୁନି ମୋ କର୍ମଟି ମନ୍ଦ ।
ମନ୍ଦଲୋକକୁ ଧରିତ୍ରୀ ନ ସହଇ ଭଲେ
ଲଙ୍କପତି ସକାଶେ ସମସ୍ତେ ନାଶ ଗଲେ ।
ଝିଙ୍କଇବାରୁ ମରିବା ଅଟେ ଭଲ ତାର
କେବଳ ବିଂଶନାଥ ହେଲା ଆପଣାର ।
ଏସନକ ଶୁଣି ମୁଁ ସେଠାରୁ ଅଇଲି
ତୁମ୍ଭର ପାଶରେ ପ୍ରବେଶ ହୋଇଲି ।
ଏତେ କହି ନାରଦ ସେଠାରୁ ଚଳିଗଲେ
ସଞ୍ଜିବନୀ ପୁରରେ ପ୍ରବେଶ ହୋଇଲେ ।
ଦେଖିଲେ ଚିତ୍ରଗୁପ୍ତ ବସିଛନ୍ତି ତହିଁ
ନାରଦ ପରବେଶ ହେଲେ ତହିଁ ଯାଇ ।
ଉଠି କରି କରଯୋଡ଼ି ଚରଣେ ନମିଲେ
କେଣେ ବିଜେ କଲ ବୋଲିଣ ପଚାରିଲେ ।
ନାରଦ ବୋଇଲେ କି କାର୍ଯ୍ୟ କରୁଛ
ଲେଉଟାଇ ପାଲଟାଇ ପାଞ୍ଜିକି ଉଣ୍ଡୁଛ ।
ବୈନିମନ୍ତ୍ରୀ ବୋଇଲେ ଶୁଣ ମୁନିବର
ବୁଝୁଅଛୁଁ ମୃତ୍ୟୁ ଏବେ ହୋଇବ କାହାର ।
ଚାରି ରାବଣ ମରିବେ ରାମଙ୍କ ହସ୍ତର
ଆମ୍ଭେ ଦେଖୁଅଛୁଁ ପାଞ୍ଜି ତାହାଙ୍କର ।
ସେହିସବୁ ପାଞ୍ଜି ଫିଟିଅଛି ଏବେ
ନାରଦ ବୋଇଲେ କେତେ ଅସୁର ମରିବେ ।
ଚିତ୍ରଗୁପ୍ତ ବୋଇଲେ ମରିବେ ନଅ ସାଗର
ପାତାଳ ଅସୁର ଯେ ମରିବେ ନିକର ।
ବତିଶ ସାଗର ଯେ ମରିବେ ଦୈତ୍ୟବଳ
ଜମ୍ବୁଦ୍ୱୀପରେ ମରିବେ ତିନି ଯେ ସାଗର ।
ଏମନ୍ତେ ମରିବେ ଅନେକ ଅସୁର
ସେସବୁ ଅସୁରଙ୍କୁ ମାରିବେ ରଘୁବୀର ।
ସପତ ଦିନେ ଅଠର ସାଗର ମରିବେ
ବାଅାନେ ସାଗର ଯେ ପାତାଳେ ମରିବେ ।
ତେବେ ସେ ସପ୍ତପୁର ଉଶ୍ୱାସ ହେବ ଜାଣ
ତେଣୁ ଅବତାର ହୋଇଛନ୍ତି ନାରାୟଣ ।
ଭାରା ଉଶ୍ୱାସିଣ ଯିବେ ବଇକୁଣ୍ଠ ପୁର
ଲକ୍ଷେ ସାଗର ମରିବେ ନର ଯେ ବାନର ।
ଶ୍ରୀରାମଙ୍କ ସଙ୍ଗରେ ସେ ବୈକୁଣ୍ଠପୁର ଯିବେ
ଶୁଣିକରି ନାରଦ ସେଠାରୁ ଗଲେ ବେଗେ ।
ପ୍ରବେଶ ହୋଇଲେ ଯଶୋବନ୍ତିପୁରେ
ଦେଖିଲେ ବେଦବର ବସିଛି ଯୋଗରେ ।
ମନ ଚଇତନ ଦେଇ ବାସୁଦେବଠାରେ
ତାହା ଦେଖି ନାରଦ ତୃପତି ମନରେ ।

ବିଧାତାଙ୍କ ପୁରରୁ ବେଗେ ଚଳିଗଲେ
ଶ୍ରୀରାମ ପାଶରେ ପ୍ରବେଶ ହୋଇଲେ ।
ଦେଖିକରି ରଘୁନାଥ ହରଷ ହୋଇଲେ
ନମସ୍କାର ହୋଇଣ ଆସନ ସେ ଦେଲେ ।
କେଣେ ଅଇଲ ବୋଲି ମୁନିଙ୍କି ପଚାରିଲେ
ମନ ହରଷକର ନାରଦ ବୋଇଲେ ।
ବେଗେ ବନ୍ଧ ସାରିଣ ମାର ହେ ରାବଣ
ଏତେ କହି ନାରଦ ସେଠାରୁ ଗଲେ ପୁଣ ।
ଧର୍ମ ନିରଞ୍ଜନଙ୍କ ପାଶକୁ ସେ ଗଲେ
ସେଠାରେ ଯୋଗଲୟ କରିଣ ଦେଖିଲେ ।
ବ୍ରହ୍ମଜ୍ଞାନ ସାଧିଲେ ହେଲେ ସେ ନିର୍ବେଦ
ପାର୍ବତୀ ବୋଇଲେ କହ ସଦାନନ୍ଦ ।
ସେଠାରୁ କିସ କଲେ ରଘୁକୁଳ ରାଣ
ଷଡ଼ଦିନରେ ବନ୍ଧ ହେଲା ଷାଠିଏ ଯୁଣ ।
ସେଠାରୁ କିସ ଯେ କଲେ ଚାପଧାରୀ
ସେହିକଥା ମୋର ଆଗେ କହ ଶୂଳଧାରୀ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଷଡ଼ଦିନ ଯିବାରୁ ଶ୍ରୀରାମ ବିଚାରନ୍ତି ।
ଯୁଥପତି ସେନାପତି ସବୁଙ୍କୁ ଡାକିଣ
ବୋଇଲେ ସମସ୍ତେ ଯାଅ ଏବେ ପୁଣ ।
ଆଣନ୍ତୁ ପର୍ବତ ପୋତନ୍ତୁ ସମୁଦ୍ର
ଶୁଣିକରି ଋକ୍ଷକପି ଚଳିଲେ ଆନନ୍ଦ ।
କେହୁ ଚାଲିଯାନ୍ତି କେହୁ ଉଡ଼ିଯାନ୍ତି
ଚାଲ ଚାଲ ବେଗେ ବୋଲି କେ କହନ୍ତି ।
କେ ବୋଲନ୍ତି ଧାଆଁ ଧାଆଁ କେ ବୋଲନ୍ତି ଧର
ଜମ୍ବୁଦ୍ୱୀପ ମଣ୍ଡଳରେ ପୂରିଲେ ବାନର ।
ବନଜୀବମାନେ ଯେ ପର୍ବତରେ ଥିଲେ
କପିମାନଙ୍କୁ ଦେଖି ତରଛା ହୋଇଲେ ।
ବାନର ଭାଲୁ ବୋଇଲେ ଜୀବମାନେ ଶୁଣ
କନ୍ଦରରୁ ଓହ୍ଲାଇ ଯାଅ ତତକ୍ଷଣ ।
ପ୍ରାଣକୁ ଯେବେ ଭରସା ବେଗେ ହୋଇ ଚଳ
ନୋହିଲେ ନାଶଯିବ ପଡ଼ିବ ସିନ୍ଧୁଜଳ ।
ଶୁଣିଣ ଜୀବମାନେ ତ ଓହ୍ଲାଇଣ ଗଲେ
କନ୍ଦରୁ ବନରେ ଯାଇଣ ରହିଲେ ।
ଜୀବମାନେ ଯିବାରୁ ଦେଖିଣ କପିପଲ
ପର୍ବତ ଉପାଡ଼ିଣ ଆଣନ୍ତି ଚଞ୍ଚଳ ।
ବେନିଲକ୍ଷ ଗିରିକି ଏକାବେଳେ ଆଣିଲେ
ନଳକୁ ଛୁଆଁଇଣ ଜଳରେ ପକାଇଲେ ।
ତରଙ୍ଗ ମନ୍ତ୍ରୀ ଯେ ସଜାଡ଼ିଣ ଦେଲେ
ତତକ୍ଷଣେ ଦଶଯୁଣ ସମୁଦ୍ର ପୋତିଲେ ।

ଶ୍ରୀରାମ ଆଜ୍ଞା ଦେଲେ ସମସ୍ତେ ସୁସ୍ଥ ହୁଅ
ଶୁଣିକରି କପିବଳ ମନରେ ହେଲେ ପ୍ରିୟ ।
ଯେ ଯାହାର ସୁଖରେ ବେଗେ ଚଳିଗଲେ
ଆଣିବା ଗିରିରୁ ଫଳମୂଳ ସେ ଖାଇଲେ ।
ଶ୍ରୀରାମ ଭୋଜନ କଲେ ଫଳମୂଳ
ସେନାପତି ଯୁଥପତି ମଲ୍ଲ ମହାମଲ୍ଲ ।
ସମସ୍ତେ ଭୋଜନ କଲେକ ସେଠାରେ
ଲକ୍ଷ୍ମଣ ବିଭୀଷଣ ସୁଗ୍ରୀବ ସହିତରେ ।
ଭୋଜନ ସାରିଣ ସମସ୍ତେ ସୁଖ ପାଇ
ରଜନୀ ହେବାରୁ ବନ୍ଧ ଜଗି ରହି ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରଜନୀ ଶେଷ ହେବାରୁ ରବି ଉଦେ ହୋନ୍ତି ।
ଦେଖିଣ ଶ୍ରୀରାମ ସ୍ନାହାନ ବେଗେ କଲେ
ନିତ୍ୟକର୍ମ ସାରିଣ ସନ୍ଧ୍ୟା ସୁମରିଲେ ।
ଅମଳାଣ ପିନ୍ଧିଣ ମୃଗ ଛାଲେ ବସି
ସୈନ୍ୟଙ୍କୁ ବୋଇଲେ ପୂର୍ବଦିଗକୁ ଯାଅସି ।
ଋକ୍ଷକପି ବୋଇଲେ ଆମ୍ଭେମାନେ ଯିବୁ
ସେନାପତି ଯୁଥପତି ନ ଯିବେ ଆଜ ସବୁ ।
ଶୁଣିଣ ଶ୍ରୀରାମ ବୋଇଲେ ତୁମ୍ଭେ ଯାଅ
ପୂର୍ବଦିଗରୁ ପର୍ବତ ଯାଇଣ ଆଣିଦିଅ ।
ଶୁଣିଣ ସୈନ୍ୟବଳ ବେଗେ ଚଳିଗଲେ
ପୂର୍ବଦିଗରୁ ପର୍ବତ ବୋହିଣ ଆଣିଲେ ।
ନଳକୁ ଛୁଆଇଁଣ ପକାଇଲେ ସିନ୍ଧୁଜଳ
ଦଶଯୁଣ ସମୁଦ୍ର ପୋତିଲେ ଏକ ବେଳ ।
ଏମନ୍ତ ସମୟରେ ପ୍ରବେଶ ରଜନୀ
ମେରୁର ଉହାଡ଼କୁ ଗଲେ ଦିନମଣି ।
ସେଦିନ ଅଶୀଯୁଣ ବନ୍ଧ ଯେ ହୋଇଲା
ବାକି କୋଡ଼ିଏ ଯୁଣ ସମୁଦ୍ର ରହିଲା ।
ସେ ବନ୍ଧକୁ ଲଙ୍କାଗଡ଼ ଦିଶିଲାକ ପୁଣ
ଲଙ୍କା ପାଚେରୀ ଦିଶେ ବସନ୍ତବର୍ଣ୍ଣ ଜାଣ ।
ରତ୍ନମୟପୁର ସେ ଦିଶେ ଭିନ୍ନ ଭିନ୍ନ
ସୁବଳୟାଗିରି ଯେ ଦିଶିଲାକ ପୁଣ ।
ଦେଖିଣ ଋକ୍ଷକପି ହରଷମନ ହେଲେ
ଶ୍ରୀରାମଙ୍କ ଆଗରେ ଆସିଣ ଜଣାଇଲେ ।
ବୋଇଲେ ଶୁଣିବା ହେଉ ଦାଶରଥି
ଅଶୀଯୁଣ ନିର୍ମାଣ ହୋଇଲା ବନ୍ଧଟି ।
ବନ୍ଧର ମୁଣ୍ଡକୁ ଦିଶିଲା ଲଙ୍କାପୁର
ସୁବର୍ଣ୍ଣମୟପୁର ବସନ୍ତ ଆକାର ।
ସୁବଳୟାଗିରି ଯେ ଦିଶେ ବାରି ହୋଇ
ଉଚ୍ଚସଞ୍ଚ ଦେବ କଳନା ନ ଯାଇ ।

ଶୁଣି ଶ୍ରୀରାମ ଲକ୍ଷ୍ମଣ ହରଷ ହୋଇଲେ
ସେନାପତି ଯୁଥପତି ଚାହିଁଣ ବୋଇଲେ ।
ବେଗେ ଯାଇ ବନ୍ଧକୁ ରକ୍ଷାକର ପୁଣ
ଅସୁର ଅଟନ୍ତି ମାୟାରେ ପ୍ରବୀଣ ।
ଶୁଣିକରି ଯୁଥପତି ସେନାପତି ଗଲେ
ମଲ୍ଲ ମହାମଲ୍ଲମାନେ ସଙ୍ଗରେ ସୈନ୍ୟ ନେଲେ ।
ନିର୍ବନ୍ଧରେ ବନ୍ଧକୁ ଜଗିଣ ରହିଲେ
ଅଶୀଯୁଣ ବନ୍ଧରେ ସମସ୍ତେ ଠୁଳ ହେଲେ ।
ଆଗରେ ସେନାପତି ସଙ୍ଗରେ ରକ୍ଷରାଜା
ମଧ୍ୟରେ ଯୁଥପତି କଲେ ତରିଜା ।
ଯୁଥପତି ସଙ୍ଗରେ ମଲ୍ଲ ମହାମଲ୍ଲ
ନିଘଞ୍ଚରେ ବନ୍ଧ ଯେ ଜଗିଲେ ସକଳ ।
ସେ ବନ୍ଧରୁ ସମସ୍ତେ ଫଳମୂଳ ଖାଇ
ମନରେ ଋକ୍ଷକପି ମନ ସନ୍ତୋଷ ହୋଇ ।
ପାର୍ବତୀ ବୋଇଲେ ପିଅନ୍ତି କି ପାଣି
ସେ କଥା ଗୋଟି ମୁଁ ନ ପାରିଲି ଜାଣି ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଯେତେବେଳେ ବାନରେ ଫଳମୂଳ ଖା'ନ୍ତି ।
ସେତେବେଳେ ହନୁମାନ ମଣିକି ନେଇଣ
ସମୁଦ୍ରର ମଧ୍ୟରେ ବୁଡ଼ାଏ ସେ ଜାଣ ।
ତେଣୁ ଯେ ଲୁଣିପାଣି ହୁଅଇ ମଧୁର
ସୁଖେ ପାନ କରନ୍ତି ଋକ୍ଷ ଯେ ବାନର ।
ମଣି କାଢ଼ିବା ଉତ୍ତାରୁ ହୁଏ ଲୁଣି ଜଳ
ଏମନ୍ତ ପ୍ରକାରେ ଶକ୍ତି ସେ ମଣିର ।
ଯେ ଯହିଁକି ଘଟଣା କରିଛି ବିଧାତା
ଆଗରୁ ଅସୁର ମରିବା ବ୍ୟବସ୍ଥା ।
ପାର୍ବତୀ ବୋଇଲେ ସେଠାରୁ କିସ କଲେ
ଈଶ୍ୱର ବୋଇଲେ ସେ କଥା ଶୁଣ ଭଲେ ।
ସମସ୍ତଙ୍କୁ ଜାଗ୍ରତ କରିଣ ରାମରାଣ
ତର୍ପଣ କଲେ ସିନ୍ଧୁ କୂଳକୁ ଯାଇଣ ।
ସିନ୍ଧୁକୂଳୁ ଆସିଲେ ଭୁଞ୍ଜିଲେ ଫଳମୂଳ
ଆଞ୍ଚୋବନ ସାରିଣ ଭୁଞ୍ଜିଲେ କଷାଫଳ ।
ମୃଗଛାଲ ଉପରେ କଲେକ ଶୟନ
ଲକ୍ଷ୍ମଣ ବିଭୀଷଣ କଲେକ ଭୋଜନ ।
ଆଞ୍ଚୋବନ ସାରିଣ କଷାଫଳ ଖାଇ
କଥା ହୁଅନ୍ତେଣ ରଜନୀ ଗଲା ପାହି ।
କାକରଡ଼ି ଶୁଣିଣ ଉଠିଲେ ରଘୁନାଥ
ସ୍ନାହାନ କରିବାକୁ ଗଲେ ସେ ତ୍ୱରିତ ।
ନିର୍ଝରଜଳରେ ସ୍ନାନ ସେ କଲେ
ସନ୍ଧ୍ୟା ତର୍ପଣ ସାରିଣ ବେଗେ ସେ ଅଇଲେ ।

ମୃଗଛାଲ ଉପରେ ବସିଲେ ରାଘବ
ମଲ୍ଲ ମହାମଲ୍ଲ ଋକ୍ଷପତି ଆସିଗଲେ ସର୍ବ ।
ଶ୍ରୀରାମ ଚରଣରେ କଲେ ଦରଶନ
ସେନାପତି ଯୁଥପତି ଆସିଲେ ବହନ ।
ଶ୍ରୀରାମଙ୍କ ଚରଣେ କଲେ ମାନ୍ୟଧର୍ମ
ସୁଗ୍ରୀବର ବିଭୀଷଣ ଆଗରେ ଉଭା ଜାଣ ।
ଏଥୁ ଅନନ୍ତରେ ଗୋ ଦେବୀ ଉମା
ତ୍ରିଲୋକରେ ବିଖ୍ୟାତ ଶ୍ରୀରାମ ମହିମା ।
ହେଳେ ଯେ ପୋତିଲେ ତେଡ଼େ ମହାସିନ୍ଧୁ
ବନର ଜୀବମାନେ ହେଲେ ତାଙ୍କ ବନ୍ଧୁ ।
ସ୍ୱୟଂ ନାରାୟଣ ଦଶରଥ ସୁତ
ମହାଲକ୍ଷ୍ମୀ ଅଟନ୍ତି ଜନକ ଦୁହିତ ।
ଦେବତାଙ୍କର ବୀର୍ଯ୍ୟରେ ଋକ୍ଷକପି ଜନ୍ମ
ନୋହିଲେ କି ଆନରେ ହୁଏ ଏଡ଼େ କର୍ମ ।
ନଳ ଛୁଇଁଲେ କେବେ ହେଁ ପର୍ବତ ନ ବୁଡ଼ି
ସ୍ୱୟଂ ବିଶ୍ୱକର୍ମା ନଳ ବିନ୍ଧାଣି ତାଙ୍କୁ ଗଢ଼ି ।
ଶ୍ରୀରାମ ବୋଇଲେ ଚଳ ଋକ୍ଷକପି ବଳ
ଉତ୍ତର ଦିଗକୁ ଯାଇ ଆଣ ଗିରିବର ।
ଶୁଣିଣ ଋକ୍ଷକପି ବେଗେ ଚଳିଗଲେ
ଉତ୍ତରୁ ବେନିଲକ୍ଷ ପର୍ବତ ଆଣିଲେ ।
ନଳକୁ ଛୁଆଇଁଣ ପୋତିଲେ ସିନ୍ଧୁଜଳ
ଲମ୍ବ ଓସାର ଦଶଯୁଣ ଅଟେ ତାର ।
ନଳ ହିଁ ନ ଜାଣଇଁ ବରୁଣ ଗଲା କହି
ଶ୍ରୀରାମଙ୍କୁ ବରୁଣ ଦେଲାକ ଚେତାଇ ।
ତେଣୁ ସେ ପର୍ବତ ବୋହି ଆଣନ୍ତି କପିବଳ
ନଳକୁ ଛୁଆଇଁଲେ ଭାସଇ ଶଇଳ ।
ଶ୍ରୀରାମ ବନ୍ଧ ବାନ୍ଧନ୍ତି ମହୋଦଧି ସ୍ଥିର
ପୂର୍ବରୁ ବିଧାତା ଭିଆଇଛି ସକଳ ।
ନବଦିନ ବନ୍ଧବାନ୍ଧି ସମସ୍ତେ ରୁଣ୍ଡ ହୋଇ
ସ୍ନାନ ତର୍ପଣକୁ ବାହାର ରଘୁସାଇଁ ।
ସେନାପତି ଯୁଥପତି ଋକ୍ଷ କପିଗଣ
ଶ୍ରୀରାମ ଆଜ୍ଞାରେ ଅବଜ୍ଞା ନାହିଁ ପୁଣ ।
ସ୍ନାନ ତର୍ପଣ ସାରି ରଘୁସାଇଁ
ମୃଗଛାଲ ଉପରେ ବିଜୟ କଲେ ଯାଇଁ ।
ଏଥୁ ଅନନ୍ତରେ ଅସ୍ତ ହେଲେ ଦିନମଣି
ଅନ୍ଧାର ଘୋଟିଲା ହେଲା ପହରେ ରଜନୀ ।
ଫଳମୂଳ ଭୁଞ୍ଜିଲେ ଶ୍ରୀ ରଘୁନନ୍ଦନ
ଆଞ୍ଚୋବନ ସାରିଣ ବସିଲେ ଯାଇଣ ।
କଷାଫଳ ଭୁଞ୍ଜିଣ ହରଷ ହୋଇଲେ
ବନ୍ଧକୁ ରକ୍ଷାକର ସୈନ୍ୟଙ୍କୁ ଆଜ୍ଞା ଦେଲେ ।

ସେଦିନ ନୀଳ ରହେ ଆଗୁଆଣି ଦଣ୍ଡେ
ବାଇଣା ବଜାଇ ସେ ରହିଲା ଉନିଦ୍ରେ ।
ସକଳ ସୈନ୍ୟବଳ ଫଳମୂଳ ଖାଇ
ବନ୍ଧର ଉପରେ ଶୋଇଲେ ସୁସ୍ଥ ହୋଇ ।
ବିଭୀଷଣ ସୁଗ୍ରୀବର ଲକ୍ଷ୍ମଣ ସଙ୍ଗର
ଫଳମୂଳ ଭୋଜନ କଲେ ସେ ସ୍ଥାନର ।
କେବଳ ଲକ୍ଷ୍ମଣ ଯେ ଉଜାଗରେ ବସି
ତେଣେ ନିର୍ଜନ ହୋଇଲେ ଲଙ୍କାପୁର ବାସି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଅମୃତ ସ୍ୱର୍ଗୁ ଆଣେ ପବନ ଯାଇକରି ।
ଶ୍ରୀରାମ ନାରୀଙ୍କୁ ଭୋଜନ କରାଇଲେ
ବାସପାଣି ଦେଇ ସତୀଙ୍କି ସେ ଶାନ୍ତ କଲେ ।
ହରଷରେ ରାମନାରୀ ଆଞ୍ଚୋବନ ସାରି
ମୁଖ ବାସ ଭୁଞ୍ଜି ଆସନରେ ବିଜେ କରି ।
ନିଶବଦ ଅସୁରୁଣୀ ତ୍ରିଜଟା ସହିତେ
ଜାନକୀ ବୋଇଲେ ତୁମ୍ଭେ ଯାଅ ହେ ତ୍ୱରିତେ ।
ଲକ୍ଷ୍ମଣଙ୍କୁ କହିବ ମୋହର ବାରତା
ଅନେକ ମାୟା ଜାଣଇ ବିଶ୍ରବାର ସୁତା ।
ମାୟାସୀତା ଦେଖାଇ ତୁମ୍ଭଙ୍କୁ ଭଣ୍ଡିବ
ଅନେକ ପ୍ରକାରେ ବିନତି ପୁଣ ହେବ ।
ସେ କଥାକୁ ସମ୍ପ୍ରତେ ନ କରିବ ପୁଣି
ଦୟାକରି ରାବଣକୁ ନ ଛାଡ଼ିବ ଜାଣି ।
ମାରିବେ ରାବଣଙ୍କୁ ଦେବତା ହେବେ ସୁଖୀ
ପିତାଶତ୍ରୁ ଦାରାବୈରୀ ଅଟେ ବିଂଶଆଖି ।
ଶୁଣିଣ ପବନ ବେଗେ ଚଳିଗଲା
ଶାର୍ଦ୍ଦୁଳ ରୂପ ଧରି ଆଗରେ ମିଳିଲା ।
ଲକ୍ଷ୍ମଣ ଦେଖିଣ ମନରେ ବିଚାରିଲେ
ଶାର୍ଦ୍ଦୁଳ କାହିଁ ଏବେ ଅଇଲା ବୋଇଲେ ।
ଯେଉଁ ପର୍ବତକୁ ଆଣିଲେ କପି ବୋହି
ସେ ପର୍ବତ ଉପରେ ଆସିଣ ଉଭା ହୋଇ ।
ଏମନ୍ତ ଦେଖି ଲକ୍ଷ୍ମଣ ଧନୁରେ ଗୁଣ ଦେଲେ
ଦେଖିକରି ପବନ ସିଂହରୂପ ହେଲେ ।
ଏମନ୍ତ ଦେଖି ଲକ୍ଷ୍ମଣ ଧନୁ ଧରି କରି
କହିଲେ କିଏ କହ ମାୟା ଛାଡ଼ିକରି ।
ଶୁଣିଣ ପବନ ସିଂହରୂପ ତେଜି
ନ୍ୟୂନ ରୂପ ଧରିଣ ଛାମୁରେ ଉଭା ବେଗି ।
ବୋଇଲେ ତୁମ୍ଭଠାକୁ ପେଶିଲେ ରାମନାରୀ
କହିଲେ ଦୈତ୍ୟକାୟାକୁ ଥିବେ ହେତୁକରି ।
ସମ୍ଭାଳି ହୋଇଣ କରିବେ କାର୍ଯ୍ୟ ପୁଣ
ଅସମ୍ଭାଳ ହୋଇଲେ ସବୁ ଅକାରଣ ।
ଲକ୍ଷ୍ମଣ ବୋଇଲେ କହିବ ସତୀଙ୍କି
ଅଳପ ଦିନରେ ଆସିବ ତୁମ୍ଭେଟି ।
ଶୋକ ନ କରିବ ମାୟା କଥା ଦେଖି
ତେଜ ବଳ ଆଉ ନ ଉପେକ୍ଷିବ ସତୀ ।
ବେଳକୁ ବେଳ ଶରୀର ତେଜ ବିକାଶିବ
ନର ବାନର ଅନେକ ଠୁଳ ହେବେ ଦେବ ।
ଶୁଣିଣ ପବନ ବେଗେ ଚଳିଗଲା
ସତୀର ଆଗରେ ସମସ୍ତ କହିଲା ।
ବୋଇଲା ଲକ୍ଷ୍ମଣ କହିଲେ ତୁମ୍ଭରେ
ଅତି ତେଜବନ୍ତ ରଖିବ କୁଶଳରେ ।
ନର ବାନର ଦେବତା ଋଷି ହେବେ ଠୁଳ
ସତୀଙ୍କି ଦେଖି ସର୍ବେ ହେବେ ତୋଷ ଭର ।
ତ୍ରୈଲୋକ୍ୟ ଠାକୁରାଣୀ ପରାୟ ଦିଶୁଥିବ
ସମସ୍ତଙ୍କୁ ଯେପରି ମୋହ କରାଇବ ।
ଶ୍ରୀରାମ ନାରାୟଣ ଦୈତ୍ୟଙ୍କୁ ମାୟା କରି
ବଇରୀ ଗଞ୍ଜନ ବାନା ଅଟଇ ତାଙ୍କରି ।
ଶୁଣିଣ ଜନକ ସୁତା ଆନନ୍ଦ ହୋଇଲେ
ପୂର୍ବରୁ ହେତୁ ଅଛି ବୋଲିଣ ବିଚାରିଲେ ।
ପାର୍ବତୀ ବୋଇଲେ ଦେବ ସଦାନନ୍ଦ
ନବ ଦିନରେ ବନ୍ଧ ହେଲା ଆସି ସିଦ୍ଧ ।
ନଉଯୁଣ ସମୁଦ୍ର ପୋତିଲେ ଋକ୍ଷକପି
ଆହୁରି ଦଶଯୁଣ ଅଛି ତହିଁରୁ ବାକି ।
ଈଶ୍ୱର ବୋଇଲେ ଶୁଣ ଶାକମ୍ଭରୀ
ରଜନୀ ଶେଷ ହେଲା ଉଠିଲେ ଚାପଧାରୀ ।
ସେନାପତି ଯୂଥପତି କପି ବଳମାନେ
ମଲ୍ଲ ମହାମଲ୍ଲ ଯେ ସରଦାର ତେଣେ ।
ଏମାନେ ସମସ୍ତେ ଦର୍ଶନ ଆସି କଲେ
ସୁଗ୍ରୀବ ବିଭୀଷଣ ଆଗରେ ଉଭା ହେଲେ ।
ଶ୍ରୀରାମ ବୋଇଲେ ଆଜ ବନ୍ଧ ଯେ ସମ୍ପୂର୍ଣ୍ଣ
ଉତ୍ତର ଦିଗେ ଯାଇ ଗିରି ବହି ଆଣ ।
ଏତେ କହି ଶ୍ରୀରାମ ସ୍ନାନ ତହିଁ କଲେ
ନିତ୍ୟକର୍ମ ସାରିଣ ସନ୍ଧ୍ୟା ସୁମରିଲେ ।
ଅମଳାଣ ବସ୍ତ୍ର ପିନ୍ଧି ରାମ ରାଣ
ମୃଗଛାଲ ଉପରେ ବସିଲେ ତକ୍ଷଣ ।
ତେଣେ ସେନାପତି ଯୂଥପତି ଗଲେ
ମଲ୍ଲ ମହାମଲ୍ଲ ଋକ୍ଷକପି ତୁଲେ ।
ଉତ୍ତର ଦିଗୁ ବହି ଆଣିଲେ ଗିରିବର
ନଳକୁ ଛୁଆଁଇଣ ପକାଇଲେ ଜଳର ।
ବାମକରେ ହନୁମନ୍ତର ପର୍ବତ ନଳ ଛୁଇଁ
ଦେଖିଣ ମାରୁତି ଯେ ମନରେ କ୍ରୋଧ ହୋଇ ।

ବୋଇଲା ନଳକୁ ଆଜ କରିବି ନିଧନ
ଏମନ୍ତ ବିଚାରୁ ହନୁ ଚଳିଲା ବହନ ।
ଲକ୍ଷେକ ରୁମରେ ଲକ୍ଷେକ ପର୍ବତ
ଘେନି କରି ମାରୁତି ଆସଇ ତ୍ୱରିତ ।
ଗଗନ ବିହାରୀ ଲୁଚିଲେ ତାର ତ୍ରାସେ
ଦେଖିକରି ଶ୍ରୀରାମ ଚାହିଁଲେ ଆକାଶେ ।
ବୋଇଲେ ଆଜ ଏ କେବଣ ଚରିତ
କି କଥା ହୋଇଲା ଜଣା ନ ଗଲା ତ ।
ଦଶଦିଗ ଅନ୍ଧାର ପଥ ନ ଦିଶଇ
ଜମ୍ବେବ ମନ୍ତ୍ରୀ ବୋଇଲେ ଶୁଣିବା ଗୋସାଇଁ ।
ଯେତେକ ଋକ୍ଷ କପି ଆଣନ୍ତି ପର୍ବତ
ଛୁଇଁବା ନିମନ୍ତେ ନଳ ବଢ଼ାଇ ଦିଏ ହସ୍ତ ।
ହନୁମନ୍ତ ଗିରି ଛୁଇଁଲା ବାମ କରେ
ରୋଷଭରେ ମାରୁତି ଚଳେ କୋପଭରେ ।
ଏହି ବନ୍ଧେ ନଳକୁ ପୋତିବ ବିଚାରି
ଲକ୍ଷେକ ପର୍ବତ ଆଣେ ହନୁମାନ ଧରି ।
ତେଣୁ କରି ଅନ୍ଧାର ଦିଶେ ଦଶଦିଶ
ଶୁଣି କରି ଶ୍ରୀରାମ ହୋଇଲେ ହରଷ ।
ନଳକୁ ହକାରିଣ ବୋଇଲେ ରଘୁପତି
ତୋତେ ମାରିଣ ଯେ ଲୋଡ଼ଇ ମାରୁତି ।
ବାମ କରେ ଗିରିକୁ ଛୁଇଁଲୁ ତାହାର
ତେଣୁ ତୋତେ କୋପ ଯେ କଲା ମହାବୀର ।
ଏବେ ତୁ ଆମ୍ଭ ଆଜ୍ଞା ଘେନିଣ ବେଗେ ଯିବୁ
ଆମ୍ଭେ ତୋତେ ପେଶିଦେଲୁ ବୋଲିଣ ବୋଲିବୁ ।
ତେବେ ମାରୁତିର କ୍ରୋଧ ହେବ ଶାନ୍ତି
ଶୁଣି କରି ନଳ ବଚନ କହନ୍ତି ।
ଶୁଣ ଦେବ ତ୍ରୈଲୋକ୍ୟ ଠାକୁର ରଘୁନାଥ
ମାରୁତିକି ମୋର କଥା ନୁହଇ ଜଣା ତ ।
ପୂର୍ବରୁ ଜାଣିନାହିଁ ଚେଡିବ କେମନ୍ତେ
ଆଗେ ଚର କଥାକୁ ଅବିଗୁଣ ଚିତ୍ତେ ।
ପାରିବାର ମଉଳା ବୋଲି ବିଚାରିଲି
ବାମ ହସ୍ତରେ ତାର ଗିରିକି ଛୁଇଁଲି ।
ନ ବୁଝି ପାରିଣ ସେ କ୍ରୋଧରେ ଏଥୁଁ ଗଲା
ଏଘାନ୍ତି ଲଜ୍ଜ୍ୟା ପାଇବ ମୋହର ମଉଳା ।
ମୋହର ଦୋଷ କିଛି ନାହିଁ ରଘୁବଂଶି
ଯାହା ସେ ବିହି ପୂର୍ବରୁ ଭିଆଇଣ ଅଛି ।
ଶ୍ରୀରାମ ବୋଇଲେ ସେକଥା ଏବେ କହ
ମଉଳାକୁ କେଉଁଗୁଣେ କରିଅଛୁ ସ୍ନେହ ।
ନଳ ବୋଲେ ବାଲ୍ୟକାଳେ ମୁଁ ବଳେ ପ୍ରବଳ
ଋଷିଙ୍କର ଦ୍ରବ୍ୟ ନେଇ ପକାଏ ଯେ ଜଳ ।
ତେଣୁ ସେ ଋଷିମାନେ ମୋତେ ଶାପ ଦେଲେ
ଯାହାକୁ ଛୁଇଁବୁ ସେ ନ ବୁଡ଼ିବ ଜଳେ ।
ଡାହାଣ କରେ ଛୁଇଁଲେ ନିଜରୂପେ ଥିବ
ବାମକରେ ଛୁଇଁଲେ ଧବଳ ରୂପ ହେବ ।
ଏଥିର ସକାଳେ ମୁଁ ଧଇଲି ବାମ କରେ
ତିନି ପର୍ବତ ତାର ଧବଳ ରୂପ ଧରେ ।
ସେ କଥାକୁ ନ ଦେଖି ମୋଠାରେ କ୍ରୋଧ ହେଲା
ଏବେ ସେକଥା ପରୀକ୍ଷେ ବୁଝ ରଘୁବଳା ।
ଶୁଣିକରି ଶ୍ରୀରାମ ହରଷ ହୋଇଲେ
ଅଷ୍ଟ ସେନାପତିଙ୍କି ଚାହିଁଣ ଆଜ୍ଞା ଦେଲେ ।
ଶୁଣି କରି ଅଙ୍ଗଦ ନଳ ନୀଳ ପୁଣି
ଅଷ୍ଟ ସେନାପତି ଚଳିଲେ ତତ୍‌କ୍ଷଣି ।
ଶତବାଳି ସେନାପତି ଗନ୍ଧ ମାରଦନ
ମହୀନ୍ଦ୍ର ଦଧିମୁଖି ଗବାକ୍ଷ ଚନ୍ଦନ ।
ଡାଳିମ୍ବ କେଶରୀ ଯେ ମରୁତ ସୁନାସ
ଦୁର୍ବିନ୍ଦ ଶଉରୀ ଯେ ପାରାସ ସାରାସ ।
ପଚିଶ ଯୁଥପତି ସମସ୍ତେ ଚଳିଲେ
ଯାଉ ଯାଉ ମାରୁତିକି ବାଟରେ ଦେଖିଲେ ।
ଦେଖିଲେ ପର୍ବତ ଅଛି ତାର ମୁଣ୍ଡ
ବେନି ଚରଣ ଯେ ନ ଦିଶେ ହୃଦଖଣ୍ଡ ।
ଲାଞ୍ଜ ପିଠି ମୁଣ୍ଡ ସକଳଠାରେ ରୁଣ୍ଡ
କ୍ରୋଧରେ ମାରୁତି ମନେ ପରଚଣ୍ଡ ।
ବିକ୍ରମ ଗତି କରି ବେଗେ ସେ ଆସଇ
ନଳ ସେନାପତି ଦୂରୁ ଦେଖିଣ ଭାଷଇ ।
କିହୋ ହନୁମନ୍ତ ତୁମ୍ଭେ କେଶରୀ ସୁତ
ତୁମ୍ଭ ଭଗ୍ନି ସୁମେଧା ଅଟନ୍ତି ମୋର ମାତ ।
ମୁଁ ତୁମ୍ଭର ଭଣଜା ତୁମ୍ଭେ ମୋ ମଉଳା
ମୋତେ କିମ୍ପା ରୋଷ କର କେଶରୀର ବଳା ।
ତୁମ୍ଭର ହିତରେ ମୁଁ ଛୁଇଁଲି ବାମ କରେ
ସେଥିପାଇଁ କୋପ ତୁମ୍ଭେ ବହିଛ ମନରେ ।
ତୁମ୍ଭର କୋପ ଦେଖି ଶ୍ରୀରାମ ମୋତେ ରାଇ
ଯୁଥପତିମାନଙ୍କୁ ଦେଲେ ପଠିଆଇ ।
ଲକ୍ଷେକ ପର୍ବତ ବହିଅଛୁ ଶିର
ବ୍ୟଥା ପାଇଥିବ ମାମୁଁ ତୁମ୍ଭର ଶରୀର ।
ହନୁ ବୋଇଲେ ଶୁଣ ମୟକପି ସୁତ
କେଉଁ ଉପକାର କଲୁ କହ ମୋ ଅଗ୍ରତ ।
ମାରୁତି ବଚନ ଶୁଣି କହେ ନଳବୀର
ଋଷି ମୋତେ ବର ଦେଲେ ଶୁଣ ବୀରବର ।
ବୋଇଲେ ଯେଉଁ ଦ୍ରବ୍ୟ ଛୁଇଁବୁ ତୁ ହସ୍ତେ
ଜଳରେ ସେହୁ ନ ଭାସିବ କଦାଚିତେ ।

ଡାହାଣ ହସ୍ତରେ ଛୁଇଁବୁ ଯେଉଁ ଦ୍ରବ୍ୟ
ସେହି ସ୍ୱରୂପେର ଭାସିବ ସେ ସର୍ବ ।
ବାମହସ୍ତେ ତୋର ଯେଉଁ ଦ୍ରବ୍ୟ ଛୁଇଁବୁ
ଧବଳ ବର୍ଣ୍ଣ ଦିଶିବ ଦେଖିବୁରେ ବାବୁ ।
ମାରୁତି ବୋଇଲା ଯେବେ ଏମନ୍ତ ପ୍ରମାଣ
ଦେଖିବା ତୋର କଥା ସତ ମିଛ ପୁଣ ।
ଶୁଣିକରି ନଳ ଯେ ସକଳ ଗିରି ଛୁଇଁ
ଧବଳ ବର୍ଣ୍ଣେ ପର୍ବତ ଉଜ୍ଜ୍ୱଳ ଦିଶଇ ।
ମାଲ୍ଲ ମହାମଲ୍ଲ ଯେ ଯୂଥପତି ଦେଖି
ନଳ କଥା ସତ ବୋଲି ସମସ୍ତେ କହିଲେଟି ।
ଦେଖିଲା ଶୁକ୍ଳବର୍ଣ୍ଣ ଦିଶେ ସର୍ବ ଗିରି
ମନେ ମନେ ହନୁମନ୍ତ ଭାଳେ ଦେଖି କରି ।
ନଳ କଥା ସତ ଯେ ବିଚାର କରି ମନେ
ମୋତେ କୁଶଳ ବାଞ୍ଛା କଲା ଏ ସ୍ୱପନେ ।
ତେବେ ହେଁ ଉପ୍ରୋଧ କ୍ଷଣେ ନ ଛାଡ଼ିଲା
ଦାଟକ୍ ବୋଲି ମୋତେ ପ୍ରବୋଧି ଅଇଲା ।
ଏମନ୍ତ ବିଚାରି ସେ ନଳକୁ କୋଳ କଲା
ମାରୁତିର ହରଷ କହିଲେ ନ ସରିଲା ।
ଏଥୁ ଅନନ୍ତରେ ନଳ କହେ ପୁଣ
ଶ୍ରୀରାମଙ୍କର ଆଗରେ ପର୍ବତ ଥୋଇଣ ।
ଦେଖିଣ ଚାପଧାରୀ ହୋଇଲେ ଉଛତ
ବୋଇଲେ ନୀଳର କଥା ଯେ ଅଟେ ସତ ।
ବୋଇଲେ ଏ ପର୍ବତ ଲକ୍ଷେକ ଘେନିଯିବ
ସୁବଳୟା ଗିରିକି ଲଗାଇ ପକାଇବ ।
ଶୁଣିଣ ଯୂଥପତି ସେନାପତି ଗଲେ
କନ୍ଧରେ ମୁଣ୍ଡରେ ଗିରି ବୋହିନେଲେ ।
ଶତେ ଯୁଣ ସିନ୍ଧୁଜଳ ପୋତିଲେ ପର୍ବତେ
ସେତୁବନ୍ଧ ବାନ୍ଧିଲେ ବିଚାରି ରଘୁନାଥେ ।
ଦଶଦିନରେ ବନ୍ଧ ସମ୍ପୂର୍ଣ୍ଣ ହୋଇଲା
ସକଳ ରକ୍ଷକପି ଚଳିଲେ ହୋଇ ତ୍ୱରା ।
କୂଳରୁ ସୁବଳୟା ଗିରିକି ଲାଗିଲା
ଦେଖିଣ କପିବଳ ହର୍ଷ ହେଲେ ଭଲା ।
ସୁବଳୟା ଗିରିରେ ଉଠିଲେ ମହାମଲ
ସଙ୍ଗରେ ରକ୍ଷକପି ଚଳିଲେ ପଲ ପଲ ।
ଉଚ୍ଚସଞ୍ଚ ସ୍ଥଳି ଯେ ଦେଖିଲେ ପର୍ବତ
ସମସ୍ତ କପିବଳ ହୋଇଲେ ଉଛତ ।
ସେନାପତିମାନେ ଦେଖି ଅଇଲେ ବାହୁଡ଼ି
ଶ୍ରୀରାମ ଆଗେ କହିଲେ କରଯୋଡ଼ି ।
ଶୁଣ ଦେବ ରଘୁନାଥ ଅଯୋଧ୍ୟା ଠାକୁର
ଶତେ ଯୁଣ ସେତୁବନ୍ଧ ହୋଇଲା ତିଆର ।
କୂଳରୁ ସୁବଳୟା ଗିରିକୁ ଲାଗିଲା
ସେ ଗିରିକି ଲଙ୍କାଗଡ଼ ଅଲଗା ଦିଶିଲା ।
ଶୁଣିଣ ରଘୁନାଥ ହରଷ ମନ ହେଲେ
ନିଶରେ ହସ୍ତଦେଇ ବନ୍ଧକୁ ଚାହିଁଲେ ।
ଜମ୍ବେବଙ୍କୁ ବୋଇଲେ ଖୋଜ ଅନୁକୂଳ
କେତେବେଳେ ବନ୍ଧରେ ଉଠିବେ କପିବଳ ।
ଶ୍ରୀରାମଙ୍କ ବଚନ ଜମ୍ବେବ ମନ୍ତ୍ରୀ ଶୁଣି
ବସି କୋଷ୍ଠି କାଟିଲେ ହସ୍ତରେ ଖଡ଼ିଘେନି ।
ଅଷ୍ଟ ଅକ୍ଷର ଅଷ୍ଟଦିଗକୁ ଚାହିଁ ଲିହି
ନ ଜାଣିବା ଲୋକ ହସ୍ତରେ ଖଡ଼ି ଦେଇ ।
ତାହାକୁ ବୋଇଲେ ତୁରେ ମଧ୍ୟସ୍ଥାନ ଛାଡ଼ି
ଯେଉଁଠାରେ ଇଚ୍ଛା ତୋର ସେ ସ୍ଥାନେ ଥୁଅ ଖଡ଼ି ।
ତୋର ମନେ ବିଚାରି ଥୁଅ ବେଗ କରି
ଏହିପରି ଜମ୍ବେବ କହିଲେ ଫେଡ଼ି କରି ।
ଖଡ଼ିକି ଥୁଅନ୍ତେ ଜାଣିଲେ ବେନିଜନ
ଶ୍ରୀରାମର ବହୁତ ସନ୍ତାପ ଅଛି ଜାଣ ।
ସିଂହର ଅଙ୍କରେ ପଡ଼ିଲା ଶକୁନ
ଆଗେ ହେବ ସନ୍ତାପ ପଛେ ଲକ୍ଷ୍ମୀ ବେଗ ପୁଣ ।
ଖଡ଼ି ଧରି କୋଷ୍ଠି ପୋଛିଲେ ରକ୍ଷପତି
କରଯୋଡ଼ି ବୋଇଲେ ପ୍ରାପତ ହେବେ ସତୀ ।
ରାବଣର ସଗୋତ୍ର ସହିତେ ନାଶଯିବେ
ଇଷ୍ଟବନ୍ଧୁ କୁଟୁମ୍ବ କେହି ନ ରହିବେ ।
ଚାରି ରାବଣ ମରିବେ ମରିବେ ସୈନ୍ୟବଳ
ଦେବତାଏ ସାହା ତୋତେ ଅଛନ୍ତି ରଘୁବାଳ ।
ଷଡ଼ଥର ତୋତେ ଏ ଯୁଦ୍ଧର ସନ୍ତାପ
ମନ୍ତ୍ରୀ ବୈଦ୍ୟ କହିଲେ ଏମନ୍ତ ସ୍ୱରୂପ ।
ସ୍ୱର୍ଗରୁ ଦେବତାଏ ଆସିବେ ସକଳ
ତିନିପୁର ଦେବତା ତୋ ଆଗେ ହେବେ ଠୁଳ ।
ତିନିପୁର ମୁନି ଯେ ଆସିବେ ତୁମ୍ଭ ପାଶ
ଲକ୍ଷେକ ନୃପତି ଯେ ଖଟିବେ ଅବଶ୍ୟ ।
ଚଉଦ ଲକ୍ଷ ନୃପତି କରିବେ ନମସ୍କାର
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଜିଣିବୁ ରଘୁବୀର ।
ସପତ ସାଗର ସପତ ଦ୍ୱୀପ ଜିଣି
ଯୁଗେ ଯୁଗେ ତୋ କୀରତି ରହିବ ରଘୁମଣି ।
ତୁମ୍ଭର କଥାମାନ ପୁରାଣେ ହେବ ଲେଖା
ଏ ଖଡ଼ିର ମହିମା ଏପରି ବ୍ୟବସ୍ଥା ।
ସ୍ୱର୍ଗରୁ ଦେବଗୁରୁ ଅଯୋଧ୍ୟାକୁ ଆସି
ଅଭିଷେକ କରିବେ ଶୁଣ ହେ ରଘୁବଂଶୀ ।
ନର ବାନର ଦେବତା ନାଗଲୋକ ପରେ
ପ୍ରସିଦ୍ଧ ନାମ ଖ୍ୟାତ ହୋଇବ ସଂସାରେ ।

ଏ କଥାମାନ ଯେବେ ନୋହିବ ତୁମ୍ଭର
ଏ ପାଞ୍ଚକୁ ଦେବ ଆମ୍ଭେ ନ ବୋହିବୁ କର ।
ଶୁଣିଣ ରଘୁନାଥ ହରଷ ମନ ହେଲେ
ବଦନ ପ୍ରକାଶଇ ପୂର୍ଣ୍ଣିମା ଜହ୍ନ ତୁଲେ ।
ଆଜିଦିନ ଚତୁର୍ଥୀ ଅଟେ ଶନିବାର
କାଲି ପୁଷ୍ୟା ନକ୍ଷତ୍ର ଅଟେ କ୍ଷମ ତାର ।
ବିଛା ରାଶିକି ଯେ ଚନ୍ଦ୍ର ବିଜେ କରି
ସେ ତୁମ୍ଭଙ୍କୁ ପଞ୍ଚମ ଅଟେ ହିତକାରୀ ।
ଏକାଦଶ ଘରରେ ବିଜୟ ଆଦିତ୍ୟ
କାଲି ଆମ୍ଭେ ଅନୁକୂଳ କରିବା ରଘୁନାଥ ।
ଉତ୍ତର ଦିଗରେ ଯେ କାଲି ଯୋଗ୍ନିଘର
ପୃଷ୍ଠଭାଗେ ରହିବ ଶୁଭ ହେବ ତୋର ।
ଆମ୍ଭେ ଏଥୁ ଯିବା ଯେ ଶୁକ୍ରଙ୍କର ବେଳେ
କାର୍ଯ୍ୟ ଶୁଭ ହୋଇବ ଆମ୍ଭର ତତକାଳେ ।
ସିଦ୍ଧ ନାମେ ଯୋଗ ଯେ ଉତ୍ତମ କରଣ
ଏହି ଯୋଗ ତୁମ୍ଭଙ୍କୁ ପ୍ରାପତ ରଘୁରାଣ ।
ଶୁଣିକରି ଶ୍ରୀରାମ ଯେ ହୋଇଲେ ହରଷ
ସୁଗ୍ରୀବରଙ୍କୁ ଶ୍ରୀରାମ ହକାରିଲେ ପାଶ ।
ବୋଇଲେ ଏ ବନ୍ଧ ହୋଇଲା ଦେବକୂଟରୁ
ଯହୁଁ ସେ ରାବଣ ଦେବଙ୍କର ଗରୁ ।
ଅସୁର ମାରେଣ ଆଗେ କରିଛନ୍ତି ଛନ୍ଦ
ନୋହିଲେ ସମୁଦ୍ରେ କି ବାନ୍ଧିହୁଏ ବନ୍ଧ ।
ଏ ସାଗର ନବଠାରେ ରହିଛି ନବପଦା
ଦେବ ଦାନବରେ ଜଣା ନୁହେଁ ସୁଦ୍ଧା ।
ପର୍ବତ ଗରୁନୁହେ ଧରୁ ଉପୁଡ଼ିଲେ
ଗଙ୍ଗା ଯମୁନା ଧରଣୀ ମୋ ପାଶେ ଅଇଲେ ।
ସଙ୍ଗରେ ତରଙ୍ଗ ମନ୍ତ୍ରୀ ଆସି ବନ୍ଧ କଲା
ଯେଣିକି ପେଶିଲି ହନୁ ତେଣିକି ଗଲା ।
ମଣିଟି ଗୋ ପାତାଳ ଦେବୀ ଦେଲା ଜାଣି
ଲବଣ ଜଳେ ବୁଡ଼ାନ୍ତେ ମଧୁର ହୁଏ ପାଣି ।
ବାନର ବଳମାନେ ହେଉଛନ୍ତି ଟାଣ
ପତ୍ର ଫଳମୂଳ ଅମୃତ ପ୍ରାୟେ ଜାଣ ।
ଦେବକୂଟ ନୋହିଲେକି ଏତେ କଥା ହୋଇ
ଅସାଧ୍ୟ ସାଧ୍ୟ କଲା ମୋର ଦୂତ ଯାଇ ।
ଶ୍ରୀରାମ ବୋଇଲେ ମୁଁ କଥା ଏ ନ ବାରିଲି
ବୁଡ଼ିଲାକି ଭାସିଲା ପଥର ନ ଜାଣିଲି ।
ଜମ୍ବେବ ବୋଇଲେ ଏକର ପାଖରୁ
ଆର ପାଖକୁ ବୁଡ଼ିଣ ଗଲେ ତଥ୍ୟ କରୁ ।
ଶ୍ରୀରାମ ବୋଇଲେ ଦଶଯୁଣ ପଥ
ଲେଖାରେ ଚାଳିଶି କୋଶ ସେହି ହୋଇଲା ତ ।

ଏତେ ଦୂର ପଥ କେ ବୁଡ଼ିକରି ଯିବ
କାହାର ବଳ ବାବୁରେ ଏ ଅଛି ଉଗ୍ରଭାବ ।
ଜମ୍ବେବ ବୋଇଲେ ଏଥିରେ ଅଛି ସତ୍ୟ
ଯାହାକୁ ବୋଲିବୁ ବାବୁ ସେ ବୁଡ଼ି ପାରିବ ତ ।
ଶ୍ରୀରାମ ବୋଇଲେ ତରଙ୍ଗ ମନ୍ତ୍ରୀ ଆସୁ
ତାହାକୁ ଅବା ଏଥିରେ ଉପାୟ ଯେ ଦିଶୁ ।
ଶୁଣିଣ ଅଙ୍ଗଦ ଯେ ବେଗେ ଚଳିଗଲା
ବନ୍ଧର ସେ ମୁଣ୍ଡରୁ ତରଙ୍ଗକୁ ଅଣାଇଲା ।
ତରଙ୍ଗ ମନ୍ତ୍ରୀ ଆସି ପ୍ରବେଶ ରାମ ପାଶ
ଶ୍ରୀରାମ ବୋଇଲେ ମନ୍ତ୍ରୀ ଶୁଣ ମୋ ଉଦ୍ଦେଶ୍ୟ ।
ସେତୁବନ୍ଧ ବାନ୍ଧିଲୁ ଯେ ସାର ଦଶଯୁଣ
ଲମ୍ବ ଶତେ ଯୁଣ ହୋଇଲା ପ୍ରମାଣ ।
ଉପରେ ଭାସିଲାକି ତଳକୁ ବୁଡ଼ିଲା
ଏକଥା ଆମ୍ଭର ପରତେ ନୋହିଲା ।
ତରଙ୍ଗ ବୋଇଲା ଏ ପାଖରୁ ସେ ପାଖ
ମୁହିଁ ଗଲେ ଅବିଶ୍ୱାସ ହେବ ପଦ୍ମମୁଖ ।
ଶ୍ରୀରାମ ବୋଇଲେ କପି ନ ପାରନ୍ତି ଯାଇ
ଅନ୍ଧକାର ଭୂମି ସେ ବାରିତ ନୁହଇ ।
ତରଙ୍ଗ ମନ୍ତ୍ରୀ ବୋଇଲା ଯିବ ଯେ ଅଙ୍ଗଦ
ଚତୁର୍ମୁଖ ବର ଦେଲେ ଜନମ ସମ୍ବାଦ ।
ଶ୍ରୀରାମ ବୋଇଲେ ସେ କିସ ବର ଦେଲେ
ସେ କଥା ଜାଣିବା ପରତେ ହେବ ଭଲେ ।
ତରଙ୍ଗ ବୋଇଲା ଦେବ ସେଥିର କଥା ଶୁଣ
ମୟଦୈତ୍ୟର ଦୁହିତା ମନ୍ଦୋଦରୀ ଜାଣ ।
ବାଳି ବଳିୟାର ମୟଦୈତ୍ୟ ଜିଣି
ଦୁହିତାକୁ ଘେନି ସଙ୍ଗତରେ ଆଣି ।
ବାଳିକି ବିଭା ଦେବ ବୋଲି କଲା ପୁଚ୍ଛା
ଆସିଣ ବାଳିକି ବରଣ କରିବା ଇଚ୍ଛା ।
ଦେଖିଣ ନାରଦ ମୁନି ସେ ରାତ୍ରେ ଅଇଲେ
ମୟଦୈତ୍ୟକୁ କହିବ ବାପ ଝିଅ ନେଲେ ।
ଲଙ୍କାଗଡ଼େ ରାବଣକୁ କରାଇଲେ ବିଭା
ସୁନ୍ଦର ପଣେ ସତୀ ଅଟେ ଦେବ ଲୋଭା ।
ପ୍ରାନ୍ତରେ ବାଳିବୀର ସେକଥା ଜାଣିଲା
ମୟ ବାନର ଦୁହିତାକୁ ବିଭା କରାଇଲା ।
ତ୍ରିପୁର ସୁନ୍ଦରୀ ଅଟଇ ତାର ନାରୀ
ଦେଖିଣ ସନ୍ତୋଷ ହେଲା ବାଳି ଦଣ୍ଡଧାରୀ ।
ଅଙ୍ଗ ସଙ୍ଗ ହୁଅନ୍ତେ ତାରାର ଗର୍ଭବାସ
ଏହି ପରକାରେ ବହିଗଲା ଷଡ଼ମାସ ।
ଏତେ କାଳରେ ବାଳି ମନରେ ରାଗ ହେଲା
ଲଙ୍କାକୁ ଯାଇ ମନ୍ଦୋଦରୀକି ଆଣିଲା ।

ସେତେବେଳେ ମନ୍ଦୋଦରୀ ଗର୍ଭ ଷଡ଼ମାସ
ରାବଣ ବାଳିକି ବଳରେ ନିରସ ।
କିଷ୍କିନ୍ଧ୍ୟାଙ୍କୁ ଯାଇଣ ବ୍ରହ୍ମାଙ୍କୁ କହିଲା
ଶୁଣି କରି ବେଦବର ବାଳି ପୁରେ ଗଲା ।
ବାଳିକି ବୁଝାଇ କହିଲେ ବେଦବର
ମନ୍ଦୋଦରୀ ଗର୍ଭରେ କୁମର ଥୟ ତାର ।
ଅସୁରୁଣୀ ଠାରୁ ଯେ ଅସୁର ଜାତ ହେବ
ବାନର କୁଳକୁ ସେ ନୁହଇ ସମ୍ଭବ ।
ଶୁଣିକରି ବାଳି ରାଜା ନାରୀ ତେଜ୍ୟା କଲା
ରାବଣକୁ ଡକାଇ ଧାତା ନାରୀ ଦେଲା ।
ତେଣୁ ସେ ମନ୍ଦୋଦରୀ ଗର୍ଭରେ ପୁତ୍ର ଥିଲା
ସେ କୁମରକୁ ବିଧାତା ଯୋଗେଣ ହରିଲା ।
ତାରାର ଗର୍ଭରେ ଆଣିଣ ରଖିଲା
ସେତେବେଳେ ତାର ସତୀ ଗର୍ଭବତୀ ଥିଲା ।
ତାହାର ଗର୍ଭୁ ଦୁହିତା ନେଲା ତତକ୍ଷଣ
ତାରାକୁ ବର ଦେଲା ବନ୍ଦାଳ କରିଣ ।
ତୋରଗର୍ଭେ ପୁତ୍ର ବଳବାନ ହେବ ପରା
ସ୍ଥଳରେ ତିନିଭାଗ ଜଳରେ ହେବ ପୁରା ।
ସାଗରେ ବୁଡ଼ି ଚାଳିଶ ଯୁଣେ ଛିଡ଼ା ହେବ
ଏତେ କହି ପୁରେ ଗଲେ ସାବିତ୍ରୀଙ୍କ ଧବ ।
ବଳିରାଜା ତାରାରାଣୀ ହୋଇବେ ଉଷତ
ଦଶମାସ ବନ୍ଦଳେ ପୁତ୍ର ହେଲା ଜାତ ।
ଦେଖିକରି ବାଳିରାଜା ଉଷତ ହୋଇଲା
ଅଙ୍ଗଦ ବୋଲିଣ ପୁତ୍ରର ନାମ ଦେଲା ।
ଉସବ କରାଇଲା ଅଙ୍ଗଦ ନାମ ଦେଇ
ଶୁଣିଣ ରାମରାଣ ସୁଗ୍ରୀବକୁ କହି ।
ବ୍ରହ୍ମା ଯାଇଥିଲେ କି ବାଳିର କତିକି
ସୁଗ୍ରୀବ ବୋଇଲା ଧାତା ଯିବାର ଠିକି ।
ଗୁପତ କଥାମାନ ନ ଜାଣଇଁ ମୁହିଁ
ତରଙ୍ଗ ମନ୍ତ୍ରୀକି ବୋଇଲେ ରଘୁସାଇଁ ।
ସାଗରେ ବୁଡ଼ି ଅଙ୍ଗଦ ଲଙ୍କାକୁ ଯାନ୍ତା ସିନା
ତରଙ୍ଗ ମନ୍ତ୍ରୀ ବୋଇଲେ ଚାଳିଶି ଯୁଣ ସୀମା ।
ଶୁଣିକରି ଶ୍ରୀରାମ ଅଙ୍ଗଦକୁ ଚାହିଁ
ବୋଇଲେ ସାଗର ଜଳରେ ବୁଡ଼ ଯାଇ ।
ସେତୁବନ୍ଧ ଆରପାଖେ ହୋଇବୁ ବାହାର
ନିଦା ପାଇଲେ ବାବୁରେ ଫେରିଆସ ଖର ।
ଶୁଣିଣ ଅଙ୍ଗଦ ଯେ ବେଗେ ଚଳିଗଲା
ସମୁଦ୍ର ଜଳରେ ଯାଇଣ ବୁଡ଼ିଲା ।
ଲକ୍ଷ୍ମଣଙ୍କୁ ଶ୍ରୀରାମ ବୋଇଲେ ଯାଅ ବେଗ
ସାଗର ଆରକୂଳେ ଦେଖିବୁ ଅଙ୍ଗଦ ।
ଅଙ୍ଗଦକୁ ଦେଖିଣ ଲେଉଟି ଅଇଲେ
ଶ୍ରୀରାମ ଆଗେ ଆସି ଅଙ୍ଗଦ କହିଲେ ।
ଜଳରେ ପର୍ବତ ବୁଡ଼ିନାହିଁ ଦେବ
ଏକ ନିଶ୍ୱାସକେ ଗଲି ଆରଭାଗ ।
ଶୁଣିଣ ଶ୍ରୀରାମ ହରଷ ହୋଇଲେ
ଆଗରୁ ଦଇବ ଭ୍ୟାଇଛି ଭାବିଲେ ।
ପାର୍ବତୀ ବୋଇଲେ ସେଠାରୁ କିସ କରି
ଈଶ୍ୱର ବୋଇଲେ ଶୁଣ ଗୋ ଗଉରୀ ।
ଭାସିବାର ଗିରି ପରଖ ଦେଲେ ଶ୍ରୀରାମ
ହରଷ ହୋଇଲେ ସକଳ ସୈନ୍ୟଗଣ ।
ଶ୍ରୀରାମ ବୋଇଲେ ମିତ ବିପରୀତ କର୍ମ
ନିରେଖ ପ୍ରାଣୀକି ଯେ ସାହା ହୁଏ ଧର୍ମ ।
ଏହି ସମୁଦ୍ରେ ଅଛି ମଣିନାଗ ଗିରି
ଶତେ ଯୋଜନ ସେ ରହିଛି ଆବୋରି ।
ଦୈର୍ଘ୍ୟରେ ଶତେଯୁଣ ଉତ୍ସର୍ଗରେ ବଢ଼ି
ତେଣୁ ଗିରିଗୋଟା ଜଳରେ ଅଛି ବୁଡ଼ି ।
ଜଳରୁ ଉବୁରି ସେ ପାଞ୍ଚଯୁଣ ଦିଶଇ
ଏସନକ ଗିରି ସେ କଳିଟି ନୁହଇ ।
ପଥର ଭାସଇ ଦେଖ ନ ବୁଡ଼ଇ ଜଳେ
ଏହି ବନ୍ଧପରେ ପାରି ଋକ୍ଷକପି ବଳେ ।
ଏତେ କହି ଶ୍ରୀରାମ ହୋଇଲେ ଯେ ତୁନି
ସନ୍ଧ୍ୟା ସମୟରେ ଉଠିଲେ ରାମ ପୁଣି ।
ରବିଅସ୍ତ ହୋଇଲା ଆଚ୍ଛାଦିଲା ନିଶି
ସନ୍ଧ୍ୟା ସୁମରିବାକୁ ଚଳିଲେ ରଘୁବଂଶି ।
ସମୁଦ୍ର କୂଳରେ ପରବେଶ ହେଲେ
ସନ୍ଧ୍ୟା ତର୍ପଣ ତୀର୍ଥ ଜଳରେ ସାରିଲେ ।
ଲେଉଟି ନବରେ ହେଲେ ପରବେଶ
ରଜନୀ ହେଲା ଚନ୍ଦ୍ର ଉଦୟେ ଆକାଶ ।
ରାମ ଆଜ୍ଞା ଦେଲେ ହନୁମନ୍ତକୁ ଚାହିଁ
ସୁବଳୟା ଗିରିରେ ଥା ଆଜି ଯାଇ ।
ସଙ୍ଗରେ ଥାଆନ୍ତୁ ତୋର ଅଷ୍ଟ ସେନାପତି
ଅଙ୍ଗଦ କୁମର ଯାଉ ତୋର ସାଥି ।
ଥୋକାଏ ଦୂର ସଙ୍ଗତରେ ଘେନିଯାଅ
ଆଜକ ଦୃଢ଼େ ବନ୍ଧକୁ ରକ୍ଷା କରିଥାଅ ।
ଅସୁର କାମରୂପୀ କରନ୍ତି ପୁଣ ଦ୍ୱନ୍ଦ
ଅନେକ ମାୟା ସେ ଜାଣେ ଦଶକନ୍ଧ ।
ବଜ୍ରଶର ମାରି ବନ୍ଧକୁ କରିବ ନାଶ
ସୁବଳୟାରେ ରହ ଯା ପବନର ଶିଷ୍ୟ ।
ଶୁଣିକରି ଅଙ୍ଗଦ ହନୁମନ୍ତକୁ କହି
ଋକ୍ଷକପି ବଳ ସେ ସଙ୍ଗତରେ ନେଇ ।

ସୁବଳୟା ଗିରିରେ ଠଣା କଲେ ନାଥ
ଏଥୁ ଅନନ୍ତରେ କହିଲେ ରଘୁସାଇଁ ।
ପଚିଶ ଯୂଥପତି ବେଗ ହୋଇଯାଅ
ବନ୍ଧର ମଧ୍ୟରେ ଜଗିକରି ରୁହ ।
ଶୁଣିଣ ଯୂଥପତି ବେଗେ ଚଳିଗଲେ
ସୈନ୍ୟବଳ ଘେନି କରି ମଧ୍ୟରେ ରହିଲେ ।
ମଲ୍ଲ ମହାମଲ୍ଲଙ୍କୁ ଚାହିଁଣ ରଘୁନାଥ
ବୋଇଲେ ବନ୍ଧଜଗ ଯାଇଣ ତ୍ୱରିତ ।
ବନ୍ଧରେ ନିଘଞ୍ଚ କରି ସୈନ୍ୟବଳ ରଖ
ପରଦାରମାନେ ଚଳିଲେ ମନସୁଖ ।
ଶତେଯୁଣ ସେତୁବନ୍ଧ ବାନର ହେଲେ ଛାଇ
ନିଘଞ୍ଚନ ହୋଇଣ ସେଥିରେ କପି ରହି ।
ରକ୍ଷ କପିମାନଙ୍କୁ ଚାହିଁଣ ଦାଶରଥି
ସୁଗ୍ରୀବର ବିଭୀଷଣ ସଙ୍ଗରେ ରହିଛନ୍ତି ।
ସମସ୍ତଙ୍କୁ ଆଜ୍ଞା ଦେଇଣ ରଘୁନାଥ
ଲକ୍ଷ୍ମଣଙ୍କୁ ବୋଇଲେ ନ ଛାଡ଼ ଧନୁହସ୍ତ ।
ଏମନ୍ତ ବୋଲି ରାମ ଯାଇଣ ଭୁଞ୍ଜିଲେ
କଷାଫଳ ଭୁଞ୍ଜିଲେ ସମସ୍ତେ ଖାଇଲେ ।
ଶ୍ରୀରାମ ପହୁଡ଼ିଲେ ସମସ୍ତେ ଚେତା ଜାଣ
ଧନୁଶର ଧରିଣ ଜଗିଲେ ଲକ୍ଷ୍ମଣ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ସୁବଳୟା ପର୍ବତରେ ଚହଳ ଯେ ପୂରି ।
କୁରୁମ ଉଚ୍ଛୁଳିଲା ଶୁଭିଲା ଲଙ୍କାପୁର
ଅସୁର ଅସୁରୁଣୀ କରନ୍ତି ବିଚାର ।
କେ ବୋଲେ ଏ କଥା ଶୁଣା ଗୋ ନ ଥିଲା
କେ ବୋଲଇ ଅସମ୍ଭବ ଏବେ ତ ହୋଇଲା ।
କେ ବୋଲଇ ସମୁଦ୍ରରେ ଗର୍ଜିନା ବାନର
କଉଣସି ଯୁଗରେ ଶୁଣା ନାହିଁ ମୋର ।
କେ ବୋଲଇ ବନର ଜୀବ ବଳବନ୍ତ
ସିନ୍ଧୁ ପୋତିଲେ ପକାଇ ପର୍ବତ ।
ଏଥୁ ଅନନ୍ତରେ ଶୁଣ ଗୋସାମଣି
ଜାନକୀ ପାଶରୁ ଆସିଥିଲେ ଅସୁରୁଣୀ ।
ବାରତା ଜାଣିକରି ବେଗେ ଲେଉଟିଲେ
ଜାନକୀ ପାଶରେ ପ୍ରବେଶ ହୋଇଲେ ।
ତ୍ରିଜଟା ବୋଇଲ କି ଗୋ ରାଜାରପୁରେ ଥିଲେ
କି କି ଖବର ଗୋ ସେଠାରୁ ପାଇଲେ ।
ଦଇତୁଣୀ ବୋଇଲା ସେତୁବନ୍ଧ ବାନ୍ଧି
ବନ୍ଧ ନିର୍ଭା କଲେ ରାମ ଲକ୍ଷ୍ମଣଙ୍କ ବୁଦ୍ଧି ।
ସୁବଳୟା ଗିରିରେ ରହିଲେ ସୈନ୍ୟବଳ
କାଲି ରାମ ଲକ୍ଷ୍ମଣ କରିବେ ଅନୁକୂଳ ।
ସେଥିର ନିମନ୍ତେ ଲଙ୍କାରେ ଚହଳ
ଘୋଷଣା ଦିଆ ଏ ବିଶ୍ରବାର ବାଳ ।

ଶୁଣି କରି ତ୍ରିଜଟା ହରଷ ହୋଇଲା
ରାମନାମ ପଦକୁ ହୃଦରେ ସ୍ମରିଲା ।
ଏଥୁ ଅନନ୍ତରେ କହନ୍ତି ସଦାଶିବ
ରଜନୀ ଶେଷ ହେବାରୁ କାକ ଦେଲା ରାବ ।
ଶୟନ ତେଜ୍ୟା କରି ଶ୍ରୀରାମ ଉଠିଲେ
ସୁଗ୍ରୀ ବିଭୀଷଣ ଦର୍ଶନ ଆସି କଲେ ।
ନିଶି ଶେଷ ହୁଅନ୍ତେ ଅରୁଣ ପ୍ରକାଶ
ସପତ ଦ୍ୱୀପରେ ଲାଗିଲା ସୂର୍ଯ୍ୟାଭ୍ରାମ ।
ମଳୟ ପବନ ବହେ ଧୀର ଧୀର
ଶ୍ରୀମୁଖ ପଖାଳି ବସିଲେ ରଘୁବୀର ।
ସମୁଦ୍ର କୂଳକୁ ଉଠି ବେଗେ ଗଲେ
ସ୍ନାନଦାନ ସାରିଣ ନିତ୍ୟକର୍ମ କଲେ ।
ସେଠାରୁ ରାମଇଶ ଅଇଲେ ବହନ
ସୁଗ୍ରୀବକୁ ଚାହିଁଣ ବୋଲନ୍ତି ବଚନ ।
ଭୋ ମିତ୍ର ତୁମ୍ଭେ ହେ ଥାଟ ସଜ କର
ଲଗ୍ନବେଳ ହେଲା କି ଜମ୍ବେଙ୍କୁ ପଚାର ।
ଏମନକ ସମୟରେ ରକ୍ଷକପି ଯାନ୍ତି
ଶ୍ରୀରାମଙ୍କ ଛାମୁରେ ଦର୍ଶନ କରନ୍ତି ।
ହନୁମନ୍ତ ଅଙ୍ଗଦ ଗନ୍ଧମାଦନ
ନଳନୀଳ ସହିତେ ତାରାକ୍ଷ ସୁଷେଣ ।
ଠଣା ଜଗିଣ ସେ ସୁବଳୟାରେ ଥିଲେ
ରଜନୀ ପାହିବାରୁ ବାହୁଡ଼ି ଅଇଲେ ।
ରଘୁନାଥଙ୍କ ଚରଣେ ଦର୍ଶନ ସେ କଲେ
ରଜନୀରେ ବନ୍ଧ ଜଗିଥିଲୁଁ ଜଣାଇଲେ ।
ଲଙ୍କାରେ ମୁଖରାବ ଶୁଭଇ ଚହଳ
ଚାଲ ଯିବା ପ୍ରଭୁ ହେ କର ଅନୁକୂଳ ।
ଶୁଣି କରି ଜମ୍ବେବ ଶ୍ରୀରାମ ମୁଖ ଚାହିଁ
ବୋଇଲେ ଭୋ ଦେବ ଅନୁକୂଳ ବେଳ ହୋଇ ।
ଶୁକ୍ରଙ୍କର ବେଳ ଯେ ହେଲା ଦେବ ଆସି
ଆଜ୍ଞା ଦେଲେ ଆଗୁଆଣି ସୈନ୍ୟ ଚାଲିବେଟି ।
ଶୁଣିକରି ଶ୍ରୀରାମ ହୋଇଲେ ହରଷ
ଶ୍ରୀ ଜଗନ୍ନାଥ ଶରଣେ ମୁଁ **ବଳରାମ ଦାସ** ।
ରାମାୟଣ ଗ୍ରନ୍ଥ ଯେ କରିବି ମୋର ଆଶ
ବନ୍ଧନିର୍ଭା ହେବାରୁ ଦେଖିଣ ରାମତୋଷ ।
ଅଙ୍ଗଦ ହନୁକୁ ହକାରିଲେ ପାଶ
ବୋଇଲେ ସୁଗ୍ରୀବକୁ ବେଗେ ଚଳିଆସ ।
ଆବର କଥାଏ ଯେ କହଇ ତୁମ୍ଭରେ
ବାଲି ନେଇ ପକାଅ ବନ୍ଧର ଉପରେ ।
ଖାଲ ଡିଙ୍ଗର ଯେ କଣା ଉଚ୍ଚନୀଚ
ଚାଲନ୍ତେଣ କଷ୍ଟ ପାଇବେ ଯେ ଥାଟ ।
ବାଟ ତ ସଂକୀର୍ଣ୍ଣ ତଳେ ମହାଜଳ
ଯିବା ଆସିବାରେ କଷ୍ଟ ପାଇବେ ସୈନ୍ୟବଳ ।

ବାଲି ପକାଇଣ ବନ୍ଧ କର ସମତୁଲ
ଲତାପତ୍ର ଲୁଚିଲେ ଆମ୍ଭର ହେବ ଭଲ ।
ଶୁଣିଣ ସୁଗ୍ରୀବର ହନୁମନ୍ତକୁ କହି
ବନ୍ଧ ଉପରେ ବାଲି ପକାଅ ବେଗେ ନେଇ ।
ଅଙ୍ଗଦ ସୁଷେଣ ଯେ ଜମ୍ବେବ ନଳନୀଳ
ଆଗୁଆଣି ଥାଟରେ ସେନାପତି ମେଳ ।
ଋକ୍ଷ କପିବଳ ଆଣନ୍ତୁ ବାଲି ବୋହି
ବନ୍ଧର ଉପରେ ପକାନ୍ତୁ ସେ ନେଇ ।
ବାଟରେ ଲେଉଟ ଯାଉଟ ସୈନ୍ୟ ହେବେ
ବାଙ୍କଟଙ୍କର ସଳଖ ସବୁ ଯେ କରିବେ ।
ଶୁଣିଣ ଅଙ୍ଗଦ ହନୁମନ୍ତ ଗଲେ
ଅକ୍ଷସେନା ସଙ୍ଗରେ ସୈନ୍ୟବଳ ନେଲେ ।
ବନ୍ଧର ଉପରେ ପକାଅ ମୁକୁତା
ସବୁଙ୍କର ମନରେ ହରଷ ନାହିଁ ଚିନ୍ତା ।
ଏହି ସମୟରେ ଏକଇ ଇନ୍ଦୁର
ରାମଙ୍କ ଉପକାରେ ପଶେ ମହାନୀର ।
କୂଳର ବାଲିରେ ଯାଇଣ ସେ ଗଡ଼ି
ବନ୍ଧର ଉପରେ ବାଲି ନେଇ ଝାଡ଼ି ।
ଏହି ମତେ ଇନ୍ଦୁର କରଇ ଗୋସାଇଁ
ଶ୍ରୀରାମଙ୍କ ପାଶରେ ହନୁମନ୍ତ କହି ।
ହନୁମନ୍ତ କହିବାରୁ ଶ୍ରୀରାମ ହରଷ
ଆଜ୍ଞା ଦେଲେ ଶ୍ରୀରାମ ମୋ ପାଶକୁ ଘେନି ଆସ ।
ଶୁଣିଣ ମାରୁତି ଗଲା ଖର କରି
ମୂଷିକକୁ ଧରିଣ ଆଣିଲା ବେଗ କରି ।
ଶ୍ରୀରାମଙ୍କୁ ଦେଖିଣ ଓଳଗେ ଇନ୍ଦୁର
ଆସ ଆସ ବୋଲିଣ ଡାକନ୍ତି ରଘୁବୀର ।
ଜଙ୍ଘରେ ବସାଇଣ ଦେହ ଆଉ ସନ୍ତି
ଅନେକ ପ୍ରିୟ କରି ବଚନ କହନ୍ତି ।
ବୋଇଲେ ଧନ୍ୟ ତୁରେ ଅଟୁ ମହାତମା
ପରଉପକାରୀ ତୁ ସଜ୍ଜନ ସିନା ।
ପଶୁଜନ୍ମ ହୋଇ ତୋର ଏଡ଼େ ବୁଦ୍ଧିବଳ
ଜାଣିଲି ତୋହର ହୃଦ ଅଟେ ସିନ୍ଧୁଜଳ ।
ଯାଅ ତୋତେ ପ୍ରାପତ ହେଉ ଦେବଆଳ
ଏମନ୍ତ ଆଜ୍ଞା ଦେଲେ ଦଶରଥବାଳ ।
ଅଜ୍ଞାନେ ଯେଉଁ ପ୍ରାଣୀ ତୋତେ ଯେ ମାରିବ
ଜାଣିଥାଅ ନିଶ୍ଚୟ ସେ ମୋ ଦୋରେହା ହେବ ।
ଏତେ ବୋଲି ଉଠିଲେ ରଘୁକୁଳ ବାଳ
ଜାନକୀଙ୍କୁ ଦେଖିବାକୁ କଲେ ଅନୁକୂଳ ।
ସର୍ବାଙ୍ଗରେ ଚନ୍ଦନ କସ୍ତୁରୀ କପାଳେ
ଅମଳାଣ ବସନ ଉପରାଣ କଲେ ।
ବାମେ ଯମଦାଢ଼ ଯେ ଡାହାଣ କନ୍ଧେ ତ୍ରୋଣ
ଶିରରେ ଜଟା ଶୋଭେ କୁସୁମ ଗଭା ଜାଣ ।
ବାମକରେ ଧନୁ ଶୋଭେ ଦକ୍ଷିଣେ ଖଡ୍‌ଗ
ଯିବାକୁ ରଘୁନାଥ ସଜ ହେଲେ ବେଗ ।
ସଜବାଜ ହୋଇଣ ଲକ୍ଷ୍ମଣ ବେଗେ ଆସି
ସୁଗ୍ରୀବଙ୍କୁ ଚାହିଁଣ ରାମଚନ୍ଦ୍ର ଭାଷି ।
ହେ ମଇତ୍ର ବନ୍ଧରେ ପଡ଼ିଲାକି ବାଲି
ବାଲି ପଡ଼ିଲା ବୋଲି ସୁଗ୍ରୀବର ବୋଲି ।
ଲତାବନ ସକଳ ଉତ୍ତୋଳନ କଲି
ଖୁଣ୍ଟା ଖାଲ ଟିକରୀ ସମତୁଲ କଲି ।
ସେ ବାଟରେ ଅନ୍ଧ ଗଲେ ତାହାକୁ ଭୟ ନାହିଁ
ଶୁଣି କରି ମନେ ମନେ ହସିଲେ ରଘୁସାଇଁ ।
ରାମତୀର୍ଥ ବୋଲିଣ ସେ ସ୍ଥାନ ନାମ ଦେଲେ
ଲେଉଟାଣୀ ତୀର୍ଥକାର୍ଯ୍ୟ କରିବି ବୋଇଲେ ।
ନଳକୁ ବୋଇଲେ ତୁ ହୁଅ ଆଗୁଆଣୀ
ସଙ୍ଗରେ ସୈନ୍ୟବଳ ନିଅ ସାଗରେ ପୁଣି ।
ସଙ୍ଗରେ ସେନାପତି ଗନ୍ଧମାରଦନ
ପଛୁଆଣି ଦଣ୍ଡରେ ରହନ୍ତୁ ଏ ପୁଣ ।
ବୋଇଲେ ଋକ୍ଷକପି ଯାଆନ୍ତୁ ଆଗ ସରି
ଏକକୁ ଆରେକ ନୋହିବେ ମରାମରି ।
ଆଗର ଲୋକଙ୍କୁ ଯେ ବାଟ ଛାଡ଼ିଦେବ
ପଛରେ ଯିବାଲୋକ ମାଡ଼ି ନ ପଡ଼ିବ ।
ଏତେ କହି ହନୁମନ୍ତ କନ୍ଧରେ ବିଜେ କଲେ
ଗରୁଡ଼ ପୃଷ୍ଠେ ଯେହ୍ନେ ଶ୍ରୀହରି ବସିଲେ ।
ଲକ୍ଷ୍ମଣଙ୍କୁ ଅଙ୍ଗଦ କନ୍ଧରେ ବସାଇଲେ
ଯେସନେ ସଦାଶିବ ବୃଷଭ ବିଜେ କଲେ ।
ପାଞ୍ଚକୋଟି ପଟୁଆର ମଧ୍ୟରେ ଲୋକ ନାହିଁ
ବାମପାଶେ ଅଛଇ କିଷ୍କିନ୍ଧ୍ୟାର ସାଇଁ ।
ଡାହାଣେ ବୀରନେତ ଉଡ୍ରେ ଅନର୍ଗଳ
ବାମେ ବିଭୀଷଣ ଗନ୍ଧମାର୍ଦ୍ଧନ ଶତବଳ ।
ଜମ୍ବେବ ସୁଷେଣ ତାରାକ୍ଷ ସୁଶୋଭନ
ଗବୟେ ଗବାକ୍ଷ ଯେ ତାରାକ୍ଷ ନନ୍ଦନ ।
ଡାଳିମ୍ବ ମରୁତ ସାରାସ ପାରାସ
ଦୃବିନ୍ଦ ଦଧିମୁଖ କଞ୍ଚଣ ସୁଦାସ ।
ବଳିମୁଖ କାଳିମୁଖ କାଳିଞ୍ଜନ ବୀର
ଶଉରୀ ସେନାପତି ସଙ୍ଗରେ ତାଙ୍କର ।
ବାନର ଟମକ ନିଶାଣ ଶଙ୍ଖଧ୍ୱନି
ସ୍ୱର୍ଗରେ ଥାଇ ଦେବେ ଦେଖୁଛନ୍ତି ପୁଣି ।
ଅପସରୀ କିନ୍ନରୀ ହୁଳହୁଳି ଦ୍ୟନ୍ତି
ଶ୍ରୀରାମ ଲଙ୍କାଗଡ଼ ଯିବାର ଦେଖନ୍ତି ।
ଦକ୍ଷିଣ ମୂରତି ଯେ ଜାନକୀର ସାଇଁ
ଆନନ୍ଦେ ସୁରଗଣ ମହାସୁଖ ପାଇ ।
ଜୟ ଜୟ ଶବଦ ଶୁଭେ ସ୍ୱର୍ଗପୁର
ସେତୁବନ୍ଧ ଉପରେ ବିଜୟ ରଘୁବୀର ।

ଲଙ୍କାକୁ କଟକାଇ କଲେ ଦାଶରଥି
ତନପୁର ଲୋକ ଦେଖିଣ ଭୟେ ପାନ୍ଥ ।
ପାତାଳରେ ବାସୁକୀ ହରଷ ହେଲା ପୁଣ
ମୁଖରାବ ଶବଦ ସିନ୍ଧୁ ଘୋଷ ଜାଣ ।
ତିନିଘଡ଼ି ବେଳେ କୂଳକୁ ଚଳିଗଲେ
ବେଳ ଅସ୍ତ ହୁଅନ୍ତେ ବନ୍ଧ ଅଧାରେ ରହିଲେ ।
ନିତ୍ୟକର୍ମ ସାରିଣ ମୃଗ ଛାଲେ ବସି
ଗୁଣ୍ଡିଚା ବିଜେ ପରାଏ ଦିଶନ୍ତି ରଘୁବଂଶୀ ।
ଫଳମୂଳ ଭୁଞ୍ଜିଣ ଶୟନ ସେଥି କଲେ
ରଜନୀ ଶେଷ ହେବାରୁ ଶ୍ରୀରାମ ଉଠିଲେ ।
ସମୁଦ୍ର କୂଳରେ ମଣି ବୁଡ଼ାଇଲେ ନେଇ
ମଧୁର ହେଲା ଜଳ ସ୍ନାନ କଲେ ଯାଇ ।
ନିତ୍ୟକର୍ମ ସାରିଣ ଅମଳାଣ ପିନ୍ଧି
ଚନ୍ଦନ ପୁଷ୍ପ ଲଗାଇ ବେଶ ହେଲେ ବେଗି ।
ମାରୁତିର କନ୍ଧରେ ଯାଇଣ ବିଜେ କଲେ
ଲକ୍ଷ୍ମଣ ଅଙ୍ଗଦ କନ୍ଧରେ ବସିଲେ ।
ଧୀରେ ଧୀରେ ହୋଇଣ କରନ୍ତି ଗମନ
ସୁବଳୟା ପର୍ବତେ ମିଳିଲେ ରାମରାଣ ।
ଦେବନଦୀ ଝର ଝର ବହଇ ଚଉପାଶ
ଦେଖିଣ ଶ୍ରୀରାମ ଯେ ହୋଇଲେ ହରଷ ।
ଶୁକଳବର୍ଣ୍ଣ ଯେ ଦିଶଇ ଗିରିବର
ବାରଯୁଣ ଉଚ୍ଚର୍ଗ ବାରଯୁଣ ଓସାର ।
ଚତୁର୍ଦ୍ଦିଗ ମଣ୍ଡିଣ ବସିଅଛି ଗିରି
ପୂର୍ବରୁ ବିଧାତା ତାକୁ ଅଛି ଯତ୍ନ କରି ।
ପର୍ବତ ସେ ଗିରିରେ ରମନ୍ତି ଗନ୍ଧର୍ବ
ସେ ଗିରି ଗୋଟା ଅଟେ ସ୍ଫଟିକର ଭାବ ।
ସେ ଗିରିକି ଦେଖି ରାମ ହନୁକୁ ପଚାରି
ଏ ଗିରିର ନାମ କିସ କହରେ ବିଚାରି ।
ମାରୁତି ବୋଇଲା ଏ ସୁବଳ ପର୍ବତ
ଗଛମାନ ସମସ୍ତେ ଦିଶୁଛନ୍ତି ଶ୍ୱେତ ।
ଏ ପର୍ବତେ ଗଡ଼ କରି ରହିବା ଗୋସାଇଁ
ଆଗହୁଁ ଦେଖିକରି ଯାଇଅଛି ମୁହିଁ ।
ଏ ପର୍ବତରୁ ଜୀବମାନଙ୍କୁ କଢ଼ାଇ
ନିରୋଳା କରି ପର୍ବତ ଗଲ ରଘୁସାଇଁ ।
**ବଳରାମ ଦାସ** ବୋଲେ ରାମ ବିଜେ କଲେ
ସେ ଚରଣ ତଳେ ମୁଁ ଶରଣ ପଶେ ଭଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସୁବଳୟା ଗିରିରେ ବିଜୟ ରଘୁପତି ।
ସମସ୍ତେ ସେଠାରେ ପହଞ୍ଚିଲେ ଯାଇ
ଆଗୁଆଣି ଥାଟ ଯେ ଦକ୍ଷିଣ ପାଶେ ରହି ।
ବୀରତୁର ବଜାଇ ସିଂହରଡ଼ି ଦେଲେ
ଶୁଭ ଯୋଗରେ ଶ୍ରୀରାମ ପର୍ବତେ ମିଳିଲେ ।

ଏସନକ ସମୟରେ ପ୍ରଭୁ ରଘୁନାଥ
କୋଦଣ୍ଡେ ଗୁଣ ଚଢ଼ାଇ ଧରି ବାମ ହସ୍ତ ।
ଅଗ୍ନିଶର ଗୋଟିଏ ଗୁଣରେ ବସାଇଲେ
ଆଜି ଅନୁକୂଳ ଶର କରିବା ବୋଇଲେ ।
ମନ୍ତ୍ର ପଢ଼ି ଶ୍ରୀରାମ ଶରକୁ ତିଆରିଣ
ବୋଇଲେ ଚଳ ବେଗେ ରାବଣ ଭୁବନ ।
ଯେଉଁଠାରେ ଦଶଗ୍ରୀବ ବସିଥିବ ଜାଣି
ସେ ସ୍ଥାନ ଖମ୍ବରେ ଭେଦିବୁ ତତକ୍ଷଣି ।
ସିଂହରଡ଼ି ଦେଇଣ ମୋହ କରାଇବୁ
ଧରଣୀରେ ରାବଣକୁ ନିଶ୍ଚୟ ଲୋଟାଇବୁ ।
ଏହା ଶୁଣି ଶର ଯେ ବେଗେ ଚଳିଗଲା
ରାବଣ ଜଗତି ଖମ୍ବେ ଯାଇଣ ବସିଲା ।
ବିକ୍ରମ ସିଂହରଡ଼ି କଲାକ ଗର୍ଜନ
ଜଗତି ପରୁ ଟଳି ପଡ଼ିଲା ଦଶାନନ ।
ମୂର୍ଚ୍ଛାଗତ ଗଲା ସେ ଅଚେତନ ହୋଇଲା
ଦେଖିଣ ଆଶ୍ଚର୍ଯ୍ୟ ସର୍ବେ ହେଲେ ଭଲା ।
ଘଡ଼ିକେ ଚେତନା ପାଇଲା ଦଶକନ୍ଧ
ବୃହସ୍ପତିଙ୍କି ବୋଇଲା କିସ ହେଲା ଦ୍ୱନ୍ଦ ।
ବୃହସ୍ପତି ବୋଇଲେ ଅଇଲେ ରାମ ରାଣ
ସୁବଳୟା ଗିରିରେ ପ୍ରବେଶ ହେଲେ ଜାଣ ।
ଅନୁକୂଳ ନିମନ୍ତେ ବିନ୍ଧିଲେ ଏକ ଶର
ଅଚେତା କରାଇଲେ ତୋତେ ରଘୁବୀର ।
ଶୁଣିଣ ଦଶାନନ ମନେ ଭୟ କଲା
ନିଶ୍ଚୟ ମରଣ ମୋହର ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ଶରବିନ୍ଧି କୋଦଣ୍ଡ ଥୋଇଲେ ଚାପଧାରୀ ।
ଶୁଭରେ ଶ୍ରୀରାମ ଲକ୍ଷ୍ମଣ ଯୁଥପତି
ଦେବନଦୀ କୂଳରେ ପ୍ରବେଶ ହୁଅନ୍ତି ।
ହନୁମନ୍ତର କନ୍ଧରୁ ଉତୁରି ତତକ୍ଷଣ
ନଦୀରେ ସ୍ନାହାନ ସାରି କଲେକ ତର୍ପଣ ।
ଅଙ୍ଗଦର କନ୍ଧରୁ ଉତୁରି ଲକ୍ଷ୍ମଣ
ଶ୍ରୀରାମ ପାଦରେ କଲେ ଦରଶନ ।
ଲକ୍ଷଣ ସନ୍ଧ୍ୟା ସାରି ଦର୍ପଣ ଯେ କଲେ
ଶତେଯୁଣ ସିନ୍ଧୁ ଦୁଇଦିନରେ ତରିଲେ ।
ସକଳ ଶରୀରରେ ଉପରେ ବିଜେ ଯାଇ
ଗହଳ ରକ୍ଷକପି ସକଳସ୍ଥାନେ ରହି ।
ପଛରେ ସଇନୀ ଅଇଲେ ଅପାରଟି
ଗିରିପଦା କୂଳ ହୋଇଲେ ନିଘଞ୍ଚିଟି ।
ଆଗୁଆଣି ଦଣ୍ଡରେ ଭଲ ଭଲ ଗଳେ
ପର୍ବତ ଉପରେ ଉଠିଣ ରଡ଼ି ଦେଲେ ।
ନଦୀର କୂଳୁ ଶ୍ରୀରାମ ପୟରେ ଚାଲିଗଲେ
ସୁଗ୍ରୀବର ବିଭୀଷଣ ପରେ କର ଦେଲେ ।

ଗିରିବର ଉଠିଲେ ଦେବ ଯାଇ
ପର୍ବତକୁ ଦେଖନ୍ତି ସୁଖ ପାଇ ।
ବାରଯୁଣ ଓସାର ବାରଯୁଣ ଲମ୍ବ
ଗିରି ଉପରେ ଚଢ଼ିଲେ ଲାଗେ ଯେହ୍ନେ ସ୍ୱର୍ଗ ।
ଶ୍ରୀରାମ ବୋଇଲେ ଏହି ଯେ ଭଲ ଘାଟ
ସେ କୂଳ ଗଢ଼ିଣ ରହନ୍ତୁ ଆମ୍ଭ ଥାଟ ।
ଏହି ପରବତ ଯେ ଆମ୍ଭର କଟକ
ଏଥିରେ ରହି ଆମ୍ଭେ ଧ୍ୱଂସିବା ଲଙ୍କାରାଷ୍ଟ୍ର ।
ସୁଗ୍ରୀକି ଚାହିଁ ରାମ କହନ୍ତି ହେ ମିତ
କେତେ ଅଇଲେ ସୈନ୍ୟ ଆମ୍ଭର ସହିତ ।
ଯୂଥପତିମାନଙ୍କୁ ଆଜ୍ଞା ଦିଅ ଯାଇ
ଏକ ଆରେକ କଳି ନ କରିବେ କେହି ।
ଶତ୍ରୁର ନିକଟରେ କଲେ ଆମ୍ଭେ ବସା
କେହି କାହାକୁ ଯେ ନ କରିବେ ହିଂସା ।
ଦୁଷ୍ଟପଣ କଲେ କଳିବ ବଇରୀ
ମୋହର ବୋଲ କରି ଆସ ହେ ତିଆରି ।
ସୀତଯା ଆଣିବାର ଅଟଇ ମୋର ଶୂଳ
ଅନୁବ୍ରତେ ସେକଥା ଚିନ୍ତୁଥାନ୍ତୁ ବଳ ।
ଆବର କଥାଏ ଶୁଣ କପିରାୟେ
ଯେତେକ ଥାଟ ମୋର ସଙ୍ଗେ ପାରିହୁଏ ।
ଏମାନଙ୍କୁ ଘେନିଣ ଶତବାଳି ଯାଉ
ଆମ୍ଭଙ୍କୁ ଛାଡ଼ିଣ ସେ କୋଶକେ ଠଣା ବାହୁ ।
ପଛସୈନ୍ୟ ଆମ୍ଭର ଅଙ୍ଗଦ ଘେନି ଆସୁ
ଯେ ଯାହାର ଅଙ୍ଗବଳ ତାହାର ସଙ୍ଗେ ମିଶୁ ।
ଶୁଣିଣ ସୁଗ୍ରୀବର ଯୋଡ଼ି ବେନି କର
ଶୁଣ ଦେବ ରଘୁନାଥ ତ୍ରୈଲୋକ୍ୟ ଈଶ୍ୱର ।
କାହାର ସାଗରେ କାର ବେନି ଯେ ସାଗର
କାର ଅଗଣିତା ପଞ୍ଚସାଗର କାହାର ।
କାହାର କୋଟିଏ ଲକ୍ଷେ ଅଟଇ ଯେ ସେନା
ଈଶ୍ୱର ପ୍ରସନ୍ନ ହେଲେ ଯୁଦ୍ଧେ ଜିଣିବା ସିନା ।
ସମୁଦ୍ରର ସମାନରେ ଅଟେ ତୋର ବଳ
ଶୁଣିଣ ହରଷ ହେଲେ ରଘୁକୁଳ ବାଳ ।
ବିଭୀଷଣକୁ ଚାହିଁଣ ଶ୍ରୀରାମ କହିଲେ
ଦୈତ୍ୟାଙ୍କର ମାୟା ହେଲେ ଲାଗଇ ବୋଇଲେ ।
ଶିରରେ କର ଦେଇ ବୋଲଇ ବିଭୀଷଣ
ସେ କଥାରେ ଚିନ୍ତା ତୁମ୍ଭେ ନ କର ରାମରାଣ ।
ଶୁଣିଣ ଶ୍ରୀରାମ ଯେ ହନୁମନ୍ତକୁ ଚାହିଁ
ସୁବଳୟା ଗିରିକୁ ରକ୍ଷା କରରେ ତୁହି ।
ନଳ ସେନାପତିକୁ ହକାରିଲେ ପାଶ
କୋଳ କରିଣ କଥା କହନ୍ତି ବିଶ୍ୱାସ ।
ଶତବାଳିକି ତୁ ସଙ୍ଗରେ ଘେନିଯିବୁ
ଆଗୁ ଆଣି ଦଣ୍ଡରେ ଯାଇଣ ରହିବୁ ।

ଶୁଣି କରି ଦୁଇବୀର ବେଗେ ଚଳିଗଲେ
ରୋମାର ପିଅରକୁ ଡାକିଣ କହିଲେ ।
ବୋଇଲେ ପଛୁଆଣି ଦଣ୍ଡେ ତୁମ୍ଭେ ରହ
ସୁଷେଣକୁ ଘେନିଣ ସୈନ୍ୟ ସମ୍ଭାଳିଥାଅ ।
ସୁଗ୍ରୀବର ବିଭୀଷଣ ଜମ୍ବେବ ଏ ତିନି
ମୋର ପାଶେ ରହନ୍ତୁ ଘେନିଣ ସଇନୀ ।
ମହିନ୍ଦ୍ର ଚନ୍ଦନ ଗବୟେ ଗବାକ୍ଷ
ରହନ୍ତୁ ସଙ୍ଗରେ ଘେନି କପି ରକ୍ଷ ।
ଏତେ ବୋଲି ଶ୍ରୀରାମ ଦେଲେ ପରିମାଣ
ବୋଲନ୍ତି ସଦାଶିବ ପାର୍ବତୀ ଦେବୀ ଶୁଣ ।
ଶୁଣିଣ ପାର୍ବତୀ ବୋଲନ୍ତି ବଚନ
ସୁବଳୟାଗିରି ତିନିପାଖେ ରହିଲେ ସୈନ୍ୟ ।
ଶତେଯୁଣ ବନ୍ଧରେ ଠଣା କେତେଠାରେ
ଶୁଣିଣ ଈଶ୍ୱର କହନ୍ତି ହରଷରେ ।
ଦଶଯୁଣ ଓସାର ଦୀର୍ଘ ଦଶଯୁଣ
ସୁବଳୟାରେ ସବୁଠାରେ ଅମୃତ ଫଳେ ଜାଣ ।
ବନ୍ଧରେ ଦଶଠଣା କରିଣ ନିର୍ମାଣ
କୂଳରେ ଏକଠଣା କରିଛନ୍ତି ଜାଣ ।
ସୁବଳୟାଗିରିରେ ଲକ୍ଷେ ସତରିଶି ଠଣା
ଦେବନଦୀ କୂଳ ଆବୋରି ରହେ କିନା ।
ଉତ୍ତରସିନ୍ଧୁ କୂଳରୁ ସୁବଳୟା ଯାଏ
ଏଥିରେ ସୈନ୍ୟବଳ ପୂରିଣ ପୁଣି ରହେ ।
ସିନ୍ଧୁ ଉଛୁଳିଲା ପ୍ରାୟ ଶୁଭଇ ଗରଜନ
ଆମ୍ଭର ବିଶ୍ରାମଠାରୁ ଲାଗିଛନ୍ତି ସୈନ୍ୟ ।
ଆସୁଛନ୍ତି ବଳ ଫେରିବାର ନାହିଁ
ମାର ମାର ଶବଦ ଶୁଭୁଛି ସବୁଠାଇଁ ।
ବନ୍ଧ ବାନ୍ଧିବାର ତ ଜାଣଇ ରାବଣ
ଦଶଦିନରେ ବନ୍ଧ ହୋଇଲା ନିର୍ମାଣ ।
ଦିନେକ ରହିଲେ ଦୁଇଦିନରେ ଅଇଲେ
ସୁବଳୟାଗିରିକି ସେ ଯାଇ ଆବୋରିଲେ ।
ଲଙ୍କାଗଡ଼କୁ ଯେ ଚାହିଁଲେ ରାମରାଣ
ନିଶରେ ହସ୍ତ ଦେଇ ବୋଲନ୍ତି ବଚନ ।
କେତେ ଯୁଦ୍ଧ କରିବୁରେ ଜାଣିବା ତୋର ଟାଣ
ଦଶମୁଣ୍ଡ କାଟି ତୋର ଘେନିବିରେ ପ୍ରାଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଚାର ଜଣାଇଲା ଦଶାନନ କତି ।
ବୃହସ୍ପତି କହିଲେ ଶର କଲା ମୋହ
ଶୁଣିକରି ରାବଣ ଚିତ୍ତରେ କଲା ଭୟ ।
ଚାରିଦ୍ୱାର ନିରୋଧି ସେ କବାଟ କିଳିଲା
ସେନାପତି ପଦାତି ସୈନ୍ୟଙ୍କୁ ସଙ୍ଖୋଳିଲା ।
ରାବଣର ପୁରରେ ଯେତେକ ଅସୁର
ସର୍ବେ ତାଟକା ହୋଇଲେ କର୍ଣ୍ଣର ।

ରାବଣର ପୁରକୁ ଅସୁରୀ ଆସିଥିଲେ
ଚହଳ ଶୁଣିଣ ସେ ଫେରିକରି ଗଲେ ।
ତ୍ରିଜଟା ଆଗରେ କହିଲେ ଯାଇଣ
ରାବଣର ଛାମୁରୁ ଅଇଲୁ ଆମ୍ଭେ ଜାଣ ।
ଶ୍ରୀରାମ ଲକ୍ଷ୍ମଣ ଯେ ଦଶରଥ ସୁତ
ବନ୍ଧରେ ଆସି ରହିଲେ ସୁବଳୟା ପର୍ବତ ।
ଲଙ୍କାକୁ କଟକାଇ କରିଣ ରହିଲେ
କାଲି ଆସି ଯୁଦ୍ଧ କରିବେ ଶୁଣ ଭଲେ ।
ସୈନ୍ୟ ଅକଳିତ କଳନା ନ ଯାଇ
ରାବଣର ମୁଖରୁ ଶୁଣିଲୁ ଆମ୍ଭେ ରହି ।
ଯାଇଣ ତ୍ରିଜଟା ଜାନକୀ ଆଗେ କହି
ହନୁମନ୍ତ କହିବାରୁ ଆସିଲେ ତୋର ସାଇଁ ।
ଶୁଣିକରି ଜାନକୀ ହରଷ ହୋଇଲେ
କ୍ରୋଧରେ ଦାବାନଳ ରୂପକୁ ବହିଲେ ।
ଏଥୁ ଅନନ୍ତରେ ରାମଚନ୍ଦ୍ର ପୁଣ
ଫଳମୂଳ ଭୁଞ୍ଜିଣ କଲେ ଆଞ୍ଚୋବନ ।
କଷାଫଳ ଭୁଞ୍ଜିଣ ଶ୍ରୀରାମ ନିଦ୍ରା ଗଲେ
ବିଭୀଷଣ ସୁଗ୍ରୀବ ଆଦି ଯେ ଭୁଞ୍ଜିଲେ ।
ଆଞ୍ଚୋବନ ସାରିଣ କଷାଫଳ ଭୁଞ୍ଜିଲେ
ସକଳ ସୈନ୍ୟ ଫଳମୂଳ ଯେ ଭୁଞ୍ଜିଲେ ।
ସେନାପତି ଯୁଥପତି ମଲ୍ଲ ମହାମଲ୍ଲ
ଋକ୍ଷ ବାନର ସହିତେ ସର୍ବେ ହେଲେ ଠୁଳ ।
ଉଦର ସୁସ୍ଥ କରିଣ ଶୟନ ସେ କଲେ
ସେନାପତି ଯୁଥପତି ଜଗିଣ ରହିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ସମସ୍ତେ ନିଦ୍ରା ଯିବାରୁ ମାରୁତି ବିଚାରି ।
ରାମନାରୀ ଆଗରେ ମୁଁ କହିବି ଖବର
ସମ୍ପ୍ରତେ କରିବ ତେବେ ଜାନକୀ ମନର ।
ଏତେ ଭାବିଣ ହନୁ ବିକ୍ରମିଣ ଗଲା
ଅଶୋକ ବନରେ ପ୍ରବେଶ ହୋଇଲା ।
ଦେଖିଲା ଜାନକୀ ବସିଛନ୍ତି ଏକାନ୍ତରେ
ତ୍ରିଜଟା କେବଳ ଅଛି ଯେ ଚେତାରେ ।
ସକଳ ଅସୁରୁଣୀ ନିଦ୍ରାରେ ଅଚେତନ
ଏମନ୍ତ ସମୟରେ ମିଳିଲା ହନୁମାନ ।
ସୀତାଙ୍କୁ ଦେଖି ହନୁ ଓଳଗି ହୋଇଲା
ଚରଣ ତଳରେ ସାଷ୍ଟାଙ୍ଗେ ଶୋଇଲା ।
ଉଠିଣ ଶିରେ କର ଦେଲାକ ପାବନୀ
ଦେଖି ହରଷ ହେଲେ ଜନକ ନନ୍ଦିନୀ ।

ବୋଇଲେ ଶ୍ରୀରାମ ଅଇଲେ କିରେ ଲଙ୍କା
ହନୁମନ୍ତ ବୋଇଲା ହୋଇଣ ନିଶଙ୍କା ।
ସୀତା ବୋଇଲେ ରାବଣକୁ ବେଗେ ମାର
ଉପ୍ରୋଧ ନ କରିବେ କହିବୁ ଛାମୁର ।
ବନ୍ଧ ଯେବେ ବାନ୍ଧିଲ ଅଇଲେଟି କି ପିତା
କୁଶ ଶଯ୍ୟା ଛାଡ଼ିଲେଟି ଦଶରଥ ପୁତା ।
ହନୁମନ୍ତ ବୋଇଲା ଶୁଣ ଗୋ ଜନନୀ
ପିତାଙ୍କୁ ସ୍ତୁତି କଲେ ବହୁତ ରଘୁମଣି ।
ପିତା ତୁମ୍ଭର କେବେ ନୋହିଲେ ପ୍ରସନ୍ନ
ତେଣୁ ଶ୍ରୀରାମ ମୋତେ ପେଷିଲେ ଧନନ ।
ହେଲେଣ ରାମ ନାମ ସ୍ମରନି ମୁଁ ଗଲି
ପିତାଙ୍କୁ ତୁମ୍ଭର ବାନ୍ଧିଣ ଆଣିଲି ।
ଶ୍ରୀରାମ ଛାମୁରେ କରାଇଲି ଭେଟ
ବନ୍ଧର ବ୍ୟବସ୍ଥା ଯେ କହିଲେ ବିରାଟ ।
ବନ୍ଧ ବାନ୍ଧି ଆସି ସୁବଳୟାରେ ରହି
ଜାନକୀ ବୋଇଲେ ଅନ୍ୟାୟ କଲୁ ତୁହି ।
ମାରୁତି ବୋଇଲା ଯେ ବରୁଣ ମୋର ଅଜା
ମାଇଲେ ବାନ୍ଧିଲେ ତ ତାକୁ ନାହିଁ ଲଜ୍ଜା ।
ତ୍ରିଜଟା ମାଡ଼ ତୁହି କିମ୍ପାଇଁ ଛାଡ଼ି ଦେଲୁ
ଅନେକ ମାଡ଼ ତୁହି କିମ୍ପା ନ ମାଇଲୁ ।
ଶୁଣି କରି ଜାନକୀ ମନ୍ଦେ ମନ୍ଦେ ହସି
ବୋଇଲେ ତୋ ଦେହ ପଡ଼ିଲା ବାତ ଶିଷି ।
ଶତ୍ରୁକୁ ମାଡ଼ ଦେଲୁ ଜାଣି କଲୁ ଦ୍ୱନ୍ଦ୍ୱ
ପିତା ମୋର ଡରିଣ ହୋଇଲେ ଯେ ମନ୍ଦ ।
ଜଣାଇଣ ମାରୁତି ଫେରିଣ ଅଇଲେ
ସୁବଳ ଗିରିରେ ଆସି ଥାଟରେ ମିଳିଲେ ।
ଏଥୁ ଅନନ୍ତର ଶୁଣ ଗୋ ଭଗବତୀ
ସୁବଳୟା ଗିରିରେ ରହିଲେ ରଘୁପତି ।
ଆରଣ୍ୟକ କାଣ୍ଡରୁ ସୁନ୍ଦରାକାଣ୍ଡ ଯାଏଁ
ସଂସ୍କୃତ ତିନି ସହସ୍ର ପଦ ପୂର୍ଣ୍ଣ ହୁଏ ।
ପରାକୃତରେ ଯେତେ ପଦ ମୁଁ କଲଇଁ
ପଚାଶ ସହସ୍ର ପଦ ଠୁଳ ହୋଇ ।
ଶଙ୍କର ବୋଇଲେ ଶୁଣ ପ୍ରିୟ ସହି
ଏଠାରୁ ସୁନ୍ଦରା କାଣ୍ଡ ଯେ ସରଇ ।
ସୁନ୍ଦରା କାଣ୍ଡ ଯେ ହୋଇଲା ସମ୍ପୂର୍ଣ୍ଣ
ଏ ଅନ୍ତେ ଲଙ୍କାକାଣ୍ଡ ହୋଇବ ବର୍ଣ୍ଣନ ।
ଜଗମୋହନ ରାମାୟଣ କଲି ମୁଁ ପ୍ରକାଶ
ଶ୍ରୀ ଜଗନ୍ନାଥ ଶରଣ **ବଳରାମ ଦାସ** ।

## ଦାଣ୍ଡିରାମାୟଣ ସୁନ୍ଦରାକାଣ୍ଡ ସମ୍ପୂର୍ଣ୍ଣ



ଡି.ଟି.ପି. : କେନୋସଫଟ କମ୍ପ୍ୟୁଟର ସର୍ଭିସ୍, ମହମ୍ମଦିଆ ବଜାର, କଟକ, ଫୋନ୍: ୬୦୮୩୦୨



## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି । କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ । ଏଥିରେ ସ୍ୱତନ୍ତ୍ର କମିଶନ ବ୍ୟବସ୍ଥା ଅଛି ।

- ତୁଳସୀ ଦାସଙ୍କ କୃତ ରାମଚରିତ ମାନସ ବା ତୁଳସୀ ରାମାୟଣ
- ରଘୁନାଥ କୀର୍ତ୍ତନ ବା ମାଠ ରାମାୟଣ
- ଭାଗବତ ପ୍ରସାଦ ଦାନ୍ ରାମାୟଣ
- ଆଦର୍ଶ ତୁଳସୀ ରାମାୟଣ
- କ୍ଷେତ୍ର ମୋହନ ରାମାୟଣ
- ଚନ୍ଦ୍ର ମୋହନ ରାମାୟଣ
- ଆନନ୍ଦ ରାମାୟଣ
- ବିଲଙ୍କା ରାମାୟଣ
- ଆଧ୍ୟାତ୍ମ୍ୟ ରାମାୟଣ
- ଟୀକା ରାମାୟଣ
- ରାବଣ ରାମାୟଣ
- ବିଚିତ୍ର ରାମାୟଣ
- ଅଦ୍ଭୁତ ରାମାୟଣ

ପ୍ରକାଶକ :
ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶା ବଜାର, କଟକ - ୨
ଫୋନ୍ : (୦୬୭୧) ୨୬୦୮୨୯୬